

# କୃଷ୍ଣକଳୀ

(ଉପନ୍ୟାସ)

ମୂଳ ହିନ୍ଦୀ : ଶିବାନୀ
ଅନୁବାଦ : କୁମୁଦିନୀ ବରାଇ

# କୃଷ୍ଣକଲୀ

(ଉପନ୍ୟାସ)

ମୂଳ ହିନ୍ଦୀ ରଚନା : ଶିବାନୀ

ଅନୁବାଦ : କୁମୁଦିନୀ ବରାଇ



କିତାବ ଭବନ

ଭୁବନେଶ୍ୱର

# କୃଷ୍ଣକଲୀ

(ଉପନ୍ୟାସ)

ମୂଳ ହିନ୍ଦୀ ରଚନା : ଶିବାନୀ

ଅନୁବାଦ : କୁମୁଦିନୀ ବରାଇ

ISBN - 81-88630-19-5

ପ୍ରକାଶନ ଉପଦେଷ୍ଟା
ଶ୍ରୀ ବିନୋଦ ବିହାରି ବିଶୋଇ
ମୋ - ୯୯୩୭୬୯୪୭୮୧

ପ୍ରକାଶକ :
ମିସ୍ ଯୁଗଶ୍ରୀ ବିଶୋଇ
କିତାବ ଭବନ
ଏନ୍‌୬/୪୨୮, ଆଇ.ଆର.ସି ଭିଲେଜ୍,
ନୟାପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ ନଂ-୨୫୫୨୦୯୧

ବିତରକ :
ଜ୍ଞାନଯୁଗ ପବ୍ଲିକେଶସନ୍,
ଏନ୍-୬/୪୨୮, ଆଇ.ଆର.ସି ଭିଲେଜ୍,
ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ ନଂ-୨୫୫୨୦୯୧

ପ୍ରଥମ ପ୍ରକାଶ : ୨୦୦୮

ଅକ୍ଷର ସଜ୍ଜା :
ଶାରଳା ଗ୍ରାଫିକ୍ସ, ଭୁବନେଶ୍ୱର

ପ୍ରଚ୍ଛଦ :
ଯୁଗଶ୍ରୀ ବିଶୋଇ

ମୁଦ୍ରଣ :
କ୍ରିଏଟିଭ୍ ଅଫସେଟ୍
ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ ନଂ- ୨୫୫୬୧୦୭

ମୂଲ୍ୟ : ଟ. ୧୩୦.୦୦

# ଉତ୍ସର୍ଗ

ମୋର ସାନ ଭଉଣୀ ସରୋଜିନୀ ବରାଇ ଯିଏକି ସବୁବେଳେ ଅପେକ୍ଷା କରିଥାଏ କେବେ ମୋର ବହି ପ୍ରେସରୁ ବାହାରି ପାଠକ ପାଠିକାଙ୍କ ହାତକୁ ଆସିବ । ସେ ପଢ଼ିବ । ପୁସ୍ତକ ପ୍ରକାଶ କରିବା ପାଇଁ ତାହାର ଏହି ଆଗ୍ରହ ମତେ ଉତ୍ସାହ ଓ ପ୍ରେରଣା ଯୋଗାଇ ଥାଏ । ତାହାରି ହାତରେ ମୋର ଗେଲବସର କୃଷ୍ଣକଲୀକୁ ବଢ଼େଇ ଦେଲି ।

ଦିଦି

## ଅନୁବାଦିକାଙ୍କ କଲମରୁ ଦୁଇ ପଦ....

ଏହି ପୁରୁଷ ପ୍ରଧାନ ସମାଜରେ ନାରୀର ସ୍ଥାନ ଯେ କେଉଁଠି ତାହା ଅନ୍ଧେ ବହୁତେ ଏ ସଂସାରର ପ୍ରତ୍ୟେକ ପୁରୁଷ ତଥା ନାରୀ ଖୁବ୍ ଭଲ ଭାବରେ ଜାଣନ୍ତି। କିଏ କହୁଛି ନାରୀ ଅବଳା ଦୁର୍ବଳା ତଥା ବିନାଶ୍ରୟେ ନବର୍ତ୍ତନ୍ତି କବିତା ବନିତା ଲତା ପର୍ଯ୍ୟାୟରେ ? ଏହି ଆଧୁନିକ ଯୁଗରେ ଗତ ବିଂଶ ଶତାବ୍ଦିର ମଧ୍ୟ ଭାଗରୁ ଆଉ ଏହି ଏକବିଂଶ ଶତାବ୍ଦିରେ ନାରୀର ସ୍ଥିତିରେ ବିରାଟ ପରିବର୍ତ୍ତନ ହେଇଛି । ଏ କଥା ସତ ଯେ ନାରୀ ଆଜି ପୁରୁଷ ସହିତ ପ୍ରତ୍ୟେକ କ୍ଷେତ୍ରରେ ଯଥା ଦେଶର ସୁରକ୍ଷାଠୁ ଆରମ୍ଭ କରି ପ୍ରଶାସନ, ରାଜନୀତି, ସମାଜ କଲ୍ୟାଣ, କଳା, ବିଜ୍ଞାନ, ଅର୍ଥନୀତି, ଶିକ୍ଷା, ସ୍ୱାସ୍ଥ୍ୟ କ୍ଷେତ୍ରରେ କାନ୍ଧକୁ କାନ୍ଧ ମିଳେଇ ପାଦକୁ ପାଦ ମିଳେଇ ସମାନ ଭାବରେ ଆଗେଇ ଚାଲିଛି । ଏଗୁଡ଼ିକ ସହିତ ପରିବାରର ସମସ୍ତ ଦାୟିତ୍ୱ କନ୍ୟା, ଜାୟା, ଜନନୀ ହେଇ ସନ୍ତାନ ପ୍ରସବ୍ କରିବାଠୁ ଆରମ୍ଭ କରି ସେମାନଙ୍କ ଲାଳନ ପାଳନ କରିବା ଗୃହର ବୟୋଜ୍ୟେଷ୍ଠ ମାନଙ୍କର ସେବା ଶୁଶ୍ରୁଷା କରିବା କୌଣସି ଥିରେ ସେ ପଛେଇ ଯାଇ ନାହିଁ । ଯାହା ଜଣା ଯାଉଛି ଆଗାମୀ ଯୁଗରେ ମଧ୍ୟ ଏସବୁ ଦାୟିତ୍ୱ ତୁଲେଇବ । କେତୋଟି ଝାନ୍‌ସୀ ରାଣୀ, ଲକ୍ଷ୍ମୀବାଈ, ସରୋଜିନୀ ନାଇଡୁ, ବିଜୟ ଲକ୍ଷ୍ମୀ ପଣ୍ଡିତ ତଥା ଇନ୍ଦିରା ଗାନ୍ଧୀ ଆମେ ଦେଖିବାକୁ ପାଇଛେ ? ଏଥିରେ ସନ୍ଦେହ ନାହିଁ ନାରୀ ସହିବା ଶକ୍ତିଠୁ ଆରମ୍ଭ କରି ସକଳ ଶକ୍ତିର ଆଧାର । କିନ୍ତୁ ସାଧାରଣତ ଦେଖାଯାଏ ନାରୀର ଜୀବନରେ ବିଶେଷ କରି ସହିବା ଶକ୍ତିଟା ରହିଥିବାରୁ ଏ ଦେଶ କାଳ ପାତ୍ର ଉନ୍ନତିର ଦିଗରେ ପ୍ରତ୍ୟେକ କ୍ଷେତ୍ରରେ ଆଗେଇ ଚାଲିଛି । ବର୍ତ୍ତମାନ କାଳରେ ନାରୀର ଦାୟିତ୍ୱ ଅନେକ ପରିମାଣରେ ବଢ଼ିଯାଇଛି ସେ ଘରର ସମସ୍ତ ଦାୟିତ୍ୱ ସୁଚାରୁ ରୂପରେ ତୁଲେଇ ଯେଉଁ ପଦପଦବୀକୁ ସେ ଅଳଂକୃତ କରିଥାଏ ତାର ଗୁରୁଦାୟିତ୍ୱ ମଧ୍ୟ ଦୃଢ଼ତାର ସହିବା ସମାନ ଭାବରେ ନିର୍ବାହ କରିଥାଏ । ବିଶ୍ରାମ ତାର ନାହିଁ । ପରିସ୍ଥିତିରେ ପଡ଼ି କେତେ ନିର୍ଯ୍ୟାତନା ଯେ ତାକୁ ସହିବାକୁ ପଡ଼େ ଜଣ ଜଣକୁ ପଚାରିଲେ ପ୍ରତ୍ୟେକ କହିବେ । କେତେ ଉଚ୍ଚ ଶିକ୍ଷିତା ଉଚ୍ଚ ପଦପଦବୀ-ଧାରୀ ନାରୀ କିଭଳି ଭାବରେ ନିର୍ଯ୍ୟାତିତା ହେଉଛନ୍ତି ପ୍ରତ୍ୟେକ ଦିନ ଖବର କାଗଜର ପୃଷ୍ଠା ଓଲଟେଇଲେ ଦେଖିବାକୁ ମିଳେ । ଏଇଟାହିଁ ଆଜିର ସମାଜରେ ନାରୀର ସ୍ଥିତି ।

ଏହି ପୁସ୍ତକ କୃଷ୍ଣକଳୀ ଯାହାର ରଚୟିତା ହିନ୍ଦି ସାହିତ୍ୟର ବିଶିଷ୍ଟ ସୁପ୍ରସିଦ୍ଧ ତଥା ଲୋକପ୍ରିୟ ଲେଖିକା ଶିବାନୀ ଓରଫ ଶ୍ରୀମତୀ ଗୌରା ପନ୍ତ । ଶିବାନୀଙ୍କ ମାନସ କନ୍ୟା କୃଷ୍ଣକଳୀ ସୌନ୍ଦର୍ଯ୍ୟ ଓ କୌମାର୍ଯ୍ୟର ଅଗ୍ନିସିଖାରେ ବିଭୂଷିତ ଗୋଟିଏ ନାରୀ-ବ୍ୟକ୍ତିତ୍ୱ । ଗୋଟିଏ ଅଦ୍‌ଭୁତ ଚରିତ୍ର ଯେ କି ନିଜର ଜନ୍ମଜାତ ଗ୍ଲାନିରୁ ବାହାରି ଆସି ତାର ସୌରଭ ଓ ସୁବାସରେ ତାର ସମସ୍ତ ପରିବେଶକୁ ମୋହାଛନ୍ନ କରିଦିଏ । ସମାଜ ତାକୁ ବୁଝି ପାରେ ନାହିଁ କିନ୍ତୁ କୃଷ୍ଣକଳୀ କେବେ ହାରିଯିବା, ନଇଁପଡ଼ିବା ଶିଖି ନଥିଲା ହୁଏତ ସେ ଭାଙ୍ଗିପଡ଼ିଥିଲା । ହିନ୍ଦି ପାଠକ- ପାଠିକାମାନେ ଶିବାନୀଙ୍କ କୃଷ୍ଣକଳୀକୁ ବହୁତ ଆଦର-ସମ୍ମାନ ଦେଇଥିବାରୁ ଏହି ପୁସ୍ତକଟିର ୧୮ ସଂସ୍କରଣ : ୨୦୦୩ରେ ପ୍ରକାଶିତ ହେଇଛି । ମୁଁ ଆଶା କରୁଛି ଆମର ଓଡ଼ିଆ ପାଠକ-ପାଠିକାମାନେ ମଧ୍ୟ ଶିବାନୀଙ୍କ କୃଷ୍ଣକଳୀକୁ ସେହି ସମ୍ମାନରୁ ବଞ୍ଚିତ କରିବେ ନାହିଁ ।

ଏହି ପ୍ରସିଦ୍ଧ ଲୋକପ୍ରିୟ ପୁସ୍ତକକୁ ଓଡ଼ିଆରେ ଅନୁବାଦ କରିବାକୁ ମତେ ମ୍ରିନାଲ ପାଣ୍ଡେ ଅନୁମତି ଦେଇଥିବାରୁ ମୁଁ ତାଙ୍କ ନିକଟରେ ଚିର କୃତଜ୍ଞ । ଶେଷରେ ଏହି ପୁସ୍ତକକୁ ମହାପ୍ରଭୁ କଳିଆର ଭୂଜ ଶ୍ରୀ ଜଗନ୍ନାଥଙ୍କ ଚରଣକମଳରେ ସମର୍ପଣ କରୁଛି ।

ଶାମ୍ବଦଶମୀ
୧୮.୧.୦୮

ବିନିତ
କୁମୁଦିନୀ ବରାଇ

କୃଷ୍ଣକଲୀ ଆମି ତାରେଇ ବୋଲି
ଆର ଜା ବଲେ ବଲୁକ ଅନ୍ୟ ଲୋକେ
ଦେଖେଛିଲେମ ମୟନାପାଡ଼ାର ହାଟେ
କାଲୋ ମେୟେର କାଲୋ ହରିଣ ଚୋଖ
ମାଥାର ପରେ ଦୈୟ ନ ତୁଲେ ବାସ
ଲଜ୍ଜା ପାବାର ପାୟନୀ ଆବକାଶ
କାଲୋ ? ନା ସେ ଜତଇ କାଲୋ ହୋକ
ଦେଖେଛି ତାର କାଲୋ ହରିଣ ଚୋଖ
ରବୀନ୍ଦ୍ର ନାଥ

କୃଷ୍ଣକଲୀ ମୁଁ ତାକୁ କହେ
ଆଉ ଯାହା କହନ୍ତୁ କହନ୍ତୁ ଅନ୍ୟଲୋକ
ଦେଖିଥିଲି ନୟନାପଡ଼ାର ହାଟରେ
କଳା ଝିଅର କଳା ହରିଣ ଆଖି
ମୁଣ୍ଡ ଉପରେ ଦିଏନା ଓଢଣା
ଲଜ୍ଜା ପାଇବାର ପାଏ ନାହିଁ ଅବକାଶ
କଳା ? ତା ସେ ଯେତେ ହିଁ କଳା ହେଉ
ଦେଖିଛି ତାର କଳା ହରିଣ ଆଖି
ରବୀନ୍ଦ୍ର ନାଥ

# ଏକ

ମୁଷଳଧାରା ବୃଷ୍ଟି ଟିଣର ଗଡ଼ାଣିଆ ଛାତ ଉପରେ ନାଗରା ବାଦ୍ୟପରି ବାଜୁଥିଲା । ଦେବଦାରୁ, ବାଜପକ୍ଷୀ ଓ ବୁରୁଶର ଲମ୍ୱା ବୃକ୍ଷର ଲମ୍ୱା ଧନୀ ପଂକ୍ତିରେ ଲୁଚି ପାଖ ବାରଣ୍ଡାରେ ଟଙ୍ଗା ହେଇଥିବା ବଇସାତୀ ମୁଣ୍ଡରେ ପିନ୍ଧି ଡାକ୍ତର ପୈଦ୍ରିକ ତୀର ବେଗରେ ବାହାରି ଗଲେ ।

ହେ ! କେମିତି ବିକଟ ବୃଷ୍ଟି ଥିଲା ସେଦିନ । ମନେ ହେଉଥିଲା କ୍ରୁଦ୍ଧ ଆଷାଢ଼ର ଭ୍ରୂକୁଟି - ବିଳାସରେ ଆଲମୋଡ଼ାର ସୃଷ୍ଟି ହିଁ ଲୟ ହେଇଯିବ । କଡ଼ କଡ଼ ଶବ୍ଦରେ ବିଜୁଳି ସାମନାର ଗର୍ବୋନ୍ନତ ଛିଡ଼ା ହେଇଥିବା ଗାଗର ଓ ମୁକ୍ତେଶ୍ୱରର ଶିଖର ଉପରେ ଚମକିଲା, ଡକ୍ଟର ପୈଦ୍ରିକ ଦୁଇ କାନରେ ହାତ ଦେଇ, ସ୍ଥିର ହେଇ ଛିଡ଼ା ହେଇଗଲେ । ବିଜୁଳିର କଡ଼ କଡ଼ ଶବ୍ଦ ସହିତ ନବଜାତ ଶିଶୁର କ୍ରନ୍ଦନ... କାହିଁ ଏହା ମଧ୍ୟରେ ପାର୍ବତୀ କିଛି କରି ପକେଇଛି ? ଥରି ଥରି, ଗଳାରେ ପିନ୍ଧିଥିବା ଲମ୍ୱା ରୋଜରୀକୁ ଧରି, ଓଠରେ ଓଠରେ ବିଡ଼ବିଡ଼ କରି ଡାକ୍ତର ପୈଦ୍ରିକ, ଏକ ପ୍ରକାର ଦୌଡ଼ିବାକୁ ଲାଗିଲେ ।

ଦୁଇଦିନ ଆଗରୁ ସେ କହିଥିଲା, "ଚିନ୍ତା କର ନାହିଁ ମେମ ସା'ବ, ଡମର ଆସିବା ପୂର୍ବରୁ ମୁଁ ତାକୁ ଖତମ୍ କରି ଦେବି ।"

ପୁଣି ହି ହି କରି ବିକୃତ ସ୍ୱରରେ ହସିବାକୁ ଲାଗିଲା- ନିର୍ଲଜ୍ଜ ବେହିୟା ସ୍ତ୍ରୀଲୋକ ! ଡା. ପୈଦ୍ରିକ ବହୁତ ଡେରିପର୍ଯ୍ୟନ୍ତ ତାହାରି ପାଖରେ ବସି ରହିଥିଲା, 'ଶିଶୁଙ୍କ ଠାରେ ଈଶ୍ୱରଙ୍କ ଅଂଶ ଥାଏ, ଜାଣେ ପାର୍ବତୀ ? ଈଶ୍ୱରଙ୍କ ତଣ୍ଟି ଚିପିକୁ ତୁ ? ଏହି ଜନ୍ମରେ ଜାଣେ ନାହିଁ କେଉଁ ପୂର୍ବକୃତ ପାପର ଫଳ ଭୋଗୁଛୁ, ପରଲୋକର ଚିନ୍ତା ତୋର ନାହିଁ ?"

ସେହି ଅନ୍ଧାର କୋଠରିରେ ପାର୍ବତୀର ନାସିକା-ବିହୀନ ବିକଟାଳ ହସକୁ ପ୍ରଥମ ଥର ଶୁଣିବା ପରେ ପଥରର କଲିଜା ମଧ୍ୟ ହୁଏତ ଭୟରେ ଧଡଧଡ କରିବ, "ଏହି ଲୋକରେ ମୁଁ ଯେତେବେଳେ ଏତେ ସୁଖ ଭୋଗ କରିଛି ମେମ ସା'ବ, ତେବେ ପରଲୋକର କାହିଁକି ଚିନ୍ତା ? "ଅନ୍ୟ ଆସନ୍ନ-ପ୍ରସବା ସ୍ତ୍ରୀମାନଙ୍କ ପରି ଗର୍ଭଭାର ମୁଁ ଦୋହରାଇ ନଥିଲି ପାର୍ବତୀ, କସିକରି ଚାପିଧରି, ନିଜର ତୀକ୍ଷ୍ଣ ପେଟର ପରିଧିକୁ ଦୁଇ ହାତରେ ଧରି ସେ ଡା. ପୈଦ୍ରିକଙ୍କ ସମ୍ମୁଖରେ ବିଦ୍ରୋହର ଜୀବିତ ମୂର୍ତ୍ତି ପରି ଛିଡ଼ା ହେଇଯାଇଥିଲା, ପୁଣି ସେ ସ୍ୱୟଂ ହୁଏତ ନିଜର ଅଜ୍ଞ-ବୁଦ୍ଧିରେ ଲଜ୍ଜିତ ହେଇଥିଲା, "ଖରାପ ଭାବ ନାହିଁ ମେମ ସା'ବ," ଉତ୍ତେଜିତ କଣ୍ଠ-ସ୍ୱର ହଠାତ୍ ନରମି ଯାଇ

କହିଲା, "ତୁମେ ମୋର ମା ଅଟ, କଣ ଠିକ୍ ମୁଁ କରୁ ନାହିଁ, ନିଜର ପାପର ଫଳ ଭୋଗିବାକୁ, ଏହାକୁ କାହିଁକି ବଞ୍ଚିବାକୁ ଦେବି ।"

କ୍ଷଣକ ପୂର୍ବରୁ ନିର୍ଲଜତାରେ ହସିଲାବାଲା ଅଭଦ୍ର ମହାକୁତ୍ସିତ ରୋଗ-ବିକୃତ ଚେହେରା, ଅସହ୍ୟ ଦୁଃଖର ଅସଂଖ୍ୟ କୁଞ୍ଚିତ ରେଖାରେ ଭରିଥିବା, ପଲକ-ବିହୀନ ବଡ଼ ବଡ଼ ଆଖିରେ ଲୁହ ଉଚ୍ଛୁଳି ଉଠିଲା । କୌଣସି କ୍ରୁର ହୃଦୟହୀନ ଆକ୍ରମଣ କାରି ଶତ୍ରୁ ପରି, ମହାରୋଗ ସୌନ୍ଦର୍ଯ୍ୟ ଦୁର୍ଗର ପତାକା ଉଡାଇ ଦେଇଥିଲା, କିନ୍ତୁ ଐତିହାସିକ ଦୁର୍ଗର ଭଗ୍ନାବଶେଷରେ ମଧ୍ୟ ଯେମିତି ଦୁଇଟି ସୁନ୍ଦର ଝରକା ଯେମିତି କି ସେମିତି ଥାଏ, ଶତ୍ରୁର ନିର୍ମମ ଗୋଲାବାରୀ ରେଶମୀ ପକ୍ଷ୍ମକୁ ହିଁ ଝାଉଁଲେଇ ଦେଇ ପାରିଥିଲା ।

ହଲଦ୍ୱାନୀରେ ନିଜ ବସଙ୍କ ପଛରେ ଦୌଡ଼ୁଥିବା ପାର୍ବତୀକୁ ଡା. ପୈଦ୍ରିକ ଦଶ ବର୍ଷ ପୂର୍ବରେ ଧରି କରି ନିଜ ଆଶ୍ରମକୁ ଆଣିଥିଲେ । ସେତେବେଳେର ପାର୍ବତୀ ଆଜିକାର ପାର୍ବତୀରେ ଧରିତ୍ରୀ -ଆକାଶର ଅନ୍ତର ଥିଲା । ତୀକ୍ଷ୍ଣ ନାକ, ଭରପୁର ଶରୀର ଆଉ ମାଛ ପରି ଟେରେଇ ଚାହିଁବା ବଡ଼ ବଡ଼ ଆଖିର ଅଧିକାରିଣୀ ପାର୍ବତୀ ବର୍ତ୍ତମାନ କଣ ସେମିତି ହିଁ ରହି ଯାଇଛି ? ପାଦରେ କେନଭାସର ଫଟା ଜୋତା ଦେଖିକରି ଡା.ପୈଦ୍ରିକଙ୍କ ଅନୁଭବି ଆଖି ରୋଗର ପ୍ରମୁଖ ଗଭୀରତା ଧରି ପାରିଥିଲେ । ବର୍ତ୍ତମାନ ହାତ-ପାଦର ଆଙ୍ଗୁଠିରେ ହିଁ ରୋଗର କୁଠାରାଘାତ କରିଥିଲା, ଧରିପାରିଲେ ବୁଝି ପାରିଲେ, ଶେଷରେ ପୋଲିସର ଭୟ ଦେଖେଇ କରି ହିଁ ଡାକ୍ତର ତାଙ୍କୁ ନିଜ ସହିତ ଆଣି ପାରିଥିଲେ ।

"ତୋର ଏହି ରୋଗ ବର୍ତ୍ତମାନ ମଧ୍ୟ ଏକଦମ ଠିକ ହେଇପାରିବ, ଜାଣୁ ବାଳିକା ?"

ଆଉ ସେହି ଆକର୍ଷଣ ବାଳିକା ଦୁଇ ହାତର ପାପୁଲି, ଦୁଷ୍ଟତାରେ ହସି କରି ଠିକ ଡା.ପୈଦ୍ରିକଙ୍କ ନାକ ତଳେ ମେଲେଇ ଦେଇଥିଲା, 'ଏହି ଅଙ୍ଗୁଳି କେଉଁଠୁ ଆଣିବି ମେମ ସାହେବ ?" ଦଶ ଆଙ୍ଗୁଳିରୁ ଅବଶେଷ, ସେହି ତିନି ଆଙ୍ଗୁଳିର ଗଠନ ନିଃସନ୍ଦେହ ଅନୁପମ ଥିଲା- ଲମ୍ବା, ଉପରରୁ ମୋଡ଼ି ହେଇଥିବା ଆଙ୍ଗୁଳିଗୁଡ଼ିକ । ବହୁତ ଆଗରୁ ଜାବାରେ ରହୁଥିଲେ ଡାକ୍ତର ପୈଦ୍ରିକ, ଆଜି ଏହି ତିନି ଆଙ୍ଗୁଳିକୁ ଦେଖିକରି ତାଙ୍କୁ ଜାବାର ନର୍ତ୍ତକିମାନଙ୍କ କଳାତ୍ମକ ଆଙ୍ଗୁଳିଗୁଡ଼ିକର ସ୍ମରଣ ହେଲା, ସତରେ ଏହି ନମୁନାର ଆଙ୍ଗୁଳିଗୁଡ଼ିକ ଗଢ଼ିବାରେ ଡିକୀକୁ କଠିଣ ପରିଶ୍ରମ କରିବାକୁ ପଡ଼ିଥିବ, କିନ୍ତୁ ଡିକୀର ଅଦ୍‌ଭୁତ ଶକ୍ତିକୁ ସେ ଜାଣିଥିଲେ । ବୈଲୋରର ସେହି ଅସାଧାରଣ ଚରକ ରେଖା ଆଜି ପର୍ଯ୍ୟନ୍ତ କେତେ ଭୁଲ୍ ଅଂଶ ର ପୁନଃ ନିର୍ମାଣ କରି ଅସଂଖ୍ୟ ଅଭିଶପ୍ତ ରୋଗୀମାନଙ୍କୁ ଜୀବନଦାନ ଦେଇସାରିଛି । ତାଙ୍କର ଅନୁମାନ ଠିକ୍ ଥିଲା । ପାର୍ବତୀ ବୈଲୋରରୁ ନିଜର ନକଲି ଅଙ୍ଗୁଳିଗୁଡ଼ିକ ନେଇ ଫେରିଲା ଦେଖି ଡାକ୍ତର ପୈଦ୍ରିକ ଆଶ୍ଚର୍ଯ୍ୟ ହେଇଗଲେ । କିଏ କହିବ, ସେଇ ସୁନ୍ଦର ଅଙ୍ଗୁଳିଗୁଡ଼ିକର ଗଠନରେ

କଳାକାର କେଉଁଠି ମଧ୍ୟ ବିଧାତା ଠାରୁ ପଛେଇ ଯାଇଛି ।

କିନ୍ତୁ ପାର୍ବତୀକୁ ଏହି ନୂଆ ଆଙ୍ଗୁଳିଗୁଡ଼ିକ ଦେଇକରି ବହୁତ ବୁଦ୍ଧିମାନର କାମ କରିନାହିଁ, ଏହି ଡା.ପୈଡ୍ରିକ ପରି ବୁଦ୍ଧିମତୀ ମହିଳା ପ୍ରଥମ ଦିନରେ ହିଁ ବୁଝି ପାରିଥିଲେ । ପଳେଇ ଆସି ପାର୍ବତୀ ଜଣାନାହିଁ କାହା କାହା ଠାରୁ କିଛି ଟଙ୍କା ଉଧାର ନେଇ ବଜାରରୁ ସେ ନିଜର ନୂଆ-ନୂଆ ଅଙ୍ଗୁଳିଗୁଡ଼ିକ ପାଇଁ କେତେକ ରଂଗ-ବିରଙ୍ଗି ମୁଦି, ମାଳିର ମାଳା ଆଉ ଗୋଟିଏ ଛୋଟ ଦର୍ପଣ କିଣି ଆଣି ଥିଲା । ଯେତେବେଳେ ଡ.ପୈଡ୍ରିକ ରାଉଣ୍ଡରେ ଗଲେ ସେତେବେଳେ ନିଜ ଛୋଟ ଖଟିଆରେ ନୂତନ ବହୁପରି ସାଜସଜ୍ଜା କରି ଛୋଟ ଦର୍ପଣରେ ନିଜ ମୁହଁ ଭଲକରି ଦେଖୁଥିଲା, ମୁଗ୍ଧା ନାୟିକା ହେଇ ବସିଥିଲା ! ଡାକ୍ତରର ହୃଦୟ ସେହି ଅଭାଗିନୀ ପାଇଁ କରୁଣାରେ ଭରିଗଲା ।

"ପାର୍ବତୀ" ସେ ତାର ନକଲି ମୁଦିଗୁଡ଼ିକରେ ଝକମକ କରୁଥିବା ଆଙ୍ଗୁଳିଗୁଡ଼ିକୁ ଆଉଁଷି କହିଥିଲା, "ମୁଁ ତୋ ଜାଗାରେ ଥିଲେ, ପ୍ରଥମେ ଏହି ଆଙ୍ଗୁଳିଗୁଡ଼ିକୁ ସେଇ ଖୋଦାର ପ୍ରାର୍ଥନାରେ ଜୋଡିକରି ଆଣ୍ଠୁ ଟେକନ୍ତି, ଯେ ଏହାକୁ ଜୋଡ଼ିବା ଯୋଗ୍ୟ ତିଆରି କରିଦେଲେ ଅଥଚ ତୁ କଣ ନା ପ୍ରଥମେ ଏହାକୁ ସଜେଇବା ପାଇଁ ବ୍ୟସ୍ତ ?"

"ହୀ-ହୀ-ମେମ ସା'ବ"- ନାସ୍ତିକ ପାର୍ବତୀକୁ ଲକ୍ଷେ ଚେଷ୍ଟା କରିବା ପରେ ମଧ ଡାକ୍ତର ଆସ୍ତିକ ତିଆରି କରି ପାରି ନଥିଲେ । କଠିଣ ଅସାଧ ରୋଗ ତାକୁ ଚିଡଚିଡ଼ା ନିର୍ଲଜ୍ଜ ଏବଂ ସାହସିକ କରି ଦେଇଥିଲା ।

"ଭଗବାନ, ଖୋଦା, ଇସାମସୀ, କାହାରିକୁ ମୁଁ ମାନେ ନାହିଁ, ସବୁ ମିଥ୍ୟା । ମୋର ଆଙ୍ଗୁଳିଗୁଡ଼ିକ କଣ ତୁମର ଖୋଦା ଠିକ୍ କରିଛି ? ଯିଏ ଠିକ୍ କରିଛି ସେ ତ ଆପଣଙ୍କର ମୋ ପରି ମଣିଷ ଅଟେ ମେମ ସା'ବ ।"

ଡାକ୍ତର ପୁଣି କିଛି କହିଲେ ନାହିଁ, କିନ୍ତୁ ପାର୍ବତୀକୁ ସେ ନିଜ ରୁମର ଝାଡୁ ଦେବା, ଫୁଲ ଦାନୀ ଗୁଡ଼ିକରେ ପିତଳ ପାଲିସ୍ କରିବା ଆଦି ଛୋଟ ମୋଟ କାମ ଦେଇକରି ଏମିତି ବାନ୍ଧି ରଖିଲା ଯେ ତୋବଡ଼ା ବନ୍ଧା ଜଙ୍ଗଲୀ ଘୋଡ଼ି ପରି ସେ ଏଠାରେ ସେଠାରେ ମୁହଁ ଲଗେଇ ପାରୁ ନଥିଲା । କିନ୍ତୁ ଧୀରେ-ଧୀରେ ସେ ନିଜର ମୁନିଆଁ ଦାନ୍ତରେ ତୋବଡ଼ା କାଟି କରି ଧରି ଦେଲା । ଡାକ୍ତରର କଠୋର ଅନୁଶାସନରେ ମାଛ ପରି ପାର୍ବତୀ ଜାଣେ ନାହିଁ କେବେ ପୁଣି ନିଜର ପରିଚିତ ଗୋଳିଆ ଜଳାଶୟରେ ମୁଣ୍ଡରୁ ଗୋଡ଼ଯାଏ ଏଠାରୁ ସେଠାକୁ ପହଁରିବାରେ ଲାଗିଲା ।

ପାର୍ବତୀ ପରି ଅସଦୁଲ୍ଲାଖାନ କୁଷ୍ଠାଶ୍ରମର ପୁରୁଷ ଡାକ୍ତରଙ୍କ ମଧରେ ସବୁଠାରୁ ବଡ଼ ଶୀରପୀଡ଼ା ଥିଲା । ଉଚା-ଲମ୍ବା ଟାକୁଆ ଗାଲବାଲା ପଠାଣ, ପ୍ରଥମ ଦିନ ରକ୍ତ ପରୀକ୍ଷା କରିବାକୁ ଆସିଥିଲା, ତେବେ କେହି ନିକଟରୁ ଦେଖିବା ପରେ ମଧ ତାର ରୋଗର ଅସ୍ତିତ୍ୱର ଶୁତ୍ର ଧରି ପାରି ନଥିଲା । ତୀକ୍ଷ୍ଣ ନାକ, ତେଜସ୍ୱୀ ଆଖି, ଚଉଡ଼ା ମୁଣ୍ଡ ଏବଂ ଘନ କଳା ବାଳ, ଯାହର ଗଭୀର କଳା ବାଳ, ଯାହାର ଗଭୀର କଳା

ରେଶମୀ ରଂଗ, ତାହାର ଗୌର ବର୍ଣ୍ଣକୁ ଆହୁରି ଉଜ୍ଜ୍ୱଳ କରି ପ୍ରସ୍ତୁତ କରୁଥିଲା । ଫଟା ସାଲଓ୍ୱାର ଏବଂ ଚକଚକିଆ ନୀଳ କ୍ରେପର କମୀଜ ପିନ୍ଧିଥାଏ ସେ ଡା ବୈଦ୍ରିକଙ୍କ ସମ୍ମୁଖରେ ଗୋଟିଏ ସଲାମ କରି ଛିଡ଼ା ହେଇ ଯାଇଥିଲା । "ବର୍ତ୍ତମାନ ରୋଗର ଆରମ୍ଭ ହେଇଛି ଖାନ", ଡାକ୍ତର କହିଥିଲେ, "ତୁମେ ସଂଯମରେ ରୁହ ଏବଂ ଏଠାରୁ ପଳେଇ ନଗଲେ ଶୀଘ୍ର ଠିକ୍ ହେଇଯିବ । ବର୍ତ୍ତମାନ ରୋଗ ତମର କିଛି ମଧ ବିଗାଡ଼ି ନାହିଁ ।"

"ଏବଂ ଏହି ?" ନିଜର ଗଭୀର ନିଶ ମଝିରେ ମୋତି ପରି ଦାନ୍ତ ଚମକେଇ ସେ ଫଟା ଜୋତା ଖୋଲି, ଦୁଇ ପାଦ ଡଃ. ପୈଦ୍ରିକଙ୍କ ସାମନାରେ ଦେଖେଇ ଦେଇଥିଲା ।

କୀମା ହେଇଥିବା ଦୁଇଟି ଅଙ୍ଗୁଳିକୁ ଦେଖିକରି ଡାକ୍ତର ସିହରି ଉଠିଥିଲେ ଏବଂ ନିଜର ବିରକ୍ତି ଅଟକେଇ ପାରି ନଥିଲେ, "ଆଜି ପର୍ଯ୍ୟନ୍ତ କଣ କରୁଥିଲ ତୁମେ ?"

"ପଥରର ଖଣିରୁ ଗଧ ଉପରେ ପଥର ଲଦୁଥିଲି ମେମ ସା'ବ" ବଡ଼ ବେଖାତିରରେ ସେ ଥରେ ପୁଣି ନିଜର ଗଭୀର ନିଶ ମଝିରେ ହସିଲା, ପାଖରେ ଛିଡ଼ା ହେଇଥିବା ପାର୍ବତୀକୁ ଦେଖିବାକୁ ଲାଗିଲା । ଚଞ୍ଚଳ ପାର୍ବତୀ ତାହାର ଏହି ପ୍ରତ୍ୟୁତ୍ପନ୍ନମତିତ୍ୱରେ ଠୋ ଠୋ ହସି ଉଠିଲା । ସେ ଖିଲି ଖିଲି କରି ହସିଲା କିନ୍ତୁ ପରକ୍ଷଣରେ ଡାକ୍ତରଙ୍କ କଠୋର ଦୃଷ୍ଟି ତାକୁ ଚୁପ କରି ଦେଲା, "ପାର୍ବତୀ, ତୁମେ ନିଜ କାମ କର, ଏଠାରେ କଣ କରୁଛ ?"

ସେ ଦିନ ତାକୁ ଧମକ ଦେଇ ଭିତରକୁ ପଠେଇ ଦେଲେ, କିନ୍ତୁ ଅସଦୁଲ୍ଲାର ସାମାନ୍ୟ ରୂପର କ୍ଷତବିକ୍ଷତ ପୌରୁଷର ନାଗ ତାକୁ ଯିବା ପୂର୍ବରୁ ଦଂଶନ କରି ସାରିଥିଲା । ଲୁଚି-ଛପି କରି ତା ସହିତ ଦେଖା କରୁଥିଲା । କିନ୍ତୁ ଅଭାଗିନୀ ପାର୍ବତୀ ଏହା ଜାଣି ନଥିଲା- ଯେ ସେଇ ସୁଦର୍ଶନ ପଠାଣ, କେବଳ ତା ସମ୍ମୁଖରେ ପ୍ରଣୟର ସବାରି ତୋଳି ଧରି ନଥିଲା । କୁଷ୍ଠାଶ୍ରମର ଅସଂଖ୍ୟ ଗୋପୀମାନଙ୍କ ଏକମାତ୍ର କହ୍ନେୟା ଅସଦୁଲ୍ଲା ହିଁ ଥିଲା । ପଠାଣ ହେଇକରି ମଧ ସେ ବିଶୁଦ୍ଧ ମିଠା ସ୍ୱରରେ ପାହାଡ଼ି କହିପାରୁ ଥିଲା । ଡାଳିମ୍ବ ଗଛ ତଳେ ବସିକରି ଯେତେବେଳେ ସେ ଗୋଟାକ ପରେ ଗୋଟିଏ କଠିଣ ପାହାଡ଼ି ଲୋକଗୀତର ଧ୍ୱନି ନିଜ ବଂଶୀରେ ବଜାଇବାକୁ ଆରମ୍ଭ କରେ, ତେବେ କୁଷ୍ଠ ରୋଗୀମାନଙ୍କ ଭିଡ଼ ତାକୁ ଘେରି ପକଉଥିଲା ଯେମିତି ବର୍ଷାର ବେଗବତୀ ଧାରା ଗନ୍ଧିଆ ନାଳର ଅଳିଆକୁ ନିଜ ସହିତ ଦୂରକୁ ବୋହି ନେଇଯାଉଥିଲା । ଏମିତି ହିଁ କିଛି କ୍ଷଣପାଇଁ, କେତେ ଯେ ବସି ଯାଇଥିବା ନାକ, ଝଡ଼ି ଯାଇଥିବା ଅଙ୍ଗୁଳିଗୁଡ଼ିକ ଝଡ଼ି ଯାଉଥିବା ପତ୍ର ନଇଁ ଥିବା ପଲକର ବ୍ୟଥା ଅସଦୁଲ୍ଲାର ମାଦକ କରୁଣ ବଂଶୀଲହରି ସହିତ ବୋହିକରି ଦୂରକୁ ଚାଲିଯାଏ, ଏବଂ ଫରମାଇସର ବଜାର ଗରମ ହେଇ ଉଠୁଥିଲା ।

'ଆରେ ବନ୍ଧୁ ଅସଦୁଲ୍ଲା, ହେଇଯାଉ ଟିକିଏ ମଧୁର ଗୀତ'-

ଚନା ଓ୍ୱେ ଚକୋରୀ ଓ୍ୱେ ଚନା
ବାଁଟି ଲେ ଚନା ଲଟି
ତେରୋ ସିପାହୀ ଘର ଏ ଶେଛୌ, ବେଲିୟା ପୋରୁ ବଟି ।

ଏବଂ ଅସଦୁଲ୍ଲା ବଂଶୀ ସହିତ, ସ୍ମୃତିଗୁଡ଼ିକରେ ବୁଡ଼ି ରହିଥିବା ଚକୋରୀ ପାର୍ବତୀ ଆଡ଼କୁ ଅନେଇ ଥରକୁ ଥର ଏଇ ପଂକ୍ତି ଦୋହରାଉ ଥିଲାବେଳେ କେତେଥର କେତେ ଜୋତାର ସୋଲ ଏକ ଲୟରେ ତାଳ ଦେବାରେ ଲାଗିଥିଲେ-

ଅରି ଚକୋରୀ ଚନା
ଚୋଟି ତୋ ଗୁନ୍ଥ ଲେ
କଲ ତେରା ସିପାହୀ ଘର ଲୌଟ ଆୟା ହୋ
(ଆରେ ଚକୋରୀ ବୁଝ
ବେଣୀ ତ ବାନ୍ଧି ଦେ
କାଲ ତୋର ସିପାହୀ ଘରକୁ ଫେରି ଆସିଛି ।)

ପାର୍ବତୀର ସୁଦର୍ଶନ ସିପାହୀ ମଧ୍ୟ ହୁଏତ ଘରକୁ ଫେରି ଆସିଥିବ । ଚକୋରୀର ଆଖିରୁ ଝଣ ଝଣ ଲୁହ ପଡ଼ିବାକୁ ଲାଗେ । ମୁହଁ ବୁଲେଇ ସେ ଲୁହ ପୋଛି ପରକ୍ଷଣରେ ନିଜର ଆନନ୍ଦିତ ଶରୀରକୁ ଫେରିଆସେ, "ଏହି ନକଲି ଅଙ୍ଗୁଳିଗୁଡ଼ିକରେ କଣ ବାଳ ବାନ୍ଧିବି ବନ୍ଧୁ, ଆଉ ଗୁନ୍ଥି ନେଲେ କଣ ମୋର ସିପାହୀ କଣ ମୋ ପାଇଁ -ବସି ରହିଥିବ ?"

"କୌଣସି କଥା ନାହିଁ ପାର୍ବତୀ, ମୁଁ ତ ବସିଛି ତୋ ପାଇଁ", ତାହାର ନୂତନ ପ୍ରେମୀ ସମସ୍ତ ସମାଜ ସମ୍ମୁଖରେ ଗହଳିଆ ନିଶରେ ହାତ ମାରି, ଦୋହରାଇଲା, କୌଣସି ନାଟକର କଳାକାର ପରି ନମ୍ର, 'କର୍ଟସୀ'ରେ ନଇଁ ପଡନ୍ତା ।

"ବାହ, ବାହ !"

"ସାବ୍‌ବାସ, କି କଥା କହିଲୁ ସବା ଲକ୍ଷର !" ପାର୍ବତୀ ଲଜ୍ଜାରେ ପଳେଇ ଯାଏ । ସେହି ଦୁଇଜଣଙ୍କର ପ୍ରଣୟ ରସକେଳି ପୁରା ସମ୍ପ୍ରଦାୟଙ୍କୁ ଜଣାଥିଲା, ତେବେ ମଧ୍ୟ ଅସାଧ୍ୟ ରୋଗର ଏକାପରି ବ୍ୟଥାକୁ ଏକତାରେ ସମସ୍ତେ ଏମିତି କସିକରି ବାନ୍ଧି ହେଇଥିଲେ ଯେ ଯଦି ଗୋଟିଏ ଟିକିଏ ଟାଣେ ସବୁକୁ ସବୁ ଏକା ଥରକେ ଟାଣି ହେଇଯାଇଥାନ୍ତେ । କେହି ଡ. ପୈଦ୍ରିକଙ୍କୁ ଗୋଟିଏ ଶବ୍ଦ କହିଲା ନାହିଁ । କିଛି ଦିନ ପର୍ଯ୍ୟନ୍ତ ଅସଦୁଲ୍ଲାକୁ କୁଷ୍ଠାଶ୍ରମର ଚୌହଦିରେ ବନ୍ଦ ରହିବାରେ କୌଣସି ଆପତ୍ତି ହେଲା ନାହିଁ, କିନ୍ତୁ ଧୀରେ - ଧୀରେ ସେ ଲୁଚି ଛପି କରି ରାତି ଅଧରାତିକୁ ଖସି ଯାଉଥିଲା ।

"ଆଜି ମୁଁ ଗୋଟିଏ ବଢ଼ିଆ ପିକ୍‌ଚର ଦେଖିଲି ପାର୍ବତୀ ସେଥିରେ କାମ କରୁଥିବା ଝିଅ ଏକଦମ, ତୋରି ଚେହେରା ପରି ଥିଲା ।" ସେ କହୁଥିଲା ପାର୍ବତୀକୁ ସେ ପର୍ବତୀ ବୋଲି ଡାକୁଥିଲା ।

"ଯା', ପାର୍ବତୀ ତାକୁ ବିରକ୍ତ ହେଉଥିଲା, "ଏତେ ପଇସା କେଉଁଠାରୁ ତୁ ପାଉଛୁ ?"

"କାହିଁକି, ଅସଦୁଲ୍ଲା ଖାନ ପାଖରେ ପଇସା କଣ କମ ? ରାଜା ଘର ମୃତ୍ୟୁ ଅକାଳ ?" ସେ ଗହଳିଆ ନିଶକୁ ମୋଡି ଦେଉଥିଲା, ପାହାଡ଼ି ଲୋକୋକ୍ତିରେ ନିଜ ପାର୍ବତୀକୁ ଥରେ ପୁଣି ପ୍ରସନ୍ନ କରିଦେଲା ।

"ବର୍ତ୍ତମାନ ତ ତିନୋଟି ଖଚର ବିକ୍ରି କରିଛି, ପଚାଶଟି ଖଚର କାକା ସାହେବଙ୍କୁ ସମର୍ପି ଆସିଛି । ଆସନ୍ତା ସପ୍ତାହରେ ତତେ ତିନି ଭରିର ମାଛ ତିଆରି କରି ନ ଦେବିତ ମୋର ନାମ ବଦଳେଇ ଦେବୁ । ବୁଝିଲୁ ?" ମିଛ କହୁ ନଥିଲା ଖାନ, କିନ୍ତୁ ପାର୍ବତୀକୁ ସେଇ ତିନି ଭରିର ରାମପୁରୀ ମାଛର ଗଭୀର ମୂଲ୍ୟ ଦେବାକୁ ପଡ଼ିଥିଲା । ପାର୍ବତୀର ଦୂରବସ୍ଥା ପ୍ରକାଶିତ ହେଲାମାତ୍ରେ ଅସଦୁଲ୍ଲା କେବେ ଚୁପ୍‌ଚାପ ପଳେଇ ଗଲା, କେହି ଜାଣି ମଧ ପାରିଲେ ନାହିଁ । ଏଠାରେ ପାର୍ବତୀର ଅସଙ୍ଗତ ଜୀବନରେ, ରୋଗକୁ ତୀବ୍ରତାରେ ଉଦ୍ଧାର କରି ଦେଇଥିଲା । ଖାଇ ଖନ୍ଦକରେ ଲୁଚି ରହିଥିବା କୁଟିଳ ଶତ୍ରୁ ପରି ସେ ଦିନେ ପାର୍ବତୀର ପିଠିରେ ଛୁରୀ ଭୁଷି ଦେଇଥିଲା । ମେରୁଦଣ୍ଡର ହାଡ଼ର ମର୍ମାନ୍ତିକ ବ୍ୟଥାରେ ସେ ଛଟପଟ ହେଉଥିଲା ବେଳେ ତା ଉପରେ ଝୁଙ୍କି ଡା. ପୈଦ୍ରିକ ତାହାର ରୋଗକୁ ଧରି ପକେଇ ଥିଲେ । ବହୁତ ଡେରି ପର୍ଯ୍ୟନ୍ତ ସେ ହତବୁଦ୍ଧିରେ ବସି ହିଁ ରହିଗଲେ ।

"ଇଏ କଣ କରି ବସିଲୁ ପାର୍ବତୀ ? କିଏ ଥିଲା ଏହି ହୃଦୟହୀନ ? କହୁନାହୁଁ କାହିଁକି ଝିଅ ?"

କିନ୍ତୁ ପାର୍ବତୀ ଗୋଟିଏ ଶବ୍ଦ ମଧ କହିଲା ନାହିଁ । ଯେଉଁ ଉଚ୍ଚ ନାସିକାର ଏକମାତ୍ର ସ୍ତମ୍ଭ ଉପରେ ତାହାର ସୌନ୍ଦର୍ଯ୍ୟର ପସରା ଆଜି ପର୍ଯ୍ୟନ୍ତ ଛିଡ଼ା ହେଇଥିଲା ତାହା ଅଚାନକ ବସିବାକୁ ଲାଗିଥିଲା । ଆଖିର ପୀଡ଼ାରେ କେବେ କେବେ ଏମିତି ବ୍ୟାକୁଳ ହେଇ ଯାଉଥିଲା ଯେ ମନେ ହେଉଥିଲା କିଏ ଲୁହାର ସହସ୍ର ଗରମ ଛଡ଼ ତାହାର ଆଖିରେ ଠେଲି ପୁରେଇ ଦେଉଛି । ତା ଉପରେ ଚକ୍ରାକାରରେ ଝୁଲୁଥିବା ଗର୍ଭସ୍ଥ ଶିଶୁର ଅନ୍ଧକାର ମୟ ଭବିଷ୍ୟତର ଚିନ୍ତା ତାକୁ ପାଗଳ କରି ଦେଉଥିଲା । ଦିନେ ସେ ସ୍ୱୟଂ ହିଁ ନିଷ୍ଚୟ କରି ନେଲା, ପୁତ୍ର ହେଉ ବା ପୁତ୍ରୀ, କ୍ଷଣକ ପାଇଁ ମଧ ସେଇ ଆଭାଗା ଜୀବକୁ ସେ ଏହି ପୃଥିବୀରେ ନିଶ୍ୱାସ ନେବାକୁ ଦେବନାହିଁ ।

ନିଜର ସେହି ଅମାନବୀୟ ଦୃଢ଼ସଂକଳ୍ପ ସେ ଡ.ପୈଦ୍ରିକଙ୍କ ସମ୍ମୁଖରେ ଦୋହରାଇବାରୁ ସେ ଶିହରି ଉଠିଥିଲେ । ଆଜି ସେହି କ୍ଷଣ ଆସିବାରୁ ହୃଦୟ ଥରେ ପୁଣି ସେହି ଆଶଂକାରେ କମ୍ପି ଉଠିଥିଲା । ନିଷ୍ଚୟ ତାହା ପାର୍ବତୀର ଶିଶୁର କ୍ରନ୍ଦନ ଥିଲା । ଭରା ନିଦରେ, ବର୍ଷାମୁଖରୀତ ରାତ୍ରିକୁ ଚିରି ଦେଉଥିବା ସେହି ଶିଶୁର ସ୍ୱରର କ୍ରନ୍ଦନ ତାଙ୍କୁ ଦୋହଲାଇ ଦେଉଥିଲା । ଯେମିତି ଛୋଟ ଫୁସ୍ ଫୁସ୍ ଚିରି-ଚିରିକରି ତାଙ୍କୁ ଚିତ୍କାର

କରି କରି ଡାକୁଥିଲା, ବଞ୍ଚାଅ ମତେ, ବଞ୍ଚାଅ ।

ପାହାଡ଼ି ଆଷାଢ଼ର ବେଗବତୀ ବର୍ଷାକୁ ତୀବ୍ରତର ଅଙ୍ଗରେ ଶିହରି ଥିବା ଶର୍ବରୀକୁ ଚରିଆନ୍ତା, ଡା. ପୈଦ୍ରିକ ସହସା ଏକ ରୁଦ୍ଧ କଣ୍ଠର ଚିତ୍କାର ଶୁଣିକରି ଅଟକି ଛିଡ଼ା ହେଇଗଲା । ପୁଣି ସେ ଏମତି ଦୌଡ଼ିବାକୁ ଲାଗିଲା, ଯେମିତିକି ବାର ବର୍ଷର କିଶୋରୀ ଅଟେ । ପାଦର ଗଣ୍ଠି, ହାତର ଆର୍ଥରାଇଟିସ, ସବୁ କିଛି ଭୁଲି-ଭାଲି ଉଠି ପଡ଼ି, ସେ ପାର୍ବତୀର ଛୋଟ ଖଟିଆ ଉପରେ ଝୁଙ୍କି ପଡ଼ିଲା । ତାଙ୍କର ଅନୁମାନ ଠିକ୍ ଥିଲା । ପ୍ରଥମ ପ୍ରସବ ସହିତ ଏକାହିଁ ଲଢୁଥିବା ପାର୍ବତୀ କ୍ଲାନ୍ତ ହେଇ ଗୋଟିଏ ଦିଗରେ ପଡ଼ିଥିଲା ଏବଂ ଅନ୍ୟ ଦିଗରେ ଥିଲା ମାଂସର ଖଣ୍ଡ ଖଣ୍ଡ ହେଇ ନବଜାତ ଶିଶୁର ନିର୍ଜିବ ଦେହ ।

"ଖତମ କରି ଦେଲି ଶାଳୀକୁ ମେମ ସା'ବ ", ସେ ଲିଭି ଯାଉଥିବା ସ୍ୱରରେ କହି ଦାନ୍ତ ଦେଖେଇ ହସିବାକୁ ଲାଗିଲା । "ଏକରେ ତ ଝିଅ ଜନ୍ମିଲା, ତା ଉପରେ ମା-ବାପା ଦୁହେଁ ସାକ୍ଷାତ ଦେବୀ-ଦେବତା ।"

ନିଜର ପୈଶାଚିକ କୃତିର ସଫଳତାରେ ସ୍ୱୟଂ ହି ପ୍ରସନ୍ନ ହେଲା, ମହାତୃପ୍ତିର ଗୋଟିଏ ଲମ୍ବା ଶ୍ୱାସ ଛାଡ଼ିଲା, ସେ କାନ୍ଥଆଡ଼କୁ ମୁହଁ ବୁଲେଇ ଶୋଇ ଗଲା । "ହେ ଭଗବାନ !" ଅଭାଗୀ, ଇଏ କଣ କରି ଦେଲୁ ତୁ ?" ଓ ପୈଦ୍ରିକ ସେହି ଅଳିଆ ଭିତରେ ବସି ପଡ଼ିଲେ ଏବଂ ଅବଶ ନିର୍ଜିବ ପଡ଼ିଥିବା, ସୁକୁମାର ଶିଶୁର କାଗଜର ଫୁଲ ପରି ହାଲୁକା ଦେହକୁ ସେ କୋଳକୁ ଉଠେଇ ନେଲେ । ଛୋଟ ଛାତିରେ କାନ ପାତି ନିଶ୍ୱାସ ପ୍ରଶ୍ୱାସର ଶବ୍ଦ ଶୁଣିବାକୁ ପାଇଲା ମାତ୍ରେ ଚମକି ଉଠିଲେ । ତାଙ୍କର ହାତର ଘଡ଼ିର ଟିକ ଟିକ ଥିଲା, ନା ଛୋଟ କଲିଜାର ଶବ୍ଦ ?

ଟିମଟିମ ହେଇ ଜଳୁଥିବା ଦୀପର ଅଗ୍ନିଶିଖା ପାଖରେ, ସେ ଦୁଇ ହାତରେ ତାକୁ ଟେକି ଧରି ଭଲ କରି ଦେଖିଲେ, କୁକୁଡା ଛୁଆ ପରି ବେକରେ ଦୁଇଟି ଆଙ୍ଗୁଳିର ସ୍ପଷ୍ଟ ଛାଞ୍ଚ-ଫୁଲି କରି ଉପରେ ରହିଛି । ଜାଣେ ନାହିଁ କଣ ବିଚାର କରି ପାର୍ବତୀକୁ ସେଇ ଅବସ୍ଥାରେ ଛାଡ଼ିଦେଇ ଡ.ପୈଦ୍ରିକ ଛୋଟ ଶରୀରକୁ ନିଜର ବିଶାଳ ଛାତିରେ ଚାପିଧରି, ପୁଣି ଥରେ ପୁଣି ସେଇ ତେଜରେ ନିଜ ବଂଗଳା ଆଡ଼କୁ ଦୌଡ଼ିବାକୁ ଲାଗିଲେ ।

ରାତି ସାରା ବର୍ଷା ପରେ ତୀବ୍ର ହାୱାର ତୋଫାନ ଧ୍ୱଷ୍ଟ ବାଦଲ ତୁଳା ପରି ଭିଣି କରି ପୁରା ଆକାଶରେ ବୁଣି ହେଇଥିଲା । ଶାଗରର ଶୈଳ-ଶିଖର ପଛରେ ବର୍ତ୍ତମାନ ମଧ୍ୟ ନିଷ୍ପ୍ରଭ ତାରା ମିଞ୍ଜି ମିଞ୍ଜି ହେଇ ରହିଥିଲା । ଭୋର ହେବାକୁ ଥିଲା । କେବେ ରାତି କଟିଗଲା ଡାକ୍ତର ଜାଣିବି ପାରିଲେ ନାହିଁ । ରାତିସାରା ଅଚଳ ବସି ଡାକ୍ତରଙ୍କ ଲାଲ୍ ଆଇରିସ ଚେହେରାର କୁଞ୍ଚିତ ରେଖାଗୁଡ଼ିକ ଅଚାନକ ସତେଜ ହେଇଗଲା । ଛୋଟ ଶରୀରରେ ରାତିସାରା କରାଯାଇଥିବା ବ୍ରାଣ୍ଡିର ମାଲିସରେ ହିଁ ଦୈବୀ ସ୍ପନ୍ଦନ ଏହାକୁ ହଲେଇ ଝୁଲେଇ ଯାଇଛି ବା ସେହି ଦୟାଳୁକୁ ଆଣ୍ଠୁ ଟେକି

ମାଗିଥିବା ଭିକ ହିଁ ସାର୍ଥକ ହେଇ ଯାଇଥିଲା । କିନ୍ତୁ ଦୟାର ଭିକତ ଏକ ଏହି ପ୍ରାଣ ପାଇଁ ମାଗି ନଥିଲି । ଥରକୁ-ଥର ଆଣ୍ଠୁ ଟେକିକରି ବସିଥିବା ସେହି ସନ୍ଥ ବିଦେଶିନୀର କୁଞ୍ଚିତ ରେଖାଭରା ଗାଲରେ ଝର-ଝର କରି ଲୁହ ବହିବାକୁ ଲାଗିଲା । "ତାକୁ କ୍ଷମା କର ପ୍ରଭୁ, ହୁଏତ ତାକୁ ମୁଁ ଏଠାକୁ ନ ଆଣିଥିଲେ ଏମିତି ହେଇ ନଥାନ୍ତା, ହୁଏତ ସେ ସଡ଼କରେ ରାସ୍ତା ଭୁଲି ଏଣେ ତେଣେ ବୁଲି ଥାନ୍ତା ତାହେଲେ ଏପରି ଭୟାନକ ପାପ କରି ନଥାନ୍ତା । 'ଫରଗିଭ ଦେମ ଲର୍ଡ ଫର ଦେ ନୋ ହ୍ୱାଟ ଦେ ଡୁ' ?" ଅସ୍ପଷ୍ଟ ଭାବରେ ଉଚ୍ଚାରଣ କଲେ, ସେ କେତେବେଳେ ଅବଶ ପଡ଼ିଥିବା ଦେହକୁ ନିରିକ୍ଷଣ କରୁଥିଲେ, କେତେବେଳେ ଛାତିରେ କାନ ଲଗଉଥିଲେ ନିଷ୍ପ୍ରଭଂ କାଲୀ ଭବେଂ ଏବଂ ଆଖି ଡୋଳା ହଲଚଲ ହେବାକୁ ଲାଗିଲାରୁ ଡକ୍ଟର ଏକବାର ପୁଣି ପ୍ରାର୍ଥନାରେ ବୁଡ଼ିଗଲେ । ବହୁତ ଆଗରୁ ବାଲ୍ୟାବସ୍ଥାରେ ତାଙ୍କର ମାମୁଁ ତାଙ୍କୁ ଏମିତି କଣ୍ଢେଇ ଆଣି ଦେଇ ଥିଲେ । ଏମିତି ହିଁ ଆଖି ମିଟିକା ମାରି ମାରି ଆଖି ଖୋଲୁଥିଲେ ଓ ବନ୍ଦ କରୁଥିଲେ ସେ । "ମୋର ଝିଅ" ଡାକ୍ତର ତାହାକୁ କୋଳକୁ ଉଠେଇ କରି ଚୁମା ଖାଇଲେ ।

"ନା, ବର୍ତ୍ତମାନ ଡେରି କରିବା ଠିକ ହେବ ନାହିଁ ।" ସେ ସ୍ୱୟଂହିଁ ବିଡ଼ ବିଡ଼ କରିବାକୁ ଲାଗିଲେ, ଅଳ୍ପ ହିଁ ଡେରିରେ ପୁରା ଆଶ୍ରମ ଜାଗି ଉଠିବ । ଜାଗିଥିବା ଆଶ୍ରମ ଏହା ଜାଣିବ ଯେ ପାର୍ବତୀ କାଲି ରାତିରେ ଗୋଟିଏ ମୃତ ଶିଶୁକୁ ଜନ୍ମ ଦେଇଥିଲା । ଡାକ୍ତର ଏକାହିଁ ଯାଇ ଅଭାଗୀକୁ କେଉଁଠି ପୋଡ଼ିଦେଇ ଆସିଛନ୍ତି ।

ନିଜର କୁସର ରଂଗବିରଙ୍ଗ ଶାଲରେ ଶିଶୁକୁ ଢାଙ୍କି ଦେଇ, ସେ ନିଜର ଲମ୍ବା କୋର୍ଟ ଭିତରେ ଲୁଚେଇ ଦେଲା ଏବଂ ଏକବାର ପୁଣି ବାହାରକୁ ଚାଲି ଗଲା ।"

ଥରକୁ ଥର ତାଙ୍କର କଲିଜା ଧଡ଼ଧଡ଼ କରୁଥିବା ମୁହଁକୁ ଆସୁଥିଲା । ଯଦି ସେ ସ୍ୱୀକାର ନ କରେ ତେବେ ? ତେବେ କେଉଁଠି ରଖିବି ଏହାକୁ ?

ଏହି ଘୃଣାତ୍ମକ ବାତାବରଣରେ, ଏହି ଦୂଷିତ ହାୱାର ଧକାରେ, ଯେଉଁଠାରେ ଏକ ଏକ ହାୱାର ଧକା ସହସ୍ର ଘାତକ କୀଟାଣୁଗୁଡ଼ିକୁ ବିଞ୍ଚିଦିଆ ହେଉଛି, ସେଠାରେ ଏହି ସୁକୁମାର ଜୀବନକୁ କଣ ସେ ସୁରକ୍ଷିତ ରଖି ପାରିବ ? କିନ୍ତୁ ସେ ଏତେ କାହିଁକି ଚିନ୍ତା କରୁଛି, ଆଜି କଣ କୁଷ୍ଠାଶ୍ରମରେ ଏହି ପ୍ରଥମ ଶିଶୁର ଜନ୍ମ ଥିଲା ? କଣ ଏଥିରେ ପୂର୍ବର କେତେକ ନବଜାତ ଶିଶୁକୁ ସେ ମିଶନକୁ ପଠାଇ ପାରିଛି ? ତେବେ ଏହାର ମୋହର ବନ୍ଧନ ଭାଙ୍ଗିବାରେ ସେ ଆଜି କାହିଁକି କଳ୍ପ-ବିକଳ୍ପର ଜାଲରେ ପଶି ଯାଉଛି କି ?

ଥରେ ତାଙ୍କର ଛାତିରେ ଲାଜ ଥିବା ଛୋଟ ଦେହଟି କମ୍ପି ଉଠିଲା । ଏବଂ

ସେଇ ସଙ୍ଗରେ ସେ ମଧ୍ୟ କାନ୍ଦି ଉଠିଲା । କାହିଁ ପୁଣି କିଛି ହେଇ ଯାଇନାହିଁତ । କୋଟର କଲର ଉଠେଇ ସେ ଉଙ୍କି ମାରିଲେ । କଳା ଲମ୍ବା ଲମ୍ବା ବାଳ ମଝିରେ ଚମକୁ ଥିବା ମୁଣ୍ଡ ଉପରେ, ବେଳେବେଳେ ଝରୁଥିବା ଦେବଦାରୁ ବୃକ୍ଷରୁ ବୁନ୍ଦାଏ ବର୍ଷା ପଡ଼ିଲା । ଚମକି ପଡ଼ି, ଛୋଟ ଓଠ କମ୍ପି ଉଠିଲା । ଡାକ୍ତର ତାକୁ ଆହୁରି ଜୋରରେ ଛାତିରେ ଚାପି ଧରିଲା ।

କେମିତି ନିରବ ନିସ୍ତବ୍ଧ ରାତ୍ରି ଥିଲା । ଏକରେ ସେଇ ନିର୍ଜନ ସଡ଼କରେ ସନ୍ଧ୍ୟା ହେଲାମାତ୍ରେ ନିସ୍ତବ୍ଧତା ଛାଇଯାଉଥିଲା, ସେଥି ଉପେର ଆଜି ଏହି ବର୍ଷାରେ ବା କିଏ ବୁଲିବାକୁ ବାହାରି ଥାଆନ୍ତା ? ଲାଲ ଛାତର ବଂଗଳାକୁ ଚିହ୍ନି ଡାକ୍ତର କବାଟ ବାଡ଼େଇଲେ । କୌଣସି ଉତ୍ତର ଆସିଲା ନାହିଁ ।

ବତାସ ଚାଲିଥିଲା ଆଉ ସାଙ୍ଗରେ ଡେରିରେ ବୃକ୍ଷର ଶାଖାରେ ସଞ୍ଚିତ, ବର୍ଷାର କେତେକ ବୁନ୍ଦା ଏକା ଥରକେ ଝରିକରି ଡାକ୍ତର ପୈଡ୍ରିକ ଉପରେ ବରଷି ଗଲା । ଡାକ୍ତର ଜୋରରେ କବାଟକୁ ଠକ୍ ଠକ୍ କଲେ ।

"କିଏ ?" ବହୁତ ଦୂରରୁ କାହାର କଣ୍ଠସ୍ୱର ଶୁଣାଗଲା ।

"ପନ୍ନା, ମୁଁ ରୋଜୀ, କବାଟ ଖୋଲ ।

"ରୋଜୀ ? ତୁମେ ଏତେ ରାତିରେ ? ଆସ-ଆସ, ରାମ-ରାମ, ତୁମେତ ଏକଦମ ଭିଜି ଯାଇଛ । ଅପେକ୍ଷା କର, ମୁଁ ଲେମ୍ପ ଜଳାଏ ।" ଗୋଟିଏ ଚଉକିକୁ ଖୋଜି ଡାକ୍ତରଙ୍କ ସାମନାକୁ ଟାଣି ପନ୍ନା ଲେମ୍ପ ଜଳେଇବାକୁ ଲାଗିଲା ।

ଲେମ୍ପର ସ୍ୱଳ୍ପ ଆଲୁଅରେ, ପ୍ରଥମେ ସେ ସେହି ଗମ୍ଭୀର ଚେହେରାକୁ ହିଁ ଦେଖିବାକୁ ପାଇଲା, କିନ୍ତୁ ଧୀରେ-ଧୀରେ ଦୁଇଟି ଅସୀମ ବେଦନାପୂର୍ଣ୍ଣ କ୍ଳାନ୍ତ ବଡ଼ ଆଖିର କରୁଣ ଦୃଷ୍ଟି ସେହି ବିଶାଳ ବକ୍ଷରେ ଚାପି ହେଇଥିବା ଛୋଟ ଦେହ ଉପରକୁ ଓହ୍ଲେଇ ଆସିଲା ।

ଏହା କଣ ?

ଏକ ପ୍ରକାର ଟଳମଳ ହେଇ ଚାଲି ପନ୍ନା ପଲଙ୍କର ଗୋଡ଼କୁ ଧରି ବସିଗଲା ।

ସାତଦିନ ପୂର୍ବେ, ତାହାର ଶୂନ୍ୟ ବାହୁରୁ ଏହି ଡାକ୍ତର ପୈଡ୍ରିକ, ଯାହାକୁ ସଫା କପଡାରେ ଗୁଡ଼େଇ ନିର୍ମମ ହେଇ କେଉଁ ଦୂରସ୍ଥାନକୁ ପୋତିବାକୁ ନେଇ ଯାଇଥିଲେ, ତାକୁ ହିଁ ପୁଣି ଗାତରୁ କାଢି ଆଣିଲେ ?

ଜଣା ନାହିଁ ହୁଏତ ପୁଣି ସେହି ନିର୍ଜ୍ଜିବ ଦେହରେ ପ୍ରାଣ ଫେରି ଆସିଥିବ ?

"ରୋଜୀ, କେଉଁଠୁ ଏହାକୁ ଆଣିଲୁ ? କାହିଁକି ମୋ ଠାରୁ ଟାଣି ନେଇ ଯାଇଥିଲୁ ? କାହିଁକି ମତେ ବ୍ୟାକୁଳ କଲୁ ସାତଦିନ ପର୍ଯ୍ୟନ୍ତ ?" ପୁଣି ଥରେ ପନ୍ନା ସେମିତି ହିକ୍କିରି କଲ ହେବାକୁ ଲାଗିଲା । ଡାକ୍ତର କୌଣସି କଥା ନ କହି ସାମାନ୍ୟ ଉଷୁମ ବାଳିକାକୁ ପନ୍ନାର କୋଳରେ ଥୋଇ ଦେଲେ ।

"ବହୁତ ଭୋକିଲା ଅଛି ପନ୍ନା, ଦୁଧ ବର୍ତ୍ତମାନ ବାହାରୁଛି କି ?"

ଅନାଡୀ ହାତରେ ସେ ମୃତବତ୍ସା ପନ୍ନା ତାକୁ ଛାତିରେ ଚାପି ଧରିଲା । ବ୍ରେଷ୍ଟ ପମ୍ପରେ ସୁଖି ଯାଇଥିବା ମାତୃତ୍ୱର ସୁଖିଲା ଲତା ପୁଣି ପଲ୍ଲବୀତ ହେଇଉଠିଲା । ଚପ-ଚପ କରି ଅମୃତର ବୁନ୍ଦା ତକ ତକ କରି ପିଉଥିବା କାୟାକୁ ଛାତିରେ ଚାପିଧରି ପନ୍ନା ଆଖି ବନ୍ଦ କରିଦେଲା ଆଉ ପାଗଳ ପରି ସ୍ୱୟଂ ହିଁ ବିଡ଼ ବିଡ କରୁଥିଲା । "ଇଯେତ ତମର ପୁରାପୁରି ଅନ୍ୟାୟ ଅଟେ ରୋଜୀ, ଇଏ ମଧ କେମିତି କୌତୁକ ଥିଲା ! ତୁମେ ଏତେଦିନ ପର୍ଯ୍ୟନ୍ତ ଗୋଟିଏ ଶବ୍ଦ କହି ନାହିଁ, ହାଏ ମୋର ଝିଅକୁ ସାତଦିନ ପର୍ଯ୍ୟନ୍ତ ବିନା ଦୁଧରେ ଭୋକିଲା ମାରିଦେଲ ତମେ..."

କୁଷ୍ଠାଶ୍ରମର ଗଉଡ଼ ଯେଉଁ ଗାଇକୁ ଦୁହିଁବା ପାଇଁ ଆଣୁଥିଲା, ଥରେ ତାହାର ବାଛୁରୀ ମରି ଯାଇଥିଲା, ଦ୍ୱିତୀୟ ଦିନ ସେ ଭୂଷା-ଭରା ବାଛୁରୀକୁ ଗାଇ ସହିତ ଲଗେଇ କରି ପୁଣି ଦୁଧ ଦୁହିଁବା ପାଇଁ ଆସି ଯାଇଥିଲା । ଡାକ୍ତର ପୈଦ୍ରିକଙ୍କୁ ମନେହେଲା, ଭୂଷା-ଭରା ବାଛୁରୀ ହିଁ ସେ ଆଜି ପନ୍ନାକୁ ଲଗେଇ ଦେଇଛନ୍ତି, ତାଙ୍କ ଆଖି ଛଳଛଳ ହୋଇଗଲା । "ପନ୍ନା, ମାଇ-ଡାର୍ଲିଂଗ", ବଡ଼ ମିଠା ସ୍ୱରରେ ସେ ପନ୍ନାକୁ ଡାକିଲେ, "ସକାଳ ହେବାକୁ ଯାଉଛି, ମତେ ବର୍ତ୍ତମାନ ଫେରିଯିବାକୁ ହେବ ।"

ପନ୍ନା ଆଖି ଖୋଲି ଦେଲା ଆଉ ଭୟଭୀତ ଦୃଷ୍ଟିରେ ଡାକ୍ତରଙ୍କୁ ଦେଖିଲା, ଜଣାନାହିଁ କେଉଁ ଆଶଙ୍କାରେ ସେ ଥରି ଉଠିଲା । କାହିଁ ପୁଣି ସେ ଯାକୁ ଛଡ଼େଇ ନେବେ ନାହିଁତ ?

"ମୁଁ ତୁମକୁ ମିଛ କହି ନଥିଲି ପନ୍ନା ।" ସେ ରହି ରହି କରି କହିବାକୁ ଲାଗିଲେ, "ଇଏ ତୁମ ଝିଅ ନୁହଁ ।"

ଭୋକିଲା ଝିଅ ତୃପ୍ତ ହେଇକରି ବର୍ତ୍ତମାନ ମଧ ତାହାର ଛାତିରେ ଲାଗି ରହିଥିଲା । ଓଠରୁ ସ୍ତନ ମନକୁ ମନ ଖସି ଯାଇଥିଲା ।

ପନ୍ନା ହୁଏତ ଚିତ୍କାର କରି ପଚାରିବ- କ'ଣ ? ମୋର ନୁହଁ ? ତେବେ କାହାର ?

କିନ୍ତୁ ପନ୍ନା କିଛି ପଚାରିଲା ନାହିଁ । ଏତେ ଡେରି ପର୍ଯ୍ୟନ୍ତ ଆଖି ବନ୍ଦ କରି ସେ ନିଜର ସୂକ୍ଷ୍ମ ଦୃଷ୍ଟିରେ ସବୁ କିଛି ଦେଖି ସାରିଥିଲା ।

"ପନ୍ନା", ଡାକ୍ତର ପୈଦ୍ରିକ ପୁଣି ଡାକିଲେ ।

"କଣ ହେଲା ରୋଜୀ ?" ଶାନ୍ତ ସ୍ୱରରେ ପଚାରିଥିବା ପ୍ରଶ୍ନ ଆଉ ଆଖିର ସ୍ଥିର ଦୃଷ୍ଟିରେ ନା ଜିଜ୍ଞାସା ଥିଲା ନା କୌତୁହଳ ।

"ଇଏ କଣ ପାର୍ବତୀର ଝିଅ ରୋଜୀ ?" ସେ ପଚାରିଲାରୁ ଡାକ୍ତର ପୈଦ୍ରିକ ଯେମିତି ଆକାଶରୁ ଖସି ପଡ଼ିଲେ । କେମିତି ଜାଣି ପାରିଲା ଇଏ । କଣ ମନର ଭାଷା ମଧ ପଢ଼ି ପାରେ ଏହି ଅସାଧାରଣ ନାରୀ !

ଉତ୍ତରରେ ଡାକ୍ତର ମୁଣ୍ଡ ହଲେଇ ଦେଲେ । ରୋଗୀର ଏମିତି ବୀଭତ୍ସ ଅବସ୍ଥାରେ

ଜନ୍ମିଥିବା ଏହି ଝିଅକୁ ସେ ପନ୍ନାର କୋଳରେ ଶୁଏଇ ଦେଲେ ତା କୋଳରେ କେଉଁ ଦୁଃସାହସରେ । ପନ୍ନା ପାର୍ବତୀକୁ କେବଳ ନୁହେଁ ଅସଦୁଲ୍ଲାକୁ ମଧ୍ୟ ଜାଣିଥିଲା । କେତେଦିନ କାର୍ଯ୍ୟନ୍ତ ସେ ତାର ବଗିଚାରେ ମାଳିର କାମ କରୁଥିଲା । ଡା. ପୈତ୍ରିକ ନିଜର ସଖୀ ପାଖରେ ଏଠାରେ ତାର ଡିଉଟି ଲଗେଇ ଦେଇଥିଲେ "ଏହାର ରିପୋର୍ଟ ନେଗେଟିଭ ଅଟେ ପନ୍ନା, ଇଚ୍ଛା କଲେ ଏହା ଦ୍ୱାରା ହାଟ ବଜାର କାମ ମଧ୍ୟ କରେଇ ପାରିବ ।" କିନ୍ତୁ ଯାହା ହେଉ ନା କାହିଁକି, ଥିଲା ତ କୁଷ୍ଠ ରୋଗୀ, ସମାଜ ଏହି ଅଭାଗାମାନଙ୍କର ନେଗେଟିଭ ରିପୋର୍ଟକୁ କଣ ଆଜି ପର୍ଯ୍ୟନ୍ତ ମାନ୍ୟତା ଦେଇପାରିଛି ?

ଏହିପରି ମାତା-ପିତାଙ୍କର ଅଭିଶପ୍ତ ସନ୍ତାନ କଣ ଏହି ଉଦାର କୋଳରେ ସ୍ଥାନ ପାଇ ପାରିବ ? ନିଶ୍ଚୟ ଦୂରରେ କଚାଡି ଦେବ ପନ୍ନା ।

"ମୁଁ ଏହାକୁ ମୃତ୍ୟୁ ଦ୍ୱାରରୁ ଟାଣି କରି ଆଣିଛି", ଡାକ୍ତରଙ୍କ ଗଳାର ସ୍ୱର କାନ୍ଦ କାନ୍ଦ ହେଇଯାଇଥିଲା । "ତୁ ତ କହି ସାରିଥିଲୁ । ସେହି ମୂର୍ଖ ଝିଅ ପ୍ରଥମରୁ ଘୋଷଣା କରିସାରିଥିଲା । ଜଣା ନାହିଁ କେତେବେଳେ ତାର କଷ୍ଟ ଆରମ୍ଭ ହେଲା କେବେ ଇଏ ଜନ୍ମ ହେଲା । ଏହାର ଚିତ୍କାର ଶୁଣିକରି ମୁଁ ଦଉଡିଲି । ଯେତେବେଳେ ପହଞ୍ଚିଲି ଭୂତ-ପ୍ରେତ ତା ଉପରେ ତାଙ୍କର ପ୍ରଭାବ ପକେଇ ସାରିଥିଲେ । ବର୍ତ୍ତମାନ ମଧ୍ୟ ବେକରେ ତାହାର ଅଙ୍ଗୁଳି ଗୁଡ଼ିକର ଚିହ୍ନ ପରିଷ୍କାର ଦେଖାଯାଉଛି । ଯଦି ଏହାର କିଛି ହେଇଯାଇଥାନ୍ତା । ତାହେଲେ ମୁଁ ଖୋଦାଙ୍କୁ କେମିତି ମୁହଁ ଦେଖେଇଥାନ୍ତି । ମୁଁ ହିଁ ତାକୁ ଏହି ନୂଆ ଅଙ୍ଗୁଳିଗୁଡ଼ିକ ଦେଇଥିଲି । ସେତେବେଳେ ମୁଁ କଣ ଜାଣିଥିଲି ଯେ ସେ ସେହି ଅଙ୍ଗୁଳିରେ ଦିନେ ଗୋଟିଏ ଛୋଟ ଶିଶୁକୁ ଖତମ୍ କରିବା ପାଇଁ ପାଗଳ ହେଇଯିବ ।"

ପନ୍ନା ଏକ ଶବ୍ଦ ମଧ୍ୟ କହିଲା ନାହିଁ । ପିଲାଟି ତାହାର ଛାତିରେ ଲାଗି ଚୁପଚାପ ପଡ଼ିଥିଲା ।

"ମୁଁ ଜାଣିଛି ଯେ ଏହାର ମା-ବାପାକୁ ଥରେ ଦେଖିନେବା ପରେ କେହି କେତେହିଁ ଉଦାର ହୃଦୟର ହେଉ ନା କାହିଁକି ହୁଏତ ଏହାକୁ ସ୍ୱଇଚ୍ଛାରେ ଗ୍ରହଣ କରି ପାରିବ ନାହିଁ । କିନ୍ତୁ ମୁଁ ତୁମକୁ ଜାଣେ ପନ୍ନା, ଏଇଥିପାଇଁ ତମ ପାଖକୁ ବଡ଼ ଆଶା ନେଇ ଆସିଛି । ପ୍ରଥମେ ଇଏ ସମୟ ହେବା ପୂର୍ବରୁ ଜନ୍ମିଛି ମା'ର ଦୁଧ ନ ପାଇଲେ ଇଏ କେବେ ହେଲେ ବଞ୍ଚି ପାରିବ ନାହିଁ । ଏକ ବର୍ଷ ପର୍ଯ୍ୟନ୍ତ ତୁମେ ଏହାକୁ ପାଳନ କରିଦେବ ତାହେଲେ ମୁଁ ପୁଣି ଏହାକୁ ମିଶନକୁ ଦେଇଦେବି । ଆଉ ଗୋଟିଏ କଥା କହିବାକୁ ଚାହୁଁଛି ପନ୍ନା..."

ଡାକ୍ତରର କାନ୍ଦ କାନ୍ଦ କଣ୍ଠସ୍ୱର କ୍ଷମା ଯାଚନା କରିବାକୁ ଲାଗିଲା, "ଏହି ରୋଗ ପୈତୃକ ହିଁ ହେଇଥାଏ, ଏମିତି ଧାରଣା ଭୁଲ ଅଟେ । ମୋ ପାଖରେ କେତେ କୁଷ୍ଠରୋଗୀମାନଙ୍କର ସ୍ୱସ୍ଥ ସନ୍ତାନର ପୁରା ରେକର୍ଡ ଅଛି ।"

ପନ୍ନା ଗଭୀର ଚିନ୍ତାରେ ବୁଡ଼ିବାରେ- ଉଠିବାରେ ଲାଗିଥିଲା । କେମିତି ଅଦ୍ଭୁତ

ସ୍ପର୍ଶ ଥିଲା । ସେହି କୋମଳ ଦେହ, ମଖମଲୀ ଓଠର କୁତୁକୁତୁ ଲାଗୁଥିବା ଶିହରଣ, ଗୋଟିଏ ଅସହ୍ୟ ପୀଡ଼ା ଏବଂ ପୁଣି ସ୍ୱର୍ଗୀୟ ଶାନ୍ତି । ଅଚାନକ ନାଡିରେ ବନ୍ଧା ସମସ୍ତ ଗଣ୍ଠି ଯେମିତି କେହି ଶୋଷି ନେଇଛି । ରାତି ସାରାର କ୍ଳାନ୍ତି, ମାନସିକ ଅଶାନ୍ତି ଏବଂ ପନ୍ନାର ନିରବତାରେ ଡାକ୍ତର ସହସା ଚିଡ଼ି ଉଠିଲେ । କିଛି କହୁ ନାହିଁ କାହିଁକି ଯେ ? କିଛିତ କହିବ, ହଁ ବା ନା ।

"ପନ୍ନା" ସେ ପୁଣି କହିବାକୁ ଲାଗିଲେ, "ମୋର ମନେ ହେଉଛି ଈଶ୍ୱର ହୁଏତ ଏହି ମହାନ୍ ପୁଣ୍ୟର ଅଂଶୀଦାର କରିବା ପାଇଁ ଏଠାକୁ ପଠେଇଛନ୍ତି । କଣ, ଏଇୟା ନା ?"

ପନ୍ନା ହସିଲା । କେମିତି ଅପୂର୍ବ ରହସ୍ୟମୟୀ ହସ ଥିଲା ତାହାର । ବ୍ୟଥାରେ ନୀଳ ସେଇ ଓଠର ବଙ୍କିମ ରେଖାରେ ବ୍ୟଙ୍ଗ ଥିଲା ନା ଉଲ୍ଲାସ ? କଣ ସେ ମନକୁ ମନ ଡା.ପୈଦ୍ରିକର ହସକୁ ଉଡେଇ ଦେଉ ନଥିଲା ତ ? ହୁଏତ ଚିନ୍ତା କରୁଛ, କେମିତି ଚତୁର ହେଇପାରେ ଏହି ମିଶନାରୀ ?

ପନ୍ନା ଯେମିତି ତାକୁ ଭୁଲ୍ ନ ବୁଝେ । ଡା.ପୈଦ୍ରିକର କଣ୍ଠ-ସ୍ୱର ପୁଣି ଗମ୍ଭୀର ହେଇଗଲା, "ପନ୍ନା, ମୁଁ ତମକୁ ମିଛ ମଧ କହି ପାରିଥାନ୍ତି ।", ଲେମ୍ପର ସେହି ସ୍ୱଚ୍ଛ ଆଲୁଅରେ ସେହି ତେଜସ୍ୱୀ ଚେହେରା ଏକଦମ ନିର୍ବିକାର ଲାଗୁଥିଲା, "କହି ଦେଇଥାନ୍ତି ଯେ ତୋର ଯେଉଁ ପିଲାକୁ ମୁଁ ମରିଯାଇଛି ଭାବି ପୋତିବା ପାଇଁ ନେଇ ଯାଇଥିଲି, ସେ ପୁଣି ବଞ୍ଚି ଉଠିଲା । ଏକ ଦିନହିଁ ତୁମେ ତାହାକୁ ଦେଖି ପାରିଥିଲି, ପୁଣି ନବଜାତ ଶିଶୁ ପ୍ରାୟ ସମସ୍ତେ ଏକାପରି ହୁଅନ୍ତି ନାହିଁ ? ଏମିତି ହିଁ ଘନ ବାଳ ତାହାର ମଧଥିଲା, ଆଉ ଏମିତି ହିଁ ଆଖି । କିନ୍ତୁ ମୁଁ ତମକୁ ମିଛ କହି ଏହାର ପ୍ରାଣର ଭିକ ମାଗିବାକୁ ଆସିନାହିଁ । ମୁଁ ଚାହେଁ, ତୁମେ ଏହାର ଜୀବନର ଅଭିଶାପ ସହିତ ହିଁ ଏହାକୁ ସ୍ୱୀକାର କର । କରିବ ନା ?"

ଡାକ୍ତର ତାହାର ଦୁଇହାତ ଧରି ପକେଇଲେ । ପନ୍ନା ତେବେ ମଧ କିଛି କହିଲା ନାହିଁ ।

ତିନି ମାସର ଛୋଟ ଅବଧିରେ ହିଁ ଏହି ସର୍ବସ୍ୱତ୍ୟାଗିନୀ ବିଦେଶୀ ଡାକ୍ତରାଣୀ ତାହାର କେତେ ନିକଟକୁ ଆସି ଯାଇଥିଲା । ଏହି ଅଜଣା ନିର୍ଜନ ଜଂଗଲରେ, ଯେତେବେଳେ ସେ ସବୁବେଳେ ଅପରିଚିତ ଲୋକମାନଙ୍କ ମଧରେ ଏକଦମ ଏକା ରହିବାକୁ ଆସିଲା, ସେତେବେଳେ କେତେ ଶଂକାଶୀଳ ନୟନବାଣ ତାକୁ ନିର୍ମମ ଭାବରେ ବିନ୍ଧିବାକୁ ଲାଗିଥିଲା ।

କିଏ ହେଇପାରେ ସେ ? କେମିତି ବିଚିତ୍ର ସ୍ୱଭାବର ସ୍ୱାମିନୀ ଥିଲା ଏହି ଆସନ୍ନ ପ୍ରସବା ସୁନ୍ଦରୀ ପ୍ରୌଢ଼ା ? ସିନ୍ଥିରେ ସିନ୍ଦୂର, ପାଦରେ ପାଉଁଜ, କିନ୍ତୁ ନା ସାଙ୍ଗରେ ପତି, ନା ଶାଶୁ, ନା କୌଣସି ଚାକର, ଏପରି ଅବସ୍ଥାରେ, ସହରରେ ନରହି ଏହି ଏକାନ୍ତ ବଙ୍ଗଳାରେ, କଣ ଦେଖି ପାରିଥିଲା ସେ ? ନା କୁଆଡ଼େ ଯାଉଥିଲା, ନା ଉଠୁଥିଲା

ବସୁଥିଲା । କେବେ କେବେ ଲୋକ ଦେଖୁଥିଲେ ସେ ରାମକୃଷ୍ଣ ମିଶନ ଆଡ଼କୁ ଚାଲି ଯାଉଥିଲା ଆଉ କେବେ କୁଷ୍ଠାଶ୍ରମ ଆଡ଼କୁ । ପ୍ରଥମେ ଘର ମାଲିକ କିଛି କିଛି ବିରକ୍ତ ହେଉଥିଲେ । କିଏ ଜାଣେ କୁଷ୍ଠ ରୋଗିଣୀ ହେଇଥିବ । ଆଶ୍ରମରେ ରହିଲେ ହୁଏତ ରୋଗର ଭେଦ ଜଣାଜଣି ହେଇଯିବ, ହୁଏତ ଏଇଥିପାଇଁ ଘର ନେଇଛି । ଲୁଚିଛପି କରି ଡା. ପୈଦ୍ରିକଙ୍କ ନିକଟକୁ ମନର ଆଶଂକାରେ ସମାଧାନ କରିବାକୁ ଶାହଜୀ ପହଞ୍ଚିଲେ, ତ ସେ ହସିବାକୁ ଲାଗିଲେ, "ନା-ନା, ଏମିତି କୌଣସି କଥା ନୁହେଁ, ମୋର ପରିଚିତ ଅଟେ, ସେଥିପାଇଁ ମୋ ସହିତ ଦେଖା କରିବାକୁ ଆସେ ।"

ଯେତେବେଳେ ଡାକ୍ତର ପନ୍ନାକୁ ଶାହଜୀଙ୍କ ଆଶଂକା କହିଲା ତ ସେ ବହୁତ ଡେରି ପର୍ଯ୍ୟନ୍ତ ହସିଥିଲା । "କାହିଁ ତମେ ଏହା ତ କହି ଦେଇନ ଯେ ଶରୀରତ ନାହିଁ ମନର ଏହି ରୋଗ ମୋର ଅଛି ।" ଏମିତି ନଷ୍ଟ ଆତ୍ମାର ବିଭତ୍ସ ରୋଗିଣୀକୁ ଜାଣିଲା ପରେ ହୁଏତ ଶାହଜୀ ଦ୍ୱିତୀୟ ଦିନରେ ମାରିପିଟି ବୁଦା ଭିତରେ ପକେଇ ଦେଇଥାନ୍ତା । ରୋଗୀ ନ ହେଲେ କେମିତି ସେ ରହିପାରିଥାନ୍ତା ? ପ୍ରାୟ ଏହା ଚିନ୍ତାକରି ପନ୍ନା କେବେ କେବେ ପାଗଳ ପରି ପ୍ରଳାପ କରେ । କଣ ଇଚ୍ଛା କଲେ ବଡ଼ଭଉଣୀ ତାହାର ଠିକଣା ଜାଣି ପାରି ନଥାନ୍ତା ? ତିନି ମାସରେ ଦୁଇଥର ସେ ବେଙ୍କରୁ ନିଜର ସୁଧର ଟଙ୍କା ମଗେଇ ସାରିଥିଲା, ବେଙ୍କ ମେନେଜର ଲାହିଡ଼ି ବାବୁଙ୍କୁ ବଡ଼ ଭଉଣୀର ରୂପରେ ହଜମ ନହେଲେ ଦିନେ ହେଲେ ଖାଇବା ପଦାର୍ଥ ହଜମ ହେଇପାରୁ ନଥିଲା । କଣ ସେହି ମୂର୍ଖ ପରି ଆଖିଥିବା ପେଟୁଆ ଲାହିଡ଼ୀ ବଡ଼ ଭଉଣୀକୁ କିଛି କହି ନଥିବ ।

ସେହି ରୋଗର ଲୁହ ସ୍ୱୟଂ ପନ୍ନାର ଆଖିରେ ସୁଖିକରି ରହି ଯାଉଥିଲା ।

"ଆମ ଭିତରୁ କିଏ କାହାର ନିଜ ଭଉଣୀ ଅଟେ ପନ୍ନା ?" ବଡ଼ ଭଉଣୀ ଠିକ୍ ହିଁ କହିଥିଲା । ନିଜର ହେଇଥିଲେ କଣ ତାକୁ ଏମିତି ଛାଡ଼ି ଦେଇଥାନ୍ତା ବଡ଼ଭଉଣୀ ? ଦିନେ ସନ୍ଧ୍ୟାରେ ସେ ନୂଆଁ ପାଖରେ ଥିବା ଲକ୍ଷ୍ମଣ-ରେଖା ପାରକରି ବହୁ ଚେଷ୍ଟାରେ ବୁଲିବାକୁ ବାହାରିଲା ।

ବାଟ ଭୁଲିଯାଇ ଜାଣେ ନାହିଁ କେମିତି ଡା.ପୈଦ୍ରିକଙ୍କ ବଂଗଳାରେ ପହଞ୍ଚିଲାବେଳେ ଡାକ୍ତର କାଠର ଚୌକିରେ ବସିଥିଲେ, ନିଜର କୌଣସି ରୋଗୀ ପାଇଁ ଅଙ୍ଗୁଳି ନଥିବା ହାତ ମୋଜା ବୁଣୁଥିଲେ । ଏହା ତାହାର ପ୍ରଥମ ପରିଚୟ ଥିଲା । ଏହା ପରେ ସେ ଦିନେ ମଧ୍ୟ ଘରେ ରହି ନଥିଲା । ପ୍ରସବ କାଳ ନିକଟ ହେବାରୁ ଡା.ପୈଦ୍ରିକଙ୍କର ଉପସ୍ଥିତି ତା ପାଇଁ ବରଦାନ ସିଦ୍ଧ ହେଲା ।

"ଚାଳିଶ ବର୍ଷରେ ଏହି ଅଲୌକିକ ପ୍ରଥମ ପ୍ରସବ ମତେ କଣ ବଞ୍ଚେଇ ପାରିବ ଡାକ୍ତର ?" ପନ୍ନା କିଛି ଦିନ ପୂର୍ବରୁ ହସିକରି ପଚାରିଥିଲା ।

ଡା. ପୈଦ୍ରିକ ତ ତାକୁ ବଞ୍ଚେଇ ଦେଇଥିଲେ, କିନ୍ତୁ ଅନ୍ୟଟିକୁ ବଞ୍ଚେଇ ପାରି ନଥିଲେ । କିଛି କ୍ଷଣ ପର୍ଯ୍ୟନ୍ତ ଦେଖିବା ପରେ ମଧ ତାହାର ଏକ ଏକ ଆଖିର ଚିତ୍ର ପନ୍ନାର ନେତ୍ର ଦୁଇ ହାତରେ ବନ୍ଦ ହେଇ ଯାଇଥିଲା । ତେଜସ୍ୱୀ ନରସିଂହରୁ ପିତାପରି

ଚଉଡ଼ା ମୁଣ୍ଡ, ସେହିପରି ଧନୁ-ପରି ଭ୍ରୂଲତା, ଆଉ ସେହିପରି ତରଳ ଆଖି ! ଠିକ୍ ଭାବରେ ଦେଖି ମଧ୍ୟ ପାରିନଥିଲା ଯେ ବିଛଣା ଉପରେ ପଡ଼ିଥିବା ଛୋଟ ଦେହ ତାହାର ଯନ୍ତ୍ରଣାରେ ମୋଡ଼ି ହେବାକୁ ଲାଗିଲା । ଆଖି ବଙ୍କା ହେଇ ଟାଣି-ଟାଣି ହେଇ ହଠାତ୍ ସ୍ଥିର ହେଇ ରହିଯାଇଥିଲା ।

ନଅ ମାସ ପର୍ଯ୍ୟନ୍ତ ସହିଥିବା ମାନସିକ ଓ ଶାରୀରିକ ବ୍ୟଥାର କେମିତି କ୍ଷଣକରେ ଅନ୍ତ ହେଇ ରହିଯାଇଥିଲ ।

"ପନ୍ନା", ରୋଜୀର ଗମ୍ଭୀର ସ୍ୱର ତାକୁ ପୁଣିଥରେ ଚମକାଇ ଦେଲା, "ମୁଁ ନଶ୍ଚିନ୍ତ ହେଇ ବର୍ତ୍ତମାନ ଯିବି ପନ୍ନା ?"

"ନା ରୋଜୀ," ପନ୍ନା ଶୋଇଥିବା ଛୁଆକୁ ଉଠେଇ ଡାକ୍ତରଙ୍କ ଆଡ଼କୁ ବଢ଼େଇ ଦେଲା, "ବର୍ତ୍ତମାନ କୌଣସି ମୋହର ବନ୍ଧନରେ ପଡ଼ିବି ନାହିଁ । ତୁମେ ଏହିପରି ଭାବିବ ନାହିଁ ଯେ ମୁଁ ଏହାର ପୈତୃକ ରୋଗ ପାଇଁ ଭୟରେ ଏହାକୁ ଗ୍ରହଣ କରି ପାରୁନାହିଁ ? କିନ୍ତୁ ତୁମେ ଜାଣ ମୁଁ କାହିଁକି ବାଧ୍ୟ ହେଉଛି । କେବଳ ବଡ଼ ଅପା ଛଡ଼ା ମୋର ଆଉ କେହି ନାହିଁ । ମତେ ସେଠାକୁ ଫେରି ଯିବାକୁ ହେବ, ଆଉ ସେଠାକୁ ଫେରି ଯିବାପରେ ପୁଣି ସେହି ଦଲଦଲରେ ବୁଡ଼ି ଯିବି, ଯେଉଁଠାରେ ଆଜି ପର୍ଯ୍ୟନ୍ତ ବୁଡ଼ି ରହିଥିଲି । ମୋ ସହିତ ଏହି ନିର୍ଦ୍ଦୋଷ ଛୁଆକୁ ମଧ୍ୟ ସେହି ଦଲଦଲରେ ବୁଡ଼େଇ ଦେବି, କଣ ଏହା ଚାହୁଁଛ ତମେ ?"

"ପନ୍ନା, ମୁଁ ଏସବୁ ପ୍ରଥମରୁ ହିଁ ଚିନ୍ତା କରି ସାରିଛି । ମିସନରେ ମୁଁ ରହିବା ପରଠାରୁ ଝିଅଟି ଦିନେ-ନା - ଦିନେ ନିଜ ଜନ୍ମର ଇତିହାସକୁ ଜାଣି ପାରିବ ଏବଂ ସେହି ଦିନ ତାହା ପାଇଁ ବହୁତ ସୁଖର ହେବ ନାହିଁ । ତମ ପାଖରେ ରହିବା ପରେ ଇଏ ତମର ଝିଅ ରୂପରେ ବଢ଼ିବ । ପୁଣି କାଦୁଅରେ ଦଲଦଲରେ ମଧ୍ୟ କମଳ ଅଙ୍କୁରିତ ହୁଏ ପନ୍ନା ! ଜରୁରୀ ନୁହେଁ ଯେ ତୁମେ ଏହାକୁ ହିଁ ପାଖରେ ରଖ । ତୁମେ ସମର୍ଥ ଅଟ । ଇଚ୍ଛା ହେଲେ ଏହାକୁ ଭଲରୁ ଭଲ ବୋର୍ଡ଼ିଂ ସକୁଲରେ ରଖିପାର । ଛୁଟି ହେଲା ପରେ ଏହାକୁ ସାଙ୍ଗରେ ନେଇ ମୋ ପାଖକୁ ହିଁ ଆସିପାର ପନ୍ନା ।"

## ଦୁଇ

ପନ୍ନା ଅପଲକ ଦୃଷ୍ଟିରେ ଛୁଆକୁ ଦେଖୁଥିଲା । କେମିତି ସୁନ୍ଦର ଘନ କଳାବାଳ ଥିଲା ଓ ତାର କେମିତି ବଡ଼-ବଡ଼ ଆଖି । ମନେ ହେଉଥିଲା ସେ ଆଖିରେ କଜ୍ଜ୍ୱଳ ଲଗେଇ ଆସିଛି । ବଡ଼ ଅପା କେତେ ଖୁସି ହେବ ଏହାକୁ ଦେଖିକରି । ଥରେ ତାଙ୍କର

ବଙ୍ଗାଳୀ ଦାସୀ ଖୁଦୁ, ନିଜର ନାତୁଣୀକୁ ନେଇକରି ଆସିଥିଲା ସେତେବେଳେ ସମସ୍ତ ହଲଦିଆ କୋଠୀର ସତର ମାତୃହୀନ ସୁନ୍ଦରୀମାନଙ୍କ ମାତୃତ୍ୱ ବ୍ୟାକୁଳ ହେଇଉଠିଥିଲା । କେହି ତାକୁ ଉଠେଇ ପାଗଳ ପରି ଚୁମା ଦେଉଥିଲା, କେହି ତାହାର କୁଞ୍ଚ କୁଞ୍ଚିଆ ବାଳରେ କଳିଙ୍ଗ ପିନ୍ନ ଲଗଉଥିଲା- ଚୀନୀ ସୁନ୍ଦରୀ ଲୀ ବାଂଗତ ତା ପାଇଁ ଦୁଇଟି ରେଶମୀ ଛକ୍କେ ମଧ ସିଲାଇ କରେଇ ଦେଇଥିଲା, ଆଉ ବଡ଼ଅପା ତାକୁ ପାଖରେ ଶୁଆଇ ମୋଟା ରେଜେଇ ଘୋଡ଼େଇ କରି ଶୋଇ ପଡ଼ିଥିଲେ । କେତେ ଯେ ରେଶମୀ ଛବଲେ, ସୋନାର କଡ଼ା, ଲକେଟ, ଛୋଟ ଗଦି, ଦୁଧ ପିଇବା ପାଇଁ ଶୀଶୀ ଆଉ ଝୁନ୍ଝୁନ୍ ନେଇକରି ଖୁଦୁର ନାତୁଣୀ ଘରକୁ ଫେରିଥିଲା । ସେହି ପ୍ରତ୍ୟାଗମନର ଦୁଃଖରେ ଶୋକରେ ସେଦିନ ହଲଦିଆ କୋଠୀର ଦ୍ୱାର ପ୍ରତ୍ୟେକ ଅତିଥି ପାଇଁ ବନ୍ଦ ରହିଥିଲା ।

"ଦିଅ ରୋଜୀ, ମୁଁ ଏହାକୁ ନେଇକରି ଆଜିହିଁ ଚାଲି ଯିବି ।" ଗୋଟିଏ କ୍ଷଣରେ ନିଶ୍ଚୟ କରି ପନ୍ନା ଡା.ପୈଦ୍ରିକଙ୍କ କୋଳରୁ ଛୁଆକୁ ନେଇକରି ପୁଣି ଥରେ ଛାତିରେ ଲଗେଇଲା ।

କୃତଜ୍ଞତାରେ ବିହ୍ୱଳ ଡା.ପୈଦ୍ରିକଙ୍କ କଣ୍ଠରୁ ଗୋଟିଏ ଶବ୍ଦ ମଧ ବାହାରିଲା ନାହିଁ, ଏମିତି ଆନନ୍ଦନୁଭୂତି ତାଙ୍କୁ ଆଗରୁ କେବେ ହେଇ ନଥିଲା, ସେତେବେଳେ ମଧ ନୁହେଁ, ଯେତେବେଳେ ରୋଗ ପାଇଁ ଛିଡ଼ି-ଫିଡି ବିଭସ୍ଥ ହେଇଯାଇଥିବା ରୋଗିଣିମାନଙ୍କୁ, ନୂତନ ଅଙ୍ଗର ନୂତନ ତିଆରିରେ ସ୍ୱୟଂ ହି ଆଶ୍ଚର୍ଯ୍ୟ-ସ୍ତବ୍ଧ ହେଇଯାଆନ୍ତି, କୃତଜ୍ଞତାରେ ସେହି ଜୀବନଦାତ୍ରୀଙ୍କ ଚରଣରେ ଲୋଟି ଯାଆନ୍ତି । ହାତର ବରସାତୀ କାମିରେ ପକେଇ, ଡାକ୍ତର ଚୁପ୍‌ଚାପ ବାହାରକୁ ଚାଲି ଆସିଲେ । ଏହି ସ୍ୱର୍ଗୀୟ କ୍ଷଣକୁ ସେ ବର୍ତ୍ତମାନ କିଛି କହିକରି ନଷ୍ଟ ହେବାକୁ ଦେବେ ନାହିଁ । ସେହି ସନ୍ଧ୍ୟାରେ ସେ ସ୍ୱୟଂ ପନ୍ନାକୁ ବିଦାୟ ଦେଇଥିଲେ । ଯେତେ ଶୀଘ୍ର ପନ୍ନା ଯାଇପାରେ, ସେତେ ହିଁ ଶ୍ରେୟସ୍କର ଥିଲା । ଅସଦୁଲ୍ଲାକୁ ସେ ଜାଣିଥିଲେ, ଲୁଚି-ଛପିକରି ନକଲ ରଖିଲାବାଲା ସେଇ ପଠାଣର ଅନ୍ଧ ଆଖି ତାଙ୍କୁ ଭଲ ଲାଗୁନଥିଲା । ଆଶ୍ରମରୁ ତ ସେ କେବେଠୁ ଯାଇ ସାରିଥିଲା । କିନ୍ତୁ ସେ କେବେ, କେଉଁଠି ଓ କେମିତି ଲୁଚି କରି ବସିଛି, କେହି ଜାଣିପାରୁ ନଥିଲେ ।

ପନ୍ନା ଆଲମୋଡ଼ାର ଠିକଣା ଦେଇ କରି ଟଙ୍କା ମଗେଇଛି ଏହାସବୁ ମାଣିକ ଶୁଣି ସାରିଥିଲା, କିନ୍ତୁ ସେଇ ଜିଦି ବାଳିକାକୁ ସେ ବର୍ତ୍ତମାନ ମଧ କ୍ଷମା କରି ପାରିନଥିଲେ । ତାକୁ ନେଇ କରି ରାୟ କାକାଙ୍କ ସମ୍ମୁଖ ଲଜ୍ଜିତ ନତମୁଖ ଛିଡ଼ା ହେଇ ରହି ଯାଇଥିଲା ସେ । ତାଙ୍କର ଗୋଟିଏ ସାମାନ୍ୟ ଅନୁରୋଧକୁ ମଧ ସେ ରକ୍ଷାକରି ପାରି ନଥିଲେ । ଠିକ୍ ଅଛି, ବର୍ତ୍ତମାନ ଭୋଗିବ ନିଜର କର୍ମଫଳ । ଭାବୁଥିବ ବଡ଼ଅପା ପଲଉ ପଲଉ ମନେଇବା ପାଇଁ ଆସିବ, ରାଣୀ ମାନ କରିବ ନିଜର ସୌଭାଗ୍ୟ ନେବ । ଶେଷରେ କେତେଦିନ ଚାଲିବ ସୁଧର ଟଙ୍କା । ଦିନେ-ନା-ଦିନେ ତାଙ୍କୁ ବଡ଼ ଅପାଙ୍କ

ଶରଣକୁ ହିଁ ଫେରିବାକୁ ହେବ । ପନ୍ନାର ଅକସ୍ମାତ ରକ୍ଷିକରି ଚାଲିଯିବାରୁ ମାଣିକର କୌଣସି କ୍ଷତି ହେଇନାହିଁ । ଏମିତି ମଧ୍ୟ ନଥିଲା । ବଢୁଥିବା ବୟସର ଚିହ୍ନ, ପନ୍ନାର ଅପୂର୍ବ ଚେହେରାର କାନ୍ତିକୁ ଟିକିଏ ମଧ୍ୟ ମଳିନ କରିପାରି ନଥିଲା । ଯେଉଁଠି ମାଣିକର ବାଳର ସନ୍ଦିଗ୍ଧତା ପୂର୍ଣ୍ଣ କାଳିମା, ଦେଖିଲା ବାଲାକୁ କିଛି କ୍ଷଣପାଇଁ ପ୍ରତାରଣା କରେ, ସେଠାରେ ପନ୍ନାର ଘନ କଳାବାଳରେ କୌଣସି ପ୍ରକାରର ଛନ୍ଦ-କପଟର ମରିଚିକା ନଥିଲା, ନା ସେହି ଚିକ୍କଣ ଚେହେରାରେ କୌଣସି କୁଞ୍ଚିତ ରେଖାଥିଲା, ସ୍ୱଚ୍ଛ ଦନ୍ତ-ପଂକ୍ତିରେ ପାନ ଦୋକତାର ଗୋଟିଏ ଦାଗ ମଧ୍ୟ ପନ୍ନା ଲାଗିବାକୁ ଦେଇନଥିଲା, ଦିନ-ରାତି କଥକ ନୃତ୍ୟର କଠୋର ଘୁରିବାରେ, ପତଳାଗଠନକୁ ଇଞ୍ଚିଏ ମଧ୍ୟ ଏଠି-ସେଠି ହେବାକୁ ଦେଇ ନଥିଲା । ଶାନ୍ତ ଚେହେରାରେ କଳୁଷିତ ପଇସାର ଧୂଆଁଳିଆ ହସ୍ତାକ୍ଷର ଖୋଜିଲେ ମଧ୍ୟ ମିଳୁନଥିଲା । ଯେପରି କୌଣସି ସୁଖୀ ଗୃହସ୍ଥୀର ଜୀବିତ ବିଜ୍ଞାପନ ପରି କୌଣସି ଲକ୍ଷ୍ମୀସ୍ୱରୂପା ଗୃହିଣୀ ହିଁ ତାଙ୍କ ସମ୍ମୁଖରେ ବସିଛି, ଏମିତି ହିଁ ତାହାର ଅନନ୍ୟ ଉପାସକମାନଙ୍କୁ ସର୍ବଦା ମନେ ହେଉଥିଲା । କାହାକୁ ବିଦେଶୀ ତୀବ୍ର ମାଦକ ସୁଗନ୍ଧ ରୁଚୁ ଥିଲା, କୌଣସି ସଂଯମୀ ପ୍ରେମୀକୁ ମୋତିମାନଙ୍କର ହାଲୁକା ମହକ ପସନ୍ଦ ହେଉଥିଲା, କେହି ଆମିଷ ଭୋଜୀ ଥିଲା, କାହାକୁ ବୈଷ୍ଣବ ନିରାମିଷ ଭୋଜନ ପସନ୍ଦ ହେଉଥିଲା, କେହି ତାହାକୁ ଚକଚକିଆ ଶାଢ଼ିରେ ଚକଚକ-ଝକଝକ ପ୍ରବେଶ କରିବାକୁ ଦେଖିବାକୁ ଚାହୁଁଥିଲା, ଆଉ କେହି ତାହାର ଲାଲ୍ ଧଡ଼ିର ଗରଦର ଶାଢ଼ୀ-ମଣ୍ଡିତା ଉଭା ମୂର୍ତ୍ତିର ଉପାସକ ଥିଲା । ସବୁ କିଛି ତାର ସ୍ମରଣ ରହୁଥିଲା । ଏହିଥିରୁ ତାର ପ୍ରେମିମାନଙ୍କ ଉତ୍ସକୁ ସର୍ବଦା ଗୋଟିଏ ଲମ୍ବା କ୍ୟୁରେ ଛିଡ଼ା ହେବାକୁ ପଡୁଥିଲା । ଗୋଟିଏ ଲାଲ୍ ନରମ ପଶମ କମ୍ବଳରେ ବଂଧା ହେଇଥିବା ଡାଏରୀରେ, ତାହାର ସେକ୍ରେଟେରୀ ଦୁଲାଲ ବାବୁ ସମସ୍ତଙ୍କ ଏପୟେଣ୍ଟମେଣ୍ଟର ତିଥି ଲେଖି ରଖୁଥିଲେ । କେବଳ ଗୋଟିଏ ଗ୍ରାହକ ପାଇଁ ଏହି ଡାଏରୀରେ ଲେଖା ତିଥିର କୌଣସି ମହତ୍ୱ ନଥିଲା । କୁମିଲ୍ଲାର ପ୍ରଖ୍ୟାତ ଜମିଦାର ବିଧୁତ ରଞ୍ଜନ ମଜୁମଦାର, ଯେତେବେଳେ ଚାହୁଁଥିଲେ ସେତେବେଳେ ପନ୍ନାର ପୂର୍ବ-ନିର୍ଧାରିତ ତିଥିମାନଙ୍କରେ ଓଲଟ-ପାଲଟ କରେଇ ପାରୁଥିଲେ । ପନ୍ନାର ତାଙ୍କ ସହିତ ପ୍ରଥମ ପରିଚୟ ରାଜଭବନରେ ଗୋଟିଏ ଜଲସାରେ ହେଇଥିଲା । ପନ୍ନାର ସୁମଧୁର କଣ୍ଠ, ଅପୂର୍ବ ସୌନ୍ଦର୍ଯ୍ୟ ଆଉ ବଙ୍କିମ କଟାକ୍ଷର ଚର୍ଚ୍ଚା ସେଦିନ ଗୁଡ଼ିକରେ ସମ୍ପୂର୍ଣ୍ଣ ବେଙ୍ଗଲରେ ପ୍ରଚାରିତ ହୋଇ ସାରିଥିଲା । ସମ୍ଭ୍ରାନ୍ତ, କୁଳୀନ ବ୍ରାହ୍ମ ଗୃହରେ ମଧ, ବ୍ରହ୍ମୋତ୍ସବରେ ତାହାକୁ ବିଶେଷ ସମ୍ମାନ ସହିତ ଆମନ୍ତ୍ରିତ କରାଯାଉଥିଲା ।

'ହେ ଅନାଥର ନାଥ, ହେ ଅଗତିର ଗତି
ହେ ଅକୂଳର କୂଳହେ ପତିତର ପତି'

ମାଘୋତ୍ସବରେ ଭାବବିଭୋର ହେଇକରି ପନ୍ନା ଗାଇଥିଲା, ଶୁଣିଲାବାଲାଙ୍କ

ଆଖିରେ ଲୁହ ଦେଖା ଦେଇଥିଲା, କଣ ଗୁରୁଦେବ ଏହି ପଂକ୍ତି ତାହାରି ପାଇଁ ଲେଖିଥିଲେ ? ଏହା ସେହି ପତିତର କଣ୍ଠର ଜାଦୁ ଥିଲା ନା ପଂକ୍ତିମାନଙ୍କର ?

ହୁଏତ ଅନୁପମ କଣ୍ଠ-ସ୍ୱର ପଂକ୍ତିଗୁଡ଼ିକରେ ମେଳଖାଇ ଏକାକାର ହେଇ ଯାଇଥିଲା ।

ପନ୍ନାର ହେଡକ୍ୱାଟର ସେତେବେଳେ ପାଟଣାରେ ଥିଲା । ନେପାଳର କୌଣସି ରାଣା ତାହାର ମା ପାଇଁ ଗୋଟିଏ ଦର୍ଶନୀୟ କୋଠୀ ତିଆରି କରି ଦେଇଥିଲା, ବଡ଼ ହତା ପଣସ, ଆମ୍ବ ଆଉ ଜାମୁକୋଳିର ଗଛରେ ଭରିଥିଲା, ଗୋଟିଏ ଦିଗରେ ଫରୁଖାବାଦୀ ଜାମକୋଳି, ମଲୀହାବାଦର ଆମ୍ବ ଆଉ ମେଦିନିପୁରରୁ କାଜୁର ଗଛ ଆଣି ଲଗା ଯାଇଥିଲା, ଅନ୍ୟ ଦିଗରେ ଫୁଲରେ ସୁବାସିତ ଉଦ୍ୟାନରେ ଶଂଖମରମରର ଫୁଆରା, ସାପୁଆ କେଳାର ବୀଣାର ମୂର୍ତ୍ତି, ପିତଳର କାଠିଆବାଡ଼ୀ ହିଂଚକୋଂର ସୌନ୍ଦର୍ଯ୍ୟ ଦେଖିବାକୁ ଦୂର-ଦୂରରୁ ପନ୍ନାର ମା'ର ବିଦେଶୀ ଅତିଥି ଦିନ-ରାତି ଆସୁଥିଲେ ।

ପନ୍ନାର ମା'ର ନାମ ଥିଲା ମୁନୀର । ଦେଖିବାକୁ ଅସାଧାରଣ ରୂପବତୀ ନ ହେଇଥିଲେ ମଧ୍ୟ ସେହି ତେଜସ୍ୱୀ ପେଶେବର ମହିଳାର, ସର୍ବୋଚ୍ଚ, ବିଦେଶୀ ସମାଜରେ ଉଠିବା ବସିବା ଲାଗି ରହିଥିଲା ।

ତାହାର ମାଂସଳ କଣ୍ଠର ତ୍ରୁଟିହୀନ ଇଂରାଜୀ ଶୁଣିକରି ବଡ଼ ବଡ଼ ଭାରତୀୟ ଅଫିସର ଆଶ୍ଚର୍ଯ୍ୟ ହେଇ ଯାଉଥିଲେ । ଯାହାର ହାତରେ ଦେଶର ସାମର୍ଥ୍ୟ, ସେହି ସୁନ୍ଦର ଜାତିକୁ ଜୀତିଲା ପୂର୍ବରୁ ସେମାନଙ୍କ ଭାଷା ଶିଖିବାକୁ ହେବ । ଏହା ମୁନିର ଉତ୍ତମ ରୂପରେ ବୁଝିଥିଲା, ଦୁଇ-ଦୁଇଟି ଗଭର୍ନେସ ଏକା ସାଥିରେ ରଖିକରି ସେ ସେମାନଙ୍କ ଭାଷାର ସରସ୍ୱତୀ ସ୍ୱୟଂ ହି ନିଜର ଜିହ୍ୱା ଖୋଲିକରି ରଖିଥିଲା । ବିଦେଶୀ ସମାଜର କୌଣସି ଜଳସା ହେଇ ଥାଉନା କାହିଁକି, ମର୍ଡନ ପାର୍ଟି ବା ଲାଟ୍ ସାହେବଙ୍କର ପିଗଷ୍ଟିକିଂଗ ପାର୍ଟିର ଡମ୍ଫୁ, ମୋଜ୍ରେ ପ୍ରଦର୍ଶନ ବା ଲାଟଙ୍କର ମେମର ବଜାର, ଗହଣାରେ ଚକଚକ କରିଥିବା, ପାନର ବିଡ଼ାଠାରୁ ଉଚ୍ଚ କପାଳକୁ କିଛି ଆହୁରି ଉଚ୍ଚା ଉଠାନ୍ତୁ, ମୁନୀର ଆତିଥ୍ୟ ପ୍ରଦାନ କାରୀ ଚଉକିରେ ଲାଖି ବସି ରହେ । ଉର୍ଦ୍ଦୁ, ହିନ୍ଦୀ ଏବଂ ଇଂରାଜୀ-ତିନି ଭାଷା ଉପରେ ତାହାର ସମାନ ରୂପରେ ଅଧିକାର ଥିଲା । ଥରେ ତାହାର ବିଦେଶୀ ପ୍ରେମୀ ଡିକୀ, ତାକୁ ହସି-ହସି 'ବେଗମ ସମରୁ' କହିକରି ଡାକିଲାରୁ ସେ ରାଗି ଯାଇଥିଲା- 'ଇଟ ଇଜ ନଟ ଏ କମ୍ପଲିମେଣ୍ଟ ଡିକୀ", ସେ କହିଥିଲା, "କଣ ତୁମେ ଜାଣି ନଥିଲ ବେଗମ ସମରୁ ଦେଖିବାକୁ କେମିତି ଥିଲା ? ଏକଦମ ସାଧାରଣ, ଆଉ କଣ ତୁମେ ଚାହୁଁଛ ଯେ ବେଗମ ସମରୁ ପରି ମୁଁ ମଧ୍ୟ ନିଜର ବିଦେଶୀ ପ୍ରେମିମାନଙ୍କୁ ପଦାଘାତ କରି ବୁଲେ ?" ଡିକୀ ବିସ୍ମିତ ହେଇଯାଇଥିଲା, ଇତିହାସ,

ଭୂଗୋଳ ଆୟୁର୍ବେଦ, ଜ୍ୟୋତିଷ ସବୁ କିଛି ପଢିବା ପାଇଁ ସମୟ କେଉଁଠାରୁ ମିଳି ଯାଇଥିଲା ତାକୁ । ତରାଇରେ ତାକୁ ବଡ଼ ଗେମ ମିଳିପାରେ, କେଉଁ ହ୍ରଦର ଗଞ୍ଜାପରି ପକ୍ଷୀ ଏବଂ ହଂସ ଜାତିର ଗୋଟିଏ ଜଳଚର ପକ୍ଷୀ ପ୍ରସିଦ୍ଧ ଅଟେ, ସବୁକିଛି ଜାଣିଥିଲା ସେ । ସେତିକି ନୁହଁ, ତାର ତିଆରି କକଟେଲର ଗୋଟିଏ-ଗୋଟିଏ ଅମୃତ-ସ୍ୱରୂପୀ ଢ଼ୋକ ପାଇଁ କେତେ ଯେ ସମୃଦ୍ଧ ବିଦେଶୀ ଅହଂକାରୀ ମାଟିରେ ଆଣ୍ଠୁମାଡି ରହି ଯାଉଥିଲେ । ଛୋଟ ଦେହର ଲମ୍ୱ ଓସାରର କୁତୁକୁତୁ ହାଥ-ପାଦ ଥିବା ସେହି କଣ୍ଡେଇ ପରି ପ୍ରୌଢ଼ା ନିକଟକୁ ଆସିଲା ପରେ ମଧ୍ୟ ପନ୍ଦର ବର୍ଷର କିଶୋରୀ ପରି ଦେଖାଯାଏ । ମୁନୀରର ତିନୋଟି ଝିଅ ଥିଲେ, ବଡ଼ ମାଣିକ, ଯାହାର ଛୋଟ ନାକ, ଛୋଟ ଆଖି ଆଉ ସାମାନ୍ୟ କଥାରେ ଓଠରେ ନାଚୁଥିବା ହସର ଗୋଟିଏ- ଗୋଟିଏ ରେଖା, ନିଜର ରାଜବଂଶୀ ପିତା ରାଣା ସହିତ ମିଶି ଯାଉଥିଲା, ବାପର ଗେହ୍ଲା ଓ ମାର ଆଦରର ମାଣିକ ସ୍ୱଭାବରେ ହିଁ କ୍ରୂର, ଜିଦ୍‌ଦୀ ଓ ଅହଂକାରୀ ଥିଲା ।

ଦ୍ୱିତୀୟ ଥିଲା ହୀରା- ନାମର ବିପରିତ ରୂପ ପ୍ରଦାନ କରି ବିଧାତା ତାକୁ ନିଶ୍ଚୟ ଏକକ୍ରୂର ପରିହାସ କରିଥିଲା । ମା ତାହାର ଜନ୍ମରୁହିଁ ଘୃଣାରେ ମୁହଁ ବୁଲେଇ ନେଇଥିଲା । ଛି-ଛି, ରଂଗ ଥିଲା ଏକଦମ ଆବନୁସ କାଠ, ଧୂଆଁଳିଆ ଛୋଟ-ଛୋଟ ବାଳ, ଚେପେଟା ନାକ ଓ ମୋଟା ଝୁଲୁଥିବା ଓଠ ।

ତାକୁ ନେଇ ରାଣା ଓ ମୁନୀର ସମ୍ୱନ୍ଧ ସବୁଦିନ ପାଇଁ ଭାଙ୍ଗି ଯାଇଥିଲା, ରାଣା ନିଜର ତୀନି-ତୀନି ଅଭିମାନୀ ରାଣୀମାନଙ୍କୁ ମନେଇବା ପାଇଁ ସ୍ୱଦେଶକୁ ଚାଲି ଯାଇଥିଲା ।

"ଏହି ବାଳିକା ମୋର ନୁହେଁ", ସେ ଗରଜି - ଗରଜି ଚିତ୍କାର କରୁଥିଲା- "ଶେଷରେ ଓହ୍ଲେଇ ଆସିଲୁ ନା ନିଜ ଜାତି ପରି । ମୁଁ କଣ ଏତେ ମୂର୍ଖ ଯେ ଏହା ମଧ୍ୟ ବୁଝି ପାରିବି ନାହିଁ । ଯେ ଏହାର ବାପା କିଏ ଅଟେ ?"

ମୁନୀର ଗୋଟିଏ ଶବ୍ଦ ମଧ୍ୟ କହି ପାରିଲା ନାହିଁ, କହିଆନ୍ତା ମଧ୍ୟ କ'ଣ ? ଲାଟ ସାହେବଙ୍କ ଝିଅ-ଜୋଇଁ ତାହାର ଅତିଥି ହେଇ ଆସିଲେ, ତ ସେମାନଙ୍କ ସହିତ ଆସିଥିଲା ତାଙ୍କର ରାବଣ ପରି ଦେହ ଏବଂ ମହିଷାସୁର ପରି ଚେହେରା ବାଲା ଭୟାନକ ନିଗ୍ରୋ ଜାତିର ଭୃତ୍ୟ, ରୌବୀ । ଏମିତି ଭୟଭୀତ ଚେହେରା ଯେ ଅନ୍ଧାରରେ କେହି ଦେଖିଦେଲେ, ଭୟରେ ସେ ମୂର୍ଚ୍ଛିତ ହେଇ ପଡ଼ିଯିବ । କିନ୍ତୁ ଆହା, କେମିତି କଣ୍ଠସ୍ୱର ଥିଲା ତାର ! ନିଜର ଭାରୀ ମାଂସଳ କଂଠରେ ସେ 'ଓ୍ୱପ ନୋ ମୋର ଭାଇ ଲେଡୀ, ଓହ ଓ୍ୱପ ନୋ ମୋର ଟୁଡେ ।" ଗାଇଲାତ ମୁନୀର ସକେଇ ସକେଇ କାନ୍ଦିବାକୁ ଲାଗିଲା । ଏହି ଗୀତ ଗାଉଥିଲା ତାର ପ୍ରଥମ ବିଦେଶୀ ପ୍ରେମ-ନୀଳ ଆଖି ଏବଂ ସୁନେଲି ବାଳରେ ମଣ୍ଡିତ ସୁନ୍ଦର ବ୍ୟକ୍ତିତ୍ୱର ସ୍ୱାମୀ ଏନ୍ଥୋନୀ । ଅଠର ବର୍ଷର ସୁନ୍ଦରୀ ମୁନୀର ଏହାର ବଢ଼ି ଚାଲିଥିବା ପ୍ରେମୋଦ ଧିରେ ପ୍ରଥମ ବୁଢ଼ ଏହି ବିଦେଶୀର

ସାହାଯ୍ୟରେ ନେଇଥିଲା । କେମିତି ତାକୁ ତା ସହିତ ବିଦେଶ ନେଇଯିବ, କେମିତି ବିଦେଶୀ ମେମମାନେ ତାହାର ସୌନ୍ଦର୍ଯ୍ୟ ଓ ସୌଭାଗ୍ୟକୁ ଦେଖି ଈର୍ଷ୍ୟାରେ ମରିଯିବେ- ଶୁଣିକରି ମୁନୀର ଆନନ୍ଦ-ବିଭୋର ହେଇ ଉଠୁଥିଲା । କିନ୍ତୁ ଦିନେ ତାର କଳ୍ପନାର ଇଉଟୋପିଆକୁ ସ୍ୱୟଂ ଏନ୍ଥୋନୀ ହିଁ ଭାଙ୍ଗି-ଚୁରି କୌଣସି ବେରନର ଏକମାତ୍ର ଝିଅକୁ ବାହାହେବା ପାଇଁ ବିଦେଶ ଚାଲିଗଲା । ଜୀବନରେ ସେହି ପ୍ରବେଶିକାରେ ଅନୁତ୍ତୀର୍ଣ୍ଣ ହେଇଥିଲା ମୁନୀର, ଏହି ଅସଫଳତା ହିଁ ତାକୁ ତାର ପେଶାର ପ୍ରଥମ ଅନିବାର୍ଯ୍ୟ ପାଠ ପଢ଼େଇଲା । ତାହାର ପେଶାରେ ଲଜ୍ଜା ଶାନ୍ତି ଆଉ ପଶ୍ଚାତ୍ତାପ ପାଇଁ କୌଣସି ସ୍ଥାନ ରହିବା ପ୍ରଶ୍ନ ହିଁ ଉଠି ପାରୁ ନଥିଲା । ଧୋକା, ଛଳ କପଟ ଆଉ ନିର୍ଲଜ୍ଜ ଆଚରଣ- ତିନିଟାହିଁ ତାହାକୁ ଶିଖର ପର୍ଯ୍ୟନ୍ତ ପହଞ୍ଚେଇ ପାରିଥାନ୍ତେ ଏବଂ ସେ ପଲକ ପଡ଼ିଲାମାତ୍ରେ ଦିନେ ଶିଖରରେ ପହଞ୍ଚି ଗଲା ।

ସୁନ୍ଦରୀ ହୀରା ତିନି ବର୍ଷର ମଧ ହେଇନଥିଲା । ସେତେବେଳେ ମୁନୀର ବନାରସର ହରିଶ୍ଚନ୍ଦ୍ର ଘାଟ ପାଖରେ, ନିଜର ବିଦେଶୀ ମିତ୍ରର ସୁସଜ୍ଜିତ ଛାତ ଥିବା ନୌକାରେ ତୃତୀୟ କନ୍ୟାର ଜନ୍ମ ଦେଲା । ନିଜର ନବୀନ ବିଦେଶୀ ପ୍ରେମୀ ସହିତ ସେ ଜିଦ କରି କାଶୀର ପ୍ରସିଦ୍ଧ ବୁଢ଼ବା ମଙ୍ଗଳର ମେଲାକୁ ଚାଲି ଆସିଥିଲା । ତୃତୀୟ କନ୍ୟାର ଗୌରବର୍ଣ୍ଣ, ନୀଳ ଆଖି ଏବଂ ସୁନ୍ଦର ସୁନେଲି କେଶ ଦେଖିକରି ସେ ନିଜର ଅସୁନ୍ଦରୀ ମଝିଆ ଝିଅର ଜନ୍ମର ସମସ୍ତ ବ୍ୟଥା ଭୁଲି ଯାଇଥିଲା । ଏହାଠାରୁ ସୁନ୍ଦର ତୋଫା ତାର ପେଶାକୁ ଆଉ ମିଳି ଭି କଣ ହେଇଥାନ୍ତେ ? ଏକରେତ ଝିଅ, ତା ଉପରେ ସୁନ୍ଦରୀ । ଏକ ଏହି ସୌନ୍ଦର୍ଯ୍ୟର ବାଡ଼ିରେ ଭରା ଦେଇ ରହିବ ସେ ମହା-ଆରାମରେ ସେ ବର୍ତ୍ତମାନ ବୃଦ୍ଧାବସ୍ଥା କାଟି ପାରିଥାନ୍ତା ।

"ଏହାକୁ ସମସ୍ତେ ଦେଖିଲା ମାତ୍ରେ ଜାଣି ପାରିବେ ଯେ ଏହାର ପିତା କିଏ ? ଧ୍ୟାନ ରଖିବ ମୁନୀର ଯେମିତି ଲାଟସାହେବଙ୍କ ନଜର ଯା ଉପରେ ନ ପଡ଼େ, ମୋର ଚାକିରି ଚାଲିଯିବ, ବୁଝିଲୁ ? ଦୁଷ୍ଟାମିରେ ହସିକରି ରବର୍ଟସନ ମୁନୀରର କୁତୁକୁତୁ ହାତ ପାପୁଲିକୁ ଚୁମା ଦେଇଥିଲା ।

ଲାଟ ସାହେବଙ୍କ ଏହି ଚଞ୍ଚଳମନା ଏ.ଡି.ସି.ନିଜର ଆକର୍ଷଣ ବ୍ୟକ୍ତିତ୍ୱ ଏବଂ ରଙ୍ଗୀନ ଶରୀରକୁ ନେଇ ଯଥେଷ୍ଟ କୁଖ୍ୟାତି ଅର୍ଜନ କରି ସାରିଥିଲା । କିନ୍ତୁ ଏମିତି ଉଦାର ଏବଂ ପ୍ରେମକଳାରେ ପଟୁ ପ୍ରେମୀ ମୁନୀରକୁ ଆଜି ପର୍ଯ୍ୟନ୍ତ ମିଳି ନଥିଲା, ସେଥିପାଇଁ ସେ ତାହାକୁ ସହଜରେ ଛାଡ଼ିବାକୁ ଚାହୁଁ ନଥିଲା । ରବର୍ଟସନ କେବଳ ଏକ ଉଦାର ପ୍ରେମୀ ନଥିଲା, ଆବଶ୍ୟକତା ଠାରୁ ଅଧିକ ଉଦାର ସ୍ନେହଶୀଳ ପିତା ମଧ ଥିଲା ଯେତେଥର ସେ ଆସୁଥିଲା, ସେତେଥର କନ୍ୟାପାଇଁ ତାହାର ସୁକୁମାର ଦେହ ପାଇଁ ଓଜନିଆଁ - ଓଜନିଆଁ ଗହଣା ତିଆରି କରି ଆଣୁଥିଲା । କିନ୍ତୁ ପିତାର ଏହି ସ୍ନେହପନ୍ନାକୁ ଚାରିମାସ ମିଳିଥିଲା । ସେହି ସୁଦର୍ଶନ ଖଳକାମୀ ବିଦେଶୀର ବାହୁରେ କେବଳ ଏହି

ସନ୍ତାନ ଖେଳି ନଥିଲା । ଉତ୍ତର-ଦକ୍ଷିଣ, ପୂର୍ବ-ପଶ୍ଚିମ, ବିଭିନ୍ନ ଦିଗରେ ତାହାର ନୀଳା ଆଖି ଆଉ ସୁନେଲି ବାଳର କେତେ ସଂସ୍କରଣର ସୃଷ୍ଟି ହୋଇ ସାରିଥିଲା । ଧୀରେ-ଧୀରେ ତାହାର ଦୁଷ୍କୃତର କାହାଣୀଗୁଡ଼ିକ ଦିନେ ତାହାର ପ୍ରଭୁର କାନ ପର୍ଯ୍ୟନ୍ତ ପହଞ୍ଚି ଯାଇଥିଲା । ଅନୁଶାସନ ପ୍ରିୟ କଠୋର ହୃଦୟ ଲାଟ ସାହେବ ତାହାକୁ କିଛି ଘଣ୍ଟା ମଧ୍ୟରେ ଭାରତ ଛାଡ଼ି ଚାଲି ଯିବାପାଇଁ ଆଦେଶ ଶୁଣେଇଲେ, ଆଉ ଥରେ ପୁଣି ମୁନୀରର ତୃତୀୟ କନ୍ୟା ମଧ୍ୟ ସମୃଦ୍ଧ ପିତା ରହିଥିବା ସମୟରେ ହିଁ ପିତୃହୀନ ହୋଇଗଲା ।

ରଂଗ, ରୂପ ଆଉ ସ୍ୱଭାବରେ ସବୁବେଳେ ବିଭିନ୍ନ ତିନି-ତିନୋଟି କନ୍ୟାମାନଙ୍କୁ ପାଳନର ଭାର ସୁନୀରର କାନ୍ଧରେ ପଡ଼ିବାରୁ ସେ ଟିକିଏ ମଧ୍ୟ ବିଚଳିତ ହୋଇ ନଥିଲା । ସେମାନଙ୍କର ଲାଳନ-ପାଳନ ସେ ଦେଶୀୟ ରାଜ୍ୟ ରାଣୀ ଗଡ଼ଙ୍କାତର ପରମ୍ପରାକୁ ମାନି ଚଳୁଥିଲା । "ଏହି ତିନିଜଣ, ମୋର ତିନି ଆଇ.ପି.ଏସ୍. ପୁଅ ଅଟନ୍ତି ।" ସେ ବହୁତ ଗର୍ବରେ ନିଜର ନବୀନ ପ୍ରେମୀ ବ୍ରିଟିଶ ରେସିଡେଣ୍ଟଙ୍କୁ କହୁଥିଲା । 'ଏହା ଠିକ୍ କଥା ଯେ ହୀରା ସୁନ୍ଦର ନଥିଲା, କିନ୍ତୁ କଳାରଂଗକୁ ତୁମେ ବିଦେଶୀ କେମିତି ପାଗଳ ହୁଅ, ଏହା ମୁଁ ଜାଣେ ଦିନେ ଏହାର ଏହି କଳାରଂଗ ଏହାକୁ 'ତମର ସମାଜରେ ହୀରା ଓଜନରେ ବିକ୍ରି କରିବ । "ସ୍ୱିସ ଗର୍ଭନେସ, ମିସେସ୍ ବିଂସେଣ୍ଟ ତିନି ଜଣଙ୍କୁ ଇଂରାଜୀ ଆଦବ-କାୟଦାରେ ଏମିତି ଚକଚକ କରି ରଖି ଦେଇଥିଲା ଯେ ବଡ଼-ବଡ଼ ତାଲୁକଦାରମାନଙ୍କର ଏଠାରେ ବିଦେଶୀ ଅତିଥିମାନଙ୍କର ସମ୍ମାନରେ କୌଣସି ଜଲସା ହେଉଥିଲା, ତେବେ ମୁନୀରର ତିନି ଝିଅଙ୍କୁ ବିଶେଷ ରୂପରେ ଆମନ୍ତ୍ରିତ କରା ଯାଉଥିଲା । କିନ୍ତୁ ମୁନୀର ଜାଣିଶୁଣି ତିନିଙ୍କୁ ଘରେ ରଖିଦେଇ, କିଛିନା କିଛି ବାହାନା ବନେଇ ଦେଉଥିଲା । ଯେଉଁ ମୁଜରିମାନଙ୍କ ମୁନୀର ଆସିଲାମାତ୍ରେ ଶହ ଶହ ମୁଗ୍ଧ ଦୃଷ୍ଟିର ତୀକ୍ଷ୍ଣ ବାଣ ତାକୁ ବିନ୍ଧିବାକୁ ଲାଗୁଥିଲା । ସେଠାରେ କଣ ଏହି ସମ୍ଭାବନା ସବୁବେଳେ ଥିଲା ଯେ ଗୋଟିଏ ଅଧେ ବାଣ ତାର ନିର୍ଦୋଷ କିଶୋରୀ ଝିଅମାନଙ୍କୁ ମଧ୍ୟ ଅସମୟରେ ବିନ୍ଧି ପକେଇ ଥାନ୍ତା । ପୁଣି ତିନି-ତିନି ବୁଝି ପାରୁଥିବା କନ୍ୟାଙ୍କର ସମ୍ମୁଖରେ ସେ କେବେ ହେଲେ ନିଜର ସ୍ୱାଭାବିକ ଅଭିନୟ କରିପାରି ନଥାନ୍ତା ।

ଷୋହଳ ବର୍ଷର ଥିଲା ତାର ବଡ଼ଝିଅ ମାଣିକର ନେପାଳୀ ଆଖିରେ ସଂସାରର କୁଟିଳ ଧୂର୍ତ୍ତତାର ସ୍ପଷ୍ଟ ବର୍ଣ୍ଣାକ୍ଷରୀ, ଛପା ହୋଇଥିବା ସୁନ୍ଦର ଅକ୍ଷର ପରି ସ୍ପଷ୍ଟ ହୋଇ ଉଠିଥିଲା । ପୁରୁଷକୁ କେଉଁ ବଙ୍କିମ କଟାକ୍ଷର ମେଗନେଟ ଦ୍ୱାରା ଟଣା ଯାଏ, କେମିତି ଥରେ ରେଶମୀ ପଲକକୁ ଉଠେଇ, ବିଜୁଳୀର ଗତିରେ ଲମ୍ଫ ଦେଇ, ବନ୍ଦୀ କରା ଯାଇପାରେ; ପୁଣି ଗୋଟିଏ ଉଦାସୀନ ଦୃଷ୍ଟିରେ ବିଜୁଳୀ ପଡ଼ି ସବୁବେଳ ପାଇଁ ଛଟପଟ ହେବାକୁ ଛଡ଼ା ଯାଇପାରିବ, କେଉଁ ମୃତ୍ୟୁଞ୍ଜୟୀ ଆମନ୍ତ୍ରଣ ପୂର୍ଣ୍ଣ ଦୃଷ୍ଟିରେ, କିପରି କଠୋର-ରୁ-କଠୋର ହୃଦୟ ପୁରୁଷର କଠିଣ ବ୍ୟକ୍ତିତ୍ୱ ଉପରେ ଦିନର ସୀଲ-ମୋହର

ଲଗା ଯାଏ, ଏହି ସବୁକିଛି ମାଣିକ ଶିଖି ନେଇଥିଲା । ଏହା କୌଣସି ଦୂର କରିବା ପାଠ ନୁହେଁ, ସ୍ୱୟଂ ସେହି ଅସାଧାରଣ ବାଳିକାର ହିଁ ଜନ୍ମଜାତ ପ୍ରତିଭା ଅଟେ, ଏହା ମୁନୀର ବୁଝି ପାରିଥିଲା। ତାକୁ ସ୍ୱୟଂ ନିଜ ଦିନ ମନେ ପଡ଼ି ଯାଉଥିଲା ପ୍ରାଣପଣ କରାଯାଇଥିବା ଚେଷ୍ଟାର ଫଳସ୍ୱରୂପହିଁ ସେ ଆଜି ଏହି ସିଂହାସନରେ ବସି ପାରିଥିଲା । ଆତ୍ମଗ୍ଲାନିରେ ଛଟପଟ ହେଇ କେତେ ବିବଶତାରେ ସେ ଚୀନୀ ବର୍ଣ୍ଣାକ୍ଷରୀ ପରି ଦୁରୂହ, ପ୍ରେମର ଏହି ବାର ଅକ୍ଷର ଓ ତାର ମାତ୍ରାଗୁଡ଼ିକ୍ ଶିଖି ପାରି ଥିଲା । ଚାବୁକ-ହଣ୍ଟରର ମାଡ଼ ସହିତ ପଢା ଯାଇଥିବା, ନିଜର ଅଭିଶପ୍ତ ଜୀବନ ପୁସ୍ତକର ଗୋଟିଏ ଗୋଟିଏ ପରିଚ୍ଛେଦର ସ୍ମରଣ କଲାମାତ୍ରେ ସେ ଶିହରି ଉଠୁଥିଲା । ଆଉ ତାହାରି, ରକ୍ତ-ମାଂସ ରେ ତିଆରି ତାହାର ସୁନ୍ଦରୀ କନ୍ୟା, ଯାହାକୁ ବର୍ତ୍ତମାନ ପର୍ଯ୍ୟନ୍ତ ସେ ସମସ୍ତଙ୍କ ସାମନାକୁ ଟବରେ ଲଙ୍ଗଳା ହେଇ ଗାଧୋଉ ଥିବା, ତାହାର ବାଳକ୍ରୀଡ଼ା ଗୁଡ଼ିକରେ ସେ ସମସ୍ତଙ୍କ ମନ ମୋହି ନେଉଥିଲା ଆଜି ଅଚାନକ କୈଶୋର୍ଯ୍ୟର ସୀଡୀରେ ପାଦକୁ ନ ଧରି, ଯୌବନ ଶିଖର ଉପରେ ଛିଡ଼ା ହେଇ ହସୁଥିଲା ।

କାଳୀ କୁତ୍ସିତ ହୀରା ଦିନ ପରେ ଦିନ ଆହୁରି ଅସୁନ୍ଦରୀ ହେଇ ଯାଉଥିଲା । ତାର କୁଞ୍ଚକୁଞ୍ଚିଆ ବାଳ କଳା ଭ୍ରମରର ଟେଢ଼ା-ମେଢ଼ା ପାଦ ପରିହିଁ ଭୟାନକ ହୁଏ, ଦିନ-ରାତି ତେଲ ଲଗେଇଲେ ମଧ ଇଞ୍ଚିଟିଏ ବଢ଼ି ନଥିଲା ଚେଷ୍ଟା କରିବା ପରେ ମଧ ମୁନୀର ତାକୁ କେବେ ମା'ର ପ୍ରେମ ଦେଇପାରି ନଥିଲା । ଏବଂ ହୁଏତ ଏଥିପାଇଁ ସେ ମାତୃ-ପ୍ରେମ-ବଞ୍ଚିତା ଶାନ୍ତ ବାଳିକା ଖରାପ ଭାବରେ ଖନେଇ କହୁଥିଲା । ପନ୍ନାକୁ ଡାକିବା ସମୟରେ ସେ କେବେ ହେଲେ ଖନଉ ନଥିଲା, ସେ ତାହାର କେବଳ ଭଉଣୀ ନଥିଲା, ଏକ ମାତ୍ର ସଙ୍ଗୀ ମଧ ଥିଲା, କିନ୍ତୁ କ୍ରୁର ହୃଦୟା ମାଣିକକୁ କେବେ ଡାକିବାର ଅବସର ଆସିଲେ ସେ ମା-ମା-ମା କହି ଖନେଇ ଲାଲପଡ଼ି ଯାଉଥିଲା ତ ମାଣିକ ନିଜର ରୁକ୍ଷ ହସରେ ତାକୁ ଖରାପ ଭାବରେ ମଚ୍ଛି ଦେଉଥିଲା, "ଚୁପ ହେଇ ଯା କାଳିଆ, ମା-ମା-ମା କହି ଯାଉଥିଲା କଳାକାଠିଆ ପରି ।"

ପନ୍ନା ଓଲଟି କରି ତାହାର ମୁହଁକୁ ଚିମୁଟି ଦେଉଥିଲା, "ତୁମକୁ ଲଜ୍ଜା ଲାଗେ ନାହିଁ ବଡ଼ଅପା, ନିଜର ସହୋଦରା ଭଉଣୀକୁ ଏଇସବୁ କହିବାକୁ ।"

"ଓ, ଇନ୍‌ଡିଡ ।" ନିର୍ଲଜ୍ଜତାରେ ହସ, ମାଣିକ ନିଜର ଧଳା ଆଙ୍ଗୁଳି ଦେଖେଇ କରି କହୁଥିଲା, "ସହୋଦର ? ଆମ ତିନିଜଣ ଭିତରୁ କିଏ କାହାର ସହୋଦରା ଅଟେ, କହତ ଟିକେ ?"

ସହୋଦରା ନ ହେଲେ ମଧ ମାଣିକ ଓ ପନ୍ନାର ସବୁବେଳେ ଭିନ୍ନ ଚେହେରାରେ ମଧ ଆଶ୍ଚର୍ଯ୍ୟଜନକ ରୂପରେ ସାମ୍ୟ ଥିଲା । ଦୁଇଜଣଙ୍କର ଲମ୍ବା ନାକ, ଉଚ୍ଚା କପାଳ, ଉଠିବା-ବସିବା, ହସିବା ଓ ଚାଲିବାର ଭଂଗିମା ଦେଖିଲାମାତ୍ରେ କୌଣସି ଅପରିଚିତ ମଧ କହି ପାରୁଥିଲା ଯେ ଦୁହେଁ ଭଉଣୀ ଅଟନ୍ତି ।

ଅଠର ବର୍ଷରେ ମଧ୍ୟ ମାଣିକ ଓ ପନ୍ନାର ସୌନ୍ଦର୍ଯ୍ୟ ଖ୍ୟାତି, ମୃଗନାଭିର କସ୍ତୁରୀର ସୁଗଂଧକୁ ଲୁଚେଇଲେ ମଧ୍ୟ ଲୁଚୁ ନଥିଲା ।ସୌନ୍ଦର୍ଯ୍ୟର ଅତିରିକ୍ତ ଦୁଇ ଭଉଣୀଙ୍କ ସୁମଧୁର କଣ୍ଠର ଯାଦୁ ବଡ଼-ବଡ଼ ସଂଗୀତ ପରୀକ୍ଷକଙ୍କୁ ଦୋହଲାଇ ଦେଉଥିଲା । ଛୋଟ ପିଲାର କଣ୍ଠରେ ଗାଇଥିବା ଦୁରୂହ ଧ୍ରୁପଦ, ଧୁମାରର ଅନ୍ତରା ଚାରିଗୁଣ ଲୟକାରୀ, ସେଇ ଅନାଡି ବିଦେଶୀମାନଙ୍କୁ ମଧ୍ୟ ମନ୍ତ୍ରମୁଗ୍ଧ କରି ଦେଉଥିଲା, ଯେଉଁମାନେ ସଂଗୀତର ବାରଟି ଅକ୍ଷର ଓ ସେମାନଙ୍କର ମାତ୍ରା ମଧ୍ୟ ଜାଣି ନଥିଲେ ।

ମୁନୀର ଦୁଇଜଣଙ୍କ ଉପରେ କଡ଼ା ନଜର ରଖିଥିଲା । ପ୍ରତ୍ୟେକ ମୁଜରାରେ ସେ ସ୍ୱୟଂ ଉପସ୍ଥିତ ରହୁଥିଲା । ସାହାସ ଥିଲା କି କେହି ସେମାନଙ୍କୁ ଏକ ବିଡ଼ାପାନ ତାର ଅନୁମତି ବିନା ଖୁଏଇଂ ଦେବ । ନିଜର ପେଶାର ସାଥୀମାନଙ୍କ ନୀଚ ସ୍ୱଭାବ ଉପରେ ତାର ଟିକିଏ ମଧ୍ୟ ବିଶ୍ୱାସ ନଥିଲା । କିଏ ଜାଣେ, କିଏ କେବେ ଈର୍ଷା ପରାୟଣ ହେଇ ତାହାର କଣ୍ଠର ଦୁଇଟି ଜାଦୁରାଣୀଙ୍କୁ ପାନର ବିଡ଼ାରେ କାଚ ବା ପାରା ଗୁଣ୍ଡକରି ଖୁଏଇ ଦେବ । କାମ ଏତେ ବଢ଼ି ଯାଇଥିଲା ଯେ ମୁନୀର ଝିଅମାନଙ୍କ ସହିତ ଦିନ-ରାତି ଲାଟ କମିଶନର ଗସ୍ତରେ ବାହାରେ ହିଁ ରହୁଥିଲା । ଥରେ ଏମିତି ହିଁ ଜଣେ ତାଲୁକଦାରର ଝିଅର ବିବାହକୁ ମୁନୀର ତିନି ଝିଅଙ୍କୁ ନେଇ କରି ଯାଉଥିଲା । ଏତେ ବର୍ଷ କଟି ଯାଇଥିଲେ ମଧ୍ୟ ପନ୍ନା ସେହି ଭୟାବହ ରାତିକୁ ଭୁଲି ପାରି ନଥିଲା । ସାମନାରେ ଆସୁଥିବା ସାଇକିଲରେ ଚଢ଼ି, ତିନି ସାଇକିଲ ଚଲଉଥିବା ଲୋକଙ୍କୁ ବଞ୍ଚେଇବାକୁ ଯାଇ, କାରରେ ବସିଥିବା ତିନି ପ୍ରାଣୀଙ୍କ ଆହୁତି ଦେବାକୁ ପଡ଼ିଥିଲା । ରାଜା ସାହେବଙ୍କ ଡ୍ରାଇଭର, ମୁନୀର ଓ ହୀରା । ପଲକ ପଡିବାମାତ୍ରେ ହିଁ ସବୁ କିଛି ଘଟି ଯାଇଥିଲା । କେତେଦିନ ପର୍ଯ୍ୟନ୍ତ ପନ୍ନା ମା'ର ରକ୍ତରେ ଜୁଡୁବୁଡୁ ଦେହ, ହୀରାର ଖପୁରି ପରି ଫଟା ମୁଣ୍ଡକୁ ମନେ ପକେଇ, ନୀଦରେ ଚମକି ପଡ଼ି ଚିତ୍କାର କରୁଥିଲା । ବଡ଼ ଅପା ତାକୁ ନିଜ ପଲଙ୍କକୁ ଟାଣି ନେଇ ଛାତିରେ ଲଗେଇ ଦେଉଥିଲା ।

"କାହିଁକି କାନ୍ଦୁଛୁ ପନ୍ନା, ଆମ୍ମା ଚାଲିଗଲାତ କଣ ହେଲା । ମୁଁ ତ ଅଛି ।" ଆଉ ସତ ବଡ଼ ଅପା କେତେ ସ୍ୱାଭାବିକ ଭାବରେ ମା'ର ଆସନ ଗ୍ରହଣ କରି ନେଇଥିଲା । ଯେଉଁ ଦକ୍ଷତା ସହିତ ସେ ଆମ୍ମାର ବ୍ୟବସାୟ ସମ୍ଭାଳି ନେଇଥିଲା, ତାକୁ ଦେଖିକରି ଅତ୍ୟନ୍ତ ଚତୁର କର୍ମଚାରୀ ମଧ୍ୟ ଆଶ୍ଚର୍ଯ୍ୟ ହେଇଗଲେ । ମୁନୀରର ଅନୁପସ୍ଥିତିରେ ଦୁଇଟି ମୂର୍ଖ କିଶୋରୀଙ୍କୁ ଅଙ୍ଗୁଳୀରେ ନଚେଇବାର ସେମାନଙ୍କର ସମସ୍ତ ଯୋଜନା ଉପରେ ତୁଷାର ପାତ ହେଇଗଲା । ସେଠାରେ ଟିକି ମାଣିକ, ଓଲଟା ସେମାନଙ୍କୁ ଅଙ୍ଗୁଳୀରେ ନଚେଇବାକୁ ଲାଗିଲା । ପୁରୁଣା ଗ୍ରାହକ, ପୁରୁଣା ଦୋକାନର ନୂତନ ସାଜ-ସଜ୍ଜା, ଚମକ-ଧମକ, ସୁରୁଚିପୂର୍ଣ୍ଣ ବ୍ୟବସ୍ଥା ଦେଖିକରି ପରମ ସନ୍ତୁଷ୍ଟ ଥିଲେ । ତୃଟିହୀନ ସେବାର ଉତ୍ତରୋତ୍ତର ଦାମ ଦେବାକୁ ସେମାନଙ୍କୁ କୌଣସି ପ୍ରକାରର ଆପତ୍ତି ନ ଥିଲା । କେବଳ ଏତିକି ନୁହେଁ କେବେ କେବେ ତ ଅତିଥିମାନଙ୍କ ସଂଖ୍ୟା

ଆକସ୍ମାତ ହିଁ ଏତେ ବଢ଼ିବାକୁ ଲାଗିଲାଯେ ଦକ୍ଷ ବ୍ୟବସାୟୀ ମାଣିକକୁ ନିଜର ବିଦେଶୀ ଅତିଥିମାନଙ୍କୁ ପରିମାର୍ଜିତ ରୁଚିର ବିଶେଷ ଧ୍ୟାନ ରଖୁଥିଲେ, ଜାପାନୀ ଏବଂ ବରମୀ ପରିଚାରିକାମାନଙ୍କ ନିଯୁକ୍ତି ମଧ୍ୟ କରିବାକୁ ପଡ଼ିଲା । ସେମାନଙ୍କର କୁଟିଳ ମସ୍ତିଷ୍କର କୁଟିଳତା ଏବଂ ଦିନରାତିର କଳହ ଦେଖି କେବେ କେବେ ପନ୍ନା ବିବ୍ରତ ହେଉଥିଲା, କିନ୍ତୁ ମାଣିକ ନିଜର ସେହି ଦର୍ଶନୀୟ କାଠପୁତୁଳିମାନଙ୍କୁ ବହୁତ ଚତୁରତା ସହିତ ନଚଉଥିଲେ, ଉଠଉଥିଲା, ପକଉଥିଲା, ବର୍ତ୍ତମାନ ସେ ନିଜେ କମ ବାହାରକୁ ଯାଉଥିଲା । ବହୁତ ଅନିଚ୍ଛା ସହିତ ପନ୍ନାକୁ ରାଜ୍ୟର ଯଜମାନୀ ପରମ୍ପରା ରକ୍ଷା କରିବା ପାଇଁ ଏଠାକୁ ସେଠାକୁ ଯିବାକୁ ପଡୁଥିଲା ।

ଏମିତି ହିଁ ଗୋଟିଏ ଜଲସାରେ ତାର ପରିଚୟ ବିଧୁତ ରଂଜନ ସହିତ ହେଇଥିଲା । ଯୁବା ବିଧୁରଂଜନ ଇନ୍ଦୋରର ରାଜକୁମାର କଲେଜର ପ୍ରତିଭାଶାଳୀ ଛାତ୍ର ଥିଲା । ପିତା ଥିଲେ ବେଙ୍ଗଲର ଗୋଟିଏ ଛୋଟ ରାଜ୍ୟର ରାଜା, ଆଉ ମା ଥିଲେ ସେ ରାଷ୍ଟ୍ରର କାଠୀବଂଶର ରାଜକନ୍ୟା । ବିଳାସୀ ପିତାର ସ୍ୱଭାବ ଏବଂ ମା'ର ଅନୁପମ ଲମ୍ୱା-ଚଉଡ଼ା ସୁଗଠିତ ଦେହର ବିଧୁତ ରଂଜନକୁ ଉତ୍ତରାଧିକାରି ସୂତ୍ରରେ ମିଳିଥିଲା । ପନ୍ନାକୁ ପ୍ରଥମ ଦୃଷ୍ଟିରେ ଦେଖି ବିଧୁତରଞ୍ଜନ ମୁଗ୍ଧ ହେଇ ଯାଇଥିଲେ । ମା'ର ଭୟରେ ବର୍ଷେ ପର୍ଯ୍ୟନ୍ତ ପ୍ରଣୟର ଆଦାନ-ପ୍ରଦାନ ଲୁଚି-ଛପିକରି ହିଁ ଚାଲୁଥିଲା । କେତେ ମାସ ପର୍ଯ୍ୟନ୍ତ ସେ ହଳଦିଆ କୋଠୀରେ ପଡ଼ି ରହୁଥିଲା । କାହାରିକୁ ଏ ଖବର ଜଣା ନଥିଲା, କିନ୍ତୁ ଦିନେ ଜଣାନାହିଁ କେମିତି ପ୍ରଭାବଶାଳୀ ଚତୁର ମା'ର ଲୁଚିଥିବା ଗୋଇନ୍ଦା ତାକୁ ଧରି ନେଲେ ରାତ-ରାତି, ଦକ୍ଷିଣର କୌଣସି ବଡ଼ ରାଜ୍ୟର ଶ୍ୟାମଳ କୃଷ୍ଣବର୍ଣ୍ଣ ରାଜକନ୍ୟା ସହିତ ତାର ବାହାଘର ମଧ୍ୟ କରିଦେଲେ । କିନ୍ତୁ ନୂଆ ବହୁର ଦକ୍ଷିଣୀ ଆଖି, ଶ୍ୟାମଳ କୃଷ୍ଣବର୍ଣ୍ଣ ବିଶିଷ୍ଟ ସୁନ୍ଦର ଚେହେରା ଏବଂ ମା'ର କଠୋର ଅନୁଶାସନ ମଧ୍ୟ ବିଧୁତରଂଜନକୁ ବହୁତ ଦିନପର୍ଯ୍ୟନ୍ତ ବାନ୍ଧି ପାରି ନଥିଲା । ଯେଉଁ-ଯେଉଁ ସ୍ଥାନକୁ ପନ୍ନା ଯାଉଥିଲା, ସେ ତାର ଛାୟାହେଇ ଘୁରି ବୁଲୁଥିଲା । କେବେ କେବେ ମାଣିକ ପନ୍ନାର ଅଳ୍ପବୁଦ୍ଧି ପାଇଁ ବିରକ୍ତ ହେଉଥିଲା । ଏହି ପଇସାରେ କେମିତି ଗୋଟିଏ ବ୍ୟକ୍ତି ସହିତ ଏମିତି ବାନ୍ଧିହେଲେ କାମ ଚାଲିବ କି ?

"ତୋର ପ୍ରେମୀତ କୌଣସି ରାଜନୈତିକ ଦଳର ନେତା ମଧ୍ୟ ଅଛି ନାରେ ? ତେବେ ମଧ୍ୟ ସେ କାହିଁକି ବୁଝେ ନାହିଁ ? ତାର ଏବଂ... ତାର ଏବଂ ମୋର ପେଶାତ ଅନେକ କିଛି ଏକ ପ୍ରକାର ଅଟେ ।" ମାଣିକ କହୁଥିଲା ।

ବିଧୁତରଂଜନ ବଡ଼ ଦୂରଦର୍ଶୀ ବ୍ୟକ୍ତି ଥିଲା । ସେ ଜାଣିଯାଇଥିଲା ଏକ ନା ଏକ ଦିନ ଲାଇମୁହଁ ଶାସନକର୍ତ୍ତା କୁ ସୁନାର ପକ୍ଷୀର ମୋହ ତ୍ୟାଗକରି ନିଜର ଇଉନିୟନ ଜେକକୁ ହିଁ କଫନ ଘୋଡ଼େଇ ହେବାକୁ ପଡ଼ିବ । ଏଥିରେ ସେ ବିଦେଶୀ ବେଶ-ଭୂଷାକୁ ସ୍ୱଇଚ୍ଛାରେ ତ୍ୟାଗ କରି, ଖଦଡ଼ର ଧୋତି-କୁର୍ତ୍ତାର ପରିଧାନ ଗ୍ରହଣ କରି

ନେଇଥିଲେ । ପ୍ରଥମ ଦିନ ସେ ବଗର ପରପରି ଧଳା ମୋଟା ଧୋତି, କୁରତା ଏବଂ ଜବାରହକଟ ବାସ୍କଟ ପିନ୍ଧି କରି ଆସିଲାତ ମାଣିକ ତାହାର ଉଠିବା ବସିବା କଠିନ କରିଦେଇ ଥିଲା ।

"ଦେଖ, ସତୁରି ମୂଷା ଖାଇକରି ଆମର ପନ୍ନାର ବିଲେଇ ହଜ କରିବାକୁ ଯାଉଛି । ମିଆଁ, ଏହି ଟୋପୀ ନ ପିନ୍ଧିଥିଲେ ଚଳିଥାନ୍ତା ।" ସାରଂଗୀର ଏକ ଗଜ ଲମ୍ବ ତାର ଗୋଜିଆ ଟୋପିକୁ ସେ ଏମିତି ଲଗେଇ ଦେଲା ଯେମିତିକି ମରି ଯାଇଥିବା ପକ୍ଷୀଟିଏ । କିନ୍ତୁ ଆଜି ସେହି ଟୋପୀ ବିଧୁରଂଜନକୁ ମହିମାମୟ ପଦ ପର୍ଯ୍ୟନ୍ତ ପହଞ୍ଚେଇ ଦେଇଥିଲା । ଥରେ ମାତ୍ର ଜେଲ ଯାତ୍ରା ତା ପାଇଁ ସ୍ୱର୍ଗର ଦ୍ୱାର ହେଇଯାଇଥିଲା ।

ସେହି ବ୍ୟକ୍ତିର କୁଟିଳ ସ୍ୱାର୍ଥ ସ୍ୱଭାବକୁ ପନ୍ନା ଚିହ୍ନି ନଥିଲା, ଏମିତି କଥା ନୁହେଁ । ସେ ଏହା ମଧ୍ୟ ଜାଣିଥିଲା ଯେ ତାର ସୁନାର ଅଣ୍ଡା ଦେଉଥିବା ତାଟିଆ, ନିଜର ଥରକୁ ଥର ମା'ଘରକୁ ଯାତ୍ରାରୁ ଅସରଫି ଭରା ମୁଣା ନେଇ ଫେରୁଥିଲା । ଏ ଦିଗରେ ପାଞ୍ଚ ବର୍ଷରେ ପତିକୁ ଗୋଟିଏ ସ୍ୱଚ୍ଛ ପୁତ୍ର ଏବଂ ଦୁଇଟି ସୁନ୍ଦରୀ କନ୍ୟା ଦେଇ ସେ ନିଜ ଗୃହସ୍ଥିର ମୂଳଦୁଆକୁ ଦୃଢ଼ କରିପାରିଥିଲା । ତେବେ ମଧ ଲକ୍ଷେ ଥର ଚାହିଁଲେ ମଧ ପନ୍ନା ପରି ଜାଦୁ କରିପାରୁଥିଲା ବ୍ୟକ୍ତିଦ୍ୱରୁ ସମ୍ବନ୍ଧ ବିଚ୍ଛେଦ କରି ପାରିନଥିଲା । ଦୁହିଁଙ୍କ ଭିତରେ ଝଗଡ଼ା ହେଲେ କେବେ କେବେ ପନ୍ନାର ମନକୁ ଆସୁଥିଲା, ତାର ଛାତି ଉପରେ ଚଢ଼ି ନିଜର ସେହି ଅହଂକାର, ଅଭିମାନୀ ପ୍ରେମୀର ଗଳା ଟିପି ଦେବାକୁ । କିନ୍ତୁ ଅନ୍ୟ କ୍ଷଣରେ ତାହର ଆଲିଙ୍ଗନ ଫାଶରେ ସେ ନିଜର କ୍ରୋଧ, କଳଙ୍କ ଓ ଅପମାନ ଭୁଲି ଯାଉଥିଲା । କିନ୍ତୁ ଆଜି କୋଡ଼ିଏ ବର୍ଷର ଅଟଳ ପ୍ରତିଦ୍ୱନ୍ଦ୍ୱିତା ପ୍ରେମର ଆଡମ୍ବର ପୂର୍ଣ୍ଣ ବିଶାଳ ମହଲ, ଦୁର୍ଭାଗ୍ୟର ଗୋଟିଏ ଭୂକମ୍ପ ଧକ୍କାରେ ଗଡ଼ଗଡ଼ ହେଇ ପଡ଼ି ଯାଇଥିଲା । ସେହି ହୃଦୟହୀନ ବ୍ୟକ୍ତି ତାକୁ ଦୁର୍ଦ୍ଦିନର ଜୁଆର-ଭଟ୍ଟାରେ ବୁଡ଼ିଯାଇଥିବା-ଉଠି ଯାଉଥିବା ଅବସ୍ଥାରେ ଏକାକୀ ଛାଡ଼ିକରି କେତେ ଦୂରକୁ ପଳେଇ ଯାଇଥିଲା ।

ପ୍ରଥମ ଯୌବନର ଉତ୍ତାଳ ସମୁଦ୍ରରେ ଯେତେବେଳେ ଦୁହେଁ ସମୟର କାତକୁ ଦୂରକୁ ଫୋପାଡ଼ି ଦେଇ, ଆନନ୍ଦରେ ବିଚଳିତ ହେଇ ଡଙ୍ଗାରେ ପହଁରୁ ପହଁରୁ, ଅଧା ଦୂରତା ପାର କରି ପକେଇଥିଲେ, ସେତେବେଳେ ମଝିଧାରରେ ହିଁ ତୁଫାନର ଆଭାସ ପାଇକରି କୃଷ୍ଣଳୀ ନୋଳିଆ ଡଙ୍ଗାରୁ ଡେଇଁପଡ଼ି ପହଁରି ପହଁରି ତୀରରେ ଲାଗିଯାଇଥିଲା । ରହି ଯାଇଥିଲା କେବଳ ବୁଡ଼ି ଯାଉଥିବା ଡଙ୍ଗା ଓ ଭୟରେ ଥରୁଥିବା ଅସହାୟ ସହଚରୀ । ଚାଳିଶ ବର୍ଷରେ ପନ୍ନା ମା ହେବ । ଏହି ହାସ୍ୟାସ୍ପଦ ପରିସ୍ଥିତିକୁ ଲଜ୍ଜାରେ ସେ ସ୍ୱୟଂ ସଂକୁଚିତ ହେଇ, ମାଟିରେ ପଡ଼ି ଯାଇଥିଲା । କେମିତି ବିଡ଼ମ୍ବନା ଥିଲା ? କେମିତି କହିବ ବଡ଼ ଅପାକୁ ? କଣ କହିବେ ବଡ଼ ଅପା ଆଉ ବିଧୁରଂଜନ ? ପାଞ୍ଚମାସ ପର୍ଯ୍ୟନ୍ତ ପନ୍ନା କାହାରିକୁ କିଛି କହି ନଥିଲା । ତାହାର ସମତଳ ଚତୁର ଦେହକୁ

ଦେଖିକରି, କୌଣସି ଅନୁଭବି ହୁଏତ ତାହାର ଅବସ୍ଥାର ଅନୁମାନ କରିପାରିଥାନ୍ତା, କିନ୍ତୁ ସେଠାରେ ଅନୁଭବ କାହାର ଥିଲା । ସେ ଦିଗରେ ମାଣିକ ନିଜର ଦଳ-ବଳକୁ ନେଇକରି ଆଜମିର ଶରିଫର ଉର୍ଦ୍ଧ୍ୱକୁ ଚାଲି ଯାଇଛି । ଜାଣେ ସେ ଦୁଇ ଭଉଣୀଙ୍କ ମଧ୍ୟରେ ମଝିରେ ମଝିରେ କଳିକଜିଆ ହୁଏ । ପନ୍ନାର ଜୟପୁରୀ ଘରାନେର କଥକ ନୃତ୍ୟର ପ୍ରସିଦ୍ଧି ତେବେ ଦୂର-ଦୂରାନ୍ତର ଯାଏଥିଲା । ମାଣିକର ମା'ର ଗୋଟିଏ ପୁରୁଣା ମିତ୍ର ଆଦେଶ ଦେଇଥିଲେ ଯେ ତାଙ୍କର ନାତିର ବାଳକଟା ହେବା ଉତ୍ସବରେ ପନ୍ନା ନିଜର ସେହି ବହୁଚର୍ଚ୍ଚିତ ନୃତ୍ୟ ପ୍ରଦର୍ଶିତ କରୁ-

'ବାଲମ ମୋରେ ଭୋଲେ ରେ
ମେ କିସ ପର କରୁ ଗୁମାନ ।'
('ମୋର ପ୍ରେମୀ ଭୋଳାରେ, ମୁଁ କାହା ଉପରେ କରିବି ଅଭିମାନ')

ଯାହାକୁ ଦେଖି ସେ ତାକୁ ବହୁତ ଆଗରୁ ଲମ୍ବା ବେକ ଥିବା କୁକୁଡ଼ା ଜାତୀୟ ଏକ ବଡ଼ ପକ୍ଷୀର ଅଣ୍ଡାରୁ କେମିତି ମୋତିର ମାଳା ସ୍ୱୟଂ ପିନ୍ଧେଇ ଦେଇଥିଲା ।

କିନ୍ତୁ ପନ୍ନା ଜୀବନରେ ପ୍ରଥମ ଥର ନିଜର ପ୍ରତିଭାଶାଳୀ ବଡ଼ ଅପାଙ୍କର ଆଜ୍ଞାର ଉଲଂଘନ କରି ଦେଲା, "ନା ବଡ଼ ଅପା, ଏଥର ମୁଁ କେଉଁଠାରେ ନାଚି ପାରିବି ନାହିଁ, ତୁମେ ରୋଶନୀକୁ ପଠେଇ ଦିଅ ।"

"କଣ ? ମୁଣ୍ଡ ଖରାପ ହେଇଗଲାଣି ତୋର ? ଜାଣୁ ନାହିଁକି ଆଉ ସାରା ବର୍ଷର ଅନ୍ନଜଳ- ଦୁଧ, ଦହି, ଘିଅ, କେଉଁଠାରୁ ଆସେ ?କେତେ ସମ୍ମାନ ଦିଅନ୍ତି ରାୟ କାକା । ଆଜି ସେ ଗୋଟିଏ ସାମାନ୍ୟ ଅନୁରୋଧ କଲେ ଆଉ ତୁ ନାଚି ପାରିବୁ ନାହିଁ ?"

"ନା ବଡ଼ଅପା", ପନ୍ନା କାକୁତିମିନତି କଲା, "ତୁମର ପାଦ ଛୁଉଁଛି ଏଥର, ମତେ ଏଥର କ୍ଷମା କରିଦିଅ, ମୁଁ ନାଚି ପାରିବି ନାହିଁ..."

"କାହିଁକିରେ, ଦେହତ ଖରାପ କରି ବସି ନାହୁଁ କେଉଁଠି ?" ବଡ଼ ଅପାର ସନ୍ଦିଗ୍ଧ ଦୃଷ୍ଟି ତାର ପେଟର ଆୟତନର ମଧ୍ୟ ଯେମିତି ଏକ୍ସରେ କରି ଥୋଇ ଦେଲା । ଯଦି, ପନ୍ନା ସେହି ଶୁଭ ଅବସର ହଜେଇ ନଥାନ୍ତା । ବଡ଼ ଅପାକୁ ସେତେବେଳେ ପରିଷ୍କାର କରି ଦେଇଥିଲେ ହୁଏତ କଥାଟା ତିଳରୁ ତାଳ ହେଇ ନଥାନ୍ତା ।

"ନା ବଡ଼ ଅପା, ଏମିତି କୌଣସି କଥା ନୁହେଁ", ସେ କହି ଦେଇଥିଲା ।

"ତେବେ ? ତେବେ କାହିଁକି ନାଚିବୁ ନାହିଁ ? କଣ ତୋର ମାଲିକ ନାଚିବା-ଗାଇବା ପାଇଁ ମନା କରି ଦେଇଛି ? ଯଦି ସେମିତି କଥା ଭଉଣୀ, ଗୋଟିଏ ଲମ୍ବା ଶ୍ୱାସ ନେଇ ମାଣିକ ତାକୁ ବାହୁରେ ଜାବୁଡ଼ି ଧରିଥିଲା, "ତେବେ ତ ତାହାକୁ ପରିଷ୍କାର ଭାବରେ କହିଦେବୁ, ଆମର ଶରୀର କଣ ଗୋଟିଏ ପୁରୁଷର ଚାଦରରେ ବନ୍ଧା ହେଇ ରହି ପାରିବ ? ସେତ ସବୁ ସମୟରେ, ସବୁ ଦିନ ଖୋଲି ଖୋଲିକରି ନୂଆ ନୂଆ ଚାଦରର ଗଣ୍ଠିରେ ବନ୍ଧାହେଇ ରହେ । ଆମେ ପ୍ରତ୍ୟେକ ଚାଦରର ଗଣ୍ଠି ସହିତ ଏମିତି

ହିଁ ଟାଣିହେଇ ଯାଉତ ହେଇଗଲା ।"

ପନ୍ନା ମୁଣ୍ଡ ନଇଁ କାନ୍ଦିବାରେ ଲାଗିଥିଲା । ଓହୋ, ତେବେ ବିଧୁତରଂଜନ ହିଁ ମନା କରିଥିବ, ବୁଝିଥିଲା ମାଣିକ ।

"ଗ୍ରାହକ କେତେହିଁ ସମୃଦ୍ଧ ହେଇଥାଉ ନା ପନ୍ନା" ସେ ଅନୁଭବୀ ସ୍ୱରରେ କହିବାକୁ ଲାଗିଲା, "ଅଭିଜ୍ଞ ଦୋକାନୀ କଣ ସେହି ଗୋଟିଏ ଗ୍ରାହକର ଭରଷାରେ ନିଜର ଦୋକାନ ଚଳାଏ ? ତୁ କିଛି କହିବୁ ନାହିଁ, ମୁଁ କଥା ହେବି ବିଧୁତରଂଜନ ସହିତ । ଭାରି ଆସିଛନ୍ତି ହୁକୁମ ଦେଲାବାଲା । ଅଧା ବୟସ ଶେଷ ହୋଇଗଲା, ବର୍ତ୍ତମାନ ଆମକୁ ସତୀ କରିବାକୁ ଚାଲିଛି ।" କିନ୍ତୁ ମାଣିକ ଯେତେହିଁ ମିଠା କଥାରେ ତାକୁ ଫୁସଲଉ ଥିଲା, ସେ ସେତିକି ଜିଦଖୋର ହେଇଥିଲା । ଶେଷରେ ମାଣିକ ମଧ୍ୟ ଧୈର୍ଯ୍ୟ ହରେଇ ଥିଲା । ଏମିତି ନିରର୍ଥକ ବିନତୀ-ପ୍ରାର୍ଥନା କରିବା ତାର ଅଭ୍ୟାସ ନଥିଲା ।

"ଠିକ୍ ଅଛି" ସେ ପନ୍ନା ସମ୍ମୁଖକୁ ଶରୀରକୁ ବୁଲେଇ ଛିଡ଼ା ହେଇ ଯାଇଥିଲା । "ମୋ ସହିତ ରହିବୁ ଯଦି ରୁଦ୍ରାକ୍ଷର ମାଳା ଜପକରି ରହି ପାରିବୁ ନାହିଁ । କାଲି ହିଁ ନିଜ ବିଧୁତରଂଜନ ସହିତ ଚାଲିଯା । ମୁଁ ମଧ୍ୟ ଦେଖିନେବି । କେମିତି ସେ ତମର ତଳି ପଡ଼ିଥିବା ବୟସର ଆଙ୍ଗୁଠି ଧରିବ । ସତରକୁ ରାୟ କକାଙ୍କ ଘଣ୍ଟେ ବାଜ ପଡ଼ିବ, ପନ୍ଦରକୁ ମୁଁ ଫେରିବି । ସେତେବେଳକୁ ତମେ ନିଶ୍ଚୟ କରି ନେବାକୁ ହେବ । ତମକୁ ମୁଦରାଇ ବୟନା ସ୍ୱୀକାର କରିବ, ଅଥବା ମୋର କୋଠୀ ଖାଲି କରିଦେବ । ବୁଝିଲ ? କୋଠୀ କାହାର ଅଟେ, ତମକୁ ଜଣା ଅଛି ।" ନିଜର ଅନ୍ତିମ ଅବ୍ୟର୍ଥ ବାଣ ମର୍ମସ୍ଥଳରେ ଲାଗିଲା, ସେ ଜିଦକରି ନିଜ ଘରକୁ ଚାଲିଗଲା ।

କୋଠୀ କାହାର ଥିଲା, ଏହା ପନ୍ନା କୋଡ଼ିଏ ସାଲ ଆଗରୁ ଜାଣି ସାରିଥିଲା । ମାଣିକର ରାଣା ପିତା କୋଠୀ ତିଆରି ହେବା ମାତ୍ରେ ତାକୁ ନିଜ ଝିଅ ନାମରେ କରି ଦେଇଥିଲା । ହୁଏତ ଦୂରଦର୍ଶୀ ରାଣା ବହୁ ଆଗରୁ ଜାଣି ସାରିଥିଲା ଯେ ମୁନୀର ପରେ ତାର ସର୍ବାଧିକାର କେବେ ସୁରକ୍ଷିତ ରହି ପାରିବ ନାହିଁ । ଦ୍ୱିତୀୟ ଦିନରେ ହି ଚଟ କରି ମାଣିକ ଚାବିର ଗୁଚ୍ଛା ଛନ୍ନଠାରୁ ନେଇକରି ଚାଲି ଯାଇଥିଲା । ବଡ଼ଅପାକୁ ସେ ଖୁବ ଚିହ୍ନିଥିଲା । ଲକ୍ଷେ ରୁଷିଲେ ଗେହ୍ଲି ଭଉଣୀର ବିଯୋଗ କଣ ସେ ସହି ପାରିବ ? ଆଜି ପର୍ଯ୍ୟନ୍ତ ଏକ ନିଷ୍ପତ୍ତି ମଧ୍ୟ ସେ କଣ ତାହା ବିନା ନେଇ ପାରିଛନ୍ତି ? ପୁଣି ବଡ଼ ଅପା ତାହା ପାଇଁ କେତେକେଣ ମଧ୍ୟ ତ୍ୟାଗ କରି ନାହାନ୍ତି ?

ଢାକାର ପ୍ରସିଦ୍ଧ ଜମିଦାର ରହମତୁଲ୍ଲା ବଡ଼ଅପାଙ୍କ ଦିଲ୍ଲୀ ଦରବାରର ପ୍ରସିଦ୍ଧ ମୁସାହିବ ଥିଲେ । ମୁନୀରର ମୃତ୍ୟୁର ତୃତୀୟ ଦିନ ହିଁ ସେ ବଡ଼ ଅପା ପାଖକୁ ବିବାହ ପ୍ରସ୍ତାବ ନେଇକରି ଆସିଥିଲେ ଆଉ ସେ ଲକ୍ଷେ ମୁଣ୍ଡ ପିଟିଲା ପରେ ମଧ୍ୟ ବଡ଼ ଅପା ରାଜୀ ହେଇ ନଥିଲେ । ବିଧୁର ରହମତୁଲ୍ଲାର ଦର୍ଶନୀୟ ବ୍ୟକ୍ତିତ୍ୱ, ଅତୁଟ ବୈଭବ ଆଉ

ଉଦାର ସରଳ ସ୍ୱଭାବର ସାହାଯ୍ୟରେ ବଡ଼ ଅପା ସମ୍ଭ୍ରାନ୍ତ ଜୀବନ ବିତେଇ ପାରିଥାନ୍ତେ ।

"ମୁଁ ତୁମକୁ ଏମିତି ଯାଗାକୁ ନେଇଯିବି ମାଣିକ, ଯେଉଁଠାରେ କେହି ଯଦି ତମର ଅତୀତ ଜୀବନର ପରଦା ଉଠାଇବାକୁ ଚେଷ୍ଟା ମଧ୍ୟ କରିବ, ତାହାହେଲେ ମୁଁ ତାହାର ଆଖି ଉପାଡ଼ି ଦେବି ।" ସେ କହିଥିଲେ, ଏବଂ 'କଣ ନିଜ ଆଖି ମଧ୍ୟ ଉପାଡ଼ି ପାରିବେ ସରକାର ?" ଦୁଷ୍ଟବୁଦ୍ଧିରେ ହସିକରି ମାଣିକ ଛୋଟ ଭଉଣୀ ସାମନାରେ ହିଁ ରହମତୁଲ୍ଲାର କୋଳରେ ମୁଣ୍ଡ ରଖିକରି ଶୋଇପଡ଼ିଥିଲା ।

"ମୁଁ ସବୁଦିନ ପାଇଁ ତମରି ହେଇ 'ବେତାଳ ମସୂଦ' ରେ ଆସିଯିବି ଯଦି ତୁମେ ଦିନ-ରାତି ମୋର ଜିନ୍ଦଗୀର ପରଦା ଉଠେଇ ଅବଲୋକନ କରିବ, ଆଉ ପୁଣି ଏହାର କଣ ହେବ ?" ସେ ପନ୍ନାକୁ ନିଜ ଆଡ଼କୁ ଟାଣି ନେଇ ପଚାରିଥିଲେ ।

"କାହିଁକି ? ମୋର ଶାଳୀ ପାଇଁ ମୋର ଏତେ ବଡ଼ ଅନ୍ତଃପୁରରେ କଣ ଗୋଟିଏ କୋଠରୀ ମିଳିବ ନାହିଁ ?" ରହମତୁଲ୍ଲାର ଭାରି ନିଶ ରେଖା ହେଇ ଯାଇଥିଲା ।

"ବେଶ ମିଆଁ ରହିଗଲ ବୁଦ୍ଧୁକୁ ବୁଦ୍ଧୁ । ଏହି ଚେହେରା ଦେଖୁଛ ? ଏହି ମୂଲ୍ୟ ଅଙ୍କା ହେଇଥିବା ଇସକା ? ତମ ଅନ୍ତଃପୁରର ଗୋଟିଏ କୋଠରୀରେ ତ ଏହାର ପାଦର ଗୋଟିଏ ଯୋତା ରହିପାରିବ ନାହିଁ । ଏମତି ସୁନ୍ଦରୀ ଭଉଣୀକୁ ଯୌତୁକରେ ନେଇଯିବି, ଏମିତି ମୂର୍ଖ ନୁହଁ ରାଣୀର ଝିଅ ।" ରହମତୁଲ୍ଲା ସେହି ରାତିରେ ଅଭିମାନ କରି ହାଇଦରବାଦ ଚାଲିଗଲେ ଏବଂ ସେଠାରୁ ନିଜର କାକାଝିଅ ଭଉଣୀକୁ ବାହା ହେଇ ଆଣିଥିଲେ । ନିଜର ଅଳ୍ପ ବୟସ୍କ ଯୁବତୀର ପ୍ରେମରେ ବୁଡ଼ିରହି ମଧ୍ୟ ହୁଏତ ବଡ଼ଅପାକୁ ସବୁବେଳେ ପାଇଁ ଭୁଲି କରି ରହିଯାଇଥିଲେ ।

ପନ୍ନା ନଥିଲେ ହୁଏତ ବଡ଼ଅପା ଆଜି ବେଗମ ରହମତୁଲ୍ଲା ହେଇଥାନ୍ତା । ଏମିତି ସ୍ନେହୀ ବଡ଼ ଅପାକୁ ପନ୍ନା ଏତେ ବଡ଼ କଳଙ୍କ ଲୁଚେଇଲା କାହିଁକି ? ପନ୍ନା ଗଭୀର ଚିନ୍ତାରେ ବୁଡୁଥିଲା- ଉଠୁଥିଲା, ନିଜ କୋଠରୀରେ ଶୋଇ ରହିଲା । ଦୁଇ ତିନିଥର ଆସି ଖାନସାମା ଖାଇବା ପାଇଁ ପଚାରି ଫେରିଗଲା । ପାଣି ମଧ୍ୟ ତାର କଣ୍ଠର ତଳକୁ ଯାଉ ନଥିଲା । ଯେତେହିଁ ସେ ଭାବୁଥିଲା, ଭବିଷ୍ୟର ଅନ୍ଧକାର ସେତେହିଁ ଭୟାବହ ହେଇ ତାକୁ ନିଜ ଭିତରେ ସଂକୁଚିତ କରୁଥିଲା । ଦ୍ୱିପ୍ରହରକୁ ବିଧୁତରଂଜନ ସ୍ୱୟଂ ହିଁ କେଉଁଠୁ ଆସି ପହଞ୍ଚିଲେ । ବଡ଼ ଝିଅର ଶ୍ୱଶୁର ଘରର ଟେଲିଗ୍ରାମ ପାଇ ଦଉଡ଼ି ଯାଇଥିଲେ । କୋଇଁର ଶିକାର ଯାତ୍ରାରେ ହାତୀର ପିଠିରୁ ପଡ଼ିଯାଇ, ହାତର ହାଡ଼ ଭାଙ୍ଗି ଯାଇଥିଲା । ସେଠାରୁ ଫେରୁଥିଲେ । ପାଟଣାରେ ଅନ୍ୟ ଗାଡ଼ି ପାଇଁ ତାକୁ ଚାରି ଘଣ୍ଟା ରହିବାକୁ ପଡୁଥିଲା । ପନ୍ନାକୁ ବହୁଦିନରୁ ଦେଖି ନଥିଲେ, ଭାବିଲେ, ହଠାତ୍ ପହଞ୍ଚି ତାକୁ ଆଶ୍ଚର୍ଯ୍ୟ ଚକିତ କରିଦେବେ । ପନ୍ନାର ସ୍ନିଗ୍ଧ ହସ, ମଧୁର ସମ୍ଭାଷଣ ଆଉ ତ୍ରୁଟିହୀନ

ସେବା, ଅଶୁଭ ଯାତ୍ରାର ସମସ୍ତ କ୍ଳାନ୍ତି ଦୂର କରିଦେବ । କିନ୍ତୁ ହଳଦିଆ କୋଠୀର ନିରବତା ଦେଖିକରି ତାଙ୍କର ମୁଣ୍ଡରେ ଯନ୍ତ୍ରଣା ହେଲା । ନା ତବଲାର କରାଘାତ, ନା ଘୁଙ୍ଗୁରର ଝଂକାର, ନା ମିଠା ଗଳାର ହସ । ଜାଣି ପାରିଲେ ବଡ଼ଅପା ଝିଅମାନଙ୍କୁ ନେଇ ଉର୍ସ ଯାଇଛି । ଛୋଟ ଅପା ଅଛି,ଦେହ ଭଲ ନାହିଁ । ସକାଳରୁ କିଛି ନଖାଇ ନପିଇ ଦ୍ୱିତୀୟ ଘରରେ ଶୋଇଛି ।

ବିଧୁତରଂଜନଙ୍କୁ ସହସା ସମ୍ମୁଖରେ ଛିଡ଼ା ହେଇଥିବା ଦେଖିକରି, ପନ୍ନା ଯତ୍ନରେ ମୁଖସ୍ତ କରିଥିବା ନିଜର ପାଠ ଭୁଲିଗଲା ।

କଣ କହିବ ? କେମିତି ଆରମ୍ଭ କରିବ ? ସବୁବେଳେ ଫୁଙ୍କି ଫୁଙ୍କି କରି ପାଦ ପକଉଥିବା ପନ୍ନା, ଯିଏକି ଉଦ୍ଦାମ ଯୌବନର ପ୍ରଥମ ଜୁଆର ଭଙ୍ଗାରେ ମଧ ଚଟାଣ ପରି ଦୃଢ଼ ଛିଡ଼ା ହେଇଥିଲା, ଆଜି ବୀଗତଯୌବନା ହେଇକରି କେମିତି ତଳି ପଡ଼ିଥିବା ବୟସର ସାମାନ୍ୟ ତରଙ୍ଗରେ ଭାସି ଗଲା ।

"କଣ ଦେହ ଭଲ ନାହିଁ ପନ୍ନା ?"

ହୁଏତ ବିଧୁତରଂଜନର ନରମ ଗଳାର ପ୍ରଶ୍ନରେହିଁ ତାର କାନ୍ଦିବାର ଭାବକୁ ଉତ୍ତେଜିତ କରିଦେଲା । ସେ କଇଁ କଇଁ ହେଇ କାନ୍ଦିବା ଭିତରେ ସବୁ କହିଗଲା । ମାଣିକର କଠୋର ଆଦେଶ କିଛି ଦିନର ନୋଟିସ ଦେଇ ଯାଇଥିଲା । "ଏହାରି ଭିତରେ ତମକୁ କିଛି ବ୍ୟବସ୍ଥା କରିବାକୁ ପଡ଼ିବ । ତୁମେ ଥରେ କହିଥିଲ ନା ଯେ ତୁମର କେଉଁଠି ଗୋଟିଏ ଛୋଟ ଚଳିବା ଉପଯୋଗୀ କେତୋଟି ବଖରା ଘର ଅଛି ? ତାକୁହିଁ ଦେଇଦିଅ ମତେ, ସେଠାରେ ପଡ଼ି ରହିବି ?"

"ପାଗଳ ହେଇଯାଇଛ କି !" ବିଧୁତରଂଜନ ଏତେ ଦୂରକୁ ଛିଟିକି କରି ଚଉକିର ଆଶ୍ରୟ ନେଇ ଛିଡ଼ା ହେଇଗଲେ, ଯେମିତି ବିଜୁଳୀର ଝଟକା ଲାଗି ଯାଇଛି । "ଏହି ମାସରେ ମୁନିୟା ମା ହେବାକୁ ଯାଉଛି, ଚୁନ୍ନୀର ନିର୍ବନ୍ଧ ନରସିଂଶତବାଲା ସହିତ ପ୍ରାୟ ପ୍ରାୟ ନିକଟ ପକ୍କା ହେଇଯାଇଛି । ଏମିତିରେ ତମର ଇଏ କଣ ଅଦ୍‌ଭୁତ କଳ୍ପନା ।

"ଆଚ୍ଛା ?" ସବୁବେଳେ ଶାନ୍ତ ରହୁଥିବା ପନ୍ନା କ୍ରୁଦ୍ଧ ବାଘୁଣୀ ପରି ଡେଇଁ ତାଙ୍କ ପାଖରେ ଛିଡ଼ା ହେଇଗଲା, "ତମର ଗୋଟିଏ ଝିଅ ମା ହେବାକୁଯାଇଛି, ଦ୍ୱିତୀୟ ନୂଆ ବୋହୂ, ସେଥିପାଇଁ ସେଇ ତୃତୀୟ ପାଇଁ ତମର କୌଣସି ଚିନ୍ତା ନାହିଁ ଯାହାକୁ ମୁଁ ହିଁ ନୁହେଁ, ତୁମେ ମଧ ଏହି ସଂସାରକୁ ଆଣିଛ ।"

"ଏହା କାହିଁକି ଭୁଲି ଯାଉଛ ପନ୍ନା, ଏହାକୁ ମୁହିଁ ନୁହେଁ, ଆଉ କିଏ ମଧ ଏହି ଦୁନିଆକୁ ଆଣିପାରି ଥାଏ ।" ଏତିକି କହିକରି ସେ ତୀର ପରି ବାହାରକୁ ଚାଲି ଯାଇଥିଲେ । ପନ୍ନାକୁ ଯେମିତି ପକ୍ଷାଘାତର ଧକ୍‌କା ପଙ୍ଗୁ କରି ଦେଲା । ନା ସେ ହଲି ପାରିଲା, ନା ସେ ଝୁଲି ପାରିଲା । ଡେରି ପର୍ଯ୍ୟନ୍ତ ସେମିତି ଛିଡ଼ା ହେଇରହିଗଲା । ଏତେ ବଡ଼ ଲାଞ୍ଛନା ? ଗତ ଆଠ ବର୍ଷରୁ ତାକୁ ବଡ଼ରୁ ବଡ଼ ପ୍ରଲୋଭନ ମଧ ବିଚଳିତ

କରି ପାରିନାହିଁ । କେବଳ କଂଠ ଓ ନୃତ୍ୟର ଯାଦୁକରୀ ରେହିଁ ସେ ଗ୍ରାହକମାନଙ୍କୁ ସମ୍ମୋହିତ କରି ସେ ଏତେ ରୋଜଗାର କରି ପାରୁଥିଲା ଯେ ଶରୀରକୁ ବନ୍ଧକ ରଖିବାର ନା ଆବଶ୍ୟକତା ଥିଲା, ନା ଇଚ୍ଛା । ବିଧୁତରଂଜନଙ୍କଠାରୁ ସେ କେବେ ହେଲେ କିଛି ଲୁଚେଇ ନଥିଲା, ତଥାପି ଏତେବଡ଼ ଦୁଃସାହସରେ ଏମିତି କଠୋର କଥା ସେ କେମିତି କହି ପାରିଲା ?

ବଡ଼ଅପା ତାକୁ କେତେ ବୁଝେଉ ଥିଲା, "ପନ୍ନା, ତୁତ ସମୟ ପୂର୍ବରୁ ହିଁ ରିଟାୟାର ହେଇ ଯାଉଛୁ । ଆମର ଅନୁଭବ ହିଁ ତ ଆମର ମୂଲ୍ୟ ନିର୍ଦ୍ଧାରିତ କରେ, ଆଉ ପୁଣି ତୁ ତ ଯେମିତିକୁ ସେମିତି ଧରିଛୁ- ବର୍ତ୍ତମାନଠୁ କାହିଁକି ତୁଳସୀ ମାଳା ପିନ୍ଧି ପକେଇଲୁ ?"

କିନ୍ତୁ ପନ୍ନା ଜିଦ ଧରି ବସିଲା, ଧୀରେ- ଧୀରେ ବନ୍ଧା ଗ୍ରାହକମାନେ ସ୍ୱୟଂ ହି ତାର ଆଶା ଛାଡ଼ି ଦେଲେ । ଆଜି ସେ ବଡ଼ ଅପାର କଥାମାନି ଥାନ୍ତା, ତେବେ ସେ ମଧ୍ୟ ଏହି ଅଠବର୍ଷରେ କଳୁଷିତ ଧନରାଶିରେ କେତେ ଶୂନ୍ୟ ଆହୁରି ବଢ଼େଇ ପାରିଥାନ୍ତା । ଆଠ ବର୍ଷରେ, ବିଧୁତରଂଜନକୁ ଛାଡ଼ି କେହି ପୁରୁଷ, ତାର ତର୍ଜନୀ ପର୍ଯ୍ୟନ୍ତ ଧରି ପାରି ନଥିଲେ । ଆଜି ତାର ପ୍ରେମୀ ସ୍ୱୟଂ ନିଜ ହାତରେ ତାହାର ଉଜ୍ଜ୍ୱଳ, ପରିଷ୍କାର ଚେହେରା ଉପରେ, କଳୁଷର କାଳିମା ଲେପି ଦେଲା ?

ଘୃଣା, କ୍ରୋଧ ଆଉ ବ୍ୟଥାରେ ତାର ସର୍ବାଙ୍ଗ ଥରଥର ହେଇକମ୍ପି ଉଠିଲା । କୁଆଡ଼େ ଯିବ ବର୍ତ୍ତମାନ । ଏମିତି ଅବସ୍ଥାରେ ବଡ଼ ଅପାର ଏଠାରେ ରହିଲେ ମଧ୍ୟ, ଦିନ-ରାତି ଅପମାନ ଢ଼କ ଢ଼କ କରି ଗିଳିବାକୁ ପଡ଼ିବ ।

ବହୁତ ଆଗରୁ ଆମ୍ମା ତାର ରୁଗ୍ଣ ମାଉସିକୁ ନେଇ କରି ହାଓ୍ୱା ବଦଳେଇବା ପାଇଁ ଆଲମୋଡ଼ା ଯାଇଥିଲା । ସେହି ଦିନଗୁଡ଼ିକରେ କ୍ଷୟ ରୋଗୀର କେଣ୍ଟନମେଣ୍ଟର ସୀମାରେଖାର ବାହାରେ ରହିବାକୁ ପଡୁଥିଲା । ବ୍ରାହଟନ କର୍ନରର ସୀମାନ୍ତରେ କଟେଇଥିବା ସେଇ ଦିନର ସ୍ମୃତି ହିଁ ତାକୁ ସେଠାକୁ ଟାଣି ନେଇ ଯାଇଥିଲା । ବେଙ୍କରେ ତାର ଉଦାର ବିଦେଶୀ ପିତା ତାର ନାମରେ ଯେଉଁ ଧନରାଶି ଛାଡ଼ି ଦେଇଯାଇଥିଲା, ତାକୁ ଆଜି ପର୍ଯ୍ୟନ୍ତ ତାର ଦେଖି ନଥିବା ପିତା ପ୍ରତି ଅଭିମାନ ବଶହିଁ ସେ ତାକୁ ଛୁଇଁ ମଧ୍ୟ ନଥିଲା । ବର୍ତ୍ତମାନ ତାହାରି ଭରସାରେ ସେ ଦିନ କଟେଇ ଦେବ । କିନ୍ତୁ ସେତେବେଳେ ସେ କଣ ଜାଣିଥିଲା ଯେ ବିଧାତାର କ୍ରୂର ଖେଳ ତାର କୋଳର ଧନକୁ ଛଡ଼ାଇ କରି, ଅନ୍ୟର ସନ୍ତାନରେ ତାର କୋଳ ଭରି ଦେବ ।

ବଡ଼ ଅପାକୁ ସେ ଗୋଟିଏ ସଂକ୍ଷିପ୍ତ ପତ୍ରରେ ହିଁ ସେ ସବୁ କିଛି ଲେଖିଦେଲା ।

ବଡ଼ଅପା-

ତମ ସମସ୍ତଙ୍କ ଆଶୀର୍ବାଦରୁ ମତେ କନ୍ୟାରତ୍ନ ପ୍ରାପ୍ତ ହେଇଛି । ତମେ ସେଦିନ କହିଥିଲ ନା, ଦିନେ-ନା-ଦିନେ ମତେ ଫେରିକରି ତମରି ହିଁ ଶରଣରେ ଆସିବାକୁ

ପଡ଼ିବ । ବର୍ତ୍ତମାନ ତମର ଶରଣରେ ଦୁଇପ୍ରାଣୀ ଏକ ସାଙ୍ଗରେ ଆସୁଛୁ-

ତମର ପନ୍ନା-

## ତିନି

ଥରେ ମନକୁ ଆସିଲା, ଚିଠି ଚିରି କରି ଫୋପାଡ଼ି ଦେବ- କଣ ବଡ଼ଅପା ହିଁ ରହି ଯାଇଛି ଶରଣ ଦେଲାବାଲା ? ଯେଉଁଠାକୁ ଚାହୁ ନଥିଲା ସେଠାକୁ ନିୟତି ତାକୁ ବଳିର ଛେଳି ଭଳି ଟାଣି ନେଉଛି । ତାହାର ଭବିଷ୍ୟତରେ ବର୍ତ୍ତମାନ କଣ ନାହିଁ କଣ ଥିଲା । କିନ୍ତୁ ଏହି କ୍ଷୁଦ୍ର ପ୍ରାଣର ସ୍ପନ୍ଦନ ପାଇଁ କଣ ତାର କିଛି ହେଲେ ଚିନ୍ତା ନାହିଁ ? ସୁଦର୍ଶନ ପଠାଣ ପିତା ଆଉ ପାହାଡ଼ି ସୁନ୍ଦରୀ ମାର କନ୍ୟା ନିଶ୍ଚୟ ଦିନେ ଅପୂର୍ବ ସୁନ୍ଦରୀ ହେବ ଆଉ ନାରୀ ସୌନ୍ଦର୍ଯ୍ୟର ଅସାଧାରଣ ପରୀକ୍ଷକ ବଡ଼ଅପା ତାକୁ ପୁଣି କଣ ଯିବାକୁ ଦେବ ?

ଆଉ କଣ କହିହେବ ଅଭିମାନୀ ବଡ଼ଅପା ତାକୁ ନେବାକୁ ହିଁ ଆସିବ ନାହିଁ ? କିନ୍ତୁ ପନ୍ନାର ଚିନ୍ତା ବ୍ୟର୍ଥ ଥିଲା । ସେ ପହଞ୍ଚିଲା ମାତ୍ରେ ବଡ଼ଅପା ତାର ଦଳବଳ ସହିତ ତାକୁ ନେବାକୁ ଷ୍ଟେସନରେ ଉପସ୍ଥିତ ଥିଲା । ପରିଚିତ ସ୍ନେହି ଚେହେରାକୁ ଦେଖିଲା ମାତ୍ରେ ପନ୍ନା ତାର ସମସ୍ତ ଚିନ୍ତା ଶାରୀରିକ ଦୁର୍ବଳତା ଆଉ ମାନସିକ ବ୍ୟଥା ଭୁଲିଗଲା । ଏହିତ ତାର ପରିବାର ଥିଲା ଗୋଲ, ଚିକ୍କଣ ଚେହେରା ବାଲୀ ନେପାଳୀ ବାଳିକା । ଚେହେରାରେ ସେ ମଧ ବଡ଼ ଜୁଡ଼ାଥିବା ବାଣୀସେନ, ଯାହାର ଓଠର ହସ ଧୀରେ-ଧୀରେ ବିଜୁଳୀ ପରି ଚମକୁ ଥିବା ଆଖି ପର୍ଯ୍ୟନ୍ତ ଲମ୍ବି ଯାଇଥାଏ ଦେଖିଲାବାଲାଙ୍କୁ ବାନ୍ଧି କରି ସବୁବେଳ ପାଇଁ ବନ୍ଦୀ କରି ଦେଉଥିଲା, ଚାଇନା ସୁନ୍ଦରୀ ମା ବାଂଗ, ଯାହାର ତେରେଛାଚାହାଣି ସାମାନ୍ୟରୁ ସ୍ମିତରେ ବନ୍ଦ ହେଇ ରହିଯାଉଥିଲା, ତୁର୍କୀ କଣ୍ଢେଇ ନିଲୋଫର ଯାହାକୁ ମାଣିକ କୋହିନୂର ହୀରାର ଦାମ ଦେଇ କିଣିଥିଲା, ଆଉ ସେଇ ସମସ୍ତଙ୍କୁ ଅନୁଶାସନର ଗୋଟିଏ ସାମାନ୍ୟ ଧରଣର ଚାବୁକ ମାରିକରି ଶହେ ସୈନ୍ୟର ଗୋଟିଏ ଅଂଶକୁ ବାଟକୁ ଆଣୁଥିଲେ ବଡ଼ଅପା । ବଡ଼ ଅପାର ଚେହେରାକୁ ଦେଖିକରି ସେ କଣ କେବେ ଆଜି ପର୍ଯ୍ୟନ୍ତ ସେଇ ପତଳା କ୍ରୂର ଓଠର ଚାପା ହସର ରହସ୍ୟ ଜାଣି ପାରିଛି ? ସେହି ସ୍ମିତ ହସରେ ବ୍ୟଙ୍ଗ ଥିଲା ନା କରୁଣା ବା ସେ ମନ-କୁ-ମନ ପ୍ରସନ୍ନ ହେଇକରି କହୁଥିଲା, "କାହିଁକିରେ ଜିଦିଆ ଝିଅ, ଶେଷରେ ଆସିଲୁନା ମୋର ଶରଣରେ ।"

କିମ୍ବା ସେଇ ସ୍ମିତ ହସର ସୀଲ ମୋହର ଲଗେଇ କରି ଅର୍ନ୍ତବ୍ୟଥାର ବାଷ୍ପର ଢାଙ୍କୁଣୀ ବଳପୂର୍ବକ ବନ୍ଦକରି ରହିଥିଲା ବଡ଼ ଅପା ।

ଦେଖୁ-ଦେଖୁ ପନ୍ନାର କୋଳର ଅମୂଲ୍ୟ ବୁଜୁଲା ଏହାତରୁ ସେ ହାତକୁ ଡେଇଁବାକୁ ଲାଗିଲା, ଏକା ମାଣିକ ହିଁ ତାକୁ କୋଳକୁ ନେଲାନାହିଁ ।

"ଦେଖତ ବଡ଼ଅପା, କେମିତି ବଡ଼ ବଡ଼ ଆଖି ତମର ଭାଣିଜୀର," ବାଣୀସେନ ବୁଜୁଲାକୁ ନେଇ କରି ତା'ପାଖରୁ ଚାଲି ଆସିଲା, ତୁରନ୍ତ ମାଣିକ ଆଖି ବନ୍ଦ କରି ଦେଲା । "ମର କାଲମୁହୀ, ଏମିତି କରି ଖାଲି ହାତରେ ଝିଅର ମୁହଁ ଦେଖିବି ?"

ଘରେ ପହଞ୍ଚିଲା ମାତ୍ରେ ବଡ଼ଅପା କ୍ରୋଧ, ମନକୁ ମନ ପାହାଡ଼ି କୁହୁଡ଼ି ପରି ଅନ୍ତର୍ହିତ ହେଇଗଲା । ଯେଉଁ ଚେହେରା କିଛିକ୍ଷଣ ପୂର୍ବରୁ ପନ୍ନାର ଦୁଃସାହସୀ ପଳାୟନର ସ୍ମୃତିରେ କ୍ରୁଧ ହେଇ ଫୁଲି ଉଠିଥିଲା, ତାହାରି ଉପରେ ତାଙ୍କର ଚିରପରିଚିତ ସ୍ନେହୀ ହସ ଫୁଟି ଉଠିବା ଦେଖି, ପନ୍ନାର ମୁଣ୍ଡର ବୋଝ ମନକୁ ଓହ୍ଲେଇଗଲା । ବଡ଼ଅପା ତାକୁ କ୍ଷମା କରି ଦେଇଛନ୍ତି, ଗୋଟିଏ ଅଜଣା ଶାନ୍ତିରେ ପରିପୂର୍ଣ୍ଣ ହେଇ ତାର ଚିତ୍ତ ପ୍ରଫୁଲ୍ଲିତ ହେଇଉଠିଲା ।

ହଲଦିଆ କୋଠୀର ରାଜସୀକ ପ୍ରାଙ୍ଗଣ, ଗୋଲ କୋଠରୀର ଅଗୁରୁ ଚନ୍ଦନର ମନମୁଗ୍ଧକର ସୁଗନ୍ଧ, ହାୱାରେ ଝୁଲୁଥିବା ଅନ୍ୟ ରକମର ଗୋଟିଏ ମୃଦୁ ଶବ୍ଦରେ ବାଜୁଥିବା ଝାଡ-ଫାନୁସର ଝୁମୁକା, ଦାସିମାନଙ୍କ ଗହଳ-ଚହଳ ଆଉ ଉତ୍ତେଜିତ ବଡ଼ ଗାଲିଚା ଉପରେ ପକା ଯାଇଥିବା ଚାନ୍ଦନୀ ଉପରେ ବଡ଼ଅପାଙ୍କର ବସିଥିବା ନିତ୍ୟ ନୈମିତ୍ତିକ ସେହି-ଦିଲ୍ଲୀ ଦରବାର । ଗୋଟିଏ ଅସରଫିରେ ମାଣିକ ଭାଣିଜୀର ମୁହଁ ଦେଖିଲା ଯେତେବେଳେ ତାର ଚେହେରା ଫିକା ହେଇଗଲା । "ଆରେ ପନ୍ନା, ତୋର ଏଇ ଝିଅ ଏତେ ଶ୍ୟାମଳ କୃଷ୍ଣ ବର୍ଣ୍ଣ କେମିତି ହେଇଗଲାରେ ? ତୋର ଏମିତି ଫିରଙ୍ଗିମାନଙ୍କ ପରି ରଂଗ ଆଉ ବିଧୁତରଂଜନ ମଧ ଗୋରା-ଚେହେରା ଏଇ ମୁହଁ ଯେମିତି ନିଜର ପ୍ରଚଣ୍ଡ କଳା ହୀରା ମାଉସୀର ରଂଗ ପାଇନିତ !" ଟିକିଏ ଉଦାସୀନ ଦୃଷ୍ଟି ରହିଁ ଉତ୍ତର ଦେଇ ପନ୍ନା ଚୁପ ହେଇଗଲା ।

ଅକାରଣରେ ତାହାର ଗଳାରେ କାହାର ସ୍ମୃତି ଗହ୍ୱର ଅଟକିକରି ରହିଗଲା । କେମିତି କହିବ ସେ ବଡ଼ଅପାକୁ, ଯିଏ ମୋର ଝିଅ ଥିଲା ତାକୁ ତୁମେ ଯଦି ଆଜି ଦେଖିଥାନ୍ତ, ତାହେଲେ ଏମିତି ଚମକି ନଥାନ୍ତ ଗୋରା ରଂଗ, ନେଲି ଆଖି ଆଉ ସୁନେଲି ବାଳ, ବିଦେଶୀ ନାନା ବ୍ୟକ୍ତିତ୍ୱ ସେହି କ୍ଷଣିକ ଅତିଥି'ରେ ମୂର୍ତ୍ତିମାନ ହେଇ ଉଠିଥିଲା ।

"ତୁମକୁ ମଧ ବଡ଼ଅପା, ଖୁବ୍ ଅସମୀଚିନ ବାହାର କରିବା ଜଣାଅଛି" ବାଣୀ ସେନ ଚଟ କରି ଛୁଆକୁ ନିଜ କୋଳକୁ ନେଇଗଲା, "ବର୍ତ୍ତମାନ ଦେଖ ତ ତମେ ସବୁ, କେଉଁଠି ଏତେ କାଳୀ, ବର୍ତ୍ତମାନ ସାଳିଗ୍ରାମକୁ ତୁମେ ଚନ୍ଦନର ଗୋଳା ଉପରେ ଟିକା ଦେଲେ ଆହୁରି କଳା ଦେଖାଯିବ । ବଡ଼ ଅପା ଆଉ ଛୋଟ ଅପା ହେଲେ ବିଶୁଦ୍ଧ ମେମ ଲୋକ ଏଇଥିପାଇଁ ଏଇ ମାନଙ୍କ କୋଳରେ ବିଚାରି ନିଜର ରଂଗ ହରେଇଛି-

ବର୍ତ୍ତମାନ ଆମ ସମସ୍ତଙ୍କର କୋଳରେ ଦେଖ ଆହା କେମିତି ଲାଗୁଛି- ଏକଦମ କୃଷ୍ଣକଲୀ ।"

ପନ୍ନାକୁ ହସ ମାଡିଲା । ମାଣିକର ମୁହଁରେ ପାନ ଦୋକ୍ତାର ପୀକ ନରମ ହେଇ ରହିଥିଲା, ସେମିତି ପୀକକୁ ଗାଲର ଏପାଖରେ ସେ ପାଖରେ ରଖିକରି କହିବାକୁ ଲାଗିଲା, "କଥା କହିବାତ କେହି ବାଣୀ ଠାରୁ ଶିଖ ତେବେ ତ ବାରିଷ୍ଟର ରାୟ ଏହା ଉପରେ ବୃଦ୍ଧାବସ୍ଥା ଉତ୍ସର୍ଗ କରି ଦିଅନ୍ତି ।"

ବାଣୀ ଦୁଇଟି ଲମ୍ବା-ଚୌଡ଼ା ହାତକୁ ନର୍ତ୍ତକୀର ନମସ୍କାର କରିବା ମୁଦ୍ରାରେ ବାନ୍ଧିକରି ଝୁଙ୍କି ପଡ଼ି ମାଣିକର ସାମନାରେ ଛିଡ଼ା ହେଇଗଲା- କୋଳର ଛୁଆକୁ ସେ ମାଣିକର ପାଦ ପାଖରେ ରଖିଦେଇଥିଲା । "ତୁମେ କହୁଛ ଏକ ବାରିଷ୍ଟର ରାୟ ? ବଡ଼ ଅପା, ତମର ଆଶିର୍ବାଦରୁ ଆଠ-ଆଠ ଜଣ ଏମିତି ବୃଦ୍ଧକୁ କାଖରେ ଜାକି ବୁଲୁଛି ଯେ ଯେତେବେଳେ ଚାହିଁବି ଯାହାଠୁ ତିନି-ଚାରି ହଜାର ଝଡ଼େଇ ଦେବି । ଏହାକୁ ମଧ୍ୟ ଏମିତି ଆଶୀର୍ବାଦ ଦିଅ ବଡ଼ ଅପା ଯେମିତି ମୋର ତୁମ ପରି ଆମର କୃଷ୍ଣକଲୀ ମଧ୍ୟ ରାଜରାଣୀ ହେଉ, ଶତସହସ୍ର ହୃଦୟ ଉପରେ ଏକଚ୍ଛତ୍ର ରାଜ୍ୟ କରୁ ।"

"ଚିନ୍ତା କାହିଁକି କରୁଛୁ ପନ୍ନା", ବଡ଼ ଅପା ତାର ପିଠିରେ ହାତ ବୁଲେଇ କରି କହିଲେ "ମୋ ପାଖରେ ପ୍ରସାଧାନର ତିନି-ଚାରୋଟି ଏମିତି ୟୁନାନର ପ୍ରସିଦ୍ଧ ଚିକିତ୍ସା ପ୍ରଣାଳୀ ଘରେ ଅଛି ଯେ ଆମ୍ମା କହୁଥିଲା, କୁଆକୁ ମଧ୍ୟ ପୋତି ଦେଲେ ପରିଷ୍କାର ଗୋରା ବଗ ପରି ଲାଗିବ ।"

"ଲକ୍ଷେ ରଂଗ ସାବନା ହେଉ ଛୋଟ ଅପା ।" ଗାଲିଚା ଉପରେ ହାତପାଦ ମାରୁଥିବା ପିଲାକୁ ବାଣୀ କୋଳକୁ ଉଠେଇ ଗାଲରେ ଲଗାଇଲା, "ନାକ ଦେଖୁନ, କେମିତି ଖଡ୍ଗ ପରି ଧାର ହେଇଛି । ଓଠ, ଆହା କେତେ ସୁନ୍ଦର ଗଠନ । ଏହି କପାଳ, କଳା, ଚିକ୍କଣ, ଘନ-କେଶ ଏବଂ ନଅରତି ବାଉନ ତୋଳାର ଇଏ ବନମୃଗୀ- ପରି ଆଖି । ସେଇଥିପାଇଁ ତ ମୁଁ ନାମ ରଖିଛି, "କୃଷ୍ଣକଲୀ" । ହଠାତ୍ ଛୁଆଟାକୁ ନେଇ ସେ ଝୁଲି-ଝୁଲି କରି ଗାଇବାକୁ ଲାଗିଲା-

କୃଷ୍ଣକଲୀ ଆମୀ ତାରେଇ ବୋଲୀ-
କାଲୋ ତାରେ ବୋଲେ ଗାୟେର ଲୋକ
ମେଘଲା ଦିନେ, ଦେଖେ ଛିଲେନ ମାଠେ
କାଲୋ ମେୟେର କାଲୀ ହରୀଣ ଚୋଖ

ବାଣୀର ବଂଶୀ-ଠାରୁ ମିଠା ଗଳାକୁ କୌଣସି ସଂଗୀତ ଉପକରଣର ସଂଗିତ ବିନା ଶ୍ରୋତାକୁ ମୋହିତ କରିବାର ବରଦାନ ପାଇଥିଲା । ସ୍ୱାଭାବିକ ଘୁରେଇ, ମୀଠା ସ୍ୱରର ସଦା ଆରୋହ, ଯାହା କେବେ ଜାଦୁ ଗତିରେ ଅବରୋହଣ ସୋପାନ ପଂକ୍ତିଗୁଡ଼ିକ

ଶୁଣିଲା ବାଲାକୁ ମଧ୍ୟ ବଳପୂର୍ବକ ଟାଣି ନେଇ ଯାଉଥିଲା, ତାହାର ସୁକୁମାର ଶ୍ୟାମଳ କୃଷ୍ଣ ବର୍ଣ୍ଣ ବିଶିଷ୍ଟ ଚେହେରା ସହିତ ମଧ୍ୟ ମିଶି ଯାଉଥିଲା । ନିର୍ଦ୍ଦୟ ନିୟତି ମଧ୍ୟ ସେହି ପଢ଼ା ଲେଖା, ସମ୍ଭ୍ରାନ୍ତ କୁଳର ଆକର୍ଷଣ ଅଧ୍ୟାପିକାକୁ ହଳଦିଆ କୋଠୀରେ କଚାଡ଼ି ଦେଲା । କିନ୍ତୁ ଯିଏ ସେଇ କୁଣ୍ଠାଗ୍ରସ୍ତ ଅଧ୍ୟାପିକାକୁ ତାର ଜୀବନରେ ଦେଇ ନଥିଲା, ସେ ତାକୁ ସେଇ ହଳଦିଆ କୋଠୀରେ ଏକ ପଲକରେ ଦେଇ ଦେଲା । ବୈଭବ, ଏକରୁ-ଏକ ଦାମି ସାଢ଼ି, ବିଳାସର ଏମିତି-ଏମିତି ଅଲଭ୍ୟ ସାମଗ୍ରୀଗୁଡ଼ିକ, ଯାହା ବିଷୟରେ ସେ କେବେ ଶୁଣି ମଧ୍ୟ ନଥିଲା । ଗୋଟିଏ ଦାସୀ ଉଠିଲା ମାତ୍ରେ ଚିକ୍କଣ କରି ବଟା ହେଇଥିବା ବାଦାମି ମାଲିସ କରି ଯାଉଥିଲା, ପୁଣି ଦ୍ୱିତୀୟ ଦାସୀ ଆସିକରି ସ୍ନାନାଗାରରେ ଏମିତି-ଏମିତି ବାଥ ସଲ୍ଟ ଛିଞ୍ଚି ଯାଉଥିଲା ଯେ ଚମଡ଼ାକୁ ଯଦି କେହି ଚୋପା ଛଡ଼ାଇ ମଧ୍ୟ କାଟଛାଣ୍ଟ କରି ଦିଅନ୍ତା ତେବେ ମଧ୍ୟ ହୁଏତ ତାହାର ମାଦକ ସୁଗନ୍ଧିତ ମାଂସ-ମଜ୍ଜା ରେହିଁ ରହି ଯାଇଥାନ୍ତା । କେତେ ଥର ତାକୁ କେତେ ସୁପାତ୍ର ଦେଖି ଦେଖିକରି ଅପସନ୍ଦ କରି ଯାଇଥିଲେ, ଆଜି ତାହାର ଏମିତି ସ୍ଥିତି ହେଇଛି ଯେ ସେ କେତେ ସୁପାତ୍ରଙ୍କୁ ନାକଟେକି ଅପସନ୍ଦ କରି ଦିଏ । ଅନାଥା ବାଣୀ ସେନର ଦରିଦ୍ର ମାମୁଁ କୌଣସି ପ୍ରକାରର ଯୌତୁକ ଦେବାକୁ ସମର୍ଥ ନଥିଲେ । ପୁଣି ସେହି ଅସାମାନ୍ୟ ସୁନ୍ଦରୀ ମଧ୍ୟ ନଥିଲା । କୌଣସି ପ୍ରକାରେ ପଢ଼ିଲେଖି କରି ସେ ବି.ଏ.ପରୀକ୍ଷାରେ ପାସ କରିଥିଲା । ଏହି ଥିରେ ଯେତେବେଳେ ମାମୁଁର ବିପତ୍ନୀକ ବନ୍ଧୁ, ତାକୁ ନିଜ ଗାର୍ଲସ ହାଇ ସ୍କୁଲରେ ଅଧ୍ୟାପିକାର ପଦ ପ୍ରଦାନ କଲା, ତେବେ ତାକୁ ହଠାତ୍ ତାର ସୌଭାଗ୍ୟରେ ବିଶ୍ୱାସ ହେଇ ନଥିଲା ।

"କଖାରୁ", ରଜନୀ କାକା ତାହାର ମାମୁଁର ପୃଥୁଳ ପେଟ ପାଇଁ ତାଙ୍କୁ ଏହି ବିଚିତ୍ର ନାମରେ ଡାକୁଥିଲେ, ଦିନେ କହିବାକୁ ଲାଗିଲେ, "ତୋର ଭାଣିଜୀ ପାଇଁ ଯେତେଦିନ ପର୍ଯ୍ୟନ୍ତ କୌଣସି ସୁଯୋଗ୍ୟ ପାତ୍ର ମିଳୁ ନାହିଁ, କାହିଁକି ତାକୁ ମୋ ସ୍କୁଲକୁ ନ ପଠେଇ ଦେବୁ ? ଝିଅଟି ଗୁଣୀ ଅଟେ, ଏତେ ସୁନ୍ଦର ଗାଉଛି, ଆମର ସେଠାରେ ସଂଗୀତର କୌଣସି ଅଧ୍ୟାପିକା ମଧ୍ୟ ନାହିଁ, ମାମୁଁ ଖୁସିରେ କାନ୍ଦି ପକେଇଥିଲେ । କେବଳ ଚତୁର ମାଇଁଙ୍କୁ ଏହି ମୂର୍ଖତାପୂର୍ଣ୍ଣ ପ୍ରସ୍ତାବ ଟିକିଏ ମଧ୍ୟ ଭଲ ଲାଗି ନଥିଲା ।

"ଚାକିରି କରିବା ପାଇଁ ଝିଅକୁ କଣ ଏକ ସେହି ବିପତ୍ନୀକ ମିତ୍ରର ସ୍କୁଲ ଥିଲା ? ଏକରେ ତ ଅଭାଗା ସ୍ୱୟଂ ମେନେଜରର ଅଟେ, ତା' ଉପରେ ଦିନ-ରାତି ତାହାର କୀର୍ତ୍ତି ଶୁଣିବାକୁ ମିଳିଥାଏ ।"

ମାଇଁର ସେହି ପ୍ରସ୍ତାବର ଅନୁମୋଦନ ନ କରିବାର କାରଣ ଆହୁରି ଥିଲା । ସକାଳରୁ ଆରମ୍ଭ କରି ସନ୍ଧ୍ୟା ପର୍ଯ୍ୟନ୍ତ ବାଣୀ ତାଙ୍କର ଗୃହସ୍ଥୀକୁ ଘଣାରେ ଯୋଚା ହେଇଥିବା ବଳଦ ପରି ରହିଥାଏ । ଏହାରି ମଧ୍ୟରେ ମାମୁଁର ହାର୍ଟ ଏଟେକ ହେଲା

ଏବଂ ସେ ଚାଲିଗଲେ, ମାଇଁଙ୍କୁ ତାଙ୍କ ଭାଇ ସାଙ୍ଗରେ ନେଇଗଲେ, ଆଉ ବାଣୀକୁ ରଜନୀ କାକା ସ୍ନେହପୂର୍ଣ୍ଣ ଆଗ୍ରହରେ ନିଜ ପାଖରେ ରଖିଦେଲେ ।

"କିଛି ଦିନ ମଧ୍ୟରେ ଝିଅମାନଙ୍କ ପାଇଁ ଗୋଟିଏ ବୋର୍ଡ଼ିଂ ହାଉସର ମଧ୍ୟ ବ୍ୟବସ୍ଥା କରିବାକୁ ପଡ଼ିବ । ତମେ ଯଦି ନ ରହିବ ଝିଅତ କିଏ ସେମାନଙ୍କର ଭଲ ମନ୍ଦ ବୁଝିବ ?"

ହୁଏତ ସେହି ସ୍ନେହପୂର୍ଣ୍ଣ ଆତ୍ମୀୟ ସମ୍ବୋଧନ ହିଁ ବାଣୀକୁ ଅଟକେଇ ଦେଲା । ପ୍ରଥମେ ପ୍ରଥମେ ଚତୁର ରଜନୀକାନ୍ତ ନିଜ ଶରଣରେ ଆସିଥିବା ସେହି ଅନାଥା କିଶୋରୀ ସହିତ ନିଜ ବ୍ୟବହାର ଏମିତି ଉଦାସୀନ ଏବଂ ଅନାସକ୍ତ ରଖିଥିଲେ ଯେ ବାଣୀକୁ ସ୍ୱୟଂ ନିଜର ଛୋଟ-ମୋଟ ଆବଶ୍ୟକତାର ଅବଗତ କରେଇବା ପାଇଁ ଏଠାକୁ ସେଠାକୁ ରାସ୍ତା ଭୁଲିଯିବାକୁ ପଡୁଥିଲା । କେବେ ସିମେଣ୍ଟ ଯୋଗାଡ଼ କରିବା ପାଇଁ କଟନି ଚାଲି ଯାଇଛନ୍ତି, ଯେବେ ସାକ୍ଷାତ ହୁଏତ ଏମିତି ରୁକ୍ଷ କଥା କହୁଥିଲେ ଯେ ବାଣୀର ଶରୀର ଜଳି ଯାଉଥିଲା । ସେତେବେଳେ କଣ ସେ ଜାଣିଥିଲା ଯେ ସେହି କୁଟିଳ ବ୍ୟକ୍ତି ନିଜର ଉଦାସୀନତାରେ ହିଁ ତାର ବିଶ୍ୱାସ ଜିତିବାକୁ ଚାହୁଁଥିଲା । ଏହା ଠିକ୍ ଥିଲା ଯେ ପିନ୍ଧିବା-ଢାଙ୍କି ହେବା ଗାଇବା ପିଇବା, ଏପର୍ଯ୍ୟନ୍ତ କି ତାର ସଂଗୀତଶିକ୍ଷାର ମଧ୍ୟ ସେ ସମୁଚିତ ବନ୍ଦୋବସ୍ତ କରି ଦେଇଥିଲେ । ଗୋଟିଏ ଅନ୍ଧ ମ୍ୟୁଜିକ୍ ମାଷ୍ଟର ତାକୁ ଦୃଢ଼ ନିଷ୍ଠିତ ଗୀତର ଶିକ୍ଷା ଦେବାକୁ ଆସୁଥିଲେ, ସନ୍ଧ୍ୟା ବେଳେ ପ୍ରତ୍ୟେକ ଦିନ ରଜନୀ କାକାଙ୍କ ମିତ୍ର ଦୁଲାଲ ବାବୁ ତାକୁ ରବୀନ୍ଦ୍ର ସଂଗୀତ ଶିଖେଇ ଯାଉଥିଲେ, କିନ୍ତୁ ରଜନୀ କାକା ତା ସହିତ ଯେବେ ଦେଖା କରୁଥିଲେ, ଗୋଟିଏ ନା ଗୋଟିଏ କଥାରେ ଜଣେଇ ଦେଉଥିଲେ ଯେ ସେ ତା ପାଇଁ ବହୁତ ଟଙ୍କା ଖର୍ଚ୍ଚ କରୁଛନ୍ତି ।

"ଗୀତ ଠିକ୍ ଭାବରେ ଶିଖୁଛ ତ ? ଏହା ଭାବିବ ନାହିଁ ଯେ ଦୁଲାଲ ମୋର ମିତ୍ର ହେଲେ ମଧ୍ୟ ତମକୁ ମାଗଣାରେ ଗୀତ ଶିଖଉଛି । ଦୁହିଁଙ୍କୁ ଯଥେଷ୍ଟ ଦରମା ଦେଉଛି । ଚାରୁ ପାଖରେ ଶୋଉଛି ନା ?" ନିଜର ଜଣେ ପୁରୁଣା ବୃଦ୍ଧା ଦାସୀକୁ ନିଯୁକ୍ତି ସେ ବାଣୀ ଆସିବା ପରେ ହିଁ କରି ଦେଇଥିଲେ ।

"ହଁ କାକାବାବୁ ଶୋଉଛି ।" କହିକରି ବାଣୀ ଚୁପ୍‌ଚାପ ନିଜ କୋଠରିକୁ ଫେରି ଆସିଥିଲା । ଏତେ ବଡ଼ କୋଠାରେ ବାଣୀ ଏକ ପ୍ରକାରର ବନ୍ଦିନୀ ପରି, ଜୀବନ ଯାପନ କରୁଥିଲା । ସହରଠାରୁ ଦୂର 'ମିତ୍ର ନିକୁଞ୍ଜ' ଏକ ପ୍ରକାର ଜଙ୍ଗଲ ଭିତରେ ହିଁ ଅବସ୍ଥିତ ଥିଲା । ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ଲୋକମାନେ ତାଙ୍କର ନୂଆ ନାମର ଅବହେଳା କରି, ତାକୁ ତାର ପୁରୁଣା ନାମରେ ହିଁ ବେଶି ଡାକୁଥିଲେ- "ନୀଲ ସାହେବର କୋଠୀ ।" ଏହା ଜଣେ ଇଂରେଜ ସାହେବର ବଡ଼ ସଉକରେ ତିଆରି ହେଇଥିବା ବିରାଟ କୋଠୀ

ଥିଲା ଯାହାକୁ ନୀଳର ଚାଷରୁ କେବେ ଲକ୍ଷ ଲକ୍ଷ ଟଙ୍କା ରୋଜଗାର କରିଥିଲା । ମିତ୍ରା ତାକୁ ମାଟି ଦରରେ କିଣିଲା, ତାର ଉଜୁଡ଼ା ଯାଇଥିବା ମର୍ଯ୍ୟାଦାକୁ ପୁଣି ଥରେ ସମ୍ଭାଳି ନେଇଥିଲେ । ସାହେବର ବିଦେଶୀ ରଚିରେ ତିଆରି ହେଇଥିବା ଅତିଥି ଭବନରେ ବର୍ତ୍ତମାନ ଦୀବାଙ୍ଗତା ପତ୍ନୀର ନାମରେ ଅମଲା ଗାର୍ଲସ ହାଇସ୍କୁଲ ଥିଲା । ନୀଳ କୋଠୀର ଯେଉଁ କୋଠରି ବାଣୀକୁ ମିଳିଥିଲା, ତାହା ନିଶ୍ଚୟ ସେହି ସାହେବର ମେମ ସାହେବର ହେଇଥିବ । କାନ୍ଥରେ ସେତେବେଳେ ମଧ୍ୟ, ନଖ ଦେଇ ଚୂନର ଗୋଟିଏ ଦୁଇଟି ପରସ୍ତ ଉପାଡ଼ିଲା ପରେ ଶତ-ଚିତ୍ରାଙ୍କିତ ଧୂଆଁଳିଆ ଗୋଲାପୀ 'ୱାଲପେପର' ବାହାରି ଆସୁଥିଲା । ଗୋଟିଏ ବଡ଼ ଅନ୍ଧ ଝାଡ଼ ଫାନୁସ୍, ବଙ୍କା ହେଇ ତଳ ପର୍ଯ୍ୟନ୍ତ ଝୁଲି ପଡ଼ିଥିଲା । ଜାହାଜ ପରି ପଲଙ୍କ ଉପରେ ଶ୍ରାନ୍ତ-କ୍ଳାନ୍ତ ବାଣୀ ଶୋଇବାକୁ ଯାଉଥିଲା ଯେତେବେଳେ ସ୍ୱୟଂ ଅଜ୍ଞାତ ଭୟରେ ତାର ଶରୀର ଥରି ଉଠୁଥିଲା । ଏତେ ବଡ଼ ପଲଙ୍କରେ ତାର ପତଳା ଦେହ ଯେମିତି ବୁଡ଼ି କରି ରହିଯାଉଥିଲା । କିଛି ସମୟ ପର୍ଯ୍ୟନ୍ତ ଚାରୁ ତାର ବର୍ଷ ବର୍ଷ ଧରି ପୁରୁଣା ଶ୍ୱାସରୋଗର ପେଲିହେବା ଚଲେଇ ଯାଏ, ଏବଂ ତା'ପରେ ବିଡ଼-ବିଡ଼ କରିବାକୁ ଲାଗେ, "ଅଜବ ସଉକ ବାବୁର ଘରର ଘରଣୀ ଯେତେଦିନ ଯାଏ ଥିଲା, ବିଚାରାର କେବେ ମୁହଁ ମଧ୍ୟ ଦେଖି ନାହିଁ । କାଳି ଥିଲା ସେଥିରେ ତାର କଣ ଦୋଷ ? ମୁଁ କହୁଛି, ଯେବେ ଦେଖିବାକୁ ଗଲେ କଣ ଆଖିରେ ପଟି ବନ୍ଧା ହେଇଥିଲା ? ଆହା, କେମିତି ଲକ୍ଷ୍ମୀ ଝିଅ ଥିଲା ଆମର, ଖାଲି ରୂପ ହିଁ ନଥିଲା । ଯୌତୁକ କେତେ ଆଣିଥିଲା, କାହା ସମ୍ପତ୍ତି ଏହି ସାହେବ ଆଜି ଏହି କୋଠାରେ ଭୋଗ କରୁଛି, ସବୁ ଭୁଲି ଗଲ ବାବୁ । ଏବେ ମରିଗଲାଠୁ ତାର ନାମରେ ସ୍କୁଲ ତିଆରି କରି ଲୁହ ଝରେଇ ବୁଲୁଛି । ମୁଁ କହୁଛି, ବାବା ମୋତେ ତ ଛୁଟି ଦେଇଦେ । ଯାହା ସହିତ ଯୌତୁକ ସହିତ ଆସିଥିଲି, ଯେତେବେଳେ ସେ ରହିଲା ନାହିଁ ତ ମୁଁ ଏଠାରେ ରହି କଣ କରିବି ? ନବଦ୍ୱୀପରେ ଭଣଜା ଅଛି, ସେଠାକୁ ଯାଇ ନିମାଇଙ୍କ ଚରଣରେ ମୁଁ ଦିନ କାଟି ନେବି । କିନ୍ତୁ ଏଠାରେ ମାଡ଼ ମଧ୍ୟ ମାରିବ ଆଉ କାନ୍ଦିବାକୁ ମଧ୍ୟ ଦେବ ନାହିଁ ।"

କେବେ କେବେ ବାଣୀ ବିରକ୍ତ ହେଇ କହି ଦେଉଥିଲା, "ଠିକ୍ ଅଛି ଚାରୁ, ଯିବାକୁ ଚାହୁଁଛତ କାଲି ହିଁ ଚାଲି ଯାଆ, ମତେ କାହିଁକି ଶୁଣଉଛୁ । କାକା ବାବୁକୁ କହୁନୁ ।"

"ଆହାରେ କାକା ବାବୁ", ଚାରୁ ହଠାତ୍ ଉଠି କରି ବସି ପଡ଼େ, ତାର ଶରୀରର ଚର୍ମର ସଂକୋଚନ ପଡ଼ିଲେ ତ ଓହଳି ଥିବା ବଡ଼ ବଖରାର ଅନ୍ଧକାର ଆହୁରି ବିଭତ୍ସ କରିଦେବ, ଯେମିତିକି କୌଣସି କାଳି ଡାହାଣୀ ଯାଇକରି ବସି ଯାଇଛି ।" ମୁଁ ମଧ୍ୟ ଦେଖିବି କେତେଦିନ ଝିଆରୀ ହେଇରହିବ, ତୁମ୍ଭ ପରି କୋଡ଼ିଏ ଝିଆରୀ ଏହି ବଖରାର

ଶିକାର ହେଉଛନ୍ତି ।” ପୁଣି ତାର ଏକଦମ ନିକଟକୁ ଘୁଞ୍ଚିକରି ସେ ନିଜେ ଫୁସ୍‌ଫୁସ୍ ହେଇ କହି ବିଷ ଉଦ୍‌ଗାରିବାକୁ ଲାଗିଲା । “ଭଲ ଚାହୁଁଛ ତ ବାହାନା କରି ଚୁପ୍ ଚାପ ଖସି ଯାଅ, ବୁଝିଲ ? ଫୁଲରେଣୁ, ପୂଜାରିନୀ, ଅଭୟା, କୃଷ୍ଣା, ବେନୁ, କେତେ ସଉତୁଣୀ ଦୁଃଖ ଦେଇଛନ୍ତି ମୋର ମାଲିକାଣୀଙ୍କୁ । ଦେଖୁ ନାହଁ କାହୁମାନଙ୍କୁ ? କୁହତ କୁମାରୀ ଝିଅମାନଙ୍କ ବଖରାରେ ଏମିତି ଲଙ୍ଗଳା ଫଟୋ ଲଗାଯାଏ ?”

ସତରେ ମଣିଷ ଉଚ୍ଚର ‘ନଗ୍ନ ଛବିକୁ ଦେଖିକରି ବାଣୀସେନ ଶିହରୀ ଉଠିଥିଲା । ହୁଏତ ମେମ ଲଗେଇ ଥାଇପାରେ, କିନ୍ତୁ ବୟସ୍କ କାକାବାବୁ ତାର ଆସିବା ଆଗରୁ ସେସବୁକୁ ଉଠେଇ କରି ଆଉ କେଉଁଠି ରଖି ପାରିଥାନ୍ତେ ?

କିଏ ଜାଣେ ଚାରୁ ଠିକ୍ ହିଁ କହୁଛି । କିନ୍ତୁ ସେ ଯିବ ତ କେଉଁଠିକୁ ଯିବ ? ହୃଦୟହୀନା ମାଇଁଙ୍କୁ ସେ ଜାଣିଥିଲା ତାଙ୍କ ଭାଇର ବ୍ୟାଘ୍ର ଦୃଷ୍ଟି ତାକୁ କିଛି କ୍ଷଣରେ ତାକୁ ଗିଳିବାର ଯେଉଁ ନିର୍ଲଜ୍ଜ ଚେଷ୍ଟା କରିଥିଲା ତାହାକୁ ହୁଏତ ମାମୀ ମଧ ଦେଖି ନେଇଥିଲା । ଏଇଥିପାଇଁ ହୁଏତ ସେ ଭାଣିଜୀକୁ ସାଙ୍ଗରେ ନେଇଯିବାକୁ କୌଣସି ଆଗ୍ରହ ପ୍ରକାଶ କରି ନଥିଲେ । ରାତିରାତି ବସିକରି ସେ ଭବିଷ୍ୟତର ଯୋଜନା ତିଆରି କରୁଥିଲା କିନ୍ତୁ ସ୍କୁଲରେ ପହଞ୍ଚିଲା ମାତ୍ରେ କାକାବାବୁର ନିର୍ବିକାର ଚେହେରା ଦେଖିକରି ତାର ଚିତ୍ତର କଳୁଷ ତାକୁ ନିଜକୁ ଲଜ୍ଜିତ କରି ଦେଉଥିଲା । ଏମିତି ଦେବତୁଲ୍ୟ ବ୍ୟକ୍ତି ପାଇଁ ସେ କେମିତି ଘୃଣାପୂର୍ଣ୍ଣ କଥା ଚିନ୍ତା କରୁଥିଲା ? ଏମିତି ଯଦି ହେଇଥାନ୍ତେ ତାହେଲେ ଏହି ସାତ ମାସରେ ଥରେ ହେଲେ ତାଙ୍କର କାମନା ବାସନା ଯୁକ୍ତ ସ୍ୱଭାବର ପରିଚୟ ଦେଇନଥାନ୍ତେ ? ହେଇପାରେ ଏହି ସବୁ କଥା ଚାରୁ କେବଳ ଏଇଥିପାଇଁ ତାକୁ ଶୁଣେଇଲା ଯେ ସେ ସ୍ୱୟଂହି ପଳେଇ ଯାଇ ତାର ରାସ୍ତା ପରିଷ୍କାର କରିଦେବ ।

“ତମେ, ଯେତେବେଳେ ଯିବ ତେବେ ଯାଇବାକୁ ମତେ ଛୁଟି ଦେବେ,” ସେ ପ୍ରାୟ ଏ କଥା କହୁଥିଲା ।

କିନ୍ତୁ ଚତୁର ବିଲୁଆ କଣ ଏକଦମ ଶିକାର ଉପରେ ଲମ୍ଫ ଦିଏ ? ସେ ଧୋକାବାଜ ପକ୍ଷୀପରି, ନିର୍ମଳ ଆକାଶରେ ଗୋଲ-ଗୋଲ ଚକ୍କର କାଟେ ଯେବେ ରଜନୀକାନ୍ତ ନିଜ ଶିକାର ଉପରେ ଲମ୍ଫମାରେ, ତେବେ ସେ ସମ୍ଭାଳି ମଧପାରେ ନାହିଁ ।

“ଚାରୁ-ଚାରୁ” ତାର ଚିତ୍କାରରେ ପୁରା ନୀଳକୋଠୀ ଗୁଞ୍ଜିତ ହେଇ ଉଠିଥିଲା । କିନ୍ତୁ ତାର କରୁଣ ଚିତ୍କାର ବୟସ୍କ ବୃଦ୍ଧଙ୍କ ଉପରେ ଠୋକର ଖାଇ କରି ତାହାରି କାନରେ ହାତୁଡ଼ି ପରି ପିଟିବାକୁ ଲାଗିଥିଲା ।

“ଚାରୁ-ଚାରୁ ।”

“ଏହି କୋଠା ବୁଦ୍ଧିମାନ ସାହେବ ତିଆରି କରେଇଥିଲା ଏହି ବିଶେଷ ଗୁଣ

ସହିତ ଯେ ପ୍ରତ୍ୟେକ ଚିତ୍କାର କରୁଥିବା ବ୍ୟକ୍ତିର ଚିତ୍କାର ଠୋକର-ଖାଇ-ଖାଇ ତାହାରି ପାଖକୁ ଫେରି ଆସିବ, ବାହାରକୁ ଯାଏ ନାହିଁ ।" ନିଜର ନକଲି ଦାନ୍ତର ବିଦ୍ୟୁତ ବହ୍ନିରେ ତାକୁ ଝଲସେଇ ସେହି ଦାନବ ତାହାର ପୀଠି ଥାପୁଡ଼ାଇ ଥାପୁଡାଇ ହସିବାକୁ ଲାଗିଥିଲା ।

"ଆରାମରେ ଏଠାରେ ପଡ଼ିରହ । ଯଦି ଆଉ କୌଣସି ମୂର୍ଖତା କରି ବସିବ ତ ପୁଣି ସ୍ୱୟଂ ଭୋଗିବ ।' ଫୁଲରେଣୁର ଶବକୁ ଆଜି ପର୍ଯ୍ୟନ୍ତ ପୋଲିସ ଖୋଜିପାଇ ନାହିଁ-"

ବାଣୀର ମାଂସ-ମଜ୍ଜା ପର୍ଯ୍ୟନ୍ତ କ୍ରୋଧରେ ଭସ୍ମ ହେଇରହି ଯାଇଥିଲା । ଏହି ରାକ୍ଷସ ପୁଣି ତାହାର ଦେହର ସ୍ପର୍ଶ କରିବ, ଏହାଠାରୁ ଭଲ ସ୍ୱୟଂ ହିଁ ତାର ଠିକଣାରେ ପହଞ୍ଚାଇ ଦେବା, ଏହାଠାରୁ ଭଲ ଅବସର ଆଉ କେବେ ମିଳିପାରି ନଥାନ୍ତା ? ତାରୁ ମଧ୍ୟ ନଥିଲା, ପାଖରେ ରେଳ ଷ୍ଟେସନକୁ ଆସୁଥିବା ଗୋଟାକ ପରେ ଗୋଟିଏ ରେଳଗାଡ଼ିର ଆଗମନ - ପ୍ରତ୍ୟାଗମନର ସିଟି ସେ ପ୍ରତ୍ୟେକ ଦିନ ଶୁଣୁଥିଲା । ରଜନୀକାନ୍ତ ଯିବାପରେ ହିଁ ସେ କବାଟ ଖୋଲି ଚୁପଚାପ ବାହାରି ଯାଇଥିଲା । ପୁଣି କେମିତି କେବେ, କେଉଁ-କେଉଁ ଗାଡ଼ିରେ ଦଉଡ଼ି ଦଉଡ଼ି ବସି ସେ ବାକୀପୁର ପହଞ୍ଚି ଯାଇଥିଲା, ସେ ସ୍ୱୟଂହିଁ ଜାଣିପାରି ନଥିଲା । ସେହିଠାରେ ତାକୁ ମାଣିକ ମିଳି ଯାଇଥିଲା । ସେହି ଦିନର ଥରୁଥିବା, ସହନଶୀଳ, ବଡ଼-ବଡ଼ ଆଖିବାଲୀ, ସେହି ଶ୍ୟାମଳୀ ସାମାନ୍ୟ କିଶୋରୀ, ଆଜି ଭରା ଭରା ଅଙ୍ଗରେ ଶୋଭା ବୁଣୁଥିବା ଲାବଣ୍ୟମୟୀ ବାଣୀ ନ ଥିଲା । ତାକୁ ଯଦି ଆଜି ରଜନୀକାକା ଦେଖନ୍ତେ ତ, "ନିଶ୍ଚୟ ବୁଢ଼ାର 'ହାର୍ଟଫେଲ' ହେଇଯିବ ବଡ଼ ଅପା" ଚଞ୍ଚଳୀ ବାଣୀ ହସିକରି କହେ ।

"ଦେ ଠିକଣା ଦେ ତ ଗୋଟିଏ ଚିଠି ପକାଏ ।"

ମାଣିକ ସହିତ ବାଣୀର ଏମିତି ହସ-ପରିହାସ ଚଲୁଥିଲା ।

"ଠିକଣା ତ ଦେଇ ଦିଅନ୍ତି ବଡ଼ଅପା", ଗମ୍ଭୀର ସ୍ୱର ସହିତ ବଡ଼ ବଡ଼ ପୁତଳିଗୁଡ଼ିକୁ ମଧ୍ୟ ଗୋଲ ଗୋଲ ବୁଲେଇ ବୁଲେଇ ବାଣୀ କହେ, "କିନ୍ତୁ ଏକ ସଙ୍ଗରେ ଏତେଗୁଡ଼ିଏ ସୁନ୍ଦରୀ ଝିଆରୀମାନଙ୍କୁ ଦେଖିକରି, ଯଦି ତାଙ୍କୁ କିଛି ହେଇଯିବ ତେବେ ? ମୋର କଣ ଦଶ-କୋଡ଼ିଏଟା କାକା-ବଡ଼ବାପା ଅଛନ୍ତି ?"

ତେବେ ବାଣୀ ସେନର ଯେଉଁ ଅସଂଖ୍ୟ ଆଦରଣୀୟ କାକା-ବଡ଼ବାପା ଥିଲେ, ସେମାନଙ୍କୁ ଜଣ-ଜଣ କରି ସମସ୍ତଙ୍କ ନାମ ଗଣିବାରେ ଲାଗେ । ତାହାର ସଖୀମାନେ ଓ ବାଣୀ ହସି ହସି ଗଡ଼ି ପଡନ୍ତି ।

"ଆରେ ଟଟୁ ଚୁପକର ବର୍ତ୍ତମାନ ।"

କେବେ ଅଫରୋଜ ପୁଣି ଚିମୁଟି ଦିଏ, କେବେ ସର୍ବଦା, "ଚଟର୍ଜୀ କାକା,

ରାୟ କାକା, ଘୋଷଖୁଡ଼ୋ ଦସ୍ତିଦାର, ରାଜ ଚୌଧୁରୀ କାକା, ଟାମସ ଅଙ୍କଲ, ଡେବିଡ୍ ଅଙ୍କଲ, ହାୟରାମ । ଦମ ବନ୍ଦ ହୋଇଗଲା ଗଣୁ ଗଣୁ, ଆମର ବାଣୀ ସେନର ଅଧା ସଂସାର ଏହି ଶ୍ୱଶୁର କାକାମାନଙ୍କରେ ଭର୍ତ୍ତି ହୋଇଛି ।”

ମାଣିକ ପୁଣି ଥରେ ଛୁଙ୍କ ଦେଲା, “ଆରେ ତାକୁ ଭୁଲିଗଲ କି ? କୁମୁଦରଞ୍ଜନ ମଣ୍ଡଳ ? ସେ ତ ଏଇ ସମସ୍ତଙ୍କ କାକା ଅଟେ । ସେ ତ ଶୁଣେ ଏହାଠାରୁ ରବୀନ୍ଦ୍ର ସଂଗୀତ ।”

ବାଣୀ ରୁଷିଥିବା ବାଳିକାର ଅଦ୍ଭୁତପୂର୍ବ ଅଭିନୟ କଲା, ଥୋଡ଼ି ଉପରେ ହାତ ଧରିକରି ଚିଡ଼ଚିଡ଼ ହେଇ ଉଠେ, “ଖବରଦାର ବଡ଼ଅପା, ଯିଏ ମୋର ବୁଢ଼ାକୁ କିଛି କହିବ । ଆହାରେ, ଏକ-ଏକ ବାଳ ଧଳା, କାଶିଲା ବେଳେ ତାର ପୁରା କଫ ଛେପ ବାହାରି ଦୂର ପର୍ଯ୍ୟନ୍ତ ଛିଟିକେ, ମୁହଁରେ ରସୁଣର ଗନ୍ଧ । ଅଙ୍ଗିବାତ ରୋଗର ଆଘାତ ପାଇଁ ବେକ ଏମିତି ହେଲା ଯେମିତି କଥକ ନଚଉ ଥିଲା । ଏମିତି ପ୍ରେମୀ ବଡ଼ ଭାଗ୍ୟ ଥିଲେ ଯୁଟେ ବଡ଼ ଅପା ।”

ହୁଏତ ପ୍ରତ୍ୟେକ ପ୍ରେମୀର ଘୃଣିତ ବ୍ୟକ୍ତିତ୍ୱ ଗୋଳେଇ କରି ନୀଳକଣ୍ଠ ହେବାର ସେହି ଅପୂର୍ବ କ୍ଷମତାରୁହିଁ ବାଣୀ ସେନ ମାଣିକର ସବୁଠାରୁ ନିକଟତର ସଦସ୍ୟ ହେଇ ଯାଇଥିଲା । ମାଣିକ ଯେଉଁଠିକୁ ଯାଏ, ବାଣୀ ସେନ ଛାୟାପରି ତା ସହିତ ରହେ, ହଳଦିଆ କୋଠୀକୁ ଜଣକ ଠାରୁ ଜଣେ ଅଧିକ ବିଗିଡ଼ି ଥିବା ଘୋଡ଼ା ଆସନ୍ତି, କିନ୍ତୁ ଚତୁର ଗମ୍ଭୀରତାର ଦକ୍ଷବାଣୀ ସେହିଁ ସେମାନଙ୍କୁ ନିଜର ମଣ କରିବା ଚାବୁକରେ ମଣ କରେଇ ଦେଉଥିଲା । ପନ୍ନାର ଚିଠି ପାଇକରି କ୍ରୋଧରେ ପାଗଳ ପରି ପ୍ରଳାପ କରୁଥିଲା ମାଣିକ । ଯେତେବେଳେ ତାର ଅନୁପସ୍ଥିତିରେ ସେ ବଡ଼ ବିଶ୍ୱାସରେ ଦେଇଥିବା ଚାବିର ଗୁଚ୍ଛାକୁ ମୁନ୍ସୀଜୀକୁ ସମର୍ପଣ କରି ପଳେଇ ଯାଇଥିଲା, ସେତେବେଳେ କଣ ଅଭାଗୀ ଜାଣି ନଥିଲା ଯେ ଗୁଚ୍ଛ ଭିତରେ ରାଜକୋଷର ମଧ ଚାବି ଥିଲା ? ସେହି ରାଜକୋଷର ବୈଭବ କଣ କୁବେରର କୋଷରୁ କିଛି ଅଂଶରେ କମ ଥିଲା ? ଏହା ଠିକ୍ ଥିଲା ଯେ ମୁନ୍ସୀଜୀ ତାହାର ପରମ ବିଶ୍ୱାସୀ କର୍ମଚାରୀ ଥିଲେ, କିନ୍ତୁ ଅଭ୍ୟାସ ବିଗିଡ଼ି ଯିବାକୁ କଣ କିଛି ଡେରି ଲାଗେ ।

“ମୁଁ ତାକୁ ସଫା-ସଫା କହିଦେବି, ଯେଉଁଠିକୁ ଯିବା କଥା ଚାଲିଯାଅ, ହଳଦିଆ କୋଠୀରେ ଏମିତି ନିମକହାରାମ ଝିଅର ପାଦ ପଡ଼ିବାକୁ ଦେବି ନାହିଁ ।

ରାତିସାରା ପାଦଧରି ବାଣୀ ସେନହିଁ ତାକୁ ମନାଇ ଥିଲା ।

“ଲକ୍ଷେ ଭୁଲକରି ଥାଉନା କାହିଁକି ଛୋଟ ଅପା ତମର ଛୋଟ ଭଉଣୀ । ପୁଣି ଏହି ନିରାଶ୍ରୟ କୋଠୀରେ ଗୋଟିଏ ଶିଶୁକନ୍ୟାର ତ ଅଭାବ ଅଛି । ଦେଖିନେବ କୋଠୀ ଜୀବନ୍ତ ହେଇ ଉଠିବ ।” ବାଣୀ ସେନର ଭବିଷ୍ୟ ବାଣୀ ସତରେ ସାର୍ଥକ

ହେଇ ଯାଇଥିଲା ।

ଯେତେବେଳେ ଦେଖ ବାଣୀ ତାକୁ ଗାଲରେ ଲଗେଇ ଗାଉଥିବ :

କୃଷ୍ଣକଲୀ ମୁଁ ତାକୁହିଁ କହେ

କଳା ତାକୁ କହନ୍ତି ଅଧିକ ଲୋକ -

ଏମିତି କରି କଳା କଜଳ ମେଘ

ଜ୍ୟେଷ୍ଠ ମାସରେ ଆସେ ଈଶାନ କୋଣରେ -

ଏମିତି କରି କଳା କୋମଳ ଛାୟା

ଆଷାଢ଼ ମାସରେ ଆସେ ତମାଳ ବଣରେ -

ଏମିତି କରି ଶ୍ରାବଣ ରଜନୀରେ -

ହଠାତ୍ ଖୁସି ଘନେଇ ଆସେ ଚିତ୍ତରେ -

କଳା ?

ତାହା ସେ ଯେତେଭି କଳା ହେଉ

ଦେଖିଛି ତାର କଳା ହରିଣ ଆଖି ।

(କଣ ଏମିତିହିଁ କଳା କଜ୍ଜଳ ମେଘ, ଜ୍ୟେଷ୍ଠ ମାସର ସହିତ ଈଶାନ କୋଣରେ ଘେରି ଯାଆନ୍ତି ନାହିଁ । କଣ ଏମିତି ହିଁ ଆଷାଢ଼ରେ କଳା କୋମଳ ଛାୟା ତମାଳ-ବଣରେ ଓହ୍ଲେଇ ଆସେ ନାହିଁ ? କଣ ଏମିତି ହିଁ କଳା ଶ୍ରାବଣ ରଜନୀ ମଝିରେ ହୃଦୟ ଆନନ୍ଦରେ ପୁଲକିତ ହେଇ ଉଠେ ନାହିଁ ।

କଳା ?

କେତେ ଭି କାଲୀ ହେଉ ନା କାହିଁକି -

ମୁଁ ତାର ହରିଣ-ପରି କଳା ଆଖି ଦେଖି ଦେଇଛି )

ଏହି ଗୀତ ଗାଉ-ଗାଉ ଭାବ-ବିଭୋର ହେଇ ଉଠନ୍ତି ପ୍ରୌଢ଼ ଦୁଲାଲ ବାବୁ ତାର ଆଡ଼କୁ ଅପଲକ ଏମିତି ଭଲକରି ଦେଖିବାକୁ ଲାଗିଲେ ଯେ ସେ ସ୍ୱୟଂ ଶିହରୀ ଉଠି ଆଁଚଲ ଠିକ୍ କରିବାକୁ ଲାଗିଲା । ଆଜି ସେ ସେହି ଭୋକିଲା ଦୃଷ୍ଟିର ଅର୍ଥ ବୁଝି ପାରିଥିଲା ।

"ବାଣୀ, ମୋର ମନେ ହେଉଛି, ଏହି ଗୀତ ତମକୁହିଁ ଦେଖିକରି ଲେଖାଯାଇଛି," ସେ ପ୍ରଥମ ଦିନରେ କହିବାରୁ ବାଣୀ ଲଜ୍ଜାପାଇ ମୁଣ୍ଡ ନୁଆଁଇ ନେଇଥିଲା ।

କୋଳରେ ଥିବା ଟିକି ଝିଅକୁ ଭଲକରି ଦେଖି ବାଣୀ ମନକୁ ମନ ଚିନ୍ତା କରୁଥିଲା, ଗୀତ ମୋ ପାଇଁ ନୁହେଁ, ଏହା ପାଇଁ ଲେଖାଯାଇଛି । ଅସୀମ ସ୍ନେହ ଓ ମମତାର ମଝିରେ ବଢୁଥିଲା । କୃଷ୍ଣକଲୀର ମଳିନ କାନ୍ତିକୁ, ମାଣିକର ଏହି ଭାବରେ

ଦେହରେ ଲଗାଇବା ହଳଦି ଆଦି ପ୍ରସାଧାନରେ ପ୍ରକୃତରେ ଉଜ୍ଜ୍ୱଳ କରି ଦେଇଥିଲା । "ଛୋଟ ଅପା ତମର ଝିଅର ନାମ ବର୍ତ୍ତମାନ ବଦଳାଇବାକୁ ପଡ଼ିବ । ଦେଖୁନାହଁ, ଦିନ-ପରେ-ଦିନ କେମିତି ରଂଗ ନିର୍ମଳ ହେବାକୁ ଲାଗିଛି ନିରାଶ୍ରୟୀର ।"

ବାଣୀ ସମୟ ପାଇଲା ମାତ୍ରେ ତାକୁ କୋଳରେ ନେଇ ବସିଯାଏ । କେବେ-କେବେ ରାତିରେ ମଧ ସେ ତାକୁ ସାଙ୍ଗରେ ଶୁଆଇବା ପାଇଁ ଉଠେଇ ନେଇଯାଏ । କଲୀ, କୃଷ୍ଣକଲୀ, ମୋର କଳା, ଚାନ୍ଦ, ଅମାବାସ୍ୟା, କେତେ ଅକଡ଼ିଆ ନାମରେ ବାଣୀ ପାଗଳଙ୍କ ପରି ଡାକେ ।

କଲୀ ଯେମିତି ଯେମିତି ବଡ଼ ହେଉଥିଲା, ତାହାର ଶ୍ୟାମଳ ରଙ୍ଗ ସ୍ୱୟଂହିଁ ଗହମ ହେଇ ଆଭାର କାନ୍ତିକୁ ସ୍ପଷ୍ଟକରି ଯାଉଥିଲା । "ବଡ଼ଅପା" ପନ୍ନା କହେ, "ପାଞ୍ଚ ବର୍ଷର ହେଲାମାତ୍ରେ ୟାକୁ ବୋର୍ଡ଼ିଂରେ ରଖିବାକୁ ହେବ ।"

"କାହିଁକି ରେ, କଣ ବର୍ତ୍ତମାନଠୁ ଏତେ ଭାରି ହେଇଯାଇଛି ଝିଅ ?"

"ନା ବଡ଼ ଅପା, ବାଣୀ ଏହାକୁ କୋଳରେ ଏମିତି ଅଭ୍ୟାସ କରି ଦେଇଛି ଯେ କୋଳରୁ ତଳକୁ ରଖିଲା ମାତ୍ରେ ଚିତ୍କାର କରିବାକୁ ଲାଗେ ।"

ପନ୍ନାର କାମ ଏଠାରେ ବହୁତ ବଢ଼ି ଯାଇଥିଲା କେତେ ଥରତ ତାକୁ ରେକର୍ଡ଼ିଂ କରେଇବା ପାଇଁ କଲିକତା ମଧ ଯିବାକୁ ପଡୁଥିଲା ।

କେବଳ ବାଣୀ ସେନହିଁ ନୁହଁ, ପୁରା ହଳଦିଆ କୋଠୀର ଗେହ୍ଲୀ ଥିଲା କଲୀ । ଯେଉଁଦିନ ଠାରୁ ସେ ଚାଲିବା ଓ ଖନେଇ-ଖନେଇ କରି କହିବା ଶିଖି ଯାଇଥିଲା, ବାଣୀ ସେନା ତ ତା ଉପରେ ଭୂତ-ସବାର ହେଇଥିଲା । ବାଣୀକୁ କହୁଥିଲା 'ତାନୀ', ପନ୍ନାକୁ 'ତନ୍ନା', ଆଉ ବଡ଼ ଅପାକୁ 'ତଡ଼ ଅପା' ।

"କହ, କାକୁଡ଼ି, କଦଳୀ", ବାଣୀ ତାକୁ ଶୁଆପରି ପଢ଼ଉ ଥିଲା ।

"ତତରୀ-ତେଲୀ," ଚେହେରାରେ ମଧ ବଡ଼ ଆଖି ବୁଲେଇ କରି କଲୀ କହୁଥିଲା । ହସର ଫୁଆରା ଛୁଟୁ ଥିଲା । କେବେ କେବେ ଆକର୍ଷକ ଭାବରେ ସଜେଇ ଥିବା କଣ୍ଢେଇ ପରି କଲୀକୁ ମୁଖରା ବାଣୀ ବଡ଼ ଅପାର ଭରା ଦରବାରକୁ ଆଣିକରି ଦୁଧରେ ଧୁଆ ହେଇଥିବା ଜ୍ୟୋତ୍ସ୍ନାରେ ବସେଇ ଦେଉଥିଲା ।

"ଆରେ, କଣ କରୁଛୁ ?" ବଡ଼ଅପା ହଡ଼ବଡ଼େଇ କରି ଉଠେଇବାରେ ଲାଗେ, "ଓଦା କରିଦେବ..."

"ତାହେଲେ କଣ ହେଲା । ଗଙ୍ଗାଜଳ ଉଠେଇ ଉଠେଇ କରି ମୁଣ୍ଡରେ ଲଗେଇବେ ତମର ଦରବାରୀ, ତାହେଲେ ସବୁ ପାପ-କଳୁଷ ହୋଇ ଧୋଇ ହେଇଯିବ – ନା କଣ କହୁଛୁ ମୋର କଳୀ ।"

ଶିଖେଇ ଥିବା ମାଙ୍କଡ଼ ପରି କଲୀ ଜଣା ନାହିଁ କେମିତି ସବୁକିଛି ବୁଝିକରି

ଟିକି ନାକକୁ ଫୁଲେଇ କରି ହସିଦେଉଥିଲା ।

"ତୋର ମା କିଏ, କହି ଦେ ତ ମୋର ସୁନା", ବାଣୀ ଚତୁର ଅଭିନେତ୍ରୀ ପରି ଆକର୍ଷକ କଲୀକୁ ନିଜର ଅନୁଶାସନର ଦଉଡ଼ିରେ ବାନ୍ଧିକରି ପଚାରେ ।

"ତନ୍ନା ।"

"ତୋର ବାବା କିଏ ଝିଅ ?" ବାଣୀ ପୁଣି ତା'ର ମୁଖରା ଚପଳ ଦୃଷ୍ଟି ଡମ୍ବରୁ ବଜାଏ ।

"ୟେ ଛବ", କଲୀ ନିଜର କୁଟା ପରି ବିଶିଆଙ୍ଗୁଠିକୁ ପୁରା ଦରବାରୀମାନଙ୍କ ଆଡ଼କୁ ବୁଲେଇ ଦିଏ ।

"ଆରେ, ବାହା-ବାହା ।"

"କେମିତି ବୁଦ୍ଧି ପାଇଛି ।"

"ବିଲକୁଲ ମା ପରି ହେଇଛି ।"

କିଛିକ୍ଷଣରେ, ପୁରା ଦରବାରକୁ ନିଜ ଛୋଟ ମୁଠିରେ ବନ୍ଦକରି କଲୀ ବାଣୀର କୋଳରେ ହର୍ଷଧ୍ୱନି କରି ଚାଲିଯାଏ ।

ଏହା କଲୀର ଅକ୍ଷରାରମ୍ଭ ଥିଲା ନା କଣ ? କଣ ଡଃ ପୈଦ୍ରିକ ଏମିତି ଶିକ୍ଷା ଦେବା ପାଇଁ ତାକୁ ସମର୍ପଣ କରିଥିଲେ ?

ପନ୍ନା କେବେ କେବେ ନିଜ ଦୁର୍ବଳତା ପାଇଁ ସ୍ୱୟଂ ହିଁ କ୍ଷୁବ୍ଧ ହେଇଯାଏ । ଡା. ପୈଦ୍ରିକଙ୍କ ପତ୍ର ପ୍ରାୟ ଆସେ । ନିଜର ଶପଥର ପକ୍କା ବାହାରିଥିଲେ ଡା. ପୈଦ୍ରିକ । କଲୀର ଷଷ୍ଠ ଜନ୍ମ-ଦିବସରେ ସେ ପନ୍ନା ନିକଟକୁ ଗୋଟିଏ କୃତଜ୍ଞତା ପୂର୍ଣ୍ଣ ଲମ୍ବାପତ୍ର ଲେଖିଥିଲେ । କଲୀର ସୁନ୍ଦର ଫଟୋକୁ ଦେଖିକରି ସେ ମୁଗ୍ଧ ହେଇ ଯାଇଥିଲେ ।

"ଏହାର ବେଶଭୂଷା ଦେଖିକରି ମୁଁ ବୁଝି ପାରିଛି ଯେ ତୁମେ ଏହାକୁ କେତେ ଯତ୍ନରେ ପାଳୁଛ । କଣ ଏହା ମତେ କହିବାକୁ ହେବ ଯେ ମୁଁ ତୁମର ଆଜନ୍ମ କୃତଜ୍ଞ ହେଇ ରହିବି ?"

"କିନ୍ତୁ ମୁଁ ମୋ ଶପଥ ଭୁଲି ନାହିଁ । ମୁଁ ତୁମକୁ ଏହାକୁ ଏକବର୍ଷ ପାଳନ କରିବାକୁ ଅନୁରୋଧ କରିଥିଲି, ତୁମେ ଏହାକୁ ପାଞ୍ଚବର୍ଷର କରି ସାରିଲଣି । ମୋର ଗୋଟିଏ ବିଧବା ଭଉଣୀ, ଏହି ବର୍ଷ ନୈନିତାଲ ଆସିଯାଇଛି । ସେଠାକାର କନଭେଣ୍ଟରନନ ହେଇଛି, ଏହାଦ୍ୱାରା ମୋର ପୁରା ସୁବିଧା ହେବ । ଏମିତି ପବିତ୍ର ବାତାବରଣରେ ନିଶ୍ଚୟ ହିଁ ଏହାର ଜନ୍ମର ଇତିହାସ ଧୋଇହେଇ ଉଜ୍ଜ୍ୱଳ ପବିତ୍ର ଓ ନିର୍ମଳ ହେଇଯିବ । ଯଦି ତମକୁ ଏହାକୁ ନୈନିତାଲ ପହଞ୍ଚାଇବାର ସୁବିଧା ନାହିଁ ତ ମୋର ଭଉଣୀ ସ୍ୱୟଂ ଆସି ନେଇଯିବ ।

"କିନ୍ତୁ ହେଇପାରେ ପନ୍ନା, ତୁମେ ଏହି ଅଳ୍ପ ସମୟ ସୀମା ଭିତରେ ମୁଁ ଏହି ଅଭାଗୀ ପାଇଁ ଏମିତି ମୋହ ହେଇ ଯାଇଛି ଯେ, ଯାହାର ବନ୍ଧନ ଏବେ ତମକୁ ଦିନକ ପରେ ପ୍ରତ୍ୟେକ ଦିନ ବାନ୍ଧିବାରେ ଲାଗିଛି । ଯଦି ଏମିତି ହେଇଥାଏ ତାହେଲେ ମୋର ଡାର୍ଲିଙ୍ଗ ପନ୍ନା, ଈଶ୍ୱର ଦେଇଥିବା ଏହି ଉପହାର ତମେ ମୋର ଅଭିନନ୍ଦନ ସହ ସ୍ୱୀକାର କର ।

ତମର,.

ରୋଜୀ"

ହଡ଼ବଡ଼େଇ କରି ପନ୍ନା ଚିଠିକୁ ଛିଣ୍ଡେଇ କରି ପକେଇ ଦେଇଥିଲା । ଉଚିତ ହେଇଛି କୋଠରୀରେ ବଡ଼ଅପା ନ ଥିଲେ । ସନ୍ଦେହୀ ମାଣିକ ତାକୁ ଚିଠି ପଢୁଥିବା ଦେଖିଥିଲେ ତ ଦୁଃଖି କରି ଦେଇଥାନ୍ତା । "କାହାର ଚିଠି, କିଏ ଲେଖିଛି, ଦେଖେ ?"

ଏହା ମଧ୍ୟ ସମ୍ଭବ ଥିଲା ଯେ ବଡ଼ଅପା ନିଜର-ଅଧୈର୍ଯ୍ୟ ଯୋଗୁଁ ତାହାର ହାତରୁ ଚିଠିନେଇ ପଢ଼ି ମଧ୍ୟ ଦେଇଥାନ୍ତା । ପୁଣି କଣ ସେହି ସୂକ୍ଷ୍ମ ଦୃଷ୍ଟିରେ ପନ୍ନା କିଛି ଲୁଚେଇ ପାରିବ ? ହେଇ ପାରିଥାନ୍ତା ସେ ସ୍ୱୟଂ ଡା. ପୈଦ୍ରିକ ପାଖକୁ ଯାଇ କଲୀର ଜନ୍ମର ପୁରୁଣା ଇତିହାସ ହିଁ ଜାଣି ନେଇଥାନ୍ତା ।

ସେହିଦିନ, କୋଠରୀ ବନ୍ଦକରି ପନ୍ନା ଚିଠି ଲେଖିକରି ସ୍ୱୟଂ ନିଜ ହାତରେ ଲେଟର-ବକ୍ସରେ ପକେଇ ଦେଇଥିଲା । କଲୀକୁ ଯେତେବେଳେ ରୋଜୀ ଥରେ ପନ୍ନାର କୋଳରେ ଦେଇ ଦେଇଛି, ତା ହେଲେ ବର୍ତ୍ତମାନ ସେ ଯିବାକୁ ଦେବନାହିଁ । 'କଲୀ ଦିନ-ପରେ-ଦିନ କେତେ ସୁନ୍ଦର ହେବାରେ ଲାଗିଛି ରୋଜୀକୁ ସେ ଲେଖିଥିଲା' । 'ତୁମେ ହୁଏତ ତାକୁ ଦେଖିଲା ପରେ ଚିହ୍ନି ପାରିବ ନାହିଁ । ବର୍ତ୍ତମାନ ସେଇ ଶ୍ୟାମଳୀ ଶ୍ମଶାନକୁ ଯିବା ଶିଶୁକନ୍ୟା ଉପରେ ଯେମିତି ବିଧାତା ଜାଦୁର ଲାଠି ବୁଲେଇ ଦେଇଛି । ପାଞ୍ଚ ବର୍ଷରେ ସେ ସାତ-ଆଠ ବର୍ଷର ହୃଷ୍ଟ-ପୁଷ୍ଟ ବାଳିକା ମନେହେଉଛି । ମତେତ କେବେ-କେବେ ଭୟ ହୁଏ ରୋଜୀ, ଯୌବନ ଯେମିତି ଅସମୟରେ ଆସି ୟାକୁ ଝାମ୍ପି ନେଇ ନ ଯାଉ ।'

ପତ୍ରର ଉତ୍ତରରେ ରୋଜୀ ସ୍ୱୟଂ ନିଜେ ଆସିବାର ସୂଚନା ଦେଇଥିଲା । ନିଜ ଭଉଣୀ ସହିତ ଖ୍ରୀଷ୍ଟମାସର ପାଳନ କରି ସେ କଲୀକୁ ଦେଖିବାକୁ ଆସିବ । କେତେବର୍ଷ ହେଲା ସେ କୁଆଡ଼େ ଯାଇ ନଥିଲା ପାଦର ଗଣ୍ଠିଗୁଡ଼ିକ କେବେ ତାକୁ ଏକଦମ ପଙ୍ଗୁକରି ନ ଦେଉ, କିଛି କହି ହେବ ନାହିଁ । ଏମିତି ମଧ୍ୟ ବିନା ଲାଠି ସାହାଯ୍ୟରେ ସେ ଗୋଟିଏ ପାଦ ମଧ୍ୟ ଚାଲିପାରୁ ନଥିଲା । ତୁମ ପାଖକୁ ଆସିକରି ଓ କଲୀକୁ ଦେଖି ନେଲାପରେ ମୁଁ ନିଶ୍ଚୟହିଁ ବହୁତ ପରିମାଣରେ ସୁସ୍ଥ ହେଇଯିବି ।

ମୋର ଦୈନିକ ଆବଶ୍ୟକତାଗୁଡ଼ିକ ଅତ୍ୟନ୍ତ ସୀମିତ ଅଟେ, ଅତଏବ ତୁମର କୌଣସି ବିଶେଷ ଅସୁବିଧା ହେବ ନାହିଁ ।

ପାଗଳି ରୋଗୀ, ତାର ଆବଶ୍ୟକତା ଯେମିତି ମଧ ହେଉନା କାହିଁକି, ହଳଦୀଆ କୋଠୀ କଣ ଜଣକଠୁ ବଳି ଜଣେ ଫୁଟାଣିଆ ବିଦେଶୀ ଅତିଥିମାନଙ୍କର ଆବଶ୍ୟକତା ଆଗରୁ ନିର୍ବାହ କରି ନାହିଁ ? କିନ୍ତୁ ଏହି ସର୍ବସ୍ୱ-ତ୍ୟାଗିନୀ ତପସ୍ୱିନୀ କଣ ଏହି ପରିବେଶରେ ଗୋଟିଏ ରାତି ମଧ ରହି ପାରିବ ?

## ଚାରି

ଦ୍ୱିତୀୟ ଯୁଦ୍ଧର ସମାପ୍ତିର ସହିତ ବଡ଼ଅପାର ବ୍ୟବସାୟ ବହୁ ଉଚ୍ଚକୁ ଉଠି ଯାଇଥିଲା । ଯୁଦ୍ଧରେ ସହଜରେ ରୋଜଗାର କରି ଠିକାଦାରୀର ଧନରାଶିର କେନାଲ, ଏକା ଥରକେ ହଳଦିଆ କୋଠୀରେ ଆସିକରି ବହିବାରେ ଲାଗିଥିଲା । ବଡ଼ଅପାର ପୂର୍ବ ପରିଚିତା, ପାଞ୍ଚ ବେକାରି, ନିଜର ଖାକି ପୁରୁଷୋଚିତ ପୋଷାକକୁ ଜଳାଞ୍ଜଳୀ ଦେଇ, ପୁଣି ଥରେ ହଳଦିଆ କୋଠୀର ସୁନେଲି ପିଞ୍ଜରାରେ, ପାଳିତ ପଢୁଥିବା-ପଢ଼ାଇଥିବା ସାରୀ ପରି ମଧୁର ଶବ୍ଦ କରିବାରେ ଲାଗିଥିଲେ । ପ୍ରଥମେ ରବିବାରକୁ ହଳଦିଆ କୋଠୀ ଦିନସାରା ଛୁଟି ପାଳନ କରୁଥିଲା । ବଡ଼ ଅପା ତାର ସେଭେନ ସିଟରରେ ନିଜର ରଙ୍ଗୀନ ଦଳବଳକୁ ଭର୍ତ୍ତିକରି ଦୂର-ଦୂରାନ୍ତରକୁ ବୁଲିବାକୁ ବାହାରି ଯାଉଥିଲା । କେବେ ରାଜଗୃହ, କେବେ ରାଜମହଲ । ଯେମିତି ସମ୍ମାନିତ ଅତିଥି ହେଇ ଥାଉ ନା କାହିଁକି, ତାକୁ ରବିବାରକୁ ଆସିଲେ ନିରାଶ ହେଇ ଫେରିବାକୁ ପଡୁଥିଲା । କିନ୍ତୁ ବର୍ତ୍ତମାନ ରବିବାର ଦିନ ମଧ କୋଠାରେ ମେଳାର ଭିଡ଼ ଲାଗି ରହୁଛି । କଣ କହିବ ରୋଗୀ । ସେ ତ ରବିବାର ଦିନ ଖବର କାଗଜ ମଧ ପଢୁ ନଥିଲା ।

ଏହି ଶସ୍ତା ବାତାବରଣରେ ସେ କଲୀକୁ ଦେଖିକରି କଣ ପ୍ରସନ୍ନ ହେବ ? ଖ୍ରୀଷ୍ଟମାସ ଦିନରେ ବଡ଼ ଅପାର ଖ୍ରୀଷ୍ଟିଆନମାନେ ହଳଦିଆ କୋଠାର ଗୋଲ କୋଠରୀର ଶୋଭା ବଦଳେଇ ଦେଉଥିଲେ, ଏମିତି ଉତ୍ସାହିତ ବଡ଼ଅପା କେବେ ବକରୀ-ଇଦରେ ମଧ ଦେଖେଇ ନଥିଲେ । ଜଣାନାହିଁ କେଉଁଠାରୁ ମୌଗୀ ଛୋଟିଆ ସବୁଜ ଗଛ ସଂଗ୍ରହ କରି ଆଣିଥିଲା । ତାହା ଉପରେ ଚକମକ କରୁଥିବା ବିଜୁଳୀର ସବୁଜ ହଳଦିଆ, ନୀଳ ନଟୁ କ୍ରେପର ଲୀଳ-ହଳଦିଆ କାଗଜରେ ମୋଡ଼ା ରେଶମୀ ରିବନରେ ବନ୍ଧା ଉପହାର, ଜାପାନୀ ଲଣ୍ଠନ, ଅପୂର୍ବ ଦୀପ୍ତିରେ ଚକମକ କରୁଥିଲା । ଆଉ ଗୋଟିଏ ବଡ଼ ଟେବୁଲ ଉପରେ ଲିଜ ଏବଂ ସେନିୟା ମହମବତୀ-ଦାନୀରେ

ବଡ଼ ବଡ଼ ମହମବତୀଗୁଡ଼ିକ ସଜା ହେଇ ରହିଥିଲା । ଆଜି ସେ ବଡ଼ ଅପାଠାରୁ ବିଶେଷ ଅନୁମତି ନେଇ ନିଜର ପୁରା ଏଂଗ୍ଲୋ ଇଣ୍ଡିୟାନ ଜାତିକୁ ଆମନ୍ତ୍ରିତ କରିଥିଲା । ଏମିତିରେ ବଡ଼ଅପା ଏହି ଜାତିଠାରୁ ଦୁଇ ଗଜର ଦୂରତା ହିଁ ରଖୁଥିଲା । ହଲଦିଆ କୋଠାର ଅଧିକାଂଶ ଗ୍ରାହକ ଧରାବନ୍ଧା ବଂଶ ପରମ୍ପରାର ଯଜମାନୀର ପରମ୍ପରା ରକ୍ଷା କରିଲା ବାଲା ଗ୍ରାହକ ଥିଲେ । ଏହି ଉଚ୍ଚ ସ୍ତରର ଅତିଥିମାନେ କେବେ କୌଣସି ପ୍ରକାରର ଶସ୍ତା ହି-ହି, ଠୀ-ଠୀ ବା ତୁଚ୍ଛ ଆଚରଣର ବଡ଼ଅପାର ଆଶଙ୍କା ରହୁ ନ ଥିଲା ।

"ପିଉଥାଏ ଯଦି ଦେ ନୋ ହାଉ ଟୁ କେରୀ ଦେୟାର ଡ୍ରିଙ୍କ୍ସ", ଏବଂ ମଲେ ଏହି ଅପରିପକ୍ୱ ମେମମାନଙ୍କ ସାହେବ୍ କିଏ ଇଞ୍ଜିନ ଡ୍ରାଇଭର ତ କିଏ ଗାର୍ଡ଼ । ଚାହାନ୍ତି କି ମୋର ଝିଅମାନଙ୍କର ମଧ୍ୟ ରେଲଗାଡ଼ିର ଜୀବନ ନ ଥିବା ଡବା ପରି ନିଜ ସହିତ ଯେମିତି ଚାହାନ୍ତି ଟାଣି ନେଇଯିବାକୁ । କିନ୍ତୁ ମେଗୀକୁ ଅପ୍ରସନ୍ନ ମଧ୍ୟ କରିପାରେ ନାହିଁ ବଡ଼ ଅପା । କାନ୍ଧରେ ସୁନେଲୀ ବାଳର ରେଶମୀ ପଶମରେ ଝୁଲାଏ, ନୀଳ ଆଖି ଏବଂ ଚପଳ ସ୍ମିତ ହସର ଯାଦୁ ବୁଣୁଥିବା ମୈଗୀ ମାଣିକର ରତ୍ନ ସଂକଳନର ସବୁଠାରୁ ମୂଲ୍ୟବାନ ରତ୍ନଥିଲା । ତାହାର ଗୋଟିଏ ମୁଠିର ଅଣ୍ଟା, ପତର ମୂର୍ତ୍ତି ପରି ଏମିତି କାଟିଥିବା ଦେହ, ଯାହାର ଗୋଟିଏ ଗୋଟିଏ ସୁଗଠିତ ଅଙ୍ଗ ପୁରା ଏକ ଲକ୍ଷ ପଚିଶ ହଜାରର ଥିଲା, ବାସ୍ତବରେ ଅପୂର୍ବ ଥିଲା । ତାହାର ରୁଚିକୁ ଦେଖିକରି କେବେ କେବେ ମାଣିକ ବିସ୍ମିତ ହେଇ ଯାଉଥିଲା । କେବେ ଚଉଦ ଅଣା ଗଜର ଲାଲ ଛିଟର ଉଚା, କଳା ସୁନା ରୂପାର ଝାଲର ଲଗା ହେଇଥିବା ଲେହେଙ୍ଗା ଏବଂ କାଠିଆ ବାଡ଼ର ଚୋଲି ପିନ୍ଧିକରି, ହାତରେ ଗୋଟିଏ ସାମାନ୍ୟ ରୂପାର କଡ଼ା ଆଉ ବେକରେ ହଁସୁଲୀ ପିନ୍ଧିଥିବା ଗୋଲ କୋଠରିକୁ ଚାଲିଆସେ । ନୀଳ ଆଖିରେ ମିଶୁଥିବା ନୀଳ ରଙ୍ଗ ମଲମଲର ଅଭ୍ରରେ ଝଟକୁ ଥିବା ଓଢ଼ଣୀ ଫଡ଼ଫଡ଼ କରି ଏକାଥରକେ ନିଜର କେତେ ଯେ ପ୍ରେମିକଙ୍କ ହୃଦୟରେ ଦାବାନଳ ପରି ପ୍ରଜ୍ଜ୍ୱଳିତ କରିଦିଏ । କେବେ-କେବେ ସେ ଆସେ ନିପଟ ବିଦେଶୀ ବେଶ-ଭୂଷାରେ । ଟାର୍ଟନ ସ୍କଟ ଉପରେ ମହା-ଔଦାର୍ଯ୍ୟରେ ପ୍ରଦର୍ଶିତ ହାତୀଦାନ୍ତ ପରି ଶୁଭ୍ର କଠୋର ବକ୍ଷସ୍ଥଳ, ଶଂଖଗ୍ରୀବାରେ ପତଳା ସୁନାର ଚେନରେ ଝୁଲୁଥିବା, ନବରତ୍ନର ପେନଡ଼େଣ୍ଟ ଯାହାକୁ ଦେଖିଲାବାଲାର ଦୃଷ୍ଟିକୁ ବଳପୂର୍ବକ ବାନ୍ଧି ନିଜ ସହିତ ଖୋଲା ଥିବା ଗଳାରୁ କ୍ରମଶଃ ତଳକୁ ଓହ୍ଲାଉଥିବା ଆକର୍ଷକ ଘାଟୀ ଆଡ଼କୁ ଜୋରକରି ଟାଣି ନେଇଯାଏ । ମୈଗି ସପ୍ତାହରେ କେବଳ ଦୁଇଥର ହଳଦିଆ କୋଠାର ଗୋଲ ବଖରାକୁ ଓହ୍ଲୋଉଥିଲା । "ମୁଁ ସ୍ୱଭାବରେ ହିଁ ନରମ ଅଟେ ମାଣିକ," ସେ ତାର ସଖୀକୁ ଆସିଲା ମାତ୍ରେ କହି ଦେଇଥିଲା, "କିନ୍ତୁ ମୁଁ ତୁମକୁ ଏତେ ବିଶ୍ୱାସ ଦେଉଛି

ଯେ ଯେତେ ତମର ଝିଅମାନେ ଏକ ସପ୍ତାହ କାମ କଲେ ରୋଜଗାର କରିବେ, ସେତିକି ମୁଁ ଗୋଟିଏ ଦିନ ତଳକୁ ଆସିଲା ପରେ ମଧ ରୋଜଗାର କରିଦେବି ।"

ଏମିତି ସେନା ବାହାର କରିବା ମେସିନ୍‌କୁ ମାଣିକ କଣ ହରାଇବାର ମୂର୍ଖତା କରି ପାରିଥାନ୍ତା ?

"ମୋର ବ୍ୟବସାୟ ଯାହା ମଧ ହେଉ ନା କାହିଁକି, ମୁଁ ଜଣେ ଆଦର୍ଶ ଖ୍ରୀଷ୍ଟିୟାନ ଅଟେ, ଏହା ତୁମକୁ ମାନିବାକୁ ପଡ଼ିବ ମାଣିକ," ମୈଗୀର ପୁରୁଷୋଚିତ କାନ୍ଧ ଗର୍ବୀ ହେଇକରି ଆହୁରି ଉନ୍ନତ ହେଇଗଲା । ମୁଁ ପ୍ରତ୍ୟେକ ରବିବାରକୁ ଗିରଜାକୁ ଯାଉଛି, ଆଉ ସପ୍ତାହର ସେହି ଦୁଇ ଅଶୁଭ ରାତିରେ ଯେତେବେଳେ ମୋର ଗୋଟିଏ ନିଶ୍ୱାସ ମଧ ନିଜର ହେଇପାରେ ନାହିଁ, ମୁଁ ସମୟ ବାହାର କରି ବାଇବେଲ ପଢ଼ିନିଏ, ଏଇଥିରୁ ମୁଁ ଚାହେଁ ଯେ ଏଇଥରର ମୋର ଖ୍ରୀଷ୍ଟମାସ ଏମିତି ହେଉ ଯେ ମୋର ଅତିଥି ତମର ଖାନସମାର ହାତକୁ ଚୁମ୍ବନ କରନ୍ତୁ ।" ନିଜର ଭୁବନ-ମୋହିନୀ ହସର ଅଭେଦ୍ୟ ବାଣ ଛାଡ଼ିକରି ମୈଗୀ ତା ବଖରାକୁ ଚାଲି ଯାଇଥିଲା ।

ଖ୍ରୀଷ୍ଟମାସ ଦିନର ସତରେ ଏମିତି ଥିଲା ଯେ, ଓଜନିଆ ଖାଦ୍ୟ ଏବଂ ଦାମୀ ମଦରେ ବୁଡ଼ି ଯାଇଥିବା ମୈଗୀର ଅତିଥି ଘରକୁ ଫେରିବା ମଧ ଭୁଲି ଯାଇଥିଲେ । କିଏ ସେଫା ଉପରେ ଲଦି ହେଇ ପଡ଼ିଥିଲା, କାହାର ବେକ ଚଉକିର ହାତରେ ଲାଖି ରହିଥିଲା, ପାଞ୍ଚ-ସାତ ଜଣ ଅତିଥି ନିର୍ଜିବ ଲାଶ ପରି ଗାଲିଚାରେ ପଡ଼ି ରହିଥିଲେ । ମୈଗୀ ଗାର୍ଡ଼ ଛାତି ଉପରେ ମୁଣ୍ଡ ରଖି ଶୋଇ ରହିଥିଲା, ମଦ୍ୟପାନ ଯେମିତି ତାର ମୁଖା ଖୋଲିକରି ଦୂରକୁ ଫୋପାଡ଼ି ଦେଇଥିଲା । କେତେ ଦରବୁଢ଼ି ଓ ଥକିଲା ମନେ ହେଉଥିଲା ମୈଗୀ । ସେନିଆ, ଲିଜ, ବେଟୀ ଏବଂ ଐନୀ ପିଆନୋ ଉପରେ ହିଁ ମାନସିକ ରୋଗୀ ହେଇ ଯାଇଥିଲେ । ଗାର୍ଡ଼ର ମୁଣ୍ଡରେ ତେଢ଼ା ଲାଗିଥିବା କ୍ରେପ ପେପରର ଲାଲ କଙ୍ଗାରୁ ପରି ତାଜ, ମୈଗୀର ସୁନେଲି ବାଳ ଉପରେ ଚଢ଼େଇର ପକ୍ଷୀ ଲାଗିଥିଲା ସବୁଜ କ୍ରେପ କାଗଜର ବଙ୍କା ଟୋପୀ, ତାଙ୍କର ଘୁଙ୍ଗୁଡ଼ି ସହିତ ହଲୁଥିବା ଦେଖି ପନ୍ନା ପଛରେ ଛିଡ଼ା ହେଇଥିବା ବାଣୀ ସେନ ଜୋରରେ ହସିବାକୁ ଲାଗିଲା । "ଆହା ହା, ମରିଯାଏ ଏଇ ଲାଲ ମୁହଁର ଶୋଭା ଦେଖିକରି । ଏ ଛୋଟ ଅପା, ଏହି ଶ୍ୱଶୁର ଗାର୍ଡ଼ବାବୁର ନିଶ ଅସଲି ନା ନକଲି ? ଟାଣି କରି ଦେଖେ ଟିକିଏ ?" ଏବଂ ସତରେ ସେ ଶୋଇଥିବା ଗାର୍ଡ଼ର ନିଶ ଆଡ଼କୁ ଦୁଇଟି ଆଙ୍ଗୁଳିର ଚିମୁଟା ତିଆରି କରି ଝୁଙ୍କିବାକୁ ଯାଉଥିଲା ବେଳେ ଆସ୍ତେ କରି କବାଟ ଖୋଲି, ହାତରେ ବେଗ ଧରି, ହସୁଥିବା ରୋଜୀ ଛିଡ଼ା ହେଇଗଲା ।

ହଡ଼ବଡ଼େଇ କରି ବାଣୀକୁ ପଛକୁ ଠେଲିଦେଇ, ପନ୍ନା ଦୌଡ଼ିକରି ରୋଜୀ ସହିତ ଲାଖିଗଲା । "ଇଯେ କଣ ରୋଜୀ, ତମେତ ଲେଖିଥିଲ ତମେ ଖ୍ରୀଷ୍ଟମାସ

ପରେ ଆସିବ ? କେଉଁଥିରେ ଆସିଲ ? ଟାଙ୍ଗାରେ – କହୁଛ କଣ । ଗୋଟିଏ ତାରତ କରିପାରିଥାନ୍ତ, ଘର ଖୋଜିବାରେ କେତେ ଅସୁବିଧା ହେଇଥିବ ।”

“ନା ଡାର୍ଲିଂ,” ସେହି ସୌମ୍ୟ ସନ୍ତୁ ଚେହେରାର ଗୋଟିଏ ଗୋଟିଏ ରେଖା ନିର୍ବିକାର ଥିଲା, “ହଳଦିଆ କୋଠାକୁ ସମସ୍ତେ ଜାଣନ୍ତି ।”

ଟାଣିକରି ପନ୍ନା ରୋଜୀ ଆଡ଼କୁ ଅନେଇଲା, ପୁଣି ନମ୍ର ଭାବରେ ଆଖି ନୁଆଇଁ ଦେଲା ।

“ବାଣୀ ତମେ ଟାଙ୍ଗାରୁ ଜିନିଷ ପତ୍ର ଓହ୍ଲାଇ କରି ଉପରେ ମୋ ବଖରାକୁ ପହଞ୍ଚେଇ ଦିଅ । ରୋଜୀ ମୋ ସହିତ ହିଁ ରହିବ ।”

କେତେ ଘେରା ବୁଲୁଥିବା ସିଡ଼ିକୁ ପାରହେଇ ରୋଜୀ ପନ୍ନାର ବଖରାରେ ପହଞ୍ଚିଲା । ସିଡ଼ିର ଦୁଇ ପାଖରେ ଲାଗିଥିବା ମଣିଷେ ଉଚ୍ଚର ଦର୍ପଣ, ହାତୀଦାନ୍ତରେ ତିଆରି ହେଇଥିବା ହେଙ୍ଗର, ଯାହା ଉପରେ କେତେ ନିଶାଚର ଓ ଓଭରକୋଟ ନିଜର ନିର୍ଜିବ ସ୍ୱାମୀମାନଙ୍କର ଅଚଳ ଦେହପରି ଝୁଲୁଥିଲା, ବାସ୍ତବରେ ଦର୍ଶନୀୟ ଥିଲା । ନିଜ ବଖରାରେ ପହଞ୍ଚି କରି ପନ୍ନା ରୋଜୀର ଦୁଇ ହାତକୁ ଧରିକରି ବଡ଼ ଆଦରରେ ତାକୁ ନିଜର ରେଶମୀ କୋମଳ ବିଛଣା ଉପରେ ବସେଇ ଦେଲା ଏବଂ ସ୍ୱୟଂ ଚଉକି ଟାଣିକରି ତା ପାଖରେ ବସିଗଲା ।

“କେତେ ସୁନ୍ଦର କୋଠା ଅଟେ ?” ରୋଜୀ ପ୍ରଶଂସା ପୂର୍ଣ୍ଣ ଦୃଷ୍ଟିରେ ପନ୍ନାର ବଖରାର କେମିତି ସ୍ୱଚ୍ଛ ବିଦେଶୀ ସଜ୍ଜାକୁ ଦେଖିକରି କହିଲା ।

“ସୁନ୍ଦର ? ତମେ ମଧ ଏହାକୁ ସୁନ୍ଦର କହି ପାରୁଛ ରୋଜୀ ?” ଆଶ୍ଚର୍ଯ୍ୟ ହେଇ ପନ୍ନା ତାକୁ ଅପଲକ ଦେଖିବାକୁ ଲାଗିଲେ । କେତେ ବ୍ୟଙ୍ଗ କରୁଥିଲା ରୋଜୀ ?

“କାହିଁକି ନୁହଁ ପନ୍ନା, ତିଆରି କରିଥିବା ଲୋକ ପ୍ରତ୍ୟେକ ଜିନିଷ ସୁନ୍ଦର ତିଆରି କରି ନାହିଁ ନା କ'ଣ ?” ସେ ନିଜର ସ୍ୱଚ୍ଛ ଦନ୍ତପଂକ୍ତି ଦେଖେଇ କରି ହସି ଉଠିଲା । “ମତେ ତ ଏହି ସଂସାରରେ ଆଜି ପର୍ଯ୍ୟନ୍ତ ସବୁ ସୁନ୍ଦର-ହିଁ-ସୁନ୍ଦର ଦେଖା ଯାଉଛି ଡାର୍ଲିଂ ! କିନ୍ତୁ ଏହା କହତ, ତୁମେ ସେହି ସୁନ୍ଦର ଉପହାରକୁ କେଉଁଠି ଲୁଚେଇ ରଖି ଦେଇଛ, ଯାହାକୁ ଦେଖିବା ପାଇଁ ମୁଁ ଏତେ ଦୂରରୁ ଦଉଡ଼ି ଆସିଛି ।

“ତାକୁ ମୁଁ ନିଜ ବଖରାରେ ଶୁଆଏ ନାହିଁ । ନିମଞ୍ଜିଲରେ ମୋର, ହୀରା ଏବଂ ବଡ଼ ଅପାର ପୁରୁଣା ନର୍ସରୀ ଥିଲା, ସେଠାରେ ଶୁଏ । ଯିବ କି ? ଶୋଇଥିବ । ଦିନ-ସାର ଦୁଷ୍ଟାମି କରୁଥାଏ, ଡିଆଁଡ଼େଇଁ କରୁଥାଏ । ପୁଣି ଥକିଯାଇ ଏମିତି ନିଦରେ ଚୂର ହେଇଯାଏ ଯେ ସାତଟା ବେଳରୁ ଶୋଇପଡ଼େ ।”

ନର୍ସରୀର ବଖରାକୁ ଲାଗି ନୀଳ ରେଶମୀ ପରଦାକୁ ଅଳ୍ପ ଟିକିଏ ଉଠେଇ

ପନ୍ନା ରୋଜୀକୁ ଭିତରକୁ ନେଇଗଲା । ପାଖ ପଲଙ୍କରେ କାଳି ସାପ ପରି ଆୟା ହାତରେ ଖଇନି-ଚୂନା ଦଳୁଥିଲା । ଧୋତି ଜଂଘ ପର୍ଯ୍ୟନ୍ତ ଉଠିଥିଲା, ଆଁଚଳ କୋଳରେ ପଡ଼ିଥିଲା । ହଠାତ୍ ଏତେ ରାତିରେ ସ୍ୱାମିନୀକୁ ବଖରାରେ ଦେଖିକରି ସେ ହଡ଼ବଡ଼େଇ କରି ଉଠିବାକୁ ଲାଗିଲା ।

"ରହ" ପନ୍ନା ତାକୁ ବସିବାକୁ ସଂକେତ ଦେଲା ।

ଫ୍ଲନେଲନର ଗୋଲାପି ନାଇଟି ପିନ୍ଧି କଲୀ ଶୋଇଥିଲା ଗୋଟିଏ ହାତ ଗାଲର ତଳେ ଥିଲା, ଅନ୍ୟଟି ଛାତି ଉପରେ ।

କେତେ ସୁନ୍ଦର ଚେହେରା ଥିଲା । କିଏ କହିବ ଇଏ ସେହି କୁକୁଡ଼ା ଛୁଆପରି ବେକ ଅଟେ, ଯାହାକୁ ପାର୍ବତୀ ନିର୍ଦ୍ଦୟ ଭାବରେ ମୋଡ଼ିକରି ଦୂରକୁ ଫୋପାଡ଼ି ଦେଇଥିଲା ? କ'ଣ ଇଏ ସେହି ସୁଖିଲା ନିର୍ଜୀବ ଓଠ ଅଟେ, ଯାହାକୁ ଖୋଲି ଖୋଲି କରି ବଡ଼ ଯତ୍ନରେ ରୋଜୀ ବ୍ରାଣ୍ଡିରେ ସାରା ରାତି ଭିଜେଇ ଥିଲା ? ଇଏ କ'ଣ ସେହି ଛୋଟ କଲିଜା ଧଡ଼ଧଡ଼ କରୁଛି ଫ୍ଲାନେଲ ନାଇଟିକୁ ଉଠଉଛି – ପକଉଛି, ଯିଏ ଥରେ କେବେଳ ଗୋଟିଏ ଶିଶୁ ସ୍ପନ୍ଦନରୁ ହିଁ ରୋଜୀକୁ ଆଶ୍ୱାସନା ଦେଇ ପାରିଥିଲା ?

ରୋଜୀ ଚୁପଚାପ ଛିଡ଼ାହେଇ ପିଞ୍ଜରା ପଲଙ୍କରେ ଶୋଇଥିବା ସେହି ଦେବାଙ୍ଗନା-ପରି ସୁନ୍ଦରୀ ବାଳିକାକୁ ଅପଲକ ଆଖିରେ ଦେଖୁଥିଲା । ତାର ଆଖି ଦୁଇଟିରୁ ଲୁହ ବହି ଯାଉଥିଲା । ମାନବକୁ କେମିତି ଅପୂର୍ଣ୍ଣ ଦୈବୀ ଶକ୍ତି ପ୍ରଦାନ କରିଛନ୍ତି ସେଇ ସୃଷ୍ଟିକର୍ତ୍ତା । ମଣିଷ ଯଦି କାହାରି ପ୍ରାଣ ନେଇ ପାରେ ତାହେଲେ କାହାର ଜୀବନ ଦାନ ଦେଇ ମଧ ପାରିବ । ଏହି ଶିଶୁକନ୍ୟାକୁ କ'ଣ ସତରେ ରୋଜୀ ହିଁ ଜୀବନ ଦାନ କରିଥିଲା ।

ଇଏ ଯିଏକି ସାଜ-ସଜ୍ଜା ହେଇଥିବା ବଖରାରେ କୋମଳ ପଲଙ୍କରେ ଶୋଇ ମିଠା ସ୍ୱପ୍ନରେ ବୁଡ଼ି ପଡି ରହିଛି, ତାହାର ମଙ୍ଗଳ-ମୁକୁଟ କଣ ସ୍ୱୟଂ ସେହି ଉଦାର ପିତା ରୋଜୀର ମୁଣ୍ଡରେ ପିନ୍ଧେଇ ଦେଇଛି ?

"ରୋଜୀ, ବର୍ତ୍ତମାନ ଯିବା, ବହୁତ ରାତି ହେଇ ଯାଇଛି," ଆସ୍ତେ କରି ରୋଜୀକୁ ଚୁପ୍‌ଚାପ୍ ପନ୍ନା ବାହାରକୁ ଟାଣି ନେଇଗଲା ।

"ଇଟ ଇଜ ସୋ ସିଲି ଅଫ ମି ଡାର୍ଲିଂ" ରୋଜୀ ଛାତିରୁ ରୁମାଲ ବାହାର କରି ଆଖି ପୋଛିଲା, ନାକରୁ ସିଂଘାଣି ପୋଛିଲା ଆଉ ହସିକରି ପନ୍ନାର ହାତକୁ ଥାପୁଡ଼େଇବାକୁ ଲାଗିଲା । ହସିଲା ପରେ ରୋଜୀର ଚେହେରା ଏକ ସରଳ ନିର୍ଦ୍ଦୋଷ ବାଳିକା ପରି ମନେ ହେଲା ।

"ଜଣା ନାହିଁ କଣ ମତେ ହେଇଗଲା, କିନ୍ତୁ ଏହି ସୁନ୍ଦର ଶିଶୁକୁ ଦେଖିକରି

କ୍ଷଣକ ପାଇଁ ମୁଁ ବିଶ୍ୱାସ କରି ପାରିଲି ନାହିଁ ଯେ ଇଏ ସେଇ ମରି ଯାଉଥିବା ମୂଷା-ପରି ଶିଶୁ ଅଟେ, ଯାହାକୁ ମୁଁ ଯେତେବେଳେ ତମର କୋଳରେ ଦେଲି ଟିକିଏ ମଧ ଆଶା ନ ଥିଲା ଯେ ଇଏ ମାସେ ମଧ ବଞ୍ଚି ପାରିବ ।"

"କେତେ ଯତ୍ନରେ ତମେ ଏହାକୁ ପାଳିଥିବ ପନ୍ନା, ମୁଁ ବୁଝି ପାରୁଛି । ନାକ, ଆଖି, କୁଟିଳ ଓଠ, ସବୁ ଅସଦୁଲ୍ଲା ପରି ହେଇଛି", ରୋଜୀ ଫୁସ୍‌ଫୁସ୍ କରି କହିବାକୁ ଲାଗିଲା । "ଲମ୍ବା ମଧ କେତେ ହେଇଛି, ଏକଦମ ପଠାଣର ଝିଅ ହେଇଛି ପନ୍ନା କିନ୍ତୁ ଆଖି ଦେଖିଛ ? ସେ ଦୁଇଟି ଦି'ପୁଅର ରେଚ । ରୋଗ ହେବା ପୂର୍ବରୁ ତାର ଆଖି କେଡ଼େ ସୁନ୍ଦର ଥିଲା, ଆଉ ପଲକ, ଓହୋ ପନ୍ନା, ମୁଁ ଏମିତି ସୁନ୍ଦର ଆଖି ଆଜି ପର୍ଯ୍ୟନ୍ତ କେଉଁଠି ଦେଖିନାହିଁ, ସେ ହସିବା ପୂର୍ବରୁ ତାର ବଡ଼ ବଡ଼ ଆଖି ହସିବାକୁ ଲାଗିଥାଏ । କହିବା ପୂର୍ବରୁ ତାର ଆଖି କହୁଥିଲା ଆଉ ଏବେ...."

ରୋଜୀ ସହସା ସ୍ୱୟଂ ହିଁ ସଂକୋଚ କରି ଚୁପ ହେଇଗଲା ।

"ବର୍ତ୍ତମାନ କଣ ରୋଜୀ ?" ପନ୍ନା ଶ୍ୱାସ ଅଟକେଇ ବସିଗଲା ।

"ବର୍ତ୍ତମାନ ? ବର୍ତ୍ତମାନ ସେ ଅନ୍ଧ ପନ୍ନା, ତାହାର ରୋଗ ବର୍ତ୍ତମାନ ଭଲରୁ ଭଲ ଔଷଧ ଦେଇ ମଧ ଉନ୍ନତି ହେଇ ନାହିଁ ।" ରୋଜୀର କଣ୍ଠସ୍ୱର ଭୟରେ ଥରି ଉଠିଲା । ପନ୍ନାର ଗଳା ସୁଖି ଗଲା । ଜିଭ ଯେମିତି ତାଳୁରେ ଲାଖି ରହିଲା ।

"କଣ ତମେ ଚିନ୍ତା କରୁଛ," ସେ ରହି-ରହି କରି ପଚାରିଲା, "କ'ଣ କେବେ ପିତାର ନାକ-ନମୁନା ଏବଂ ମା'ର ବଡ଼ ଆଖିର ଏହି ଅବିକଳ ପ୍ରତିମୂର୍ତ୍ତି ମଧ ଏହି ମହାରୋଗର ଶିକାର ହେଇଯିବ ? କ'ଣ ଇଏ ସମ୍ଭବ ହେବ ନାହିଁ ରୋଜୀ ଯେଉଁ ବିଚିତ୍ର ପ୍ରକୃତି ଏହାକୁ ପିତାର ମୁଣ୍ଡ, ଉଚ୍ଚତା ଏବଂ ରଙ୍ଗ ଦେଇଛି, ମା'ର ବଡ଼ ବଡ଼ ଆଖି ଦେଇଛି ତାହା ଏହାକୁ ମା-ବାପର ବଡ଼ ରୋଗ ମଧ ଦେଇ ଦେବ ?"

"ନା ରେ ପାଗଳୀ" ରୋଜୀ ପନ୍ନାକୁ ବାହୁର ଆଶ୍ୱାସନା ପୂର୍ଣ୍ଣ ଘେରରେ ବାନ୍ଧି ନେଲା । ପୁଣି ଇଏ ତମ ପରି ସ୍ୱସ୍ଥ-ମା'ର ସ୍ତନପାନ କରିଛି । ତମର କେବେ ଏମିତି କୌଣସି ଭୟ ହେବାର ଦରକାର ନାହିଁ । ନିଶ୍ଚିନ୍ତ ରୁହ ପନ୍ନା, ତମର ସୁନ୍ଦରୀ କନ୍ୟାର କେବେ ଏହି ରୋଗର ଭୟ ରହିବ ନାହିଁ, କିନ୍ତୁ ଏହାର ଗୋଟିଏ ଭୟ ସର୍ବଦା ରହିବ, ଏହା ମୁଁ ଚାହୁଁଛି । ଜାଣିଛ କାହାର ?"

"କାହାର ରୋଜୀ ?"

"ତାହାର" ଆକାଶ ଆଡ଼କୁ ନିଜର ଗଣ୍ଠି ଗଣ୍ଠିଆ ଫଗୁ ବଙ୍କା ଅଂଗୁଳୀ ଉଠେଇ କରି ରୋଜୀ ହଠାତ୍ ଗମ୍ଭୀର ହେଇଗଲା । "ତମେ ବାଇବେଲ ପଢ଼ିଛ ନା ପନ୍ନା ? ସେହି ଦଶ କୁଷ୍ଠ ରୋଗୀଙ୍କ କଥା ମନେଅଛି ଯାହାକୁ ଯୀଶୁ ନିଜର ଦିବ୍ୟ ସ୍ପର୍ଶରେ ରୋଗ-ମୁକ୍ତ କରି ଦେଇଥିଲେ, କିନ୍ତୁ ସେ ଦଶ ମଧ୍ୟରୁ କେବଳ ଜଣେ ତାଙ୍କ ପାଖକୁ

କୃତଜ୍ଞତା ଜ୍ଞାପନ କରିବାକୁ ଆସିଥିଲା । ମୁଁ ଚାହୁଁଛି ଇଏ ସେ ଦଶଙ୍କ ଭିତରୁ ଜଣେ ହିଁ କୃତଜ୍ଞ ହେଇ ରହୁ ।”

“ସେହି ମହାନ ଅଦୃଶ୍ୟ ବ୍ୟକ୍ତିତ୍ୱର ଅସ୍ତିତ୍ୱକୁ କଣ ଇଏ ଏଠାରେ ରହିକରି ଜାଣି ପାରିବ ?”

“ଏଇଥି ପାଇଁ ମୁଁ ତୁମଠାରୁ ଏହାକୁ ମାଗିବା ପାଇଁ ଆସିଛି ପନ୍ନା । ମୁଁ ଚାହୁଁଛି ଏହାକୁ ନୈନିତାଲର କନଭେଣ୍ଟରେ ମୁଁ ସେହି ତପସ୍ୱିନୀଙ୍କ ମଧ୍ୟରେ ନେଇ ଯାଇ ଛାଡ଼ିଦେବି, ଯେଉଁଠାରେ ପାପ ବା କଳୁଷର ଛାୟା ମଧ୍ୟ ପଡ଼ିପାରିବ ନାହିଁ ।”

“ଓହୋ ରୋଜୀ, କ’ଣ ତମେ ଭାବୁଛ କି ହଳଦିଆ କୋଠାରେ ରହିଲେ ମୁଁ ଏହାକୁ ନିଜର ରଙ୍ଗରେ ରଙ୍ଗ କରିଦେବି ।

“ପନ୍ନା, ମାଇ ପ୍ରେସିୟସ,” ରୋଜୀ ଚଉକିରେ ବସିକରି ଶୀଘ୍ର ଶୀଘ୍ର ଏବଂ ଲମ୍ବା ଲମ୍ବା ନିଶ୍ୱାସ ନେବାକୁ ଲାଗିଲା । ଏତେଗୁଡ଼ିଏ ସିଡ଼ି ଏକା ଥରକେ ଚଢ଼ିବା-ଓହ୍ଲେଇବାର ଅଭ୍ୟାସ ନ ଥିଲା । “କୋଇଲା କୋଠରିରୁ କ’ଣ କେହି ବିନା କଳଙ୍କ ନେଇ ଫେରିପାରିବ ? ତମେ ଘବରାଉଛ କାହିଁକି ପନ୍ନା, ଯିଏ ତମର ସ୍ତନପାନ କରିଛି ସେ ଯେଉଁଠି ରହୁ, ତମକୁ କ’ଣ ସହଜରେ ଭୁଲି ଯିବ ? ମୁଁ ବର୍ତ୍ତମାନ ଦୁଇଦିନ ଏଠାରେ ରହିବି, ଏହା ମଧ୍ୟରେ ତୁମେ ସ୍ୱୟଂ ଚିନ୍ତା କରି-ବିଚାର କରି ନିର୍ଣ୍ଣୟ କରି ପାର ।”

ପନ୍ନା ବାଣୀକୁ ପ୍ରଥମରୁ ବୁଝେଇ-ସୁଝେଇ ଦେଇଥିଲା ଯେ, କଲୀକୁ ସେ ସ୍ୱୟଂ ସଜେଇ ମେମ-ସାହେବ ସହିତ ଦେଖା କରିବାକୁ ଆଣିବ । ପ୍ରତ୍ୟେକ ଦିନ ମା’ର ଜଳଖିଆ ଖାଇସାରିବା ପରେ ରେଶମୀ ଚୁଡ଼ିଦାର ପାଇଜାମା ଏବଂ କମୀଜ-ଓଢ଼ଣୀରେ, ଅତର ଲଗେଇ, କଣ୍ଢେଇ ପରି ସଜ୍ଜିତ କରି ତାକୁ ଦେଖେଇବାକୁ ଆଣିଥିଲା ଦୁଇ ଭଉଣୀଙ୍କ ମଝିରେ ତାର ଛୋଟ ଚୌକୀ ଲାଗି ରହିଥାଏ । ବଡ଼ମା ସହିତ ଜଳଖିଆ ଖାଇ ସେ ଆୟା ସହିତ ବୁଲିବାକୁ ଯାଏ । ଫେରିବା ପରେ ମୌଲବୀ ସାହେବ ଉର୍ଦ୍ଦୁ ପଢ଼ଉ ଥିଲେ ଏବଂ ମୈଗୀ ଆଣ୍ଟି ଇଂରାଜୀ । ତାପରେ ଛୋଟ ମା’ ସ୍ୱୟଂ ଏକ ଘଣ୍ଟା ପର୍ଯ୍ୟନ୍ତ କଥକ ନୃତ୍ୟର କଠିଣ ଘୁରିବା ଢଙ୍ଗରେ ଚରଖୀ ପରି ଘୁରୋଉ ଥାଏ ।

“ଦିନେ-ଦୁଇ ଦିନ ପାଇଁ କଲୀର ରିବାଜ ବନ୍ଦ ରଖିବାକୁ ହେବ ବଡ଼ଅପା, ରୋଜୀକୁ ହୁଏତ ଏହିସବୁ ଭଲ ଲାଗିବ ନାହିଁ,” ଅପ୍ରସନ୍ନ ସ୍ୱରରେ ପନ୍ନା ବଡ଼ଅପାକୁ କହିବାରୁ ସେ ଆଶ୍ଚର୍ଯ୍ୟ ହେଇ ତାକୁ ଦେଖିବାକୁ ଲାଗିଲେ ।

“କାହିଁକି ଦୁଇଦିନ ପାଇଁ କେଉଁଠାରୁ ତୋର ରୋଜୀ ଆସିଛି ଯେ ଝିଅର ନାଚିବା-ଗାଇବା ହିଁ ବନ୍ଦ କରିଦେବୁ ? ଝିଅ ତୋର ନା ତାର ? ତୁ ଜାଣିଛୁ ପନ୍ନା, କଞ୍ଚା ମାଟିକୁ ହିଁ ଚତୁର କୁମ୍ଭାର ଯେମିତି ଚାହିଁବ ସେମିତି ଗଢ଼ି ପାରିବ, ପକ୍କା

ମାଟିକୁ ନୁହଁ । ଥରେ ଏହି ମିସ୍‌ନେରୀ ବାଲାଙ୍କ ହାତରେ ଝିଅକୁ ସମର୍ପଣ କରିଦେଲୁ ତ ବୁଝିଥା, ଗଲା । ସେମାନେ ତାକୁ ନିଜ ବିଦ୍ୟା. ଶିଖେଇବେ, ଆମର ବିଲ୍ଲୀଜ ଭୁଲିଗଲା ନାହିଁ ନିଜକୁ ?”

ବିଲ୍ଲୀଜ ମୁନୀରର ବଡ଼ ଭଉଣୀର ଝିଅ ଥିଲା । ଦେଖିବାକୁ ଉଜ୍ଜ୍ୱଳ-ମାଇ ପିମ୍ପୁଡ଼ି ମେମ, କିନ୍ତୁ ଏକଦମ ଦୁର୍ବଳ-ପତଳୀ । ଜଣା ନାହିଁ କିଏ ବିଲ୍ଲୀଜର ମା'କୁ କହିଦେଲା ଯେ ଇଂରାଜୀ ସ୍କୁଲକୁ ପଠେଇଲେ, ତାହାର ଝିଅ ସ୍ୱଚ୍ଛ ହେଇ ଆସିବ । ହୁଏତ ସ୍ୱୟଂ ବିଲ୍ଲୀଜର ବିଦେଶୀ ପିତାର ମଧ୍ୟ ଆଗ୍ରହ ଥିଲା । ଚଉଦ ବର୍ଷର ବନବାସ ପରେ ବିଲ୍ଲୀଜ ଘରକୁ ଫେରିଲା ଯେତେବେଳେ ସ୍ୱୟଂ ତାହାର ମା' ତାକୁ ଚିହ୍ନି ପାରିଲା ନାହିଁ ଏବଂ ପୁଣି ବିଲ୍ଲୀଜ ତା ସହିତ ରହିବାକୁ ଚାହୁଁଥିଲା ?

ନ ସେ ମରିଚ-ମସଲାର ତରକାରୀ ଖାଇ ପାରୁଥିଲା, ରୁଟି-ପୁରି । କଣ୍ଟା-ଛୁରୀ ବିନା ତା ଗଳା ତଳକୁ ଗ୍ରାସ ଯାଉ ନଥିଲା । ଲକ୍ଷେ ଚେଷ୍ଟା କଲାପରେ ମଧ୍ୟ ତାର ମା' ନା ତାକୁ ଗୀତ ଶିଖେଇ ପାରିଲା, ନା ନାଚ । ଦିନ-ରାତି ମା' ଝିଅ ମଧ୍ୟରେ ଝଗଡ଼ା ହେଉଥିଲା ଆଉଦିନେ ବିଲ୍ଲୀଜ କୌଣସି ମେଲ ଗାଡ଼ିର ଡ୍ରାଇଭର ସହିତ ପଳେଇ ଯାଇଥିଲା ।

"ତୁମେ ଭୁଲି ଯାଉଛ ବଡ଼ ଅପା", ପନ୍ନା କହିଲା, "ରୋଜୀର ଏମିତି କିଛି ସର୍ତ୍ତ ନାହିଁ । ବିଲ୍ଲୀଜର ଅହଙ୍କାରୀ ମେମ ତ ପ୍ରଥମରୁ ଲେଖେଇ-ପଢ଼େଇ ଦେଇଥିଲା ଯେ ପାଠ ପଢ଼ା ଶେଷ ହେବା ପର୍ଯ୍ୟନ୍ତ ତାକୁ ଥରେ ହେଲେ ଘରକୁ ଆସିବାକୁ ଦେବ ନାହିଁ । କିନ୍ତୁ ରୋଜୀ କହୁଛି, କଳୀ ପ୍ରତ୍ୟେକ ଛୁଟିରେ ଏଠାକୁ ଆସି ପାରିବ ଆଉ ଇଚ୍ଛାହେଲେ ମୁଁ ମଧ୍ୟ ତା ସହିତ ଦେଖା କରିବାକୁ ଯାଇପାରିବି । ଏବଂ ପୁଣି କ'ଣ ତମେ ଭାବୁଛ, ମୋର ଏହି ଜୀବନରେ ମୁଁ ବହୁତ ସୁଖରେ ଅଛି ଯେ କଳୀକୁ ମଧ୍ୟ ସେହି ଜୀବନ ପାଇଁ ତିଆରି କରିବି ?"

"କ'ଣ କହୁଛୁ ଛୋଟ, ତୋର ଏଠାରେ ଦୁଃଖ ଅଛି ? କ'ଣ ଏମିତି କଷ୍ଟ ଅଛି, ଟିକିଏ ମୁଁ ମଧ୍ୟ ଶୁଣେ ?" କ'ଣ ମୁଁ କେବେ କୌଣସି ଜବରଦସ୍ତି କରିଛି ? ଯେତେବେଳେ ସେହି ମୁଖପୋଡ଼ା ମଜୁମଦାର ମାସ ମାସ ଏଠାରେ କିଛି ନ ଦେଇ ମୋର ହଜାର-ହଜାର ଟଙ୍କାର ବୋତଲ ଖାଲିକରି ପଡ଼ି ରହୁଥିଲା, ସେତେବେଳେ ମଧ୍ୟ ମୁଁ ତତେ କିଛି କହି ନାହିଁ....

"ଚୁପକର ବଡ଼ ଅପା, ରୋଜୀ ଶୁଣିବତ କ'ଣ କହିବ", ପନ୍ନା କବାଟ ବନ୍ଦକରି ଦେଇଥିଲା ।

"ଚୁଲିରେ ଯାଉ ତୋର ରୋଜୀ । ଗୋଟାକ ପରେ ଗୋଟିଏ ଗ୍ରାହକ ଉଠିକରି ଫେରି ଯାଉଥିଲେ, କିନ୍ତୁ ଶକ୍ତି ଥିଲା ମୋର ତତେ କେବେ କିଛି କହିଛି । ପୁଣି ଗୋଟିଏ ଦିନ ତୋର ଗଳାରେ ଏହି ଢୋଲ ଝୁଲେଇ କରି ବଦମାସ୍‌ଟା

ପଳେଇଗଲା, ତେବେ ମଧ୍ୟ ତୁ ଏତେବଡ଼ କଥା ମତେହିଁ ଲୁଚେଇଲୁ । ଯାହାର କାନିରେ ମୁଁ ମୂଲ୍ୟବାନ ଲୁହା ବାକ୍ସର ଚାବି ବାନ୍ଧିକରି ଗଲି, ସେ ହିଁ ମତେ ଧୋକାଦେଇ ନିଜେ ପଳେଇଲା ସୀତାରାମ । ଏବଂ ପୁଣି ନାକ କଟେଇ ଫେରିଲୁ ତ କିଏ ଶରଣ ଦେଲା ତତେ ? ସେତେବେଳେ କେଉଁଠି ଥିଲା ଏହି ରୋଜୀ ?"

ଦୁଇ ଭଉଣୀଙ୍କ ମଧ୍ୟରେ ଆଜି ପର୍ଯ୍ୟନ୍ତ କେବେ ଏମିତି ଉଚ୍ଚସ୍ୱରରେ ତର୍କ ହୋଇ ନ ଥିଲା । ପନ୍ନା ଦେଖିଲା, ମୈଗୀ, ବାଣୀ, ସୋନିଆ, ଲିଜ, ସମସ୍ତେ ଉପର ମହଲାରେ ଦଳବାନ୍ଧି, ଜଣେ-ଜଣକ ଉପରେ ପଡ଼ି ଯାଉଥିଲେ ।

"କେମିତି ସିନ୍ କ୍ରିୟେଟ୍ କରୁଛ ବଡ଼ ଅପା । କଲୀ ମୋର ଝିଅ, ମୁଁ ଯେଉଁଠିକୁ ଚାହେଁ ତାକୁ ପଠେଇ ପାରିବି ।"

"ଆଚ୍ଛା ! ଯେତେବେଳେ ଦୁର୍ବଳ ସେହି ଅତ୍ୟନ୍ତ କାଳୀକୁ ଏଠାକୁ ନେଇକରି ଆସିଥିଲୁ, ସେତେବେଳେ କାହିଁକି ପଠେଇ ଦେଲୁ ନାହିଁ ତାକୁ ଗିର୍ଜାକୁ ? ଅତ୍ୟନ୍ତ କାଳୀ ଖ୍ରୀଷ୍ଟିୟାନଙ୍କ ମଧ୍ୟରେ ଠିକ୍ ହେଇଥାନ୍ତା । ସେତେବେଳେ ତାହାର ସାମର୍ଥ୍ୟ ଥିଲା ଆମ ମଝିରେ ରହିବାକୁ ? ଛୁଇଁବାକୁ ମଧ୍ୟ ଘୃଣା ଲାଗୁଥିଲା ହାରାମଜାଦୀକୁ...."

ପନ୍ନା ଆଉ ଶୁଣି ପାରିଲା ନାହିଁ । କ୍ରୋଧରେ ତାର ଚେହେରା ତମତମ ହେଇ ଉଠିଲା । ସେ ଜଣାନାହିଁ କ'ଣ କହିବାକୁ ଯାଉଥିଲା ପର୍ଦା ଉଠେଇ ଶାନ୍ତ ମୂର୍ତ୍ତି ରୋଜୀ ଛିଡ଼ା ହେଇଗଲା ।

"ପନ୍ନା ମାଇଁ ପ୍ରେସିୟସ୍," ସେ ହସିକରି କହିଲା, "ତମ ଭଉଣୀ ତମର କଲୀକୁ କେତେ ଭଲ ପାଉଛି । ହୁଏତ ତାକୁ ସ୍କୁଲ ପଠେଇବାକୁ ଚିନ୍ତାରେ ତାଙ୍କୁ ଏତେ କଷ୍ଟ ହେଉଛି । ଠିକ୍ ଅଛି, ମୁଁ କଲୀକୁ ନେଇଯିବି ନାହିଁ ।

"ତୁମେ ନେଇଯିବ," ବ୍ୟାକୁଳ ହେଇ ମାଣିକ ରୋଜୀ ଆଡ଼କୁ ବୁଲିଗଲା, "କଲୀକୁ କେବଳ ନୁହଁ, ତା'ର ମା'କୁ ମଧ୍ୟ । ମୁଁ ଆଜି ପର୍ଯ୍ୟନ୍ତ ଦୁଧ ପିଏଇ ସାପ ପାଳିଥିଲି, ଏହା ଭାବି ଖୁସି ହେବି । ଫିରଙ୍ଗୀର ବର୍ଣ୍ଣଶଙ୍କର କନ୍ୟା କେମିତି ମୋର ସହୋଦରା ହେବ ? ଏଇଥି ପାଇଁ ତ ଆଜି ନିଜର କୃତଘ୍ନ ଜାତିର ପଣନ୍ତ ଧରି ଚାଲି ଯାଉଛୁ ।"

"ଠିକ ଅଛି ବଡ଼ ଅପା, ଏତେ ଗର୍ଜନ-ତର୍ଜନ କଲେ ଗଳା ବସିଯିବ । ତମକୁ ଆଜି ରାତିର ଧ୍ରୁପଦ ମଧ୍ୟ ଏକା ଗାଇବାକୁ ପଡ଼ିବ ।" ମର୍ମସ୍ଥଳରେ ଶରର ଅବ୍ୟର୍ଥ ଲକ୍ଷ ସହିତ ପନ୍ନା ରୋଜୀର ହାତଧରି ବାହାରକୁ ଚାଲିଗଲା ।

ଏହାତ ବଡ଼ ଅପାର ଏକମାତ୍ର ଦୁର୍ବଳତା ଥିଲା । ପନ୍ନା ବିନା ତାର ଅଭ୍ୟସ୍ତ ଥିବା କଣ୍ଠର ସ୍ମରଣରୁ ସ୍ମରଣ କରିବା ଆଳାପ ମଧ୍ୟ ବେସୁରା ହେଇକରି ଖେଳେଇ ହେଇ ଯାଉଥିଲା । ପୁଣି ସେହି ଦିନର ବୈଠକ କଣ ଏମିତି ସେମିତି ଥିଲା ?

ସଂଗୀତର ଅଦ୍ୱିତୀୟ ସଙ୍ଗୀତଜ୍ଞ ସ୍ୱୟଂ ଶାମୁକାର ମୋତୀକୁ ଅଲଗା କରିବା ପାଇଁ ଆସୁଥିଲା । କ'ଣ କହିବ ଏବେ ନବାବ ଶମସୁଦ୍ଦୀନଙ୍କୁ ? ଅଗ୍ରୀମ ମଧ୍ୟ ପ୍ରଥମରୁ ନେଇ ସାରିଛି ।

ଏ ଦିଗରେ ବଢୁଥିବା ରକ୍ତଚାପ ହୃଦୟହୀନ ଶତ୍ରୁ ପରି ତାର ବେକକୁ ମୋଡ଼ି ଦେଉଥିଲା । କେତେଥର ଜୋକ ଲଗେଇ-ଲଗେଇ କରି ସେର ସେର ରକ୍ତ ବାହାର କରିସାରିଥିଲା । ତେବେ ମଧ୍ୟ ଯେତେବେଳେ ଦେଖ, ନାକର ରାଗ ଓଠକୁ ଓହ୍ଲେଇ ଆସେ ଆଉ ଯାହା ମନକୁ ଆସେ, ତାହା ବକିବାକୁ ଲାଗେ କିନ୍ତୁ କରିଥାନ୍ତା ମଧ୍ୟ କ'ଣ ? କ'ଣ ପନ୍ନା ତାକୁ ଏହି ଦ୍ୱିତୀୟ ଥର ଧୋକା ଦେଇ ନଥିଲା ?

ଆଉ ଗୋଟିଏ କଥା ମଧ୍ୟ ଥିଲା । ଯୁଗ ଦେଖୁ-ଦେଖୁ ବଦଳୁ ଥିଲା । ଯେଉଁ ଝିଅକୁ ସେ ଯେମିତି ଚାହୁଁଥିଲା ନଚେଇ ପାରୁଥିଲା, ସେ ବର୍ତ୍ତମାନ ଦୁଷ୍ଟ ମୈଗୀର ସଂରକ୍ଷଣରେ ଗୋଟିଏ ଛୋଟିଆ-ମୋଟିଆ ୟୁନିୟନ ତିଆରି କରିଥିଲା । ସପ୍ତାହରେ ଦିନେ ଛୁଟି ଦେବାକୁ ହେବ । କିନ୍ତୁ ସେଦିନ ମଧ୍ୟ ତାଙ୍କୁ ଦିନ ଯାକର ଦରମା ଦେବାକୁ ହେବ । ତାପରେ ହାରାମଜାଦିମାନେ କେମିତି ଛୁଟି କଟେଇବେ, ତାହା ମଧ୍ୟ ଖୁବ୍ ଜାଣିଥିଲା ମାଣିକ !

ଏଠାକୁ-ସେଠାକୁ ବୁଲାବୁଲି କରି ସୌନ୍ଦର୍ଯ୍ୟର ପ୍ରଦକ୍ଷିଣ କରୁଥିବା ଟୋକିମାନଙ୍କୁ ନେଇ ଥରେ-ଦୁଇ-ଥର ହାତାହାତି ଧରି ମଧ୍ୟ ସାରିଥିଲା । ଯେତେ ଦିନ ଗୋରା ସୈନ୍ୟର ଗୋଟିଏ ଅଂଶ ଶିବିରରେ ରହିବ, ସେହି ପ୍ରଦକ୍ଷିଣ କରୁଥିବା ଟୋକିମାନଙ୍କର ବିକ୍ରି ଚଟାପଟ ହେଉଥିବ, ଏବଂ ଯେତେଦିନ ପର୍ଯ୍ୟନ୍ତ ମୈଗୀ ସେମାନଙ୍କର ହେଡ୍ ହେଇ ରହିବ, ସେତେଦିନ ପର୍ଯ୍ୟନ୍ତ ସେ ସେମାନଙ୍କ ଭିତରୁ ଜଣକୁ ମଧ୍ୟ କୈଫିୟତ ମାଗି ପାରିବ ନାହିଁ, ଏହା ମଧ୍ୟ ସେ ଖୁବ୍ ଭଲ ଭାବରେ ଜାଣିଥିଲା ।

ଏଇଥିପାଇଁ ସୁନ୍ଦରୀ କଲୀକୁ ସେ ଗୋଟିଏ ସୁରକ୍ଷିତ ଜୀବନ ବୀମାର ଅତୁଟ ଧନରାଶିର ରୂପରେ ହିଁ ଦେଖିବାକୁ ଲାଗିଥିଲା । ଏହା ଠିକ୍ ଥିଲା ଯେ, ଝିଅଟି ଦୁର୍ଭାଗ୍ୟବଶତଃ ମା'ର ରଙ୍ଗ ପାଇ ନାହିଁ, କିନ୍ତୁ ତା'ର ଅପୂର୍ବ ଅଙ୍ଗ ସୌଷ୍ଠବ, ଚପଳ ଦୃଷ୍ଟି, ସୁକୁମାର ଚେହେରାରେ ଅନେକ ସମୟ ପୂର୍ବରୁ ଅପ୍ରତ୍ୟାଶିତ ଯୌବନ-ଅତିଥିର ସ୍ପଷ୍ଟ ଛାୟା ତାକୁ ଦିନକୁ-ଦିନ ଆଶ୍ୱସ୍ତ କରିବାରେ ଲାଗିଥିଲା ।

ମଧୁର କଣ୍ଠରେ ସ୍ୱୟଂ ସରସ୍ୱତୀ ଓହ୍ଲେଇ ଆସିଥିଲେ । କେବେ-କେବେ ମା'ର ଗାଇଥିବା ଠୁମରୀକୁ ସେ ଟିକିଏ ଅଧେ ଅନୁକରଣ କରି ଉତାରି କରି ରଖି ଦେଉଥିଲା –

ଗୋରୀ ତୋର ଆଖି –
ବିନା କଜ୍ଜଳର କଜ୍ଜଳର କଳାରେ ।

ଆଉ ଶୁଣି ଲାଗିଲା ଗୁଣବାଲା ପରୀକ୍ଷକ ଦାନ୍ତ ତଳେ ଅଙ୍ଗୁଳୀ ଚାପି ଦେଉଥିଲେ । ସେହି ଶିଶୁ ସ୍ୱର-ଲୟ କ'ଣ ହରିଣୀ-ପରି ଭୟତ୍ରସ୍ତ ଆଖିର ସହାୟତାରେ ହିଁ ସେ ନିଜର ବୃଦ୍ଧାବସ୍ଥା କଟେଇ ପାରିଥାନ୍ତା ।

ବିଧାତା ପ୍ରଦତ୍ତ ଏହି ଅଦ୍ୱିତୀୟ ମୂଳଧନକୁ ସେ କୌଣସି ଚତୁର ବଣିକପୁତ୍ର ପରି ଚକ୍ରବୃଦ୍ଧି ସୁଧ ବଢ଼େଇ କରି କ୍ଷଣକରେ ଚାରିଗୁଣ ବଢ଼େଇ ଦେବ । ନା ରହିବ ସେନିଆ, ଲିଜ, ନା ରହିବ ବାଣୀ ସେନ ଏବଂ ଲିବୀରାନା, ଏକ ଏକାକୀ କଳୀ ହିଁ ଝୁମ-ଝୁମକରି ତାର ନନ୍ଦନ ବନର ଶୋଭା ଦ୍ୱିଗୁଣୀତ କରି ଦେବ । କିନ୍ତୁ ସେହି କଳୀର ମୂଲ୍ୟ କ'ଣ ସେଇ ବୃଦ୍ଧା ମେମ ପନ୍ନାର କାନରେ ଆସିକରି ଫୁସଫୁସ କରି ଯାଇଥିଲା ? ସାରା ରାତି ମାଣିକ ଶୋଇ ପାରିଲା ନାହିଁ ।

ଦ୍ୱିତୀୟ ଦିନ ଉଠିଲା ବେଳକୁ ପନ୍ନା ଜିନିଷପତ୍ର ବାନ୍ଧି ସାରିଥିଲା । ଗେରେଜରେ ଦୁଇ ଦୁଇଟି ମଟର ଛିଡ଼ା ହେଇଥିଲା, କିନ୍ତୁ ପନ୍ନା ଟାଙ୍ଗା ଅଣେଇ ନେଇଛି, ଏହା ମଧ୍ୟ ବାଣୀ ସେନ ତାକୁ ଆସିକରି କହି ଯାଇଥିଲା ।

"ବଡ଼ ଅପା, ଛୋଟ ଅପା କିଛି ନଖାଇ-ନପିଇ ଚାଲି ଯାଉଛି," ଡରି-ଡରି ଏହା କହି ଯାଇଥିଲା ।

"ମରିବାକୁ ଦେ ତୋର ଛୋଟ ଅପାକୁ, ମୁଁ କଣ ଦୁନିଆ ସାରା ଭିକାରି - କୁଷ୍ଠ ରୋଗୀର ଦାୟିତ୍ୱର ଠିକା ନେଇଛି ?" ମାଣିକର ପୁରୁଷ କଣ୍ଠ ଗୁରୁ ଗର୍ଜନ, ଦୁଇ-ତିନୋଟି କାନ୍ଥକୁ ଭେଦ କରି, ପନ୍ନାର କାନରେ ଜୋରରେ ଧକ୍କା ଖାଇଥିଲା । ବ୍ୟଙ୍ଗ ରୋଜୀ ପାଇଁ ଥିଲା, ତାହା ସେ ବୁଝିଗଲା ।

ବଡ଼ ଅପା ଜାଣିଥିଲା ଯେ, ରୋଜୀ କୁଷ୍ଠାଶ୍ରମର ଡାକ୍ତରାଣୀ ଅଟେ ।

ଗୋଟିଏ ଛୋଟ ସୁଟକେଶ୍‌ରେ ବଡ଼ ଅପା କଳୀକୁ ଦେଇଥିବା ବହୁମୂଲ୍ୟ ଉପହାର ଭର୍ତ୍ତି କରି ପନ୍ନା କଳୀର ଅଙ୍ଗୁଳି ଧରି ବଡ଼ ଅପାର ବଖରାରେ ପହଞ୍ଚିଗଲା । ବହୁତ ବଡ଼ ଆଇନା ଲାଗିଥିବା ପଲଙ୍କରେ ବଡ଼ ଅପା ଚୁପଚାପ ଶୋଇଥିଲା । ଏହି ପଲଙ୍କ ଆମ୍ମାର ଥିଲା ଏବଂ କ୍ଷଣକ ପାଇଁ ପନ୍ନା ଅଟକି କରି, ଛିଡ଼ାହେଇ ରହିଲା । ତାର ମନେ ହେଲା ଯେମିତି ବଡ଼ଅପା ନୁହଁ, ସ୍ୱୟଂ ଆମ୍ମା ଶୋଇଛି । ସେମିତିହିଁ ମୁଣ୍ଡରେ ହାତ ରଖି ଶୋଇବା ଆମ୍ମାର ଚିର - ପରିଚିତ ମୁଦ୍ରା । ଚେହେରା ଉତୁରି କରି ଛୋଟ ହେଇ ଯାଇଛି । ରେଶମର ଗୋଲାପି ନାଇଟିରେ ବଡ଼ ଅପାର ଧଳା ମାଖନ ପରି ଗୋଲ ଚିକ୍କଣ ଶରୀର ଆହୁରି ବେଶି ପୃଥୁଳ ଲାଗୁଥିଲା । ଦୁଇ ଆଖି ଶୂନ୍ୟ ଥିଲା । କେତେ ଅସୁସ୍ଥ ମନେ ହେଉଥିଲା ବଡ଼ ଅପା । ହଠାତ୍ ପନ୍ନାର ଚିତ୍ତ ଅପୂର୍ବ ମମତାରେ ଭରି ଆସିଲା । "ବଡ଼ ଅପା, ମୁଁ ଯାଉଛି", ସେ ହାଲୁକା ସ୍ୱରରେ କହିଲା । ଜଣା ନାହିଁ କେଉଁ ଦିବା-ସ୍ୱପ୍ନରେ ବୁଡ଼ିଥିବା ମାଣିକ ଚିତ୍କାର କରି ଉଠି ବସିଲା ।

"ଇଏ ସବୁ ତମେ ଦେଇଥିବା ଗହଣା", ସେ ଚୁପ୍ କରି ସୁଟ୍‌କେଶ୍ ମାଣିକର ପଲଙ୍କର ତଳକୁ ଠେଲି ଦେଲା । ବଡ଼ ଅପାର ଚେହେରା ଅସହାୟ ହେଇଗଲା । ସେ ଗୋଟିଏ ଶବ୍ଦ ମଧ୍ୟ କହିଲା ନାହିଁ ।

"ଇଏ କଲୀ ଆସିଛି ବଡ଼ ଅପା, ତମକୁ ପ୍ରଣାମ କରିବାକୁ", ସଂକୋଚ କରୁଥିବା କଲୀକୁ ପନ୍ନା ବଡ଼ ଅପା ସାମନାକୁ ଠେଲି ଦେଲା ।

"ବାହାରି ଯା ମୋର କୋଠରିରୁ" ବଡ଼ ଅପା ପ୍ରଥମ ଥର ଗର୍ଜନ କଲା । ପନ୍ନା ସଂକୋଚ କରି ପଛକୁ ଘୁଞ୍ଚିଗଲା । ତମ ତମ ଚେହେରାରେ ଡରିକରି ଅଙ୍ଗାର ପରି ଜଳୁଥିବା ବଡ଼ ଅପାର ଆଖିଦୁଇଟି ଯେମିତି ଫାଟିକରି ବାହାରକୁ ବାହାରି ଆସିବାକୁ ଉଦ୍ୟତ ହେଲା । କଲୀ ଭୟରେ ବାହାରକୁ ପଳେଇ ଯାଇଥିଲା । ଏକେଲା ପନ୍ନା ଚୁପ୍‌ଚାପ ଛିଡ଼ା ହେଇ ରହିଗଲା ।

"ଯିଏ ତତେ ଛାତିରେ ଲଗେଇ କରି ପାଳିଥିଲା, ତୋ ପାଇଁ ସାଜ-ସଜ୍ଜା ହେଇଥିବା ନବ ବିବାହିତାର ସବାରିକୁ ଲାତ ମାରି ପଦାଘାତ କରିଥିଲା ତାକୁ ତୁ ନାଗିନ-ପରି କାମୁଡ଼ି ଦେଇ ବର୍ତ୍ତମାନ ପ୍ରଣାମ କରିବାକୁ ଆସିଛୁ ?"

"ଠିକ୍ କହୁଥିଲା ଆମ୍ମା । ବେଶ୍ୟାର ସନ୍ତାନ ନିଜର ସହୋଦରା ମା'ର ମଧ୍ୟ ସହୋଦରା ହୁଏ ନାହିଁ । ପୁଣି ତୁ ତ ସେହି ଇଉରୋପୀୟର ସନ୍ତାନ ଅଟୁ ଯିଏ ନିଜର ସହୋଦର ବାପକୁ ବୁଢ଼ା ହେଲାପରେ ହାତ ଧରି ବାହାର କରିଦିଏ ।"

"ଖବରଦାର ଏହାପରେ ମୁଁ ତୋର ଆଉ ଏହି ବଙ୍ଗାଳୀ ବାଳିକାର ମୁହଁ ଦେଖିବି ନାହିଁ । ପଳେଇ ଯା, ବୁଝିଲୁ ?"

ମାଣିକ ଉତ୍ତେଜନାରେ ଅତି ଖରାପ ଭାବରେ ଶୀଘ୍ର ଶୀଘ୍ର ଲମ୍ଵା ଲମ୍ଵା ନିଶ୍ୱାସ ନେବାକୁ ଲାଗିଥିଲା । ଲାଗି ରହିଥିଲା ତାର ଅନ୍ତରରେ ଜଳି ଉଠୁଥିବା କ୍ରୋଧର ବଡ଼ ଚୁଲ୍ଲିର ଅଦୃଶ୍ୟ ଧୂଆଁ ତାହାର କାନ ଦୁଇଟିରୁ ମଧ୍ୟ ବାହାରିବାକୁ ଲାଗିଥିଲା ।

"ରହି ଯା", ବାହାରକୁ ଯାଉଥିବା ପନ୍ନା ବଡ଼ ଅପାର ଗର୍ଜନ ଶୁଣିକରି ପୁଣି ଅଟକି ଗଲା ।

ମାଣିକର କଠୋର ଆଦେଶର ଗର୍ଜନ ଶୁଣିକରି ନିଜ ନିଜ କୋଠରିରୁ ବାହାରି ଆସିଥିବା କେତେକ ବାଳିକା ଏକ ସଙ୍ଗରେ ପୁଣି ଡରିକରି ମୂଷାମାନଙ୍କ ପରି ଚୁପକରି ଲୁଚିଗଲେ ।

"ମୁଁ ତୋର ଆଉ ତୋର ମେମର ପୁରା ଜିନିଷ ଦେଖିବି । ବିଛଣା ମଧ୍ୟ ଖୋଲିବାକୁ ହେବ, ବୁଝିଲୁ ? ଏହି ଇଉରୋପୀୟମାନଙ୍କର ଚାଲାକି ମୁଁ ଖୁବ୍ ବୁଝିଛି ।"

"ପନ୍ନାର ଚେହେରା ଧଳା ହେଇଗଲା । କ'ଣ ଏହା ସତରେ ସ୍ନେହୀ ବଡ଼ ଅପା କହୁଥିଲେ । ତା'ର ଉପରେ ଅବିଶ୍ୱାସ ? ଯେଉଁ ପନ୍ନା କେବେ ବଡ଼ ଅପାର

ବଡ଼ ଥଳି ମଧ୍ୟ ଛୁଇଁ ନାହିଁ, ଯାହା ଯିବା ସମୟରେ ବଡ଼ ଅପା ଦେଇଥିବା ପନ୍ନାର ସତଲଡ଼ା ହାର ଖୋଲିକରି କଳୀର ଗହଣା ସହିତ ଫେରେଇ ଦେଇଛି, ସେହି ଛୋଟ ଭଉଣୀର ତଲାସି ନେବ ବଡ଼ ଅପା ? କ'ଣ କହିବେ ପୁରୁଣା ଚାକର-ବାକର, କ'ଣ କହିବ ବାଣୀ ସେନ, ମୈଗୀ, ଲିବି ଆଉ ସୋନିଆ, ଲିଜ ?

ଜିନିଷ ପତ୍ର ଟାଙ୍ଗାରେ ଲଦାହେଇ ସାରିଥିଲା କିନ୍ତୁ କଷ୍ଟମର ହୃଦୟହୀନ ଅଧିକାରୀମାନଙ୍କ ପରି ବଡ଼ଅପା ତା'ର ଏକ ଏକ ସାଡ଼ିକୁ ଖୋଲି-ଖୋଲି କରି ଗଦେଇ ଦେଲା । ସେଠାରେ ଥିଲା ବା କ'ଣ ? ଦେଇଥିବା କଳୀର ଅନ୍ନପ୍ରାଶନର ସୁନାର ତାଳ, ଝାଞ୍ଜ ପରି ବାଜୁଥିବା - ଝୁନଝୁନ ଶବ୍ଦ କରୁଥିବା, ଗଡ଼ି ଗଡ଼ି ଯାଉଥିବାରୁ ପନ୍ନା ଉଠାଇ ନେଲା । ସବୁ ଝିଅମାନେ ବଡ଼ ଅପାର ଭୟରେ ଡରିକରି ପରଦାଗୁଡ଼ିକର ଆଢୁଆଳରେ ଲୁଚି ଲୁଚିକର ଦେଖୁଥିଲେ, ଏକେଲା ବାଣୀ ସେଠାରେ ଛିଡ଼ା ହେଇଥିଲା । ତାର ମନେ ହେଉଥିଲା ମାଣିକକୁ ଜୋରରେ ଧକାଦେଇ ଦୋହଲେଇ ରଖି ଦେବାକୁ ।

"ବାଣୀ, ଏହି ତାଳ ମଧ୍ୟ ତୁମେ ରଖିଦିଅ," ପନ୍ନା ତାଳକୁ ବାଣୀ ଆଡ଼କୁ ବଢ଼େଇ ଦେବାରୁ ଏପର୍ଯ୍ୟନ୍ତ ଓଠ କାମୁଡ଼ି ଲୁହକୁ ଅଟକେଇ ଥିବା ବାଣୀ ତାକୁ କୁଣ୍ଢେଇ ଧରିଲା ।

"ମରି ଯାଇଥିବା ଲୋକକୁ କାହିଁକି ମାରୁଛ ଛୋଟଅପା ମୁଁ ଏହା ବିନା କେମିତି ରହିବି ଏଠାରେ", ସେ କାନ୍ଦିବାକୁ ଲାଗିଲା ।

ସବୁବେଳେ ଚୁପଚାପ ରହୁଥିବା ଶାନ୍ତ ପ୍ରକୃତିର ସୌମ୍ୟା ପନ୍ନା ବାଣୀର ଏକମାତ୍ର ସଖୀ ଥିଲା । ପୁଣି ଯେଉଁଦିନରୁ କଳୀ ଆସିଛି, ବାଣୀହିଁ ଏକପ୍ରକାର ତା'ର ମା'ହେଇ ଯାଇଥିଲା । ଛୋଟ ଅପାଠୁ ଟାଣି-ଓଟାରି କରି ସେ କଳୀକୁ ନିଜ କୋଠରିକୁ ଉଠେଇ ଆଣୁଥିଲା । ସେ ତାହାର ମଳିନ ଜୀବନ ପୃଥିବୀର ଏକମାତ୍ର କ୍ଷୀଣ ରେଖା ଥିଲା । କେବେ-କେବେ କୋଠରୀ ବନ୍ଦକରି ସେ ନିଜର ସ୍ତନ ସେହି କ୍ଷୁଧାତୁର ଶିଶୁର ଅଧରରେ ଲଗେଇ ଦେଉଥିଲା, ଅବୋଧ କଳୀ କେବେ ମଝିରେ-ମଝିରେ ତାକୁ ଦେଖୁଥିଲା, ପୁଣି ଶୁଖିଲା ସ୍ତନରେ ଲାଖି ଯାଉଥିଲା । ବାଣୀର ମନେ ହେଉଥିଲା, ଶିଶୁ କଳୀର ସମସ୍ତ ସ୍ଫୂର୍ତି ତାର ପ୍ରାଣରେ ପ୍ରବେଶ କରି ଯାଇଛି । ଯେଉଁ ସୁଖ ତାକୁ ମାଣିକର ଧନଧାନ୍ୟରେ ଭରା ହଲଦିଆ କୋଠାରେ କେବେ ମିଳି ନଥିଲା ତାକୁ କଳୀର କ୍ଷଣିକ ସହବାସ ଗୋଟିଏ ପଲକରେ ଦେଇପାରି ଥିଲା । କେବେ ସେ ତାକୁ ଗାଲରେ ଚାପିଧରେ, ମଧୁର-ମଧୁର ଲୋରି ଗାଉଥିଲା କେବେ ନୀଳ ଆକାଶ ଆଡ଼କୁ ଦେଖୁଥିଲା, ଠୁମକ ଠୁମକ କରି ହାତ-ପାଦ ପକଉଥିବା କଳୀର ବାଳକ୍ରୀଡ଼ା ଦେଖିକରି ଏକାନ୍ତରେ ହିଁ ସେ ଆନନ୍ଦ-ବିଭୋର ହେଇ ଉଠୁଥିଲା । ଆଜି ସେହି କଳୀ ମୃଗତୃଷ୍ଣା ପରି ଥିଲା କ୍ଷଣକ ପାଇଁ ଶୋଭା ଦେଖେଇ କରି ତାକୁ ସବୁଦିନ

ପାଇଁ ତାଠାରୁ ଅଲଗା ହେଇ ଯାଉଥିଲା । ସେ ଜାଣିଥିଲା ଯେ କଳୀ ଆଉ ଫେରିକରି କେବେ ଆସିବ ନାହିଁ । ମନୋମାଳିନ୍ୟର ଲୁହାର କାନ୍ଥ ଦୁଇ ଭଉଣୀ ମଧ୍ୟରେ ଅଭେଦ ଦୃଢ଼ତାରେ ଛିଡ଼ା ହେଇ ଯାଇଥିଲା, ମାଣିକର ସ୍ୱାର୍ଥପରତାକୁ ସେ କେତେଥର ପରୀକ୍ଷା କରି ସାରିଛି । ମାଣିକ ପ୍ରାଣ ଥାଉ ଥାଉ କେବେହେଲେ ଉପକାର କରି ନଦୀରେ ପକେଇ ପାରେ ନାହିଁ । ବଡ଼ ଅପାର ଲୋଲୁପ ଦୃଷ୍ଟି କ'ଣ ସେ କେତେଥର ସୁନ୍ଦର କଳୀର ଗୋଟିଏ ଗୋଟିଏ ଅଙ୍ଗ ଉପରେ ନିବଦ୍ଧ ଦେଖି ପାରିଥିଲା ।

"ପନ୍ନା ଗାଡ଼ିର ସମୟ ହେଇଗଲାଣି, ବର୍ତ୍ତମାନ ଚାଲ", ରୋଜୀ କହିଲା ଏବଂ ପନ୍ନା ନିଜକୁ ବାଣୀର ବାହୁ ବନ୍ଧନରୁ ମୁକ୍ତ କଲା । ଥରେ ସେ ବଡ଼ ଅପାକୁ ବହୁତ ଆଶାର ଦେଖିଲା । ଜଣା ନାହିଁ ବଡ଼ଅପା ସ୍ନେହପୂର୍ଣ୍ଣ ଆଶ୍ୱାସନା ଦେଇକରି ପୁଣି କହି ଉଠେ, "ଛାଡ଼ ପନ୍ନା, ରାଗରେ ତତେ କେତେ ଭଲମନ୍ଦ କହିଗଲି, ନହେଲେ କଳୀକୁ ରୋଜୀ ସହିତ ପଠେଇ ଦେ, ତୁ ଯାଆ ନାହିଁ ।"

କିନ୍ତୁ ମାଣିକର ଆଖିରେ ବର୍ତ୍ତମାନ ମଧ୍ୟ ଅଗ୍ନିସ୍ଫୁଲିଙ୍ଗ ବାହାରୁ ଥିଲା ।

ଟାଙ୍ଗାରେ ବସିକରି ପନ୍ନା ଶେଷଥର ପାଇଁ ହଳଦିଆ କୋଠାକୁ ଦେଖିଲା । କେମିତି ଅଦ୍ଭୁତ ବିଦାୟ ବେଳା ଥିଲା । ପାପରୁ ବିଦାୟ, ଅନୁଚିତ୍ ଆଚରଣରୁ ବିଦାୟ, ନିର୍ଲଜ୍ଜତାରୁ ବିଦାୟ, ଛଳକପଟରୁ ବିଦାୟ । ଗୋଲାପି ନାଇଟିରେ ଅର୍ଦ୍ଧନଗ୍ନା ମାଣିକ, ଚଉକିର ହାତରେ ମୁଣ୍ଡ ରଖି ସକଉଥିବା ବାଣୀ ସେନ ରେଶମୀ ପରଦାର ଆଢୁଆଳରୁ ଉଙ୍କିମାରୁଥିବା ସୋନିଆ, ଲିଜ, ମୈଗୀ ଆଉ ପିଞ୍ଜରାରେ ବନ୍ଦ, ଲମ୍ୱା କାଠିରେ ଥଣ୍ଟ ମାରୁଥିବା ଆଫ୍ରିକାର କାକତୁଆ ! ତା'ର ପ୍ରେମୀର ଏକମାତ୍ର ସ୍ମୃତି-ଚିହ୍ନ ରହି ଯାଇଥିଲା । କେତେବର୍ଷ ପୂର୍ବେ ତା'ର ଜନ୍ମଦିନରେ ବିଧୁତରଞ୍ଜନ ସୁନାର ପିଞ୍ଜରାରେ ବନ୍ଦକରି ସେହି ଅମୂଲ୍ୟ ଭେଟ ତା ପାଇଁ ନୈରୋବୀରୁ ନେଇ ଆସିଥିଲେ । ପାଦରେ ବନ୍ଧା ହେଇଥିଲା ସୁନାର ପତଳା ଶିକୁଳି ଆଉ ତାକୁ ଧରିକରି ବିଧୁତରଞ୍ଜନ ବଡ଼ ଖେଳାଡ଼ି ପରି ତାକୁ କାନ୍ଧରେ ବସେଇ କରି ଦରବାରକୁ ଯାଉଥିଲେ ।

ଆଜି ପନ୍ନା ଯିବାକୁ ଲାଗିଲାରୁ କାକତୁଆ ଝଡ଼ ସୃଷ୍ଟି କରିଦେଲା । କେଂ କେଂ କେଂ କେଂ, ଯେମିତିକି କେହି ତା'ର ବେକକୁ ମୋଡ଼ି ଦେଉଛି । କ'ଣ ପଶୁ-ପକ୍ଷୀ ମାନଙ୍କୁ ମଧ୍ୟ ବିଧାତା ଏମିତି ଅଲୌକିକ ସୂକ୍ଷ୍ମ ଦୃଷ୍ଟି ଦେଇଥାନ୍ତି ? କ'ଣ ସେ ଜାଣି ଯାଇଥିଲା ଯେ ତା'ର ସ୍ୱାମିନୀ ଆଉ କେବେ ଫେରିକରି ଆସିବ ନାହିଁ ? ପନ୍ନା ଧିରେ-ଧିରେ ଅଦୃଶ୍ୟ ହେଉଥିବା ହଳଦିଆ କୋଠାକୁ ଅନ୍ତିମ ଥର ଦେଖିକରି, ଆଖି ବନ୍ଦ କରିଦେଲା । ସ୍ମୃତିଗୁଡ଼ିକର ସାଗର ଉଛୁଳି ଉଠିଲା- ଯେତେବେଳେ ସେ, ହୀରା ଆଉ ମାଣିକ ସେହି ଦୋଳିରେ ଝୁଲିବା ବେଳେ ଆକାଶ ଛୁଇଁ ନେଉଥିଲେ, ଯେତେବେଳେ ସେହି ବଡ଼ ଜାମୁକୋଳି ଗଛରୁ ରସଯୁକ୍ତ ଜାମୁକୋଳି ଝଡ଼େଇ-ଝଡ଼େଇ କରି, ଡାଳକୁ ହଲାଇ କରି ଲୁଣ-ମରିଚ ଗୋଳେଇ କରି, ମାଣିକ ଗଣି-

ଗଣି କରି ଭଉଣୀମାନଙ୍କୁ ଜାମୁକୋଳି ବାଣ୍ଟୁଥିଲା, ଯେତେବେଳେ ତିନି ଭଉଣୀର ପାଦରେ ବନ୍ଧା ଘୁଙ୍ଗୁରର ମଧୁର ଝଙ୍କାରରେ ହଳଦିଆ କୋଠା ଆନନ୍ଦ ଧ୍ୱନିରେ ଭରି ଉଠୁଥିଲା ଏବଂ ମଖମଲୀ ଚଉକିରେ ବସିଥିବା ମୁନୀର ନିଜର ନୃତ୍ୟ-ପ୍ରବୀଣା କନ୍ୟାମାନଙ୍କୁ କୁଣ୍ଢେଇ ଧରି ଚୁମ୍ବନ କରୁଥିଲା । ବଡ଼ ଅପାର କୀର୍ତ୍ତିସମ୍ପ ହଳଦିଆ କୋଠାର ଆକାଶରେ ଗର୍ବରେ ବେକ ଉଠେଇ କିଛି ସମୟ ପର୍ଯ୍ୟନ୍ତ ଦେଖୁଥିଲା, ପୁଣି ଅଦୃଶ୍ୟ ହେଇଗଲା । ରୋଜୀ ଚୁପ୍‌ଚାପ ବସିଥିଲା । ଏ ପର୍ଯ୍ୟନ୍ତ ସେ ଗୋଟିଏ ଶବ୍ଦ ମଧ୍ୟ କହି ନଥିଲା । ଧୀରେ ସେ ପନ୍ନା ହାତ ଧରି ଚାପୁଡ଼େଇ ଦେଲା । ଅଚାନକ ସେହି ମୈତ୍ରୀପୂର୍ଣ୍ଣ ସ୍ପର୍ଶ ପନ୍ନାର ମୁକ ବେଦନାକୁ ପ୍ରଗଳ୍ଭ କରିଦେଲା । ଚେଷ୍ଟାକରି ମଧ୍ୟ ସେ ତା'ର ସକେଇ ହେବାକୁ ବନ୍ଦକରି ପାରିଲା ନାହିଁ ।

## ପାଞ୍ଚ

"ବର୍ତ୍ତମାନ କଣ ହେବ ରୋଜୀ, କେଉଁଠି ରହିବି ମୁଁ ?"

"ଚିନ୍ତା କାହିଁକି କରୁଛୁ ପନ୍ନା, ସତ୍ୟ ଆନନ୍ଦ କେବଳ ସେବା ବ୍ରତରେ ଅଛି, ଯେତେଦିନ ପର୍ଯ୍ୟନ୍ତ ମୁଁ ଅଛି, ତମର ଚିନ୍ତା କେଉଁ କଥା ପାଇଁ ?"

କିନ୍ତୁ ପନ୍ନାକୁ ଆଜି ପ୍ରଥମ ଥର ନିଜର ଦାୟିତ୍ୱର ଆଭାସ ମିଳିଥିଲା, ସେ କ'ଣ ବର୍ତ୍ତମାନ ଏକା ଥିଲା ? ପୁଣି ଏକା ଥିଲେ କ'ଣ ରୋଜୀ ସହିତ କୁଷ୍ଠାଶ୍ରମରେ ରହି ପାରିଥାନ୍ତା ? କ'ଣ ସେ ସେହି ରୋଜୀ ପରି ମହାନ ହୋଇ ପାରିଥାନ୍ତା, ଯାହାକୁ ସେ ସ୍ୱୟଂ ନିଜ ହାତରେ ବୀଭତ୍ସ କୁଷ୍ଠରୋଗୀ ମାନଙ୍କର ହାତ-ପାଦର ଘା'କୁ ଧୋଇବା ସେ କେତେଥର ଦେଖି ସାରିଥିଲା...

ଥରେ ରୋଜୀ ବଡ଼ ସ୍ୱାଭାବିକ ଭାବରେ କହିଥିଲା, "ପାର୍ବତୀର ଆଖିରେ ଔଷଧ ପକେଇ ଦେ ତ ପନ୍ନା ।"

ଆଉ ସେ ଚେପା ହେଇଥିବା, ଖସି ଯାଇଥିବା ଆଙ୍ଗୁଳିଗୁଡ଼ିକ ଏବଂ ପଲକ ହୀନ ସେହି ବଡ଼ ଆଖିକୁ ଦେଖିକରି ଘୃଣାରେ ଶିହିରି ଉଠିଥିଲା । ବହୁତ ଚେଷ୍ଟା କରି ସେ ପଲକ ନଥିବା ସେହି ଆଖିମାନଙ୍କରେ ମୁଁ ଔଷଧ ପକେଇଥିଲି, ଆଉ ଘରକୁ ଆସିକରି ଆଙ୍ଗୁଳିଗୁଡ଼ିକୁ ଖୁବ୍ ରଗଡ଼ି କରି ଡେଟଲରେ ଧୋଇବା ପରେ ମଧ୍ୟ ତାର ଶିହରଣ ଯାଇ ନ ଥିଲା । ଆଜି ସେହି ପାର୍ବତୀର ଝିଅକୁ ନେଇ ଭୋଗ-ବିଳାସ ପୂର୍ଣ୍ଣ ସମସ୍ତ ସାମଗ୍ରୀକୁ ସ୍ୱେଚ୍ଛାରେ ହିଁ ଅଗ୍ରାହ୍ୟ କରି ସେ ଚାଲି ଯାଇଥିଲା ।

"ରୋଜୀ" ସେ କହିଲା, "ମୋ ପାଖରେ ବେଙ୍କରେ କୋଡ଼ିଏ ହଜାର ଟଙ୍କା ପଡ଼ି ରହିଛି । ହୁଏତ ପାଞ୍ଚ-ସାତ ହଜାରର ଗହଣା ହେଇଯିବ । କ'ଣ ତମେ ଭାବୁଛ, ଏତିକିରେ ମୁଁ କଲୀକୁ ଲେଖେଇ-ପଢ଼େଇ ଲକ୍ଷସ୍ଥଳରେ ପହଞ୍ଚେଇ ପାରିବି ?"

"ବହୁତ ସମୟ ଅଛି ପନ୍ନା, ବର୍ତ୍ତମାନ କାହିଁକି ଘବରଉଛୁ," ରୋଜୀ ତା'ର ପିଠିରେ ଆପୁଡ଼ାଇ, ପୁଣି ଥରେ ତାକୁ ତା'ର କୋମଳ ଆଶ୍ୱାସନାରେ ବାନ୍ଧି ରଖିଲା ।

ରୋଜୀର ଆଶ୍ୱାସନ ବ୍ୟର୍ଥ ନ ଥିଲା । ସେହି ଚତୁର ବିଦେଶିନୀ ପ୍ରଥମେ ହିଁ ଦୁଇ ଭଉଣୀଙ୍କର ସମ୍ଭାବିତ ମନୋମାଳିନ୍ୟର ଆଭାସ ପାଇ ସାରିଥିଲା ।

ପନ୍ନା ତ ତାହାର ବୁଦ୍ଧି-ସୁଦ୍ଧି ଦେଖିକରି ଆଶ୍ଚର୍ଯ୍ୟ, ହେଇ ଯାଇଥିଲା । ନୈନୀତାଲର ସୀମାନ୍ତରେ ଥିବା 'ଦେବତାର' କୋଠାକୁ ପୁରା ଏକ ବର୍ଷର ଭଡ଼ା ଦେଇକରି ରୋଜୀ ତା ପାଇଁ ଦୁଇ ମାସ ପୂର୍ବରୁ ବୁକ୍‌କରି ନେଇଥିଲା ।

"ମୁଁ ଜାଣିଥିଲି, ଦିନେ-ନା-ଦିନେ ତମେ ମୋ ପାଖକୁ ହିଁ ଆସିବ ଏବଂ ନିଜର ଏହି ସୁନ୍ଦର ଉତ୍ତରାଧିକାରୀକୁ ମୁଁ କୁଷ୍ଠାଶ୍ରମରେ ରଖି ପାରିଥାନ୍ତି ? ଏହି ଏକାନ୍ତରେ ତମେ ସ୍ୱୟଂ ଚାହିଁଲେ ହିଁ କାହା ସହିତ ସାକ୍ଷାତ କରିପାର ସେଥିପାଇଁ ମଧ୍ୟ ତମକୁ ଏକ ମାଇଲ ତଳକୁ ଓହ୍ଲେଇବାକୁ ପଡ଼ିବ ତମର ସବୁଠାରୁ ନିକଟରେ 'ରୋଜ ବିଲେ' ଅଛି । ସେଠାରେ ମୋର ମିତ୍ର ବିଶପ ଲିୟାଁ ରହନ୍ତି । ତାହାର ତଳେ ସେହି ଲାଲ ଛାତବାଲା ବଙ୍ଗଳାରେ ଗୋଟିଏ ପାହାଡ଼ୀ ପରିବାର ରହୁଛି । ଖୁବ ଭଲ ଲୋକ ଅଟନ୍ତି । ମୁଁ ତାଙ୍କୁ ମଧ୍ୟ କହି ଦେଇଛି, ତମର ଭଲମନ୍ଦ ବୁଝିବ ମିସେସ୍ ଜୋଶୀ ।"

"କିନ୍ତୁ ମୁଁ ଏଠାରେ ଏକେଲା କେମିତି ରହିବି ରୋଜୀ ?" ପନ୍ନାକୁ ସେହି ବିରାଟ ବଙ୍ଗଳାରେ କୌଣସି ବଡ଼ ଜାହାଜର କେବିନ - ଯେମିତି କୋଠରି କାଟି ଖାଇବାକୁ ଦୌଡ଼ୁଥିଲେ । କଲୀର ସ୍କୁଲ ଏତେ ଦୂରରେ ଥିଲା ଆଉ ରୋଜୀର କହିବା କଥା ସେ ଆଦର-ଯତ୍ନରେ ଏତେ ବିଗିଡ଼ି ଯାଇଛି ଯେ ତାକୁ ବୋର୍ଡିଂରେ ହିଁ ରଖିବାକୁ ପଡ଼ିବ । କେବେ-କେବେ ହୋମ ଲୀଭ ମିଳିଲେ ସେ ପନ୍ନା ପାଖକୁ ଆସି ରହିପାରେ ।

"କିଛି ଦିନ ପର୍ଯ୍ୟନ୍ତ ମୁଁ ତମ ପାଖକୁ ଆସିକରି ରହିବି । ଆଉ ଯଦି ତମେ ମୋ ପାଖକୁ ଆସି ରହିବାକୁ ଚାହିଁବ, ତାହେଲେ ତମକୁ ସ୍ୱାଗତ କରିବି । ମୁଁ ତମକୁ ପ୍ରଥମରୁ କହିଥିଲି ପନ୍ନା ସେହି ସେବା ବ୍ରତରୁ ବଢ଼ିକରି ତମର କଠିଣ ଅସାଧ ମାନସିକ ରୋଗ ପାଇଁ ଆଉ କୌଣସି ଔଷଧ କାମ ଦେବ ନାହିଁ ।

ଉତ୍ତରରେ ପନ୍ନା ମୁଣ୍ଡ ନୁଏଇଁ ଦେଇଥିଲା । କ'ଣ ରୋଜୀର ସେହି ମହାନ ସେବାଶ୍ରମ ପାଇଁ ସେ କେବେ ତା'ର ଅବିବେକ ଲମ୍ପଟ ଚିତ୍ତକୁ ମଢ଼େଇ ପାରିବ ?

କଲୀର ଜୀବନର ଇତିହାସ ରେଭରେଣ୍ଡ ମଦର ଠାରୁ ଲୁଚି ନ ଥିଲା । ରୋଜୀ ତାକୁ ସବୁକିଛି କହିଦେଇ ସାରିଥିଲା । "ସେହି ତପସ୍ୱୀମାନଙ୍କ ଦରବାରରେ ମିଥ୍ୟା ଭାଷଣ ଚଳେ ନାହିଁ ପନ୍ନା । ମୁଁ କଥା ତିଆରି କରି କହି ଦେଇଥାନ୍ତି ତାହେଲେ ହୁଏତ ସ୍ୱୟଂ ମୋର ଚିତ୍ତ ସାକ୍ଷୀ ଦେଇ ନ ଥାନ୍ତା । ମଦର ସରନେମ ପଚାରିଲାରୁ

ବୁଝିପାରିଲି ନାହିଁ କ'ଣ ଲେଖି ଦେବି ଖାନ ନା ମଜୁମଦାର ?"

"ମଜୁମଦାର ହିଁ ଲେଖେଇବ ରୋଜୀ, କିଏ କହିବ କେବେ ଏହି ଖାନ ନାମହିଁ ତା'ର ବିବାହ ମାର୍ଗରେ ବାଧା ହୋଇ ଅଟକି ଯିବ ?"

ରେଭରେଣ୍ଡ ମଦର କେବଳ ଗୋଟିଏ କଡ଼ା ସର୍ତ୍ତ ରଖିଥିଲା । ବିନା କଲୀର ରକ୍ତ ପରୀକ୍ଷା କରି ସେ ତାକୁ ବୋର୍ଡ଼ିଂରେ ରଖିବ ନାହିଁ । କିନ୍ତୁ କଲୀର ରକ୍ତ ମଧ୍ୟ ତା'ର ସୁନ୍ଦର ନିର୍ଦ୍ଦୋଷ ଚେହେରା ପରି ନିର୍ଦ୍ଦୋଷ ବାହାରି ଥିଲା ।

କଲୀର ବୋର୍ଡ଼ିଂକୁ ଯିବାପରେ ପନ୍ନାକୁ ସେହି ଭାଁ-ଭାଁ କରୁଥିବା ବିରାଟ କୋଠାର ଶୂନ୍ୟତାର ଅଭାସ ମିଳିଲା । ଆଖ ପାଖରେ କେଉଁଠି ମଧ୍ୟ କିଛି ବଙ୍ଗଲା ନ ଥିଲା । କେହି ରାତି-ଅଧ ରାତିରେ ଆସି ଗଳା ଚିପିଦେଲେ ତ କେହି ଜାଣିପାରିବେ ନାହିଁ ।

"ଏହି ସବୁ ପାହାଡ଼ରେ ହୁଏ ନାହିଁ ପାଗଳୀ," ରୋଜୀ ତାହାକୁ ଆଶ୍ୱାସନା ଦେଇଥିଲା, "ମୁଁ ଜାଣିଶୁଣି କରି ହିଁ ତମପାଇଁ ଏହି ବଙ୍ଗଳା ବାଛିଥିଲି । ଯେଉଁ କାଦୁଅ ସ୍ଥାନରୁ ତୁମେ ବାହାରି ଆସିଛ, ଏବଂ ଯିଏ ତମକୁ ସେଠାରୁ ବାହାରିବା ଦେଖିଛି, ସେମାନଙ୍କ ଭିତରୁ କାହାରି ଦୃଷ୍ଟି ତୁମ ଉପରେ ନପଡୁ, ଏହା ଭାବିକରି ତୁମକୁ ଏଠାକୁ ଆଣିଛି । ମୁଁ ଜାଣିଛି ଯେ, ଯେଉଁ କୋଳାହଳରେ ତୁମର ରହିବାର ଅଭ୍ୟାସ ଅଛି, ତାହାପରେ ତୁମକୁ ଏଠାରେ ମୃତ୍ୟୁପରି ନିରବତା ଲାଗିବ । କିନ୍ତୁ ଗୋଟିଏ ନୂଆ ଜୀବନର ସୃଷ୍ଟିପାଇଁ ମା'କୁ କେତେ ମର୍ମାନ୍ତିକ ଯାତନା ସହିବାକୁ ପଡ଼େ, ଏହାର ତ ତମର ଅନୁଭବ ଅଛି ନୁହେଁ ?"

କାଚର ନୀଳ ବୋତାମ ପରି ସେହି ବିଦେଶିନୀର ସ୍ନେହ-ସ୍ନିଗ୍ଧ ନୀଳ ଆଖି ଦୁଇଟିରେ କେମିତି ଅନୁଭୂତ ବେଦନାର ଝଲକ ଥିଲା । କ'ଣ ରୋଜୀ ମଧ୍ୟ ଏମିତି ବେଦନା ସହିଥିବ ? କ'ଣ ସେ ମଧ୍ୟ କେବେ କୌଣସି ନିଷ୍ଠୁର ପ୍ରେମୀର ଠୋକର ଖାଇକରି ସେବାବ୍ରତର ସେହି "କ୍ଷୁରସ୍ୟ ଧାରା"ରେ ଚାଲିବାକୁ ସ୍ୱୀକାର କରିଥିବ ? ଆଜି ପର୍ଯ୍ୟନ୍ତ କେବେ ହେଲେ ପନ୍ନା ତାର ଜୀବନର ଅନ୍ତରଙ୍ଗ କକ୍ଷର ପରଦା ଉଠେଇ କରି ଉଙ୍କି-ମାରିବାର ଧୃଷ୍ଟତା କରିନାହିଁ । "କାହିଁକି ରୋଜୀ କ'ଣ କେବେ ହେଲେ ତୁମକୁ ନିଜର ସ୍ୱଦେଶର ସ୍ମରଣ ହୁଏ ନାହିଁ ?" ଥରେ ମାତ୍ର ସେ ତାକୁ ପଚାରି ଥିଲା ।

"ମୋର ସ୍ୱଦେଶ ମୋର ଆଶ୍ରମ ଅଟେ ପନ୍ନା", ହସିକରି ଦେଇ ଯାଇଥିବା ସେହି ଉତ୍ତର ହିଁ ପନ୍ନାର ଜିଜ୍ଞାସାର ଅନ୍ତ କରି ଦେଇଥିଲା ।

ଜାଣିଥିଲା ସେ ପ୍ରଥମରେ ରୋଜୀହିଁ ତାକୁ ନିଜ ସହିତ ଚାଲିବାର ପ୍ରସ୍ତାବ ବାରମ୍ବାର ଦୋହରାଇ ଥିଲା । "ତୁମେ ଚାହଁତ ଆଲମୋଡ଼ା ସହରରେ ମଧ୍ୟ ଆସିକରି ରହିପାର କିନ୍ତୁ ଏଠାରେ ରହିବା ଦ୍ୱାରା ତୁମକୁ ଏକ-ଏକ ପାଦ ଗଣି-ଗଣି କରି

ପକେଇବାକୁ ହେବ । ବର୍ତ୍ତମାନ ତୁମେ ହଳଦିଆ କୋଠାର ପନ୍ନାବାଈ ନୁହଁ, କଲୀର ମା' ଅଟ ।"

"ମୁଁ ଏଇଠି ରହିବି ରୋଜୀ, ମତେ ତ ଏବେ ଏମିତି ମନେ ହେଉଛି ଯେମିତିକି ବିଧାତା ଏହି ଅରଣ୍ୟସ୍ଥିତ 'ଦେବଦାରୁ ବୃକ୍ଷ'ର ସୃଷ୍ଟି ମୋର ପାଇଁ କରିଥିଲେ ।"

କୁମାଓଁର ନରଭକ୍ଷକମାନେ ପିସ୍ତଲ ପରି ଦଳିଦେଉଥିବା ବାଲା ପ୍ରଖ୍ୟାତ ଶିକାରୀ କୋରବେଟ ତିଆରି କରିଥିବା ସେହି ବଙ୍ଗଳା ତାଙ୍କରି ଦୁସାହସୀ ବ୍ୟକ୍ତିତ୍ୱର ନିବାସ ସ୍ଥାନ ହେବା ପାଇଁ ଉପଯୁକ୍ତଥିଲା । ସନ୍ଧ୍ୟା ହେଲା ମାତ୍ରେ ସେଠାରେ ବିଲୁଆଙ୍କର ପୁରା ଜାତି ଏକାଠି ହେଇଯାଆନ୍ତି ପାହାଡ଼ରେ ମୋଟା ଅଜଗର ନ ଥିଲେ, ଏହା ରୋଜୀ ଶୁଣି ଆସିଛି । କିନ୍ତୁ ଦିନେ ସେ ପନ୍ନା ସହିତ ଧିରେ ଧିରେ ବୁଲିବାକୁ ବାହାରି ଥିଲାବେଳେ ରୋଡ୍‌ରୀ ଡ୍ରେଣ୍ଡାନର ମୋଟା ବୃକ୍ଷ ଗଣ୍ଡିରେ ଗୁଡ଼େଇ ଭୟଙ୍କର ପାୟଥନକୁ ଦେଖିକରି ଥର-ଥର ହେଇ ଭୟରେ ଥରିବାକୁ ଲାଗିଥିଲା । ଗଛର ଗଣ୍ଡିରୁ ମଧ୍ୟ ମୋଟା ଚିକ୍କଣ ଦେହକୁ ସେହି ପାହାଡ଼ର କ୍ଷଣିକ ଖରା-ଛାଇରେ ଓଲଟପାଲଟ ହେଇ ଶୁଖୋଉ ଥିଲା ।

"ମୁଁ ତୁମକୁ ଏଠାରେ ଛାଡ଼ି ପାରିବି ନାହିଁ ପନ୍ନା, ବାପରେ ବାପ ! ମନେ ହେଉଛି, ଜିମ କୋରବେଟ ନିଜ ପୁସ୍ତକର ଜୀବିତ-ସଜୀବ ସମସ୍ତ 'ଇଲଷ୍ଟ୍ରେସନ୍' ଏହିଠାରେ ଛାଡ଼ି ଯାଇଛନ୍ତି ।"

କେହି ମଧ୍ୟ ଚୌକିଦାର ଏଠାକୁ ଆସିବାକୁ ରାଜି ହେଇ ନ ଥିଲା ।

"ନା, ମେମ ସାହେବ, କୋରବେଟ ସାହେବଙ୍କ ବଙ୍ଗଳାରେ ତ ପାଞ୍ଚଟା ବାଜିଲା ବେଳକୁ ଭାଲୁ ନାଚିବାକୁ ଲାଗନ୍ତି, ଆଉ ଏମିତି ଡରେଇବା ତ ଦରକାର ନାହିଁ", ବୁଢ଼ା ମାଳୀ ରୋଜୀକୁ ବଙ୍ଗଳାର ପୁରା ଅଭିଶପ୍ତ ଇତିହାସ କହି ଯାଇଥିଲା, "ବଙ୍ଗଳାରେ ଭୂତ ମଧ୍ୟ ଅଛନ୍ତି । ଥରେ ଶହେ ଟଙ୍କା ମାସକୁ ଦରମାରେ ଏଠାକାର ଚୌକିଦାରୀ କରିବାକୁ ଆସିଲି । ଜଣେ ପଞ୍ଜାବୀ ଏହି ବଂଗଳା କିଣିଥିଲା । କହିଲା- ଯେଉଁ ବଖରାରେ ଯେମିତି ଚାହିଁବ ସେମିତି ରୁହ, କୌଣସି କାମ ନା ଧନ୍ଦା, ବେଶ ଦିନସାରା ଖାଇବା-ପିଇବା ଆଉ ଶୋଇବା । କେବଳ ଦୁଇମାସ ପାଇଁ ଗରମ କାଳରେ ନିଜେ ସାହେବ ଆସୁଥିଲା କିନ୍ତୁ ବାପରେ ବାପ, ପ୍ରଥମହିଁ ଦିନ ରାତି ନଅଟା ବାଜି ନଥିଲା ହାତରେ ବନ୍ଧୁକ ନେଇ ଶିକାରୀ ସାହେବର ପ୍ରେତ ଆଉ ପଛରେ-ପଛରେ ବିଂଧାଡ଼ତ ପାହାଡ଼ର ତଳ ଦେଶର ହାତୀ, ହିମାଳୟର ଭାଲୁ ଆଉ କୁମାଓଁର ନରଖାଦକ । କିଏ କରିବ ଏହି ବଙ୍ଗଳାର ଚୌକୀଦାରୀ ।"

କିନ୍ତୁ ପନ୍ନାର ନିର୍ଭିକ ହସ ଦେଖିକରି ରୋଜୀ ଆଶ୍ଚର୍ଯ୍ୟ ହୋଇଗଲା ।

"କାହିଁକି ଘବରଉଛ ରୋଜୀ । କେମିତି-କେମିତି ଉଦ୍ଧତ ସାହେବ ଲୋକଙ୍କ

ସହିତ ଜଣାଶୁଣା ହେଇଯାଇଛି, ତମେ ନିଷ୍ଚିନ୍ତ ରହ, ମୁଁ ଖୁବ୍ ମଜାରେ ରହି ପାରିବି ।"

ସତରେ ସେହି ଦୁର୍ଗମ ବଣରେ ପନ୍ନା ସୁଦୀର୍ଘ ଦଶ ବର୍ଷ କଟେଇ ଦେଲା । ନା ସେ କାହା ସହିତ ମିଳା ମିଶା କରେ, ନା ଭୁଲରେ ମଧ୍ୟ କାହାକୁ ଚିଠି ଲେଖେ । କେବେ କେବେ ରୋଜୀର ମିତ୍ର, ବୁଢ଼ା ଫ୍ରେଞ୍ଚ ପାଦରୀ ବିଶପ କ୍ଲିୟାଁ, ତାହା ସହିତ ଦେଖା କରିବାକୁ ଚାଲି ଆସୁଥିଲା । ମାସରେ ଥରେ ରୋଜୀ ଆସିକରି ତା ସହିତ ଦୁଇ-ତିନି ଦିନର ଛୁଟି କଟେଇ ଯାଏ ।

"ଏହି ବର୍ଷ କଲୀ ସିନିଅର କେମବ୍ରିଜ ପାସ କରିବ । ଏବଂ ମୁଁ ଚାହେଁ ପନ୍ନା, ଏବେ ସେ ତମ ସହିତ ରହି କରି ଏଠାରେ ପଢୁ," ରୋଜୀ କହିଥିଲା । ସେ କଲୀର ପ୍ରଗତିରେ ବହୁତ ସନ୍ତୁଷ୍ଟ ନ ଥିଲା । ଦେଖିବାକୁ ଅସାଧାରଣ ରୂପ ପାଇଁ ସେ ସୁନ୍ଦରୀ ହେବାର ଗର୍ବର ବିଷ ହୁଏତ ସେହି ବୃଥା ଗର୍ବ କରୁଥିବା ବାଳିକାର ରକ୍ତ-ମଜ୍ଜାରେ ମିଶି ଯାଇଛି ।

କିଛିଦିନ ଆଗରୁ ରେଭରେଣ୍ଡ ମଦର ରୋଜୀକୁ ଗୋଟିଏ ଲମ୍ବା ଚିଠି ଲେଖି ପଠେଇ ଥିଲା -

"ଇଯେ ତମର ୱାର୍ଡ଼ ନ ହେଇଥିଲେ, ମୁଁ ଏହାକୁ କେବେଠୁ ଦୂର କରି ଦେଇଥାନ୍ତି । ଝିଅର ସାଜ-ସଜ୍ଜାରେ ଯେତେ ରୁଚି ଅଛି, ତାହାର ଅଧା ମଧ୍ୟ ଯଦି ପଢ଼ିବାରେ ହେଇଥାନ୍ତା, ତାହେଲେ ଇଏ ଆମର କନଭେଣ୍ଟର ନାମ ଉଜ୍ଜ୍ୱଳ କରିଥାନ୍ତା । ଏମିତି ପ୍ରଖର ବୁଦ୍ଧିର ଛାତ୍ରୀ ଆମର କନଭେଣ୍ଟରେ ବର୍ଷ ବର୍ଷ ଧରି ଆସି ନାହିଁ । କିନ୍ତୁ ଏହି ଶିଶୁ ପ୍ରଖର ମସ୍ତିଷ୍କର କୁଟିଳ ଚାଲ ଦେଖିକରି ମୁଁ ହଠାତ୍ ବିଶ୍ୱାମ ମଧ୍ୟ କରିପାରେ ନାହିଁ ଯେ ଏହି ଭୋଳା ଭର୍ଜିନ ମେରୀ ପରି ଚେହେରା ପାଇଥିବା ବାଳିକା ଏମିତି କେମିତି କରିପାରେ ? ଆମଠାରେ କେଉଁଠି ତ୍ରୁଟି ହେଇଗଲା ? କାହିଁକିନା ନିଜର ଶିଶୁକାଳରୁ ନେଇକରି ନିଜର କିଶୋରୀବସ୍ଥା ପର୍ଯ୍ୟନ୍ତ କ'ଣ ଗୋଟିଏ-ଗୋଟିଏ ସିଡ଼ି ଆମର ଅଙ୍ଗୁଳି ଧରି ଚଢ଼ି ଥିଲା । ମୋର ମନେ ହେଉଛି, ଯେମିତି ଅସ୍ୱାଭାବିକ ରୂପଠାରୁ ପ୍ରଖର ଏହାର ମସ୍ତିଷ୍କ ଅଛି, ଏମିତି ହିଁ ଦୈବୀ ସୂକ୍ଷ୍ମ ଦୃଷ୍ଟି ମଧ୍ୟ ଏହାକୁ ବିଧାତା ଦେଇଛି । ହୁଏତ ସେହି ଅଦ୍ଭୁତ ଶକ୍ତିରୁ ଇଏ ଜାଣି ପାରିଛି ଯେ ଏହାର ଜନ୍ମର ପଛରେ କୌଣସି ରହସ୍ୟ ଅବଶ୍ୟ ଅଛି ଯେତେବେଳେ ଇଏ ଛୋଟ ଥିଲା, ସେତେବେଳେ ଥରକୁ ଥର ମତେ ପଚାରୁ ଥିଲା - "ମଦର ସମସ୍ତଙ୍କ ଡାଡ଼ୀ ସ୍କୁଲ ସ୍ପୋର୍ଟରେ ଆସୁଛନ୍ତି । ପ୍ରତ୍ୟେକ ଥର ମୋର ମମି ଏକେଲା କାହିଁକି ଆସୁଛି ?"

"ମୁଁ ତାକୁ କ'ଣ ଉତ୍ତର ଦେଇ ପାରିଥାନ୍ତି ? ମୁଁ ତୁମକୁ ସେହିଦିନ କହିଥିଲି ରୋଜୀ, ଦିନେ-ନା-ଦିନେ ଏହି ପ୍ରଶ୍ନ ସେ ଅବଶ୍ୟ ପଚାରିବ । ପୁଣି ଧିରେ-ଧିରେ

ସେ ଯେମିତିକି ସ୍ୱୟଂ ହିଁ ଉତ୍ତର ପାଇ ଯାଇଛି, ଆଉ ଗୋଟିଏ କଥା ମଧ୍ୟ ଅଛି, ମିସେସ୍ ମଜୁମଦାରଙ୍କ ଠାରୁ ତାକୁ ସବୁ କିଛି ମିଳିଛି, ବେଗ ଭର୍ତ୍ତି ଚକୋଲେଟ୍, ପୁସ୍ତକ, ଫ୍ରକ୍, କଣ୍ଢେଇ ଆହୁରି ମଧ୍ୟ ବହୁତ କିଛି, କିନ୍ତୁ ଗୋଟିଏ ବସ୍ତୁ ତାକୁ ତମର ସଖୀ ଦେଇପାରି ନାହିଁ - ମା'ର ଭଲପାଇବା । ଘରକୁ ଯିବାର ହୋମ ଲିଭ ମିଳିବା ପରେ ମଧ୍ୟ ଏହି ବିଚିତ୍ର ବାଳିକା ଘରକୁ ଯିବାକୁ ଚାହେଁ ନାହିଁ । ତା'ର ଜନ୍ମର ଅଜଣା ପିତାର ଏହି ସମସ୍ୟାର ଗ୍ରନ୍ଥିକୁ ସମାଧାନ କରିବାକୁ ଚାହୁଁଛି, କିନ୍ତୁ ସମାଧାନ କରିପାରୁ ନାହିଁ । ଆଉ ସେହି ଚିନ୍ତା ଏହାକୁ ଅସ୍ୱାଭାବିକ ରୂପରେ କ୍ରୁର, ହୃଦୟହୀନ, ବିଦ୍ରୋହିଣୀ କରି ଦେଇଛି । କେତେଥର ଏହାର ବାକ୍ସରୁ ତା ସହିତ ପଢୁଥିବା ବାଳିକାମାନଙ୍କର ଘଡ଼ି ପୁନଃ ପ୍ରାପ୍ତ ହେଇଛି । ଲିପିଷ୍ଟିକ, ରୁଜ, ବିଦେଶୀ ପରଫ୍ୟୁମ, ଜଣାନାହିଁ ଇଏ କେଉଁ କେଉଁଠାରୁ ସଂଗ୍ରହ କରୁଛି । ମୋର ମନେ ହେଉଛି ଏହି ସୁନ୍ଦରୀ କାଠ କଣ୍ଢେଇର ଅଣ୍ଟାରେ ବନ୍ଧାଥିବା ଦୁଇଟି ସୂତାରୁ ଗୋଟିଏ ମୋ ହାତରେ ଅଛି ଏବଂ ଅନ୍ୟଟି ସ୍ୱୟଂ ବିଧାତା ହାତରେ । ଚାହୁଁଥିଲେ ମଧ୍ୟ ତାକୁ ଟାଣିକରି ନା ତମେ ଏହାକୁ ଅନୁଶାସନରେ ବାନ୍ଧି ପାରିବ, ନା ମୁଁ, ଏବଂ ନା ଏହାର ମା । ଏହି ବର୍ଷ ମୋର କଠିଣ ଦାୟିତ୍ୱ ତମର ଆଉ ଏହାର ମା'ର କାନ୍ଧରେ ପଡ଼ିବ, ଈଶ୍ୱର ତମକୁ ଧୈର୍ଯ୍ୟ ଆଉ ଏହାକୁ ସଦ୍‌ବୁଦ୍ଧି ଦେଉ ।

- ରେଭରେଣ୍ଡ ମଦର"

ପତ୍ର ପଢ଼ିକରି ରୋଜୀ ଚିରି କରି ଫୋପାଡ଼ି ଦେଲା । ପନ୍ନାକୁ ସେ କିଛି କହିଲା ନାହିଁ । ଜଣା ନାହିଁ ଏହି ପତ୍ରକୁ ପଢ଼ିକରି ମା-ଝିଅ ମଧ୍ୟରେ କ୍ଷଣ-କ୍ଷଣକରେ ବଢୁଥିବା ମନୋମାଳିନ୍ୟ ଆହୁରି ବଢ଼ି ଉଠିବ । ବର୍ଷ ବର୍ଷ ପୂର୍ବର ପାର୍ବତୀର ଲୋଲୁପ ଦୃଷ୍ଟିର ସ୍ମୃତି ରୋଜୀକୁ ଦଂଶିବାକୁ ଲାଗିଲା । ଟେବୁଲ ଉପରେ ବେଖାତିର ଭାବରେ ପଡ଼ିଥିବା ତାଙ୍କ ଟଙ୍କା, ଟର୍ଚ୍ଚ, ରୋଗୀଣିମାନଙ୍କର ସୁପ୍ତବସ୍ଥାରେ ଗଳାରୁ ଅନ୍ତର୍ଦ୍ଧାନ ହେଇଗଲା ରୁପାର ଶିକୁଳି, ଏମିତିକି ରୋଗୀମାନଙ୍କର କୋଟର ବୋତାମ ଓ ସେଫ୍ଟିପିନ୍ ମଧ୍ୟ ଏହି ଚତୁର ଦସ୍ୟୁ କନ୍ୟା ଏକ ଆଲିଙ୍ଗନରେ ନେଇ ଯାଉଥିଲା । ଆଉ ଯେତେବେଳେ ଅପରାଧିନୀକୁ ଧରିକରି ରୋଜୀ ପାଖକୁ ନେଇ ଆସୁଥିଲେ । ସେ ନିଜର ନିର୍ଦ୍ଦୋଷ ହସ ଆଉ ନିଷ୍ପାପ ବଡ଼ ଆଖି ଦୁଇଟିର ଯାଦୁ ଚଲେଇ କରି ସମସ୍ତଙ୍କୁ ପରାସ୍ତ କରି ଦେଉଥିଲା ।

"ହାଏ ରାମ, ମେମ ସାହେବ ! ମୁଁ କ'ଣ କରିବି ରୂପାର ଶିକୁଳିର, ନିଅ ତଲାଶୀ ନେଇ ନିଅ ନା !" ଆଉ କଠିଣରୁ-କଠିଣ ତଲାଶୀ ନେଲାପରେ ମଧ୍ୟ ଗୋଟିଏ ଅଧଲା ମଧ୍ୟ କେବେ ବାହାରି ପାରି ନଥିଲା ।

ଆଜି ସେହି ପାର୍ବତୀର ଇତିହାସ କ'ଣ ତା'ର ଝିଅ ଦୋହରାଇବାକୁ ଲାଗିଛି । କେତେଥର ରୋଜୀର ମନକୁ ଆସିଥିଲା, ସେ ପନ୍ନାକୁ ସବୁକିଚି କହିଦେବ । କିନ୍ତୁ

କ'ଣ କହିଲା ପରେ ମଧ ପନ୍ନା ତାକୁ ବଦଳେଇ ପାରିବ ?

ବୋର୍ଡ଼ିଂରୁ କଳୀ ନିଜ ପାଠପଢ଼ା ଶେଷ କରି ଫେରିଲା, ସେ ଆସିଲା ମାତ୍ରେ ମୁହଁ ଫୁଲେଇ ଦେଲା । "ଏତେ ଦୂରରୁ କେହି କ'ଣ ପ୍ରତ୍ୟେକ ଦିନ ତଳକୁ ଓହ୍ଲାଇ ପାରିବ ? ଜଣା ନାହିଁ ତମେ ଏଠାରେ କେମିତି ଏକେଲା ରହିଯାଉଛ ମା । ମୁଁ ଏଠାରେ ରହିବି ନାହିଁ । ମୁଁ ଫୈଜାବାଦ ଚାଲିଯିବି ।"

"ଫୈଜାବାଦ !" ଆଶ୍ଚର୍ଯ୍ୟ ହେଇ ପନ୍ନା ତାକୁ ଦେଖିବାରେ ହିଁ ରହିଗଲା । "ସେଠାରେ କିଏ ଅଛି ?"

"ବାଃ, ବିବିୟର ବାପା ସେଠାକାର ଡି.ଏମ୍. ଅଛନ୍ତି । ଖୁବ୍ ମଜା ହେବ । ଆମେ ଦୁହେଁ ପାପାଙ୍କ ସହିତ ଟୁର୍‌ରେ ଯିବୁ ତାହାର ପାପା ଶିକାରର ମଧ ସୌଖୀନ ଅଟନ୍ତି, ଲେଖିଛନ୍ତି ଆମକୁ ଡକ ସୁଟିଂ ପାଇଁ ମଧ ନେଇଯିବେ ।"

ପନ୍ନା ସ୍ୱଭାବତ ଶାନ୍ତ ଥିଲା, କିନ୍ତୁ ସେହି ଉଦଣ୍ଡ କିଶୋରୀର ମନଇଚ୍ଛା ଯୋଜନା ଶୁଣିକରି ସେ ପାଗଳ ପରି ପ୍ରଳାପ କଲା, କଳୀ ଯାହା ତାହା ସହିତ ଏମିତି ପ୍ରତିଶ୍ରୁତି ଦେଇଦେଲୁ କେମିତି ? କିଏ ଏହି ତମର ବିବିୟନ, ଆଉ କିଏ ତା'ର ପିତା ? ଏମିତି ଅଜଣା ଲୋକଙ୍କ ମଧରେ ମୁଁ ତତେ କ'ଣ କେବେ ପଠେଇ ପାରିବି ?"

"ଆଚ୍ଛା ମା, ବିବିୟନର ପିତା କିଏ, ଏହା ତ ତମେ ଜାଣ ନାହିଁ, କିନ୍ତୁ ମୋର ପିତା କିଏ, ତମେ ଏହା ମଧ କ'ଣ ଜାଣ ନାହିଁ ?"

ସାମ୍ନାରେ ଚଉକିରେ ବସିଥିବା ଏହି ଅବାଧ ଉଦଣ୍ଡ ଦୁଇପାଦ ଚଉକି ଉପରେ ଟାଣିକରି ଦୁଷ୍ଟାମିର ହସ ହସିବାକୁ ଲାଗିଲା ।

ପନ୍ନାର ଚେହେରା ଧଳା ହେଇଗଲା । କ'ଣ କେହି କିଛି କହି ଦେଇଥିଲା ଏହି ଟୋକିକୁ ? କିନ୍ତୁ କହିବ କିଏ ? ତା'ର ଜୀବନର ରହସ୍ୟ କେବଳ ଚାରି ପ୍ରାଣୀଙ୍କ ମଧରେ ସୀମିତ ଥିଲା, ରୋଜୀ ସ୍ୱୟଂ ସେ, ରେଭରେଣ୍ଡ ମଦର ଓ ରୋଜୀର ଭଉଣୀ ଓନୀଲା । ସେହି ଚାରିଜଣଙ୍କ ମଧରୁ କେହି କେବେ ସେହି ରହସ୍ୟକୁ ପ୍ରାଣ ଥିବା ପର୍ଯ୍ୟନ୍ତ ଉଦ୍‌ଘାଟିତ ହେବାକୁ ଦେବେ ନାହିଁ । ତେବେ ?

"କଳୀ କ'ଣ ତୁମେ ସ୍କୁଲରେ ଏହି ସବୁ ଶିଖିଛ ? ଗୁରୁଜନ ସହିତ କେମିତି କଥା କହିବାକୁ ହୁଏ ଏହା କ'ଣ ଆଜି ପର୍ଯ୍ୟନ୍ତ ତମେ ଶିଖି ପାରିଲ ନାହିଁ ?"

"ପ୍ରଥମେ ମୋର ପ୍ରଶ୍ନର ଉତ୍ତର ଦିଅ ମା, ଆଜି ମୁଁ ନ ଶୁଣି ଉଠିବି ନାହିଁ । ରୋଜୀ ଆଣ୍ଟିକୁ ପଚାରିବା ବ୍ୟର୍ଥ ଅଟେ । ବଡ଼ ନିଜ ମନର ଭାବ ଗୁପ୍ତ ରଖିବା ସ୍ତ୍ରୀ ଅଟେ ବୁଢ଼ି । ମୋ ସହିତ ପଢୁଥିବା ଝିଅମାନଙ୍କର ଆଲବମ ଦେଖେ ଯେତେବେଳେ ଆଖିର ତାତିଲା ଲୁହକୁ ଅଟକେଇ ଦିଏ । ଗୋଟିଏ-ଗୋଟିଏ ପେଜରେ ତାଙ୍କର ମା-ବାପ ସଂଯୁକ୍ତ ହେଇ ଅଛନ୍ତି, ଆଉ ତୁମ ବଖରାରେ ତ ଆଜି

ପର୍ଯ୍ୟନ୍ତ ମୋର ଅଭାଗା ବାପର ଗୋଟିଏ ହେଲେ ଫଟୋ ଦେଖିନାହିଁ ।

"କୃଷ୍ଣକଲୀ ମଜୁମଦାର, ନାମତ ତମେ ଏତେ ସୁନ୍ଦର ରଖି ଦେଇଛ ମା, କିନ୍ତୁ ମତେ ମଜୁମଦାର କରିଥିବା ବ୍ୟକ୍ତିଟି କିଏ ?"

"କଲୀ", ପନ୍ନା ବଡ଼ ସାହାସର ସହିତ ତାର ବଡ଼ ବଡ଼ ବିଦ୍ରୋହୀ ଆଖିକୁ ଏବଂ ନିଜର ଗମ୍ଭୀର ଦୃଷ୍ଟି ନିବଦ୍ଧ କରି ଦେଲା, "ତମର ନାମ ପଛରେ କୌଣସି ମରୀଚିକା ନାହିଁ, ତମର ପିତା ସହିତ ମୋର ପଡ଼ିଲା ନାହିଁ ଆଉ ଆମେ ଦୁଇଜଣ ଅଲଗା ହେଇଗଲୁ । ବର୍ତ୍ତମାନ ସେ କେଉଁଠି ଅଛନ୍ତି, କ'ଣ କରୁଛନ୍ତି ମୁଁ କିଛି ଜାଣି ନାହିଁ । ତମେ ଆଜି ପର୍ଯ୍ୟନ୍ତ ବୋର୍ଡ଼ିଂରେ ଥିଲ, ଏଇଥିପାଇଁ ନା କେବେ ଏହି ପ୍ରସଙ୍ଗ ଉଠିଥିଲା ନା ଉଠା ଯାଇଥିଲା । କିନ୍ତୁ କଲୀ, ସତ କହ ଝିଅ, କ'ଣ ମୁଁ କେବେ ତମକୁ ପିତାର ଅଭାବ ଅନୁଭବ କରିବାକୁ ଦେଇଛି ? କ'ଣ ଏମିତି ଜିନିଷ ଥିଲା, ଯାହା ତମେ ମାଗିଛ ଓ ମୁଁ ଦେଇ ନାହିଁ ?

"ସ୍ୱୟଂ ତମର ରେଭରେଣ୍ଡ ମଦର କହୁଥିଲେ, ମିସେସ୍ ମଜୁମଦାର, ଏତେ ଦେଇ ଦେଇ କରି ଝିଅକୁ ଆପଣ ବିଗାଡ଼ି ଦେଉଛନ୍ତି, ତମର ପ୍ରତ୍ୟେକ ଜନ୍ମଦିନରେ ଦଶ-ଦଶ ପାଉଣ୍ଡର କେକ୍ ତିଆରି କରି ପଠେଇ ନାହିଁ ମୁଁ ?

"ତମେ ଘଡ଼ି ମାଗିଲ, ମୁଁ ନିଜ ଘଡ଼ି ଖୋଲିକରି ତମ ପାଇଁ ପଠେଇ ଦେଇଥିଲି । ତେବେ ମଧ ତୁମେ ବାରମ୍ବାର ବକବକ କରୁଥିଲ...."

ଚଉକିରେ ରଖିଥିବା ଦୁଇଟି ଗୋଲଗାଲ ପାଦ ହଲଉଥିବା କଲୀ ଦୁଷ୍ଟାମିରେ ହସି ଉଠିଲା, "ଆଚ୍ଛା ମା, ତମେ କୁହ, ସେଇଟା ଘଡ଼ି ଥିଲା ନା ମାଠିଆ ? ଜଣା ନାହିଁ କେଉଁଠାରୁ ବାବା ଆଦମଙ୍କ ଯୁଗର ଘଡ଼ି ତମେ ବାହାର କରି ପଠେଇ ଦେଇଥିଲ ଏବଂ ପୁଣି ଏହା ଭାବୁଥିଲ ଯେ ମୁଁ ଘଡ଼ିର ପ୍ରଶଂସାର ପୋଲ ବାନ୍ଧି ଦେବି ? ଏହା କଲୀ ଦ୍ୱାରା କେବେ ହେବନାହିଁ ।"

"ମୁଁ ଗତଥର ମଦର ସହିତ ଦେଖା କରିବାକୁ ଗଲି, ତ ମତେ ଲାଗିଲା ସେ ତମର ସ୍ୱଭାବ ପାଇଁ କିଛି ବିରକ୍ତ ହେଇଛନ୍ତି । କହିବାକୁ ଲାଗିଲେ, ମିସେସ ମଜୁମଦାର, ଆପଣଙ୍କ ଝିଅ ବଡ଼ 'ଡିଫେଏଣ୍ଟ' ହେବାକୁ ଯାଉଛି ।"

"ଆଚ୍ଛା, ଏମିତି କହିଲେ ମଦର ?" କଲୀର ଧୃଷ୍ଟ ଆଖିରେ ବିଦ୍ରୋହର ତରଙ୍ଗ ନାଚିବାକୁ ଲାଗିଲା । "ଏହା କୌଣସି ଦୁର୍ଗୁଣ କି ମା ? ମଦର କ'ଣ ଚାହୁଁଥିଲେ ଯେ ମୁଁ ଚୁପଚାପ ତାଙ୍କର ତିରସ୍କାର ସହୁଥିବି ? ଛାଡ଼ିଦିଅ, ମା ! କାହିଁକି ଏହି ସଢ଼ିଯାଇଥିବା ବଙ୍ଗଳାର ଅଶୁଭ ବଢ଼ଉଛ ? ଭାବୁଛି କାହିଁକି ନା ଟିକିଏ ବୁଲାବୁଲି କରିବା ।" ସେ ନିର୍ଲ୍ଲଜ୍ଜତାରେ ହସିକରି ଶରୀରରେ ସଂଶ୍ଳିଷ୍ଟ ହେଇଥିବା ଜୀନ୍ସ ଉପରେ ଥିବା ସ୍କୋର୍ଟ୍ସ ସାର୍ଟର କୁଞ୍ଚ କୁଞ୍ଚ ହେଇଥିବା ହାତକୁ ଠିକକରି ଚଟ୍‌କରି ବାହାରକୁ ଚାଲିଗଲା ।

କେଉଁଠିକୁ ଯାଉଛି, କେତେବେଳେ ଫେରିବ, କିଛି ପଚାରିବା ବ୍ୟର୍ଥ ଥିଲା । ପନ୍ନା ଝରକା ନିକଟରେ ଛିଡ଼ା ହେଇ ତାକୁ ଦେଖିବାକୁ ଲାଗିଲା । ନୀଳ ଜିନ୍ସ ଆଉ ଗ୍ରେ ସାର୍ଟରେ ସେ ନିତାନ୍ତ ବାଳିକା ପରି ଦେଖା ଯାଉଥିବା ଉଦଣ୍ଡ କଲୀକୁ କଣ କୌଣସି ଅଙ୍କୁଶରେ ବାଟକୁ ଆଣି ପାରିବ ? ବର୍ତ୍ତମାନ ତ ତା'ର ସତରବର୍ଷ ମଧ୍ୟ ପୁରା ହେଇ ନଥିଲା । ଏମିତି ଜଙ୍ଗଲୀ ସ୍ୱଭାବକୁ ଗୋଟିଏ ହିଁ ବ୍ୟକ୍ତିର ଅନୁଶାସନର କଠିଣ ଚାବୁକରେ ଠିକ କରି ପାରିଥାନ୍ତା, ବଡ଼ ଅପା । ଯଦି, ଆଜି ବଡ଼ ଅପାଙ୍କ ସମ୍ମୁଖରେ ସେ ଏହାକୁ ହାତ-ପାଦ ବାନ୍ଧିକରି ପକେଇ ଦେଇ ପାରିଥାନ୍ତା । ଗୋଟିଏ ଗର୍ଜନରେ ବଡ଼ ଅପା ତା'ର ନିଶା ହରଣ କରି ଦେଇଥାନ୍ତା । କିନ୍ତୁ ତା'ର ଛୋଟ ଗାଁରେ ବର୍ତ୍ତମାନ ସମ୍ପର୍କ କ'ଣ ରହିଛି । କେତେଥର ମନରେ ଆସିଥିଲା ସମ୍ପର୍କ କାଟିଦେବାକୁ ଏଇ ଟୋକିଠୁ । ଚାଲି ଯାଉ ଯେଉଁଠାକୁ ତା'ର ଯିବାର ଅଛି । ବର୍ତ୍ତମାନ ବେଙ୍କର ଧନରାଶି ମଧ୍ୟ ଦିନକୁ-ଦିନ କ୍ଷୀଣ ହେବାରେ ଲାଗିଥିଲା । ରାମଗଡ଼ର ଗୋଟିଏ ବିଦେଶୀ ପରିବାର ତାକୁ ନିଜ ସହିତ ଅରବିନ୍ଦ ଆଶ୍ରମ ନେଇ ଯିବାକୁ କଥା ଦେଇଥିଲେ । କେତେ ଦିନଠୁ ମନରେ ଆସୁଥିଲା ଯେ ଏହି ବଙ୍ଗଳାକୁ ଛାଡ଼ିଛୁଡ଼ି ସେଠାକୁ ଚାଲିଯିବି । କିନ୍ତୁ ପୁଣି କଲୀର କ'ଣ ହେବ ? ଯେମିତି-ଯେମିତି ସେହି ବାଲିକା ବଡ଼ ହେବାକୁ ଲାଗିଥିଲା, ମା ପ୍ରତି ତା'ର ଅବିଶ୍ୱାସ ବଢ଼ିବାରେ ଲାଗିଥିଲା । କେତେ ଗୋରା ଥିଲା ତା'ର ମା' । ଏକଦମ ଇଂରେଜ । ନିଳ ଆଖି, ସୁନେଲୀ ବାଳ ଏବଂ ଲାଲ ଓଠ । ତା'ର ଚେହେରା ତ ମା' ସହିତ ଏକଦମ ମିଶେ ନାହିଁ, ତେବେ କ'ଣ ସେ ନିଜର ପିତା ପରି ହେଇଛି ?

"ମା, ତମେତ ଏତେ ଗୋରା ହେଇଛ ପୁଣି ମୁଁ ଶ୍ୟାମଳୀ କେମିତି ହେଲି ?" ସେ ବହୁତ ଆଗରୁ ଥରେ ରୋଜୀର ଉପସ୍ଥିତିରେ ହିଁ ପନ୍ନାକୁ ପଚାରି ଥିଲା ।

"ଶ୍ୟାମଳୀ ହେଇଥିଲେ ମଧ୍ୟ କ'ଣ ତୁମେ ନିଜ ମା'ଠାରୁ ସୁନ୍ଦର ନୁହଁ ?"

ରୋଜୀ ଆଣ୍ଟି ମା'କୁ ଉତ୍ତର ଦେବାକୁ ଦେଇ ନଥିଲା । ରୋଜୀ ଆଣ୍ଟିକୁ ସେ ଏମିତି ମଧ୍ୟ ଦେଖିବାକୁ ପସନ୍ଦ କରୁ ନ ଥିଲା । ଯେବେ-ଯେବେ ବୁଢ଼ୀ ଆସୁଥିଲା, ମା'କୁ କିଛି ନା କିଛି ଶିଖେଇ ପଢ଼େଇ ଯାଉଥିଲା । ଏହି କଲୀ କେଉଁଠିକୁ ବୁଲିବାକୁ ଚାଲିଯାଏ ? ଏତେ ଡେରି ପର୍ଯ୍ୟନ୍ତ ଏହାର ବୁଲିବା ଠିକ୍ ନୁହଁ, ପ୍ରତ୍ୟେକ ଦିନ କେମିତି ଫିଲ୍ମ ଦେଖୁଛି, ଫୈଜାବାଦ କଲୀ, ଯାଇପାରିବ ନାହିଁ, ତାକୁ ଦିଲ୍ଲୀ ଓ ଆଗ୍ରା ଯିବାକୁ ହେବ । ରୋଜୀ ଆଣ୍ଟି ନଥିଲେ ମା'ର ଅନୁଶାସନ ମଧ୍ୟ ଏତେ କଡ଼ା ହେଇ ନ ଥାନ୍ତା ।

ଆଜି ତ ସେ ଆହୁରି ରାତିରେ ଫେରିବ । ମଜା ଚଖେଇବ ମା'କୁ । ଭାରି ଆସିଛି ତା'ର ପିତାଠାରୁ ଅଲଗା ରହିଲା ବାଲୀ । କେମିତି ହେଇଥିବେ ତା'ର ପିତା ?

ଜଣା ନାହିଁ ଖୁବ୍ ବଡ଼ ଅଫିସର ହେଇଥିବ, ଘର ବାହାରେ ହୁଏତ ନୂଆ ଫିଆଟ ରଖା ହେଇଥିବ, ବିବିୟନର ପାପା ପରି ହୁଏତ ଶିକାରର ମଧ୍ୟ ସୌଖୀନ ହେଇଥିବେ । ତା'ର ଚେହେରା ମା' ସାହିତ ମିଳେ ନାହିଁ, ତେବେ ନିଶ୍ଚୟ ହିଁ ତା'ର ପିତା ସହିତ ମିଶୁଥିବ । ତେବେ ତ ତା'ର ପାପା ନିଶ୍ଚୟ ସୁନ୍ଦର ହେଇଥିବେ । ଏମିତି ସୁନ୍ଦର ପିତାକୁ ମା' କାହିଁକି ଛାଡ଼ିଦେଇ ଥିଲା ? ନିଶ୍ଚୟ ହିଁ ଡାଲି-ଭାତରେ ଦୃଢ଼ ମାତ୍ର ନିକର୍ମା ବୃଦ୍ଧାହିଁ ଝଗଡ଼ା କରଉଥିବ । ନିଜେତ ବୃଦ୍ଧା କୋଢ଼ିଆମାନଙ୍କ ମଧ୍ୟରେ ରହୁଛି । ଯେବେ-ଯେବେ ରୋଗୀ ଆଣ୍ଟି ତା'ର ଗାଲରେ ଚୁମା ଦିଏ, ସେ ଗାଧୁଆ ଘରକୁ ଦଉଡ଼ି ଯାଇ ଘଷି ଘାସି କରି ଗାଲକୁ ଧୋଇଦିଏ । ଜଣାନାହିଁ ବୁଢ଼ି କେବେ ତାକୁ ମଧ୍ୟ 'ଇନ୍‌ଫେକ୍ସନ' ଦେଇଦେବ ।

ସେଦିନ କଳୀ ମନ ଭରି ଏଠାରେ-ସେଠାରେ ବୁଲିବାରେ ଲାଗିଲା । ପ୍ରଥମେ ନୌକାରେ ବସିକରି ଖୁବ୍ ଡେରି ପର୍ଯ୍ୟନ୍ତ ତଲ୍ଲୀତାଲରୁ ମଲ୍ଲୀତାଲ ଭ୍ରମଣ କରି, ପୁଷ୍କରିଣୀର ପାଣିରେ ହାତ ବୁଡ଼େଇ-ବୁଡ଼େଇ କରି ଦଳବାନ୍ଧି ପହଁରୁଥିବା ବତକମାନଙ୍କୁ ଡରେଇ ଡରେଇ କରି ଦୂରକୁ ଘଉଡ଼ି ଦେଲା । ପୁଣି ଠୁଙ୍ଗାଭର୍ତ୍ତି ବାଦାମ ଖାଇକରି, ବେଞ୍ଚ ଉପରେ ବସିଗଲା । ଅନ୍ଧାର ଘେରିଯିବାରୁ ସେ ଘୋଡ଼ା ନେଇକରି ଘରକୁ ଚାଲିଆସିଲା । ଘରେ ପହଞ୍ଚୁ-ପହଞ୍ଚୁ ରାତି ୯ଟା ବାଜି ଯାଇଥିଲା । ଚିନ୍ତାରେ ବୁଡ଼ିଯାଇଥିବା ପନ୍ନା ବାରଣ୍ଡାରେ ଛିଡ଼ା ହେଇଥିଲା ।

"କଳୀ, କେତେ ରାତି କରିଦେଲୁ ଝିଅ । ଆଜିଠୁ ତିନିଦିନ ଆଗରୁ ମାଳୀ ବାନ୍ଧିଥିବା ଗାଈକୁ ଖୁଣ୍ଟିରୁ ଖୋଲିକରି ନରଖାଦକ ଟାଣି ନେଇଗଲା ।

"ତୁମେ ଭୁଲିଯାଉଛ ମା, ମୁଁ କୌଣସି ଖୁଣ୍ଟିରେ ବନ୍ଧା ହୋଇନାହିଁ । ମତେ ଖାଇପାରିଲା ପରି ନରଖାଦକ ଆଜି ମଧ୍ୟ ଜନ୍ମ ହେଇ ନାହିଁ ।"

ଆଉ ସେ ଗରଗର ହେଇ ନିଜ ବଖରାକୁ ଚାଲି ଯାଇଥିଲା ।

"ଖାଇବୁ ନାହିଁ, କଳୀ ?"

"ନା, ମୋର ଭୋକ ନାହିଁ, ଫ୍ଲାଟକୁ ଯିବା ପରେ ମୁଁ କ'ଣ ଆଜି ପର୍ଯ୍ୟନ୍ତ କେବେ ଚାଟ ନଖାଇ ଫେରିଛି ?

ପନ୍ନା ଖାଇବା ଢାଙ୍କି କରି ରଖିଦେଲା ଆଉ ଭୋକରେ ଶୋଇଗଲା ।

ଯେଉଁ ଅନାଥ ବାଳିକାକୁ ନିଜର ସ୍ନେହପୂର୍ଣ୍ଣ ବାତ୍ସଲ୍ୟ ପାଇଁ ସେ ଦିନେ ନିଜର କରି ନିଜର ଅଭିଶପ୍ତ ଜୀବନର ସମସ୍ତ ବ୍ୟାଖ୍ୟାକୁ ଭୁଲିବାର ସ୍ୱପ୍ନ ଦେଖି ଆସୁଥିଲା, ତାହାର ମୃଗତୃଷ୍ଣା ବର୍ତ୍ତମାନ ଆଉ ତାକୁ ପ୍ରତାରିତ କରିପାରୁ ନଥିଲା ।

ପରର ରକ୍ତ-ମାଂସରେ ତିଆରି ଦେହ ମଧ୍ୟ ସର୍ବଦା ପର ହିଁ ରହେ, ଏହି କଟୁ ସତ୍ୟ ତାକୁ ବର୍ତ୍ତମାନ ଢକଢକ କରି ଢୋକିବାକୁ ହେବ । ପ୍ରକୃତିରେ ବିରୋଧ ସମ୍ଭବ ଅଟେ, କିନ୍ତୁ ତାକୁ ସମ୍ପୂର୍ଣ୍ଣ ରୂପରେ ପରାଜିତ କରାଯାଇ ପାରେ ନାହିଁ ।

କଲୀ ଯଦି ତା'ର ନିଜର ଝିଅ ହୋଇଥାନ୍ତା କ'ଣ ତେବେ ଏମିତି ହୃଦୟ ହୀନତାରେ ଘର ବନ୍ଦ କରି ଏକେଲା ଶୋଇ ଯାଇଥାନ୍ତା ? କ'ଣ ତା'ର ଘରେ ରହିବା ପରେ ପନ୍ନା କେବେ ଏକେଲା ଖାଇବା ଟେବୁଲରେ ବସିଛି ? କଲୀ ଉଦଣ୍ଡି ଥିଲା, ବାଣୀ ସେନର ପ୍ରାରମ୍ଭିକ ଆଦର-ଯତ୍ନ ତାକୁ ପିଲାଦିନରୁ ମୁଣ୍ଡରେ ବସେଇ ଦେଇଥିଲା । କିନ୍ତୁ ଏମିତି ନୀରସ ସେ ନ ଥିଲା ।

"ଏହି ବୟସ ହିଁ ଏମିତି ହୁଏ ପନ୍ନା, ସ୍ୱୟଂ ଠିକ୍ ହେଇଯିବ," ରୋଜୀ କହିବାରେ ଲାଗିଥାଏ । କିନ୍ତୁ ପନ୍ନା ତାର ଲକ୍ଷେ ବୁଝେଇଲା ପରେ ମଧ୍ୟ ଆଶ୍ୱସ୍ତ ହେଇପାରୁ ନଥିଲା ।

ସେହି ରାତିରେ ପନ୍ନା ବ୍ୟାକୁଳ ହେଇ କଡ଼ ଲେଉଟାଇବାରେ ଲାଗିଥିଲା । କେମିତି ମୂର୍ଖତା କରି ବସିଛି ସେ । ସେହିଦିନ ଛାଡ଼ିକରି କାହିଁକି ଫେରି ଆସିଲା ନାହିଁ ? ସେହି ଏକାନ୍ତ ବଙ୍ଗଳାରେ ତାର ଭୁଲି ଯାଇଥିବା ପ୍ରେମୀକର ସ୍ମୃତି ତାକୁ ରହି-ରହି କରି ଦଗ୍ଧ କରି ଉଠୁଥିଲା ।

ବିଧୁତରଞ୍ଜନ ଏବେ ମିନିଷ୍ଟର ହିଁ ନୁହେଁ, ଏବେ ଲକ୍ଷାଧିପତି ହେଇ ଯାଇଥିଲା, ଏହା ସେ ଖବର କାଗଜରେ ପଢ଼ିଛି । କେମିତି ବର୍ତ୍ତମାନ ବିରୋଧୀ ଦଳର ସଦସ୍ୟ ତାର ଦେଶ ସେବାର ନାମରେ ରୋଜଗାର କରିଥିବା ଅଖଣ୍ଡ ଧନରାଶି ପାଇଁ ଧିକ୍କାର କରୁଥିଲେ, ବିଧାନସଭାରେ ପ୍ରଶ୍ନର ବୋମାମାଡ଼ରେ ତା'ର ଧ୍ୱଜା ଉଡ଼ାଉ ଥିଲେ, ପନ୍ନା ପଢ଼ି-ପଢ଼ି ସେ ନିଜ ସରକାରକୁ ଟେକ୍ସ ନଦେଇ କରି ଛଳକପଟର ପ୍ରତାରଣା କରି ଠକେଇ ଚାଲିଥିଲା, କିନ୍ତୁ ଏବେ ବିରୋଧୀ ପକ୍ଷର ଗୋଡ଼ ମଜଭୂତ ହେଇ ତାହାର ଛାତିରେ ଘସିବାରେ ଲାଗିଛନ୍ତି । ଯେଉଁ ଖଦଡ଼ର ଟୋପି କେବେ ରାଜ ମୁକୁଟ ବିନା ବାଦଶାହା କରି ଦେଇଥିଲା, ତାହାହିଁ ଏବେ ପଥରର ଶିଳା ହେଇ ତାକୁ ଧରାତଳରେ ଘସିବାକୁ ଲାଗିଛି । ପନ୍ନା ଖବର କାଗଜର ଏକ ପୃଷ୍ଠା ପଢୁଥିଲା ।

ଯାହାକୁ ସେ ନିଜର ସୁଖ-ସମୟରେ ସ୍ମରଣ କରି ପାରିଲା ନାହିଁ, ସେହି ପନ୍ନାକୁ ସେ କ'ଣ ନିଜର ଦୁର୍ଭାଗ୍ୟ କ୍ଷଣରେ କେବେ ମନେ ପକଉଥିବ ? କ'ଣ ହଳଦିଆ କୋଠାରେ କଟେଇ ଥିବା ଅସ୍ତିତ୍ୱର ସୁଗନ୍ଧିତ ରଂଗୀନ ଦିବସମାନଙ୍କ ସ୍ମୃତି ତାକୁ ମଧ୍ୟ କେବେ ବିହ୍ୱଳ କରୁଥିବ ?

କିନ୍ତୁ ପନ୍ନା ଯେତିକି ଭଲକରି ସେହି ବ୍ୟକ୍ତିକୁ ଜାଣିଥିଲା, ହୁଏତ ସ୍ୱୟଂ ତା'ର ପତ୍ନୀ ମଧ୍ୟ ତାକୁ ସେହି ଅନ୍ତରଙ୍ଗ ଭାବରେ ଜାଣି ନଥିବ । ଦୁର୍ଭାଗ୍ୟକୁ ସେହି ବ୍ୟକ୍ତି ପୁରା ଶକ୍ତିରେ ପଛକୁ ଠେଲି ପାରିଥାନ୍ତା । ଆଜି ଏହି କଲୀ ନ ଥିଲେ, ହୁଏତ ପୁଣି ଥରେ ସେହି ଆକର୍ଷକ ବ୍ୟକ୍ତିତ୍ୱର ମୋହ ଜାଲରେ ବାନ୍ଧିହେଇ ଯାଇଥାନ୍ତା ଏବଂ ସେ ମଧ୍ୟ କ'ଣ ତାକୁ ଥରେ ଦେଖିନେବା ପରେ ସହଜରେ ଛାଡ଼ି ଦେଇଥାନ୍ତା ? ଏତେ ବର୍ଷରେ ମଧ୍ୟ ପନ୍ନା ଉଣେଇଶରୁ କୋଡ଼ିଏ ଥର ବଦଳି ଥିଲା ।

ଯେଉଁ ଚିକ୍କଣ ଘନ ବାଳକୁ ସେ ଯତ୍ନରେ ଧାଡି ଧାଡି କରି, କଳିଙ୍ଗ ପିନ୍ନରେ ଦବେଇ କରି ରଖୁଥିଲା, ଏବେ ସେଥିରେ ସ୍ୱୟଂ ସ୍ୱାଭାବିକ ଧାଡି ଧାଡି ତିଆରି ହେଇ ଯାଉଥିଲା । ଗୌରବର୍ଣ୍ଣକୁ ପାହାଡ଼ରେ ଏକାନ୍ତ ବାସ ଆହୁରି ଗୋରା କରି ଦେଇଥିଲା । ନିଜ ଆଖି ଦୁଇଟିରେ ଗଭୀର ବିଷାଦର ରେଖା ବାହାରି ଆସିଥିଲା । ସେ କେବେ ତଳକୁ ବୁଲିବା ପାଇଁ ଓହ୍ଲାଇଲେ, ତେବେ ଲୋକ ବୁଲି-ବୁଲି କରି ତାକୁ ଦେଖିବାକୁ ଲାଗୁଥିଲେ । ମନେ ହେଉଥିଲା କୌଣସି ମେ଼ମ ସାଢ଼ି ପିନ୍ଧି କରି ବୁଲୁଛି ।

କେବେ-କେବେ ପନ୍ନାର ମନକୁ ଆସୁଥିଲା ସେ କଲୀକୁ କହି ଦେବ ଯେ ତା'ର ପିତା ଅମୁକ ମନ୍ତ୍ରୀ ଅଟେ, କିନ୍ତୁ କ'ଣ ସେ କଲୀକୁ ଜାଣି ନାହିଁ ? ବେକ ଉପରେ ଚଢ଼ି ସେ ପିତାର ସମସ୍ତ ମନ୍ତ୍ରୀପଣ ବାହାର କରି ଦେଇଥାନ୍ତା ।

କିନ୍ତୁ ସେ କ'ଣ ସ୍ୱୟଂ ଏମିତି କରିପାରି ଥାନ୍ତା ? ବହୁତ ରାତି ପର୍ଯ୍ୟନ୍ତ ପନ୍ନା ଶୋଇ ପାରି ନ ଥିଲା । ସକାଳେ ଆଖି ଖୋଲିଲା ବେଳକୁ, ଦିନ ବଢ଼ି ଯାଇଥିଲା, ସେ ହଡ଼ବଡ଼େଇ ଉଠିଲା । କଲୀର ବେଡ୍ ଟୀର ଅଭ୍ୟାସ ଥିଲା । ବଡ଼ ଟେବୁଲ ଉପରେ ଷ୍ଟୋଭ୍ ଜଳେଇ ରଖେ, ଗୋଟିଏ କପ ଚା ତିଆରି କରି ପନ୍ନା ପ୍ରତ୍ୟେକ ଦିନ ତା'ର ଖଟର ମୁଣ୍ଡ ପାଖକୁ ନେଇ ଆସୁଥିଲା । ଆଜି ସେ ଗଲା କିନ୍ତୁ ବଖରାରେ କେହି ନ ଥିଲେ । ଟେବୁଲ ଉପରେ ଜଳୁଥିବା ବେଡ଼-ଲେମ୍ପ ସେ ହୁଏତ ଜାଣିଶୁଣି, ଜଳିବା ଅବସ୍ଥାରେ ଛାଡ଼ିକରି ଯାଇଛି, ଯେଉଁଥିରେ ମା'ର ଦୃଷ୍ଟି ତା ତଳରେ ଦବେଇ ରଖିଥିବା ପତ୍ର ଉପରେ ପଡ଼ି ପାରିବ । କଲୀର ଗୋଲ-ଗୋଲ ଅକ୍ଷରରେ ଲେଖା ହେଇଥିବା ଚିଟ ପନ୍ନା ଉଠେଇ ନେଲା ।

"ମା, ମୁଁ ସାରାଦିନ ପାଇଁ ତଳକୁ ଯାଉଛି । ମତେ ମୋର ଗୋଟିଏ ବନ୍ଧୁ ଲଞ୍ଚ ପାଇଁ ଡାକିଛି । ତମେ ଶୋଇଥିଲ ପୁଣି କାଲି ରାତି ମଧ୍ୟ ତମର ବଖରାରେ ଜଳୁଥିବା ବତୀ ଦେଖିଥିଲି, ମୁଁ ସେଇଥି ପାଇଁ ତମକୁ ଉଠେଇଲି ନାହିଁ । ମୁଁ ଫେରୁ ଫେରୁ ରାତି ହେଇଯିବ କଲୀ ।

କଲୀ ଘରକୁ ଆସିବା ମାସେ ହେବାକୁ ଯାଉଥିଲା, ଏବଂ ଏହା ଭିତରେ ତାହାର ଏମିତି ପ୍ରତ୍ୟେକ ଦିନର ନିରର୍ଥକ ଆଦେଶ ପଢ଼ିକରି ନିଃଶବ୍ଦ ଗ୍ରହଣ କରିବାକୁ ପନ୍ନା ଅଭ୍ୟସ୍ତ ହେଇ ସାରିଥିଲା । ଏକାହିଁ ଖାଇବା ଖାଇକରି ସେ ବରଣ୍ଡାରେ ଚଉକି ପକେଇ କରି ଖବର କାଗଜ ପଢ଼ିବାକୁ ଲାଗିଲା । ମାସର ଶେଷ ଶନିବାର ଥିଲା । ଦୁଇପ୍ରହରର ବସ୍‌ରେ ରୋଜୀ ମଧ୍ୟ ଆସୁଥିବ । ଆଉ ତାର ଆସିବା ପରେ ସେ କଲୀର ଉଦଣ୍ଡ ସ୍ୱତନ୍ତ୍ରତା ପ୍ରେମୀ ସ୍ୱଭାବ ବିଷୟରେ ସବୁକିଛି କହିଦେବ । ଏହା ମଧ୍ୟ ଠିକ୍ ଯେ କଲୀ ସ୍ୱୟଂହିଁ ଦିନସାରା ପାଇଁ ବାହାରକୁ ଚାଲି ଯାଇଛି । ସେହି ଚତୁର ବାଳିକାର କ'ଣ କିଛି ଠିକଣା ଥାଏ ? କେବେ କେଉଁ କବାଟ ପାଖରେ

ଛିଡ଼ା ହେଇ କଥା ଶୁଣୁଛି, ଜାଣି ହୁଏ ନାହିଁ ।

ହଠାତ୍ ଖବର କାଗଜ ପଢୁଥିବା ପନ୍ନାର ଚେହେରା ଫିକା ପଡ଼ିଗଲା ।

ନା, ଏହି ନାମର କ'ଣ କେହି ଅନ୍ୟ ବ୍ୟକ୍ତି ମଧ୍ୟ ହେଇପାରେ ? ସେ କେତେଥର ପଢ଼ିଲା, ଯେତେଥର ସେ ପଢୁଥାଏ, ସେତିକି ଥର ସେହି ବ୍ୟକ୍ତିର ସୁଦର୍ଶନ ଚେହେରା ଯେମିତି ହସୁଛି - ମୁରୁକି ହସୁଛି ସାମ୍ନାକୁ ଆସିଯାଏ । "ହଁ, ଆଜ୍ଞା ହଁ, ମୁଁ ହିଁ ଅଟେ, ଆଉ କିଏ ଏଠାରେ ରହିପାରିବ ? ଆସିକରି ଦେଖି ନିଅ ନା !

ରାଜଭବନର ସମ୍ମାନିତ ଅତିଥିମାନଙ୍କର ତାଲିକାରେ ପ୍ରଥମ ଦୁଇଟି ନାମ ତୀକ୍ଷ୍ଣ ବର୍ଚ୍ଛାପରି ପନ୍ନାର ହୃଦୟରେ ଘସି ହେଇଗଲା ।

ଶ୍ରୀ ଏବଂ ଶ୍ରୀମତୀ ବିଧୁରଞ୍ଜନ ମଜୁମଦାର ।

ଆଜି ସେ ଏତେ ବର୍ଷର ପ୍ରତିଶୋଧ ନେଇପାରିଥାନ୍ତା । କଲୀର ହାତ ଧରିକରି ସେ ରାଜ୍ୟପାଳଙ୍କ ଦରବାରରେ ନିଜର ସତର ବର୍ଷର ପୁରୁଣା ଅଭିଯୋଗର ଫାଇଲ ଖୋଲିକରି ରଖିଦେବ ।

"ନିଅ, ସମ୍ଭାଳ ନିଜର ଅମାନତ । ପ୍ରତ୍ୟେକ ଦିନ ଇଏ ମତେ ପଚାରୁଥିଲା, ମୋର ପିତା କିଏ ମା ? ଆଜି ଈଶ୍ୱର ହିଁ ସ୍ୱୟଂ ତମକୁ ଏଠାକୁ ପଠେଇ ଦେଲା ।"

କେମିତି ଚେହେରା ହେବ ଦୁଇଜରଙ୍କର ? ଚାରିଟା ବାଜିଲା ବେଳକୁ କଲୀ ଆସିବ । କାହିଁକି ନା ସେ ଆସିବା ପୂର୍ବରୁ ଥରେ ରଞ୍ଜନ ସହିତ ଫୋନରେ କଥାବାର୍ତ୍ତା କରି ନେବା ।

ଉତ୍ତେଜନାରେ ପନ୍ନାର ସର୍ବାଙ୍ଗ ଥରୁଥିଲା । ଫୋନରେ କଥା କହିବାରେ ତ କୌଣସି ଦୋଷ ନଥିଲା, ବଙ୍ଗଳାରେ ଥିଲା କିଏ, ଯିଏ ତା'ର କଥା ଶୁଣି ପାରିବ ।

"ହାଲୋ" ସେ ତାର ଉତ୍ତେଜିତ କଣ୍ଠସ୍ୱରକୁ ଯଥାଶକ୍ତି ସଂଯତ କରିବାର ଚେଷ୍ଟା କଲା, ତେବେ ମଧ୍ୟ ତା'ର ସ୍ୱର ଥରି ଉଠିଲା, "ମୁଁ କ'ଣ ବିଧୁତରଞ୍ଜନ ମଜୁମଦାର ସହିତ କଥା ହେଇପାରିବି ?"

## ଛଅ

ମୃଦୁଭାଷୀ ଏ.ଡ଼ି.ସି. ତା'ର ନାମ ପଚାରିଲାରୁ କ୍ଷଣକ ପାଇଁ ଚୁପ୍ ରହିଗଲା । ପୁଣି ହସି କରି କହିଲା, "ଆପଣ କହିବେ ତାଙ୍କ ସହିତ ଜଣେ ମହିଳା କିଛି ପଚାରିବାକୁ ଚାହୁଁଛି ।" ବହୁତ ଡେରି ପର୍ଯ୍ୟନ୍ତ ଫୋନର ରିସିଭର ହାତରେ ନେଇ ପନ୍ନା ଛିଡ଼ାହେଇ ରହିଲା । ପୁଣି ସେ ଚଉକି ଟାଣିନେଲା ଏବଂ ବସିକରି ଝାଳ

ପୋଛିବାକୁ ଲାଗିଲା । ଓହୋ, ନ ଦେଖି ହିଁ ତା'ର ଏହି ଅବସ୍ଥା ହେଇଥିଲା, ଯଦି ରଞ୍ଜନ ଓ ସେ ମୁହାଁ ମୁହିଁ ଛିଡ଼ା ହେଇଥିଲେ, ହୁଏତ ପନ୍ନା ମୂର୍ଚ୍ଛିତ ଧରା ଉପରେ ଲୋଟୁଥିବା ଦେଖିବାକୁ ମିଳିଥାନ୍ତା ।

"ହାଲୋ", ଫୋନରେ ବର୍ଷ ବର୍ଷର ପୁରୁଣା ପରିଚିତ ସ୍ୱର ସେହି ନମ୍ରତାରେ ଗୁଣୁ ଗୁଣୁ ହେଇ ଉଠିଲା ।

ପନ୍ନାର ଗଳା ଶ୍ୱାସରୁଦ୍ଧ ହେଇଗଲା, ସେ ଚାହିଁଲା ପରେ ମଧ୍ୟ ଦୁଇ-ତିନିଥର ପୁନରାବୃତ୍ତି କରାଗଲା ହାଲୋର ଉତ୍ତରହିଁ ଦେଇ ପାରିଲା ନାହିଁ ।

"ମୁଁ କହୁଛି, ବିଧୁତରଞ୍ଜନ ମଜୁମଦାର । କହନ୍ତୁ କ'ଣ କହିବାର ଅଛି ?"

"ମୁଁ.... ମୁଁ...." ପନ୍ନାର ଆଖି ବର୍ଷିବାକୁ ଲାଗିଲା । ହାତ ଥରୁଥିଲା । ମନେହେଲା ଫୋନ ଏବେ ପଡ଼ିଯିବ, ତେବେ ପଡ଼ିଯିବ । "ଆଜ୍ଞା ମୁଁ ଚିହ୍ନି ପାରିଲି ନାହିଁ, ଆପଣ କିଏ ?"

"ମୁଁ ପନ୍ନା," ଆଉ ଉତ୍ତର ସହିତ ଏକ ଚାପା ସକେଇ ସକେଇ କାନ୍ଦିବା ଶୁଣିଲାବାଲାର କାନ ପର୍ଯ୍ୟନ୍ତ ପହଞ୍ଚିଗଲା ।

ବର୍ତ୍ତମାନ ତାର ପାଳି ଥିଲା । କିଛିକ୍ଷଣ ପାଇଁ ସେ ମଧ୍ୟ ହୁଏତ ନିଜର ସମସ୍ତ ରାଜନୈତିକ ପ୍ରଗଳ୍ଭତା ଭୁଲିକରି ରହିଗଲା ।

"ରଞ୍ଜନ, ମୁଁ ପନ୍ନା", ବର୍ତ୍ତମାନ ନିଜର ସ୍ୱାଭାବିକ ଧୈର୍ଯ୍ୟକୁ ପୁଣି ପାଇ ସାରିଥିଲା, "ମୁଁ ତମ ସହିତ ଦେଖା କରିବାକୁ ଚାହୁଁଛି । କ'ଣ ତମେ ଚାହିଁବ ଯେ ମୁଁ ମଧ୍ୟ ରାଜଭବନ ଚାଲି ଆସିବି ? ହୁଏତ ନୁହଁ, ତେବେ କ'ଣ ତମେ ଏବେ ଉପରକୁ ଆସି ପାରିବ ?"

ହଠାତ୍ ସେହି ନମ୍ର ପ୍ରଣୟୀର ପରିଚିତ ମଧୁର କଣ୍ଠସ୍ୱର ପନ୍ନାର ଯତ୍ନରେ ତିଆରି କରିଥିବା ଯୋଜନା କ୍ଷଣକରେ ନଷ୍ଟଭ୍ରଷ୍ଟ କରି ଦେଇଥିଲା । ମୂର୍ଖ ପନ୍ନା ତାଙ୍କୁ ନିଜ ଠିକଣା ଦେଇକରି ରହି ଯାଇଥିଲା । ଯଦି ସେ ଆସିବ ନାହିଁ ତେବେ ? ଜଣାନାହିଁ ଚୁପଚାପ, ସେଠାରୁ ଆଜି ହିଁ ଖସିକରି ତାକୁ ଘୋସାଡ଼ି ନେବ । ତେବେ ମଧ୍ୟ ସେ ଧଡ଼ ଧଡ଼ କରୁଥିବା ହୃଦୟରେ ତାହାର ପ୍ରତୀକ୍ଷା କରିବାକୁ ଲାଗିଲା । ଯେଉଁ ଉପେକ୍ଷିତ ବାଳାଙ୍କୁ ସେ ବର୍ଷ ବର୍ଷ ଧରି ଠିକ୍ ଭାବରେ ସମ୍ପର୍କ ରଖି ନଥିଲା, ସେମାନଙ୍କ ପାଇଁ ଯତ୍ନକରି ସଜାଡ଼ି କରି ସେ ଢିଲା ଜୁଡ଼ା ବାନ୍ଧିଲା । ଏମିତି ହିଁ କାନ୍ଧରେ ଢଳୁଥିବା ତରତର ହେଇ ଢିଲା ଜୁଡ଼ା, ଯାହାକୁ ସେ ପ୍ରଥମେ ତିଆରି କରୁଥିଲା ଏବଂ ଯାହାକୁ ରଞ୍ଜନ ହସ ଖେଳରେ ଥରକୁ-ତର ଖୋଲିକରି ତାକୁ କାନ୍ଧରେ ବିଛେଇ ଦେଉଥିଲେ । 'ତମେ ସବୁବେଳେ ଗୋଲାପୀ ସାଢ଼ୀ ପିନ୍ଧି ପନ୍ନା', ସେ କହୁଥିଲା 'ଗୋଲାପୀ ସାଢ଼ିରେ ତମେ ମତେ ଫୁଟିଥିବା ପଦ୍ମଫୁଲ ପରି ଲାଗ ।

ହାଲୁକା ଗୋଲାପୀ ରଙ୍ଗର ଚନ୍ଦେରୀ ସାଢ଼ୀ ପିନ୍ଧିକରି ସେ ଦକ୍ଷିଣ କୁଙ୍କୁମର

ବଡ଼ ଟିକା ଲଗେଇଲା । ତା'ର ଅଙ୍ଗୁଳୀରେ ଏବେ ମଧ୍ୟ ରଞ୍ଜନ ଦେଇଥିବା ମାଣିକର ମୁଦି ଚମକୁ ଥିଲା ।

ଆଇନାରେ ସେ ନିଜର ପ୍ରତିବିମ୍ବ ଦେଖିଲା ଏବଂ ସ୍ୱୟଂ ହି ଲଜ୍ଜା ପାଇଲା । ଛିଃ ଛିଃ, ବୃଦ୍ଧାବସ୍ଥାରେ କ'ଣ ଏମିତି ଶୃଙ୍ଗାର ତାକୁ ଶୋଭାଦିଏ । ଯଦି ଟୋକି କଲୀ ଆସିଗଲା ତ ବିପଦରେ ପକେଇବ । କିନ୍ତୁ କଲୀ ଥରେ ଯିବା ପରେ କ'ଣ କେବେ ସନ୍ଧ୍ୟାହେବା ଆଗରୁ ଫେରି ପାରିବ !

ସାମାନ୍ୟ ଚାଲିବା ଶବ୍ଦ ହେଲା ମାତ୍ରେ ପନ୍ନା ଚମକି ଯାଉଥିଲା ତ କଲିଜା ଖରାପ ଭାବରେ ଧଡ଼ ଧଡ଼ କରିବାକୁ ଆରମ୍ଭ ହେଉଥିବା କଲିଜାକୁ କସିକରି ଚାପି ରଖୁଥିଲା । ଦୂର-ଦୂର ପର୍ଯ୍ୟନ୍ତ ପାଦଚଲା ରାସ୍ତାର ଯେତେବେଳେ ସେ କେଉଁଠି ହେଲେ ଘୋଡ଼ା ବା ବାଡ଼ିକୁ ଦେଖି ପାରିଲା ନାହିଁ, ତେଣୁ ନିରାଶ ହୋଇ କରି ଭିତରକୁ ଚାଲିଗଲା ।

ରଞ୍ଜନ କ'ଣ ଏବେ ଆସିବ ? ଦୁଇ ଘଣ୍ଟା କଟି ଯାଇଥିଲା । ଏହା ଭିତରେ ଥରେ ଫୋନର ଘଣ୍ଟି ବାଜିଲା, ଯେତେବେଳେ ତା'ର କଲିଜା ଖରାପ ଭାବରେ ଧଡ଼ ଧଡ଼ କରି ଉଠିଲା । ନିଶ୍ଚୟ ରଞ୍ଜନ କହିବ, ସେ ଆଜି ଆସି ପାରିବ ନାହିଁ କିନ୍ତୁ ଫୋନ ରୋଜୀର ଥିଲା । ତା'ର ଗୋଟିଏ ରୋଗିଣୀର ଅବସ୍ଥା ବହୁତ ଖରାପ ହୋଇ ଯାଇଥିଲା । ସେ ଏହି ଶନିବାର ପନ୍ନା ସହିତ ଛୁଟି କଟେଇବାକୁ ଆସି ପାରିବ ନାହିଁ ।

ଫୋନ ଶୁଣିକରି ପନ୍ନା କବାଟ ବନ୍ଦ କରିବାକୁ ଯାଉଥିଲା ଦେଖିଲା ଉଚ୍ଚ ପିଙ୍ଗଳ ବର୍ଣ୍ଣ ଘୋଡ଼ାରୁ ଓହ୍ଲାଉ ଥିବା ଉଚ୍ଚ ଆକୃତିକୁ ଦେଖିକରି ସ୍ତମ୍ଭିତ ହେଇଗଲା ।

ସେହି ବ୍ୟକ୍ତି ବଟୁଆରୁ ବାହାର କରି ଘୋଡ଼ାର ସଇସକୁ ଭଡ଼ା ଦେଲା ଏବଂ ତାରି ଆଡ଼କୁ ବୁଲିକରି ଏମିତି ହସିଲା, ଯେମିତିକି ପ୍ରଥମ ଥର ତାକୁ ଦେଖିକରି ମୁରୁକି ମୁରୁକି ହସିଥିଲା ।

"ପନ୍ନା, କ'ଣ ତମେ ଇଜିପ୍ସିଏନ ମମୀ ପରି କୌଣସି ଶବାଧାରରେ ବନ୍ଦ ରହିଥିଲ ? ମତେ ଦେଖ, ଏକଦମ ବୁଢ଼ା ହୋଇ ଯାଇଛି ନା ?

ବୁଢ଼ା ହେଲା ପରେ ମଧ୍ୟ ଏହି ବ୍ୟକ୍ତି ଏବେ ମଧ୍ୟ ସୁନ୍ଦରୀ ପ୍ରୌଢ଼ାର ହୃତପିଣ୍ଡକୁ ଘଡ଼ିର ପେଣ୍ଡୁଲମ ପରି ହଲଉ ଥିଲା, ଏକଥା କ'ଣ ସ୍ୱୟଂ ତାଠାରୁ ଲୁଚିଥିଲା ? ପନ୍ନାର ଆରକ୍ତ କପାଳ କେତେଥର ସେହି ବିଳାସୀ ଅଧରର ନିର୍ମମ ପ୍ରହାରରେ ଆହୁରି ମଧ୍ୟ ଆରକ୍ତ ହୋଇ ଉଠିଥିଲା, ଏହା କ'ଣ କେବେ ସେ ଭୁଲିପାରିବ ? ହୁଏତ ପନ୍ନାର ଥରୁଥିବା ଓଠ ଏବଂ ଭିଜା ପଲକକୁ ସେ କଣେଇ କରି ଚାହିଁ ଦେଖି ନେଇଥିଲେ । ଓହୋ, ତେବେ ଏବେ ମଧ୍ୟ ସେ ତାକୁ କ୍ଷମା କରି ପାରି ନାହିଁ ।

"ବାଃ, ସୁନ୍ଦର ବଙ୍ଗଳା ତମର ! କିନ୍ତୁ ଏଠାକୁ କେମିତି ଆସିଗଲ ପନ୍ନା ?" ଦିନ-ରାତି ବିରୋଧୀ ପକ୍ଷରେ ଯୁଦ୍ଧ କଲାବାଲା ରାଜନୀତିର କୁଟିଳ ଖେଳାଳୀ ମର୍ମ-ସ୍ଥଳରେ ଚୋଟ ମାରିବାକୁ ଖୁବ୍ ଜାଣିଥିଲା ।

ପନ୍ନା ନିଜର ନୀଳ ଆଖି ତା'ର ଚେହେରା ଉପରେ ଢାଳିଦେଲା । ତାହାର ମୂକ ଦୃଷ୍ଟିର ଗାଳିରେ ରଞ୍ଜନ ଛଟପଟ ହେଇଗଲା ।

ଏବେ ମଧ୍ୟ କେତେ ସୁନ୍ଦର ଥିଲା ସେ । ଏହି ସୌନ୍ଦର୍ଯ୍ୟ-ପାତ୍ରର ମାଦକ ମଦିରା ସେ କେବେ ଚାହିଁଲା ପରେ ହିଁ ତୃଷିତ ଅଧରରେ ଲଗେଇ ପାରିଥାନ୍ତା । ଏହି ମରାଳ ଗ୍ରୀବା, ନୀଳ ଆଖି, ସୁନେଲି ବାଳ, ଶତଦଳ କମଳର ପାଖୁଡ଼ା ପରି ଚମ୍ପକ ଆଙ୍ଗୁଳିଗୁଡ଼ିକ-ସବୁ କେବେ ତା'ର ଥିଲା । ଆଜି ଏତେ ପାଖରେ ଥାଇ ମଧ୍ୟ ସେ ଧରିବାରୁ ଏତେ ଦୂରକୁ କେମିତି ଚାଲି ଯାଇଥିଲା ।

"ପନ୍ନା" ବିଧୁତରଞ୍ଜନ ଉଠିକରି ତା ପାଖରେ ବସିଗଲା । ବହୁତ ଗେଲରେ ସେ ତା'ର ଆଣ୍ଠୁ ଉପରେ ରଖିଥିବା ଧଳା ମଣିବନ୍ଧକୁ ଉଠେଇ ଗାଲରେ ଲଗେଇ କରି ଆଖି ବନ୍ଦ କରିଦେଲା, "ପନ୍ନା, ମୁଁ ଜାଣିଛି, ତମେ ଆଜି ମଧ୍ୟ ମତେ କ୍ଷମା କରିପାରି ନାହଁ । କିନ୍ତୁ ମୋ ଠାରୁ ଦୂରକୁ ପଳେଇ କ'ଣ ତୁମେ ବହୁତ ବଡ଼ ମୂର୍ଖତା କରି ନାହିଁ ? କ'ଣ ତୁମେ ମୋର ବିବଶତା, ମୋର ବଂଶ-ପରିବାର ପ୍ରତି ମୋର କର୍ତ୍ତବ୍ୟ, ଆଉ ସବୁଠାରୁ ବଡ଼ କଥା ମୋର ମା'କୁ ଜାଣି ନଥିଲ ? କ'ଣ ତୁମେ ବଡ଼ ଅପା ପାଖରେ ରହିଥିଲେ, ତାହେଲେ ମୁଁ ତୁମ ପାଖକୁ ଆସି ପାରି ନଥାନ୍ତି ? କ'ଣ ଆମେ ସେହି ସ୍ୱତନ୍ତ୍ରତାରେ ନିର୍ବିଘ୍ନ ଭାବରେ ମିଳାମିଶା କରି ପାରି ନ ଥାନ୍ତେ ?"

ପନ୍ନା ଚୁପଚାପ ମୁଣ୍ଡ ନୁଏଁଇ ବସିଥିଲା । ବିଧୁତରଞ୍ଜନର ଏକ ହାତ ବର୍ତ୍ତମାନ ତା'ର କାନ୍ଧ ଉପରେ ଥିଲା, ଅନ୍ୟ ହାତରେ ସେ ପନ୍ନାର ମଣିବନ୍ଧ ଧରି, ଥରକୁ-ଥର ଗାଲରେ ଲଗଉ ଥିଲେ, କେତେବେଳେ କସିକରି ଛାତିରେ ଲଗଉ ଥିଲେ ।

"ମୁଁ କେତେଥର ବଡ଼ ପାଖକୁ ଯାଇଥିଲି, ସେ ତମର ନାମ ମଧ୍ୟ ଶୁଣିବାକୁ ଚାହୁଁ ନଥିଲା । ଥରେ ସେ ମୋର ଏମିତି ଅପମାନ କଲା ଯେ ଯଦି ତମର ଭଉଣୀ ନ ହେଇଥାନ୍ତା, ତାହେଲେ ମୁଁ ତାକୁ ଚେର ସହିତ ଉପାଡ଼ି କରି ବଙ୍ଗଳାର ସୀମାରେଖାର ବାହାରକୁ ଫୋପାଡ଼ି ଦେଇଥାନ୍ତି ।" ବର୍ତ୍ତମାନ ପର୍ଯ୍ୟନ୍ତ ପ୍ରସ୍ତର ମୂର୍ତ୍ତି ପରି ବସିଥିବା ପନ୍ନା ବର୍ଷ ବର୍ଷ ଧରି ଅଲଗା ହେଇଥିବା ପ୍ରଣୟୀର କାନ୍ଧ ଉପରେ ତଳି ପଡ଼ିଥିଲା । ନିଜର ମାନ-ଅପମାନ, ଗାଳି, ପୀଡ଼ା ସବୁକିଛି ଏକ ସ୍ପର୍ଶରେ ପାଇ ସେ ଯେମିତି ଭୁଲି ଯାଇଥିଲା ।

"ପନ୍ନା" ବିଧୁତରଞ୍ଜନ ତାକୁ କଠୋର ବାହୁବନ୍ଧନରେ କୁଣ୍ଢେଇ ଧରିଲେ, "ମୋ ଆଡ଼କୁ ଦେଖ ପନ୍ନା, କ'ଣ ଏବେ ମଧ୍ୟ ତମେ ମତେ କ୍ଷମା କରି ନାହିଁ ?"

ପନ୍ନା ପ୍ରଥମ ଥର ଆଖି ଉଠେଇଲା । କେଉଁଠି ବୁଢ଼ା ହେଇଛି ରଞ୍ଜନ ? କ'ଣ ସେହି ଲାଲ ପ୍ରେମବନ୍ଧନ ଆଖିରେ ଏବେ ମଧ୍ୟ ବିଦୂଷୀ ମହିଳାର ଫୁଆରା ଖରାପ ପଡ଼ିଥିଲା ? କାନ ଓ ଆଖିର ମଧ୍ୟବର୍ତ୍ତୀ ସ୍ଥାନର ଆଖପାଖରେ ବାଳର ପେଣ୍ଟା ପେଣ୍ଟା ଧଳା ହେଇ ଯାଇଥିଲା ଆଉ ବଙ୍କା ଖଦଡ଼ର ଟୋପି ଲଲାଟ ଉପରେ ଝୁଙ୍କିକରି ପ୍ରଶସ୍ତ ମୁଣ୍ଡର ପରିଧି ଟିକିଏ ସୀମିତ କରି ଦେଇଥିଲା, ବେଶ ଏତିକିହିଁ ତ ବଦଳି ଥିଲା ସେ ।

"ମୋର ଝିଅ କେତେ ବଡ଼ ହେଇ ଯାଇଛି ପନ୍ନା ? ବାଣୀ ସେନ କହୁଥିଲା ଯେ ବହୁତ ସୁନ୍ଦର ହେଇଛି କଲୀ," ସେ ବହୁତ ଗେଲରେ ପନ୍ନାର କାନ ପାଖରେ ଓଠ ଲଗେଇ କରି ପଚାରିଲା । ପ୍ରଶ୍ନର ସହିତ ଯେମିତି ଦେଖି ନ ଥିବା ଝିଅ ପ୍ରତି ତାହାର ସମସ୍ତ ମମତା, ମଦର ଫେଣ ପରି ଝଲକି ଉଠିଲା ।

"ମୁଁ ସେହି ସନ୍ତାନକୁ ନିର୍ମମ ଭାବରେ ତ୍ୟାଗ କରି ଦେଇଥିଲି ଏବଂ ତାହାର ଦଣ୍ଡ ମଧ୍ୟ ମୁଁ ପାଇ ସାରିଛି," ବିଧୁତରଞ୍ଜନର ଗଳା କାନ୍ଦ କାନ୍ଦ ହେଇଗଲା । କ୍ଷଣକ ପାଇଁ ସେ କଣ୍ଠର ଗହ୍ୱରକୁ ଢୋକିବାରେ ଲାଗିଲା, ପୁଣି କହିବାକୁ ଲାଗିଲା, "ଦୁହିଁଙ୍କୁ ସେ ସାତ ମାସ ଭିତରେ ଛଡ଼ାଇ ନେଲା, ମୁନିଆ ପ୍ରଥମ ପ୍ରସବରେ ଯାଇଥିଲା, ଚୁନିଆ ଖାଇବା ତିଆରି କରୁଥିଲା, ଷ୍ଟୋଭ ଫାଟିଗଲା, ଝାଉଁଳିବା ଦେହକୁ ନା ମୁଁ ଚିହ୍ନି ପାରିଲି, ନା ତା'ର ମା ।"

ପନ୍ନା ତା ପାଖରେ ମୂକ ହେଇ ବସିଥିଲା ।

"ଯେତେବେଳେ ବାଣୀ ସେନ କହିଲା ଯେ ତୁମେ କଲୀକୁ ନେଇ କୁଆଡ଼େ ଚାଲିଯାଇଛ ଆଉ ନିଜର କୌଣସି ଠିକଣା ମଧ୍ୟ ଦେଇଯାଇ ନାହିଁ, ତେବେ ମଧ୍ୟ ତମକୁ ଖୋଜିବାକୁ ଲାଗିଥିଲି । ବାଣୀଠାରୁ ହିଁ ଠିକଣା ନେଇ ସେହି ମେମକୁ ଦୁଇ-ତିନି ଖଣ୍ଡ ଚିଠି ଲେଖିଲି, ଯିଏ ଆଲମୋଡ଼ାର କୌଣସି କୁଷ୍ଠାଶ୍ରମରେ ଥିଲା ଆଉ ଯାହା ସହିତ ତମେ ହଳଦିଆ କୋଠା ଛାଡ଼ିକରି ଯାଇଥିଲ । କିନ୍ତୁ ଠିକଣା ହୁଏତ ଠିକ ନ ଥିଲା, କୌଣସି ଚିଠିର ଉତ୍ତର ଆସିଲା ନାହିଁ । ମୁଁ ଚାହୁଁଥିଲି ତମକୁ ପ୍ରତ୍ୟେକ ମାସରେ କିଛି ଟଙ୍କା ପଠେଇ ଦେବି କିନ୍ତୁ ଚାରା କ'ଣ ଥିଲା । ପନ୍ନା, କ'ଣ କଲୀ ଏବେ ମଧ୍ୟ ବୋର୍ଡ଼ିଂରେ ରହୁଛି ?"

"ନା କେଉଁଠିକୁ ବୁଲିବାକୁ ଯାଇଛି, ଆସୁଥିବ," ନୀରସ ଉତ୍ତରରେ ମଧ୍ୟ ବିଧୁତରଞ୍ଜନ ହାର ମାନି ନ ଥିଲେ ।

"କ'ଣ ସେ ନିଜ ମା'ଠାରୁ ସୁନ୍ଦର ହେଇଛି ନା ପିତା ପରି ତେଜସ୍ୱୀ ?" ବିଧୁତରଞ୍ଜନ ସାମାନ୍ୟ ରସିକତା କଲେ ଫୁଟକି ମାରିକରି, ଅସ୍ୱାଭାବିକ ରୂପରେ ରାଗି ରୁଷିଥିବା ପ୍ରେୟସୀକୁ କୁତୁକୁତୁ କରିବାର ଚେଷ୍ଟା କଲେ ।

"ଏହି ତ ଦୁଃଖ ରଞ୍ଜନ," ଗୋଟିଏ ଲମ୍ବା ନିଶ୍ୱାସ ନେଇ ପନ୍ନା କହିଲା,

"ନା ସେ ତମପରି ହେଇଛି ନା ମୋ ପରି, ଚାଲ ଭିତରର ବଖରାକୁ ଯିବା । ଜଣାନାହିଁ କଲୀ କେତେବେଳେ ଝଡ଼ପରି ଆସିକରି ଆମ ଦୁଇଜଣକୁ ଉଡ଼େଇ କରି କେଉଁ ଦୂରରେ କଚାଡ଼ି ଦେବ । ଏତେ ବର୍ଷ ପର୍ଯ୍ୟନ୍ତ ଯେଉଁ ତୋଫାନ ମୋର ଶରୀର ମନକୁ ବିକ୍ଷିପ୍ତ କରୁଛି, ତାକୁ ଆଜି ତମକୁ ମଧ୍ୟ ଦେଖେଇ ଦେବି !"

ନିଜର ବେଡ୍‌ରୁମ୍‌କୁ ବିଧୁତରଞ୍ଜନକୁ ନେଇ ଯାଇ, ପନ୍ନା ହାତଧରି ତାକୁ ପଲଙ୍କ ଉପରେ ବସେଇ ଦେଲା ।

"ଆଜି କେତେବର୍ଷ ପରେ ମୋର ପଲଙ୍କ ଉପରେ ବସିଛ । ଠିକ ଭାବରେ ବସ ନା, ଆଚ୍ଛା ହାତ, ପାଦ ଦୁଇଟିକୁ କ'ଣ ଏମିତି ଲଗେଇ ବସି ରହିବ । ନିଶ୍ଚିନ୍ତ ହେଇକରି ବସ, ତମର ଯିବାପରେ କେହି ଏହା ଉପରେ ବସିନାହିଁ ରଞ୍ଜନ, ସେଥିପାଇଁ କହୁଛି ନିଶ୍ଚିନ୍ତ ହେଇକରି ବସ । ମୋର ପେଶା ତମ ସହିତ ହିଁ ମତେ ଛାଡ଼ିକରି ଚାଲି ଯାଇଥିଲା ।"

ନଇଁକରି ପନ୍ନା ସେହିପରି ତା'ର ଜୋତା ଖୋଲିଲା, କାନିରେ ଦୁଇଟି ଯାକ ଲମ୍ବା ପାଦ ପୋଛିଲା, ଆଉ ତକିଆ ଉଠେଇ କରି ପିଠି ପଛରେ ଲଗେଇ ଦେଲା ।

"କିଛି ଭୁଲି ନାହିଁ ଦେଖିଲ ?" ଆଉ ଥରେ ସେ ଗର୍ବକରି ଚତୁରୀ ବାରବଧୂ ହେଇ ଯାଇଥିଲା ।

"ପନ୍ନା" ମତ୍ତପ୍ରଣୟୀ ତା'ର ହାତ ଧରିକରି ନିଜ ପାଖକୁ ଟାଣିବାକୁ ଚାହିଁଲା କିନ୍ତୁ ସେ ପରିଚିତ କଟାକ୍ଷରେ ସେ ବିନ୍ଧିଥିବା ପାଦଗୁଡ଼ିକ ପାଖରେ ବସିଗଲା ।

"ବର୍ତ୍ତମାନ ନୁହଁ, ପ୍ରଥମେ ତମକୁ ମୋର ପୁରା କାହାଣୀ ଶୁଣିବାକୁ ପଡ଼ିବ ।"

ପୁଣି ପନ୍ନା ସବୁକିଛି କହିଗଲା । ସେହି ଅରଣ୍ୟସ୍ଥିତ ଅସ୍ଥାୟୀ ଦେବଦାରୁରେ କଟେଇଥିବା ଲମ୍ବା ଏଗାର ବର୍ଷ, ଉଦଣ୍ଡ କଲୀର ଅଭିଶପ୍ତ ଜୀବନର ପୁରା ଇତିହାସ, ଅସଦୁଲ୍ଲା, ପାର୍ବତୀ, ରୋଜୀ, ଆଲମୋଡ଼ା ପ୍ରବାସ, ଝଡ଼ ରାତିରେ ତା'ର କୋଳରେ ଛାଡ଼ିଦେଇ ଯିବା କଲୀ ବଡ଼ ଅପାର ସ୍ୱାର୍ଥପରତା-ଗୋଟାକ ପରେ ଗୋଟିଏ କଥା ସେ କହିବାରେ ଲାଗିଲା ଆଉ ସ୍ତବ୍ଧ ବିଧୁତରଞ୍ଜନ ଶୁଣୁଥିଲା ।

"ଆଜି ସେହି ଅକୃତଜ୍ଞ ମତେ ଦୁଧର ମାଛି ପରି ବାହାର କରି ଦୂରକୁ ପକେଇ ଦେଉଛି । ଥରକୁ ଥର ଅବିଶ୍ୱାସରେ ପଚାରୁଥାଏ, ମୋର ପିତା କିଏ ? ଥରେ ମନକୁ ଆସିଥିଲା, ସଫା-ସଫା କହିଦେବି, ଟୋକି ନିଜକୁ ପରୀ ଭାବି ଗର୍ବ କରୁଛୁ, ତୋର ପିତା ହେଉଛି କୁଷ୍ଠରୋଗୀ ଆଉ ମା' ମଧ୍ୟ କୁଷ୍ଠରୋଗୀ, ଜଣାନାହିଁ କେଉଁ ଗଳିରେ ଭିକ ମାଗି ବୁଲୁଥିବେ । ଜଣାନାହିଁ, ଏଠାରେ ନୈନା ଦେବୀଙ୍କ ମନ୍ଦିର ବାହାରେ ବସିଥିବା କୁଷ୍ଠରୋଗୀ ମାନଙ୍କ ମଧ୍ୟରେ ହିଁ ତତେ ତୋର ପିତା ଅଙ୍ଗୁଳିଗୁଡ଼ିକର ଚକ୍‌ଚକ୍ କରୁଥିବା ମିଳିଯାଏ, ଅବା ନନ୍ଦାଦେବୀର ମେଲାରେ କୁଷ୍ଠରୋଗୀମାନଙ୍କ ଭିଡ଼ ଭିତରେ ତତେ ତୋର ଅନ୍ଧୁଣୀ ମା ସହିତ ଦେଖାହେଇ

ଯାଇପାରେ । ଦିନେ ରୋଜୀର ବକ୍ସ ସଫା କରି, ଲମ୍ପଟ ପଳେଇଗଲା ଆଉ ଫେରିଲା ନାହିଁ । କେମିତି ମୂର୍ଖତା କରି ବସିଛି ମୁଁ, ଏମିତି ମାତା ପିତାର ଏହି ଦୁର୍ଦ୍ଦମନୀୟ ସନ୍ତାନକୁ ମୁଁ କଣ କେବେ ସୁଧାରି ପାରିବି ।

"ଚିନ୍ତା କର ନାହିଁ ମା, ତମକୁ ସୁଧାରିବାକୁ ହେବ ନାହିଁ", ହାତରେ ବଟୁଆ ଝୁଲେଇ କରି କୃଷ୍ଣକଳୀ ଦ୍ୱାରରେ ଛିଡ଼ା ହେଇଥିଲା । ଅଧା ଗଡୁଥିବା ବିଧୁତରଞ୍ଜନ ଉଠିକରି ବସିଲା । ପନ୍ନାର ଚେହେରା ଫିକା ପଡ଼ିଗଲା । ଏଠାକୁ କେଉଁଠୁ ଆସିଗଲା । ଏତେ ଶୀଘ୍ର ତ ସେ କେବେ ଫେରେ ନାହିଁ ।

"ବାଃ, ଠିକ କଲି ପିକ୍‌ଚର ନ ଦେଖିହିଁ ଫେରି ଆସିଲି, ନହେଲେ ଆଜି ନିଜ ଘରରେ ହିଁ-ଚାଲିଥିବା ଏମିତି 'ଇଣ୍ଟରେଷ୍ଟିଂ ମେଟିନୀ'-ମିସ୍ କରି ଯାଇଥାନ୍ତି ।"

ସେ ହସି କରି, ହାତର ବଟୁଆ ଟେବୁଲ ଉପରେ ଧମ୍‌କରି କଚାଡ଼ି ଦେଇ ଚଉକିରେ ବସିପଡ଼ିଲା ।

କଲୀକୁ ସହସା ଦ୍ୱାରରେ ଆବିର୍ଭୂତା ଦେଖିକରି, ଦୁହେଁ ସମ୍ଭାଳି କରି ବସି ଯାଇଥିଲେ । କିନ୍ତୁ ରଞ୍ଜନ ହଡ଼ବଡ଼େଇ ଯାଇ ପନ୍ନାର ମଣିବନ୍ଧ ଛାଡ଼ିବାକୁ ଭୁଲି ଯାଇଥିଲା । ତାହାର ମଜବୁତ ଧରିବାରେ ପନ୍ନାର ମଣିବନ୍ଧ ଥରି ଉଠିଲା । ଆଉ ସେହି ମୁଖରା ଝିଅର ଦୁଃସାହସ ଦେଖିକରି ରଞ୍ଜନ ଆହୁରି ପାଗଳ ପରି ପ୍ରଳାପ କରିବାକୁ ଲାଗିଲେ ।

"କ'ଣ ଝିଅ, କ'ଣ ନିଜ ମା'କୁ ତମେ ସବୁବେଳେ ଏମିତି ହିଁ କୁହ ?"

"ମୋର ମା ? ବଙ୍ଗଳାରେ ଗୋଟିଏ ଲୋକୋକ୍ତି ଅଛି – ଶୁଣିନାହାନ୍ତି କ'ଣ ଆପଣ – 'ସାତ କାଣ୍ଡ ରାମାୟଣ ପଢ଼ି, ସୀତା କାର ବାପ' । କେହି ଜଣେ ସାତ କାଣ୍ଡ ରାମାୟଣ ପଢ଼ିକରି ପଚାରି ଥିଲା ଯେ ସୀତା କାହାର ବାପ, ସେହି ଅବସ୍ଥା ଆପଣଙ୍କର ମଧ୍ୟ ହେଇଛି । ଏତେ ବଢ଼ିଆ ରାମାୟଣ କୁହାଗଲା ଆଉ ଆପଣ ପଚାରୁଛନ୍ତି କ'ଣ ମୁଁ ମା' ସହିତ ଏମିତି ହିଁ କଥା କହେ । ମା' ମେରୀ ଅଛନ୍ତି କେଉଁଠି ମଉସା ।" ପିଲାଦିନରେ ବାଣୀ ସେନ ଠାରୁ ଶିଖିଥିବା ବଙ୍ଗଳା କଲୀ ଏବେ ମଧ୍ୟ ଭୁଲି ନଥିଲା । ପୁଣି କରେଣ୍ଟଲି ଦୁଇ ତିନୋଟି ବେଙ୍ଗଲୀ ସଖୀ ଜୁଟି ଯାଇଥିଲେ । ଏଇଥି ପାଇଁ ତା'ର ବଙ୍ଗଳାରେ ଏବେ ମଧ୍ୟ କଳଙ୍କି ଲାଗିପାରି ନଥିଲା ।

"ବର୍ତ୍ତମାନ ଆପଣମାନେ ଏତେ ବର୍ଷପରେ ମିଳିତ ହେଇଛନ୍ତି । ମୁଁ କବାବରେ ହାଡ ହେବି ନାହିଁ, ଚାଲିଯାଉଛି ।" ସେ ପୁଣି ସେହି ବେହିଆ ପରି ହସି ଉଠିଗଲା । "ଏବେ ଡେରି କରିବି ନାହିଁ, ଅଳ୍ପ-ବହୁତ କପଡ଼ା ରଖୁଛି ମା, ଅନୁସନ୍ଧାନ କରିବ କି ତମର ବଡ଼ ଅପାପରି ?

ପନ୍ନା ଆହତ ଦୃଷ୍ଟିରେ ରଞ୍ଜନକୁ ଦେଖିଲା, ଯେମିତି କହୁଛି, ଦେଖୁଛ ତ ?

ଇଏ ମତେ ପ୍ରତ୍ୟେକ ଦିନ ଏମିତି ଜଳାଏ । "ରଞ୍ଜନର ସେହି ଉଦଣ୍ଡ ଝିଅର ଅଭଦ୍ରତା ଅସହ୍ୟ ହେଇ ଉଠିଲା । ସେ ସ୍ୱୟଂ ନିଜର ପିଲାମାନଙ୍କୁ ସବୁବେଳେ କେତେକ ଅନୁଶାସନରେ ବାନ୍ଧି ଚାଲି ଆସୁଥିଲା, ତା'ର ଗୋଟିଏ ଗର୍ଜନରେ ଦାଢ଼ି-ନିଶ ବାହାରି ଆସିଲା ପରେ ମଧ୍ୟ ଯୁବକ ପୁଅମାନେ ସହିକରି ରହି ଯାଉଥିଲେ ।

"ଯିବାର ଅଛି ତ ଚାଲି ଯାଉ ନାହିଁ କାହିଁକି ।" ତା'ର ଚେହେରା ରାଗରେ ତମତମ ହୋଇଉଠିଲା । "କ'ଣ ଜନ୍ମରୁ ଆଜି ପର୍ଯ୍ୟନ୍ତ ଜଳେଇ ଜଳେଇ କରି ତାକୁ ତମେ ଅଧମରା କରି ସାରିନାହଁ ?"

"ବାଃ", କଲୀ ବଟୁଆ ଉଠେଇ କରି କାନ୍ଧରେ ଝୁଲେଇ ଦେଲା, "ମୋର ମନେ ହେଉଛି ଆପଣ ମନ୍ତ୍ରୀ ଠାରୁ ଅଧିକ, କୌଣସି ବମ୍ବେର ଫିଲ୍ମରେ ଫିଲ୍ମୀ ପିତାର ରୂପରେ ଚମକିବେ । ଏମିତିରେ ମୁଁ ଆପଣଙ୍କ ଠାରୁ ବହୁତ ଛୋଟ, ଆଉ ସତ କହିବାକୁ ଗଲେ ଦୁଇଘଣ୍ଟା ପୂର୍ବ ପର୍ଯ୍ୟନ୍ତ ଆପଣଙ୍କ ଝିଅ ଥିଲି, କିନ୍ତୁ କାହିଁକି ଆପଣ ଦୁଇଜଣ କୌଣସି ଫିଲ୍ମୀ ମାତା-ପିତାର ଭୂମିକା କରିବାକୁ ବମ୍ବେ ଚାଲି ଯାଇଥାନ୍ତେ ?"

"ମୁଁ ସ୍ୱୟଂ ସେହି ଲାଇନ୍‌ରେ ଯିବାକୁ ଚିନ୍ତା କରୁଛି । କିନ୍ତୁ ଅଭାଗୀ ମା-ବାପର ରୋଗ ଜଣା ନାହିଁ କେବେ ତଣ୍ଟି ଚିପି ଦେବ । ଆଚ୍ଛା, ସୋ ଲଙ୍ଗ ମା, ଥେଙ୍କ୍‌ସ ଫର ଏଭରିଥିଙ୍ଗ, ଏବଂ "ମନ୍ତ୍ରୀବର", ବେତର ନମନୀୟ ଧନୁପରି ମୋଡ଼ି ହେଉଥିବା ବାରମ୍ବାର ତାର ନିଜର ପତଳା ଅଙ୍ଗକୁ ଦୋହଲାଇ ଦୋହଲାଇ କହିଲା, "ଥେଙ୍କ୍‌ସ ଫର ଗିଭିଙ୍ଗ ମି ଇୟୋର ସରନେମ୍, କୃଷ୍ଣକଲୀ ମଜୁମଦାର ହିଁ ଆପଣ ତିଆରି କରିଦେଇଛନ୍ତି, ତାହେଲେ କାହିଁକି ସ୍ୱଦେଶ ଆଡ଼କୁ ନ ଯିବି ।"

ସେ ତା'ର ସୁଡ଼ୌଲ ପୃଷ୍ଠଭାଗ ଲୟବଦ୍ଧ ତାଳର ସହିତ ବଖରାରୁ ବାହାର ହେଇଗଲା । ପନ୍ନା ଉଠିକରି ହୁଏତ ତା ପଛରେ ଯିବାକୁ ଚେଷ୍ଟା କଲା, କିନ୍ତୁ ରଞ୍ଜନ ତାକୁ ଟାଣିକରି ବସେଇ ଦେଲା । "ଯିବାକୁ ଦିଅ" ସେ ଫୁସ୍‌ଫୁସ୍ କରି କହିଲା, "ସ୍ୱୟଂ ହିଁ ବ୍ରଣକୁ ଫଟଉଛି, ତ ସେଥିରେ କଟାକଟି କରି କ'ଣ କରିବ । ଯେତେବେଳେ ସବୁ ଶୁଣି ସାରିଛି, ତାହେଲେ ବର୍ତ୍ତମାନ ତା'ର ତୁମ ସହିତ ରହିବା ଠିକ୍ ନୁହଁ । ତୁମେ ତା ପାଇଁ ଯେତେ କରିଛ ଆଉ କେହି କରି ପାରି ନଥାନ୍ତା । ତୁମେ ତୁମର କର୍ତ୍ତବ୍ୟ କରି ସାରିଛ, ବର୍ତ୍ତମାନ ମୋର ପାଳି ।"

ବିଧୁତ ରଞ୍ଜନ ପତ୍ନୀକୁ କିଛି ନ କହି ବାହାରି ଆସିଥିଲା । ସେ ଭୋକରେ ବସିଥିବ ଏହି ଧ୍ୟାନ ହେଲାମାତ୍ରେ ସେ ଉଠିବସିଲା । କ୍ଳାନ୍ତ ପନ୍ନା ତାଙ୍କ ଛାତିରେ ଲାଗି ଚୁପ୍‌ଚାପ ପଡ଼ିଥିଲା । ରଞ୍ଜନ କାଲି ଚାଲିଯିବ, ପୁଣି ସେ ସେହି ଏକାନ୍ତ ବଙ୍ଗଳାରେ ଏକେଲା ରହିଯିବ । ରଞ୍ଜନର ହାସ୍ୟାସ୍ପଦ ପ୍ରସ୍ତାବକୁ ସେ ସ୍ୱୀକାର କରି ପାରୁନଥିଲା । ଦାର୍ଜିଲିଂରେ ରଞ୍ଜନର ତିନି-ଚାରି ବଙ୍ଗଳା ଥିଲା । ସେ ଚାହୁଁଥିଲା

ପନ୍ନା ଯାଇ ସେଠାରେ ରହୁ । ମଝିରେ ମଝିରେ ସେ ଆସିକରି ତା ସହିତ ମିଳିତ ହେଉଥିବ । ରଞ୍ଜନର ଚତୁରୀ ମା' ଏବେ ନ ଥିଲେ, ତାଙ୍କର ମୋଟା ମୂର୍ଖ ପତ୍ନୀକୁ ପତିର ମନ୍ତ୍ରୀ ପଦ ଏବଂ ବୈଭବ ଆହୁରି ମୋଟୀ, ସ୍ଥୁଳ ଏବଂ ଅଳସୁଆ କରି ଦେଇଥିଲା । ଦୁଇ ପୁଅ ନିଜନିଜ ପତ୍ନୀମାନଙ୍କ ସହିତ ମଗ୍ନ ରହୁଥିଲେ ।

"ତୁମର କେବେ କୌଣସି ଚିନ୍ତା ରହିବ ନାହିଁ । ମୁଁ ଆସାମର ଗସ୍ତ ଆହୁରି ବଢ଼େଇ ଦେବି, ଚାହିଁଲେ ମାସରେ ଦୁଇ ଥର ମଧ୍ୟ ଆସି ଯାଇ ପାରିବି ।"

ପନ୍ନାର ନିର୍ବିକାର ଚେହେରାରେ ଉତ୍ସାହର ଗୋଟିଏ ମଧ୍ୟ ରେଖା ଦେଖାଗଲା ନାହିଁ । "ନା ରଞ୍ଜନ", ସେ କାନି ସମ୍ଭାଳିକରି ଉଠିବସିଲା, "ଯେମିତିକି ଫାଶି ଦେବା ପୂର୍ବରୁ ଅଭିଯୁକ୍ତର ପ୍ରତ୍ୟେକ ଇଚ୍ଛା ପୁରଣ କରି ଦିଆଯାଏ ଠିକ ତ ?" ସେ ହସିଲା, "ଏମିତିହିଁ ମୁଁ ନିଜର ମନ ଚାହିଁବା ବସ୍ତୁ କଲିଜାରେ ସଜେଇକରି ଲୁଚେଇ ରଖିଛି, ବର୍ତ୍ତମାନ ମୁଁ ଆଗକୁ ଯିବି ନାହିଁ । ଏଟକିଂସନର ପୁରା ପରିବାର ଏବେ ଭୀମ ତାଳ ଛାଡ଼ିକରି ଅରବିନ୍ଦ ଆଶ୍ରମକୁ ଯାଉଛନ୍ତି, ସେ ମତେ ସାଙ୍ଗରେ ନେଇଯିବା ପାଇଁ କଥା ଦେଇଛନ୍ତି ।"

"କିଏ ଏହି ଏଟକିଂସନ ?" ରାଗି କରି ପ୍ରଶ୍ନ ପଚାରି ରଞ୍ଜନ ସ୍ୱୟଂ ଲଜ୍ଜିତ ହେଲା ।

"ଯିଏ ହେଉ ନା ଏଟକିଂସନ ?" ତା'ର କ'ଣ ଅଧିକାର ଥିଲା ପନ୍ନାର ଗତିବିଧିରେ ବାଧାବିଘ୍ନ କରିବା ପାଇଁ, ଯାହାର ମରିବା-ବଞ୍ଚିବାର ସ୍ମରଣ ମଧ୍ୟ ଆଜି ପର୍ଯ୍ୟନ୍ତ କେବେ କରି ନଥିଲା ।

"ଏଟକିଂସନ ମୋର ଘନିଷ୍ଠ ବନ୍ଧୁ ଅଟେ, ଅରବିନ୍ଦ ଆଶ୍ରମର ଏକ ଜମିର ମୁରବୀ ଭୀମତାଳରେ ମଧ୍ୟ ଅଛି, ତାହାର ଦେଖ-ଭାଳର ଦାୟିତ୍ୱ ଆଶ୍ରମ ତାକୁ ନ୍ୟସ୍ତ କରିଥିଲା । ଦୁଇ ପୁତ୍ର ସନ୍ନ୍ୟାସ ଗ୍ରହଣ କଲେ, ଜଣେ ଅରବିନ୍ଦ ଆଶ୍ରମରେ ଅଛି, ମା'ଙ୍କ ପାଖରେ, ଅନ୍ୟଟି ଜଣାନାହିଁ ହିମାଳୟର କେଉଁ ଗହନ କନ୍ଦରକୁ ଯାଇକରି ହଜିଯାଇଛି । ତମେ ମୋର ଚିନ୍ତା କରନାହିଁ ରଞ୍ଜନ", ପ୍ରାଣାଧିକ ସୁନ୍ଦର ଚେହେରା ରଞ୍ଜନର ଗାଲ ପାଖରେ ଆସିକରି ଲାଖିଗଲା, "ନା ମୋର ତୁମ ଉପରେ କ୍ରୋଧ ହେଉଛି, ନା ପ୍ରତିଶୋଧର ଭାବନା । କେମିତି ଆଶ୍ଚର୍ଯ୍ୟ ସତରେ, କିଛି ଘଣ୍ଟା ପୂର୍ବରୁ ଯେତେବେଳେ ମୁଁ ତମକୁ ଫୋନ କଲି, ତମକୁ ପାଇଲା ପରେ କଞ୍ଚା ଚୋବେଇ ପାରିଥାନ୍ତି । କିନ୍ତୁ ଏବେ ଯେମିତି ସ୍ୱୟଂହିଁ ସବୁକିଛି ଭୁଲିକରି ପରିଷ୍କାର ହେଇଯାଇଛି ।

"କଲୀକୁ ମଧ୍ୟ କ'ଣ ଦୋଷ ଦେବି - ଯେତେବେଳେ ରକ୍ତ-ମାଂସରେ ତିଆରି ସହୋଦରା ବଡ଼ଅପା ହିଁ ମୋର ଶତ୍ରୁ ହେଇ ବସିଛି ତ ସେହି ପରର ବାଳିକା ପାଇଁ ଏହା ଚିନ୍ତା କରିବା ଯେ ସେ କେବେ ମୋର ହେଇ ପାରିବ, ବାସ୍ତବରେ ମୋର ପିଲାଳିଆ ଢଙ୍ଗ ଥିଲା । ତେବେ ମଧ୍ୟ ଥରେ ଆଶ୍ରମକୁ ଯିବା ପୂର୍ବରୁ ବଡ଼ଅପା

ସହିତ ମିଳିତ ହେବାର ବଡ଼ ଇଚ୍ଛା ହେଉଛି ।"

"ତମର ବଡ଼ ଅପା କ'ଣ ସେଠାରେ ଏବେ ବସିଛନ୍ତି ?" ରଞ୍ଜନ ସିଗାରର ପାଉଁଶ ଝାଡ଼ିକରି ମୁହଁରେ ଲଗେଇଲା । ଦୁଇ ହାତ ପିଠିରେ ପଛରେ ବାନ୍ଧିକରି ସେ ପୁଣି ଗଡ଼ି ପଡ଼ିଲା ।

"କାହିଁକି ? ହଲଦିଆ କୋଠା ?" ପନ୍ନା ପଚାରିଲା ।

"ହଲଦିଆ କୋଠାରେ ଏବେ ପ୍ଲାନିଂର ଅଫିସ ଅଛି । ବଡ଼ ଅପା ପାକିସ୍ଥାନ ଚାଲିଯାଇଛି, କିଏ ରହମତୁଲ୍ଲା ଅଛି, ତା ସହିତ ନିକାହ କରି ନେଲା । ମୈତ୍ରୀ କଲିକତାରେ ବିଉଟି କ୍ଲିନିକ୍ ଖୋଲିଛି । ବାଣୀ ସେନ ଦିଲ୍ଲୀରେ ଅଛି, ସେ ତ ମତେ କହିଲା ଏହି ସବୁ ।"

"ଦିଲ୍ଲୀରେ ? ସେଠାରେ କ'ଣ କରୁଛି ବାଣୀ ?"

"ମୋଟୀ ସ୍ତ୍ରୀମାନଙ୍କୁ ତନ୍ୱୀ ବନଉଛି । 'ସ୍ଲିମିଂ ସେଣ୍ଟର'ରେ ନିଜର ପତ୍ନୀକୁ ନେଇକରି ଗଲି, ସେଇ ଦପ୍ତରରେ ସଜବାଜ ହେଇ ବାଣୀ ସେନ ବସିଛି । ସେହିଭଳି ରକ୍ଷିତା ସ୍ତ୍ରୀ ଅଛି ବର୍ତ୍ତମାନ ମଧ୍ୟ-ଦୁର୍ବଳ-ପତଳା ଚାଲାକ ମତେ ଦେଖିଲା, ଚିହ୍ନିଲା, କିନ୍ତୁ ମହିଳା ଚେହେରାରେ ଚିହ୍ନିବାର ଏକ ରେଖା ମଧ୍ୟ ପ୍ରକାଶିତ ହେବାକୁ ଦେଲାନାହିଁ । ଏକାନ୍ତରେ ଦେଖା ହେଲା, ତେବେ ପ୍ରଥମ ପ୍ରଶ୍ନ ସେ ଏହା ପଚାରିଲା, "କ'ଣ ମୁଁ ତା'ର କଲୀକୁ ଦେଖିଛି ?"

"ମୁଁ ଯେତେବେଳେ କହିଲି ମୁଁ କଲୀ ସହିତ, ନା ତା ମା ସହିତ ଦେଖାକରି ନାହିଁ, ତେବେ ସେ ଉଦାସ ହେଇଗଲା । ସେ ମତେ କହିଲା ଯେ ଯେମିତି ନୂତନ ଆଇନ ହେଲା ମାତ୍ରେ ବଡ଼ ଅପାର ବ୍ୟବସାୟ ବନ୍ଦ ହେଇଗଲା । ବାଣୀ ଦିଲ୍ଲୀ ଚାଲିଗଲା ଏବଂ ସେଠାରେ ସେ କୌଣସି ଯୋଗୀ ସହିତ ଅଂଶୀଦାରର କ୍ଲିନିକ୍ ଖୋଲିଦେଲା । ସେ କହୁଥିଲା ଯେ ଯେତେ ପଇସା ସେ ସେହି କ୍ଲନିକ୍‌ରୁ ରୋଜଗାର କଲା ସେତିକି ସେଇ ଧନ୍ଦାରୁ କେବେ ରୋଜଗାର କରିପାରି ନଥିଲା । ବାଣୀ ମିଛ କହୁ ନ ଥିଲା ପନ୍ନା । ଓହୋ, କେମିତି-କେମିତି କାରଗୁଡ଼ିକର ଲମ୍ବା ଧାଡ଼ି ଛିଡ଼ା ହେଇଥିଲା । କେତେ ବିଦେଶୀ ଦୂତାବାସର ମେମ ଶିର୍ଷାସନ ଯୋଗାଭ୍ୟାସ କରୁଥିଲେ ।

"ଗେରୁଆ ସିଲ୍କ ବସ୍ତ୍ରରେ ବାଣୀର ରସିକ ସ୍ୱାମୀକୁ ଦେଖି ଆଶ୍ଚର୍ଯ୍ୟ ହେଇଗଲି । ହାତରେ ହୀରା ମୁଦିଗୁଡ଼ିକ, ଗଳାରେ ରୁଦ୍ରାକ୍ଷର ମାଳା ଆଉ ମୁଣ୍ଡର ବାଳତ, ମନେ ହେଉଥିଲା ଫିକ୍ସୋ ଲଗାଇ କରି ଛିଡ଼ା କରେଇଛି । 'ବାହା ବାଣୀ', ମୁଁ କହିଲି, 'ତୁମେ ଆଉ ତମର ଯୋଗୀରାଜ ଦୁହେଁ ଏହି କ୍ଲିନିକ୍‌ର ବିଜ୍ଞାପନର ଜୀବନ୍ତ-ପ୍ରତିମୂର୍ତ୍ତି । ଗାଜର, ମୂଳା, ଟମାଟୋର ରସ ପିଏଇ ଏବଂ ଶିର୍ଷାସନ କରେଇ ପ୍ରକୃତରେ ବାଣୀ ମୋର ପତ୍ନୀର ଓଜନ ପୁରା ଗୋଟିଏ ଷ୍ଟୋନ୍ କମେଇ ଦେଇଥିଲା । ବାଣୀ ସେନ

ସହିତ ଯଦି ସାକ୍ଷାତ କରିବାକୁ ଚାହଁ, ତେବେ ଅବଶ୍ୟ ଦେଖା କରେଇ ଦେଇ ପାରିବି...."

"ନା, ଏବେ ମୁଁ କାହାରି ସହିତ ଦେଖା କରିବି ନାହିଁ, ଯାହା ସହିତ ଦେଖା କରିବାକୁ ଚାହୁଁଥିଲି, ତା ସହିତ ଦେଖା ହେଇଗଲା ଆଉ ଯାହାଠାରୁ ଅଲଗା ହେବାକୁ ଚାହୁଁଥିଲି, ତାଠାରୁ ମଧ୍ୟ ଅଲଗା ହେଇଯାଇଛି । ଦେଖିଆସେ, କ'ଣ ପ୍ରକୃତରେ ଚାଲି ଯାଇଛି ?"

ତା'ର ପଛରେ ପଛରେ ଉଠିକରି ରଞ୍ଜନ ମଧ୍ୟ ଚାଲିଲା, ଦୁହେଁ ବଙ୍ଗଳାର କୋଣ କୋଣ ଅନୁସନ୍ଧାନ କଲେ, କଲୀ କେଉଁଠାରେ ନ ଥିଲା ।

"ହେଇପାରେ କେଉଁଠିକୁ ମିଶିବା-ମିଶେଇବା ପାଇଁ ଚାଲିଯାଇଛି, ମୁଣ୍ଡ ଥଣ୍ଡା ହେଇଗଲେ ନିଜେ ହିଁ ଚାଲି ଆସିବ ।"

"ନା ସେ ଆଉ କେବେ ଫେରିବ ନାହିଁ, ମୁଁ ତା'ର ସ୍ୱଭାବକୁ କ'ଣ ଚିହ୍ନି ନାହିଁ । ମୋର ଆଉ କାହାରି ପାଇଁ ଚିନ୍ତା ନାହିଁ, କେବଳ ଭୟ ହେଉଛି ରୋଜୀ ଜଣାନାହିଁ କ'ଣ ଭାବିବ । ତାକୁ ଆଜିହିଁ ଫୋନରେ ସବୁକଥା କହି ଦେବାକୁ ପଡ଼ିବ ।

"କାହିଁକି ତମ ମୁଣ୍ଡ ଖରାପ କରୁଛ ପନ୍ନା", ରଞ୍ଜନ ଟୋପି ବାହାର କରି ସେଇଟା ମୋଡ଼ା-ମୋଡ଼ି କରି ଭାଙ୍ଗ ଠିକ୍ କଲା, ତେରଛା କରି ପିନ୍ଧିଲା, ପୁଣି ତା'ର 'ବ୍ରିଫ୍‌କେସ୍' ଉଠେଇ କରି ଛିଡ଼ା ହେଇଗଲା ।

"ମୁଁ ବର୍ତ୍ତମାନ ଯାଏ, କାଲି ସକାଳେ ପୁଣି ଆସିବି ।" ପାଞ୍ଚ ଘଣ୍ଟାରେ ତା'ର ସମ୍ମୁଖରେ ଛିଡ଼ା ହେଇଥିବା ପନ୍ନାର ବୟସ ଯେମିତି ଦଶବର୍ଷ କମି ଯାଇଥିଲା ।

"କ'ଣ ମତେ ଛାଡ଼ିବାକୁ ଅଳ୍ପଦୂର ମଧ୍ୟ ଆସିବ ନାହିଁ, ପନ୍ନା ?" ପ୍ରଣୟୀର ଆତୁର ଆହ୍ୱାନକୁ କେମିତି ଉପେକ୍ଷା କରିଥାନ୍ତା ପନ୍ନା ।

କୋଠାର ଦ୍ୱାର ବନ୍ଦକରି ସେ ତାଲା ଲଗେଇଲା ଏବଂ ଆଉ ରଞ୍ଜନ ସହିତ ମନ୍ଥର ଗତିରେ ପାଦ ଚଲା ସରୁ ରାସ୍ତାରେ ଓହ୍ଲାଇବାକୁ ଲାଗିଲା ।

କାଲି ପର୍ଯ୍ୟନ୍ତ କିଏ ଭାବିଥିଲା ଯେ ପ୍ରତ୍ୟେକ ଦିନ ଏକ ଗତିରେ ହିଁ ବହୁଥିବା ତାଙ୍କ ଜୀବନରେ ଏମିତି ଉତ୍ଥାନ-ପତନ ହେଇଯିବ । କ'ଣ ସେ କେବେ ସ୍ୱପ୍ନରେ ମଧ୍ୟ ଭାବି ପାରିଥିଲା ଯେ ରଞ୍ଜନ ହଠାତ୍ ମିଳିଯିବ, ଆଉ କଳୀ ଏମିତି ହୃଦୟହୀନ ଭାବରେ ତାକୁ ଆଡ଼େଇ ଦେଇ ଏକେଲା ଛାଡ଼ିଯିବ ?

ନିଃଶବ୍ଦରେ ଦୁହେଁ କେତେ ଦୂର ପର୍ଯ୍ୟନ୍ତ ଓହ୍ଲେଇ ଆସିଲେ ।

"ବର୍ତ୍ତମାନ ତମେ ଫେରିଯାଅ ପନ୍ନା", ରଞ୍ଜନ ଅଟକି କରି ବୁଲିଗଲା, "ବହୁତ ଦୂର ଆସିଗଲ, ମୁଁ କାଲି ସକାଳ ନଅଟା ବେଳକୁ ପ୍ରାୟ ଆସିବି ସେତେବେଳେ ପୁଣି ଠିକ କରିବା, ମୁଁ ତୁମକୁ ଏଠାରେ ଏକା ଛାଡ଼ି ପାରିବି ନାହିଁ ।"

ପନ୍ନା ହସିକରି ଦୁଇ ହାତ ତା'ର କାନ୍ଧ ଉପରେ ରଖିଲା ଦେବଦାରୁର ଲମ୍ବାଗଛ ଦେହରେ ତା'ର ପିଠି ଆଉଯାଇ ଦେଲା, "ବର୍ତ୍ତମାନ ତମକୁ କୌଣସି ସିଦ୍ଧାନ୍ତ କରିବାକୁ ହେବନାହିଁ ରଞ୍ଜନ, ସିଦ୍ଧାନ୍ତ ମୁଁ କରି ସାରିଛି । ମତେ ଏଠାରୁ ଆଜିହିଁ ବିଦାୟ ନେବାକୁ ହେବ, କାଲି ନୁହେଁ !

"ତୁମର ପତ୍ନୀ ଅଛି, ଯୁବକ ପୁଅ ଅଛି, ସେମାନଙ୍କ ଠାରୁ ମୁଁ ତମକୁ ଛଡ଼େଇ ନେବି, ତେବେ କେବେ ତମେ ସ୍ୱୟଂ ମତେ କ୍ଷମା କରି ପାରିବ ନାହିଁ । ମୁଁ ଯାଉଛି ରଞ୍ଜନ ।"

ରଞ୍ଜନ କିଛି କହିବା ପୂର୍ବରୁ, ସେ ବିଜୁଳି ଗତିରେ ବୁଲି ପଡ଼ି ପାଦ ଚଲା ସରୁ ରାସ୍ତାରେ ଯନ୍ତ୍ରପରି ଅଦୃଶ୍ୟ ହେଇଗଲା ।

ବହୁ ଡେରି ପର୍ଯ୍ୟନ୍ତ ବିଧୁତରଞ୍ଜନ ଛିଡ଼ା ହେଇ ଚିନ୍ତା କରିବାକୁ ଲାଗିଲା । କ'ଣ କରିବି ? ଫେରିଯିବି ପନ୍ନାର ବଙ୍ଗଳାକୁ ? ପୁଣି ତା'ର କର୍ତ୍ତବ୍ୟ ବୋଧ ତାକୁ ସହସା ଦୋହଲାଇ ରଖିଦେଲା । ମୂର୍ଖ ! ଆଜି ପର୍ଯ୍ୟନ୍ତ କେବଳ ଦେଶ ସେବା ବାହାନାରେ ଦେଶର ଟଙ୍କା ଲୁଟିବାରେ - ଝାମ୍ପିବାର କଳଙ୍କ ଲାଗିଛି, ବର୍ତ୍ତମାନ କ'ଣ ଚରିତ୍ର-ହତ୍ୟା ମଧ୍ୟ କରେଇବ ? ପୁଣି ରାଜଭବନରେ ମୁଖ୍ୟମନ୍ତ୍ରୀମାନଙ୍କ ସଭା ଅଛି ଠିକ୍ ପାଞ୍ଚଟା ବେଳେ, ଚାରି ଏଠାରେ ବାଜିଯାଇଛି । ତୁ ସେହି ପତିତା ବେଶ୍ୟାର ପଛରେ ଦୌଡ଼ିବାକୁ ଚିନ୍ତା କରୁଛୁ । ସ୍ୱୟଂ ନିଜ ଅନ୍ତରାତ୍ମାର ଏକ ହିଁ ଧମକରେ ରଞ୍ଜନ ଭୟଭୀତ ହେଲା । ସେ ଟୋପିକୁ ସିଧାକଲା, ରୁମାଲରେ ଝାଳ ପୋଛିଲା ଏବଂ 'ବ୍ରିଫକେସ' କାଖରେ ଜାକିକରି ଶୀଘ୍ର ଶୀଘ୍ର ଗଡ଼ାନିଆଁରେ ଓହ୍ଲେଇବାକୁ ଲାଗିଲା ।

## ସାତ

'ଏ ମେନ ଇଟିଂଗ ଟାଇଗର ଇଜ ଏ ଟାଇଗର ଦେଟ ହେଜ ବିନ କମପ୍ଲେଣ୍ଡ ଥ୍ରୁ ଷ୍ଟ୍ରେସ ଅଫ ସରକମଷ୍ଟାନ୍‌ସେସ ବିୟଣ୍ଡ ଇଟ୍‌ସ କଣ୍ଟ୍ରୋଲ, ଟୁ ଏଡପ୍ଟ ଏ ଡାଇଟ୍ ଏଲାଇନ୍ ଟୁ ଇଟ'-ଜିମ୍ କୋରବେଟ । କିଶୋରୀ କୁମାଉଁର ବାଘୁଣୀ ପରିସ୍ଥିତିରେ ବାଧ୍ୟ ହେଇ ଏବେ ପ୍ରକୃତରେ ହିଁ ଜିମ କୋରବେଟ ପରି ନିର୍ଦ୍ଦୟୀ ନର ଭକ୍ଷକ ବାଘୁଣୀ ହେଇ ସାରିଥିଲା । ଗୋଲ ଚେହେରା ଏବେ ଲମ୍ବା ପାନ ଆକାରର ବଣ ଆହୁରି ସୁନ୍ଦର ହେଇ ଯାଇଥିଲା । ତିନି ବର୍ଷର କଲିକତା - ପ୍ରବାସ ସେହି ତନ୍ୱୀର କମନୀୟ ଶରୀରକୁ ଦୁର୍ବଳ କରି ଦେଇଥିଲା ଯାହା ପରିଶ୍ରମୀ ଶରୀର ପାଇଁ ସିଲେଇ ହେଇଥିବା କପଡ଼ାକୁ ସୁନ୍ଦର ଭାବରେ କଟାକଟିର ଯାଦୁ ଥିଲା ? ହୁଏତ ପନ୍ନା ମଧ୍ୟ ତାକୁ ପ୍ରଥମ ଦେଖାରେ ଚିହ୍ନି ପାରି ନଥାନ୍ତା । ଚିହ୍ନିଥାନ୍ତା ପୁଣି କେମିତି । ଟାଟା

ଟେକ୍ସଟାଇଲର ପୋଷାକରେ ସେ ପ୍ରଥମ ଥର ମଡେ଼ଲ ହେଇ ସ୍ୱୟଂ ଡାଇରେକ୍ଟର ଆସିକରି ତାକୁ ଶୁଭକାମନା ଜଣେଇଥିଲା । ଅସାଧାରଣ ମଡେ଼ଲ ସେ ଥିଲା । ଯେମିତି ବିଧାତା ସେହି ଅପୂର୍ବ ମଡେ଼ଲକୁ ସ୍ୱୟଂ ନିଜ ହାତରେ ଗଢ଼ିକରି ଏହି ଅଭିପ୍ରାୟରେ ଧରାରେ ଓହ୍ଲାଇ ଦେଇଥିଲା । ବ୍ୟବସାୟୀ ମେକ୍‌ଅପ କହିଲା-ବାଲୀର ତୁଳିକା କ'ଣ କରି ପାରିଥାନ୍ତା । କ'ଣ ସେହି ଅସ୍ୱାଭାବିକ ରୂପରେ ବଡ଼ ଆଖି, ଲମ୍ବା ଉପରକୁ ମୋଡ଼ି ହେଇଥିବା ପଲକ ବା ଶିଶୁ ଅଧରର 'କ୍ୟୁପିଡ଼୍' ଗଢ଼ିବାରେ କେଉଁଠି ହେଲେ କଟାକଟି କରିବାର କୌଣସି ସୁଯୋଗ ନଥିଲା । ସବୁଠାରୁ ଅଧିକ ଆକର୍ଷଣ ଥିଲା କଲୀର ଶିଶୁ-ସୁଲଭ ନିର୍ଦ୍ଦୋଷ ଚେହେରାର । ହସିଲେ ଗାଲରେ ପଡ଼ିଯାଏ ଗଭୀର ଗାତକୁ ଜାଣିଶୁଣି ବିଲମ୍ବିତ ସ୍ମିତରେ ଢେରି ପର୍ଯ୍ୟନ୍ତ ଗାତ ଖୋଲି କରି ରଖିଦିଏ ।

ଧୀରେ ଧୀରେ ସେହି ସୁନ୍ଦର ଚେହେରା, ସାବୁନର ବିଜ୍ଞାପନରୁ ଉଠିକରି ବହୁତ ଉପରକୁ ଚାଲି ଆସିଲା । ହେଣ୍ଡଲୁମ ଏକ୍ସପୋର୍ଟ ଏକ୍‌ଜିକ୍ୟୁଟିଭ କର୍ପୋରେଶନର ଏକ୍‌ଜିକ୍ୟୁଟିଭ ଡାଇରେକ୍ଟର ସ୍ୱୟଂ ପତ୍ର ଲେଖିକରି ତାକୁ ଅନୁରୋଧ କରିଥିଲା ଯେ ସେ ଭାରତୀୟ ବସ୍ତ୍ରଗୁଡ଼ିକର ପ୍ରଦର୍ଶନରେ, ବିଦେଶୀ ମାର୍କେଟକୁ ନିଜର ଉପସ୍ଥିତିରେ ଧନ୍ୟ କରୁ । ନ୍ୟୁୟର୍କର 'ସୋନା' ଏମ୍ପୋରିୟମରେ ଲକ୍ଷ ଲକ୍ଷ ଆମେରିକୀୟର ହୃଦୟ ସେ ନିଜର ସାଢ଼ୀର ଗୋଟିଏ ଗୋଟିଏ ଭାଙ୍ଗରେ ବନ୍ଧ କରି ନିକଟରେ ବିଦେଶରୁ ଫେରିଥିଲା । କିନ୍ତୁ ଏବେ ତାକୁ ପ୍ରତ୍ୟେକଦିନ ମୋଟି ଅସୁନ୍ଦରୀ ଚକଚକ-ଝକଟକ କରୁଥିବା ସ୍ତ୍ରୀମାନଙ୍କର ଭିଡ଼ରେ ବୁଲିବାଲିକରି ପ୍ରତ୍ୟେକ ନୂତନ ସାଢ଼ୀ, ଚୁଡ଼ିଦାର ମିନୀ ସ୍କର୍ଟର ପ୍ରଦର୍ଶନୀରେ ବିରକ୍ତ ହେବାକୁ ଲାଗିଥିଲା । ଏବେ ତାହାରି ଜଣେ ପରିଚିତ ତାକୁ ମୋଟା ଦରମାରେ 'ରିସେପସନିଷ୍ଟ'ର ପଦରେ ରଖି ଦେଇଥିଲା । ସପ୍ତାହରେ ଚାରିଦିନ ହିଁ ତାକୁ କାମ ପାଇଁ ଯିବାକୁ ହେଉଥିଲା । ନା ଦଉଡ଼ା-ଦଉଡ଼ି, ନା ପ୍ରତ୍ୟେକ ଦିନର ସାଜ ସଜ୍ଜା, ଲେପନ କରିବା । କିନ୍ତୁ ଯେଉଁ ବଙ୍ଗାଳି ପରିବାର ସହିତ ସେ ରହୁଥିଲା, ତା'ର ଗୃହିଣୀ ଏବେ ତା ପାଇଁ ବିଶେଷ ମୁଣ୍ଡବଥା ହେବାରେ ଲାଗିଥିଲା ।

"ଏତେ ରାତି ପର୍ଯ୍ୟନ୍ତ କେଉଁଠି ରହୁଛ ?"

"କେମିତି ଚାକିରି ଅଟେ ଭାଇ ତମର ? କୁହତ ଖାଇବା ପିଇବା ସବୁ ସେଠାରେ ମିଳୁଛି, ତା ଉପରେ ସପ୍ତାହରେ ପଡ଼ି-ପଡ଼ି ଚାରିଦିନ ଖଟରେ ଶୋଇ ରହୁଛ । ଆମଠାରୁ ତ ତମେ ଭଲ ।"

"ଯେମିତି ଧନେଖାଲି ଡୋରିଆ ସାଢ଼ୀ ପିନ୍ଧିକରି ତୁମେ କାଲି ଅଫିସ୍‌କୁ ଯାଇଥିଲ, ସେମିତି ହିଁ ଖଣ୍ଡିଏ ମୋ ପାଇଁ ଆଣିଦେବ ଭାଇ କଲୀ, ପଇସା ଭଡ଼ାରୁ କାଟି ଦେବି ।"

ବେଲ୍ଲା ସେନର ବରାଦ ପୁରା କରୁ-କରୁ କଲୀକୁ ଘରଭଡ଼ା ବହୁତ ବେଶି ପଡ଼ିବାକୁ ଲାଗିଲା । ଗୋଟିଏ ବଖରା ଆଉ ଭାଗର ଗାଧୁଆ ଘର ତାକୁ ବହୁତ ମହଙ୍ଗା ପଡୁଥିଲା । ଭଡ଼ାର ମଧ୍ୟ ତା'ର ଚିନ୍ତା ନ ଥିଲା, ଚିନ୍ତା ଥିଲା ସେହି ଆବଶ୍ୟକତାରେ ସେହି ଅଧିକ ମୁଖରା ସ୍ତ୍ରୀର କୌତୁହଳ ସବୁବେଳେ ସାବଧାନ ସ୍ୱଭାବର । ସେ କେଉଁଠାକୁ ଯାଏ, ଯାହା କିଛି କରେ, ତା'ର କ'ଣ ଯାଏ ଆସେ ? ପୁଣି ଏମିତି ଗୋଇନ୍ଦା ଗିରିର ପୂର୍ଣ୍ଣ ବାତାବରଣରେ ସେ ଆଶ୍ୱସ୍ତ ହେଇ ଠିକ୍ ଭାବରେ ଶୋଇ ମଧ୍ୟ ପାରୁ ନ ଥିଲା । ପ୍ରଥମେ ତ ତା'ର ବ୍ୟବସାୟ ଏମିତି ଥିଲା ଯେ, ତାକୁ ସବୁବେଳେ ପ୍ରାଣ ତା'ର ନିଜ ଛୋଟ ପାପୁଲିରେ ଧରିକରି ଅଭିନେତା ପରି ଦଉଡ଼ି ଉପରେ ଚାଲିବାକୁ ପଡୁଥିଲା ।

ପ୍ରଥମେ-ପ୍ରଥମେ କଲିକତାକୁ ଆସିଲାରୁ ବିବିୟନର ହିଁ ଦୂର ସମ୍ପର୍କର ମାଉସୀ ପାଖରେ ରହିଥିଲା । ମାଉସୀର ବହୁତ ବଡ଼ ପୋଲଟ୍ରି ଫାର୍ମ ଥିଲା, ଲେଗହାନ କୁକୁଡ଼ା ସଙ୍ଗେ-ସଙ୍ଗେ ବିବିୟନର ଲୌରୀନ ଆଣ୍ଟି, ଆହୁରି ବହୁତଗୁଡ଼ିଏ ସୁନାର ଅଣ୍ଡା ଦେଲାବାଲା କୁକୁଡ଼ାର ବ୍ୟବସାୟ କରୁଥିଲା, ଏହା ବୁଝିବାରେ କଲୀର ବିଳମ୍ବ ହେଲାନାହିଁ । ଏମିତି ସୁନ୍ଦରୀ, ଲୋଭନୀୟ କୁକୁଡ଼ା ଛପର ଫାଡ଼ି କରି ଲୌରୀନର ଫାର୍ମରେ ଫଡ଼ ଫଡ଼ କରି ଉଠିଲାରୁ ସେ ଝାମ୍ପିକରି ହାତ ପାପୁଲିରେ ବସେଇ ଦେଲା । ଆଖ ପାଖରେ କେତେକ ଚାଇନିଜ ପରିବାର ରହୁଥିଲେ । ସେମାନଙ୍କ ମଧ୍ୟରେ, ଗେଟିଏ ଚାଇନିଜ ଜୋତା ବାଲାର ପାରାଭାଡ଼ି ପରି ଫକୀରର ଘରେ ରହୁଥିଲା ଲୌରୀନ । ବାହାରରୁ ଏକଦମ ରିକେଟୀ ଦେଖା ଯାଉଥିବା ସେହି ଘରର ବାରଣ୍ଡା ମଧ୍ୟ କୌଣସି ବୁଢ଼ାର ହଲୁଥିବା ଦାନ୍ତ-ପରି ତଳକୁ ଓହଳି ଥିଲା । ଜାଲିରେ ଘେରିଥିବା ହତାରେ କେତେକ କୁକୁଡ଼ା ଦିନ ରାତି ଫଡ଼ ଫଡ଼ କରୁଥାନ୍ତି ଆଉ ତିନି-ଚାରୋଟି ପକ୍ଷୀ ମୁଣ୍ଡର ଚୁଳ ପରି ମୋଟା ତଟକା କୁକୁଡ଼ା ଗର୍ବର ସହିତ ନୂଆ ବର ପରି ବିବାହ ବେଳର ମୁକୁଟ ଉଠେଇ କରି ଘଣ୍ଟା ଘରର ଘଡ଼ି ସହିତ ସ୍ୱର ମିଳେଇ ବଡ଼ ଜୋରରେ ଡାକ ଦେଇ କଲୀର ଜିଦ ଭାଙ୍ଗି ଦେଉଥିଲେ । ଭଙ୍ଗା ଘରର ଶ୍ରୀହୀନ କାନ୍ତି ଦେଖିକରି କଲୀର କଲିଜା ଥରି ଉଠିଥିଲା । ଏଠାରେ କେମିତି ରହିବ ସେ ? କେଉଁଠି ଦେବଦାରୁର ବୈଭବ, ସେଣ୍ଟ ମେରୀ କନଭେଣ୍ଟର ଭିତରେ ଚାଟି ହେଉଥିବା ସ୍ୱଚ୍ଛ ସଜା ଆଉ କେଉଁଠି କୁକଡ଼ା ମାନଙ୍କ ପଙ୍ଖ-ବିହୀନ ଘୃଣିତ କୁକୁଡ଼ା ଛୁଆର ସାନ୍ନିଧ ।

ଲୌରୀନ ବଡ଼ ବଡ଼ ଛାତି, ଚଉଡ଼ା ହନୁ ଆଉ ଘୋଡ଼ି ପରି ଚେହେରା ବାଲି ଅପୂର୍ବ ସ୍ତ୍ରୀ ଥିଲା । ସେ ତା'ର ଘନ ବାଳର ବେଣୀକୁ ତିବ୍ୱତୀ ସ୍ତ୍ରୀମାନଙ୍କ ପରି କେଶ-ସଜା କରି ଚେପଟା ମୁଣ୍ଡର ଚାରି ଦିଗରେ ଦୁଇ ପରସ୍ତ କରି ଗୁଡ଼େଇ ଦେଇ ରଖୁଥିଲା । ଚଉଡ଼ା ଅଣ୍ଟାରେ ବନ୍ଧା ହେଇଥିବା ତା'ର ଏପ୍ରନ, ହଙ୍ଗେରିୟନ

ସୂଚୀକାମ ହେଇଥିବା ବ୍ଲାଉଜ ଆଉ ସ୍ୱଚ୍ଛ ସ୍କର୍ଟ ଦେଖିକରି କେହି କହି ପାରିବ ନାହିଁ ଯେ ସେ ଦିନସାରା କୁକୁଡ଼ାମାନଙ୍କର ଭାଡ଼ିକୁ ହାତରେ ଝାଡୁନେଇ ସଫା କରୁଥାଏ । ସଫା କରିବାର ପଛରେ ବୁଢ଼ି ପାଗଳ ଥିଲା । ଏଇଥି ପାଇଁ ତା'ଣ ଜୀର୍ଣ୍ଣ-ଶୀର୍ଣ୍ଣ ଘରର ଭିତର କଳେବରକୁ ବାହାରର ଗନ୍ଧ ଏକଦମ ସ୍ପର୍ଶ କରୁ ନ ଥିଲା, ଠିକ ଯେମିତି କୌଣସି ରୂପସୀ ଯୁବତୀ ଅପରିଷ୍କାର ବୁର୍ଖା ପିନ୍ଧିକରି ବସିଥିଲା । ବେଙ୍ଗଲର ବର୍ଷାରେ ହଳଦିଆ କାନ୍ଥରେ କେଉଁଠି କେଉଁଠି ପୁରୁଣା କବର ଗୃହପରି ଶିଉଳି ଜମିକରି ଘାସର ଛୋଟ ଛୋଟ ଗୁଚ୍ଛ ଅଙ୍କୁରିତ ହେଇଥିଲା, କିନ୍ତୁ ସ୍ୱୟଂ ଲୌରୀନର ବଖରା ସବୁବେଳେ ସ୍ୱଚ୍ଛ ଦର୍ପଣ ପରି ଚମକୁ ଥିଲା । ବଖରାର ସାଜ-ସଜ୍ଜା ପ୍ରତ୍ୟେକ ଏଂଗ୍ଲୋ ଇଣ୍ଡିଏନର ବଖରା ପରି ସଜ୍ଜିତ ହେଇଥିଲା । ମେଣ୍ଟଲପିସରେ ସଜା ହେଇଥିବା କ୍ରିସମସ କାର୍ଡ଼, ଚିତ୍ରରେ ବଧୂ ବେଶରେ ହାତରେ ବଡ଼ ଫୁଲତୋଡ଼ା ନେଇ ଲୌରୀନ । ଝିଅର ଖ୍ରୀଷ୍ଟିୟାନ ଧର୍ମର ଦୀକ୍ଷା ସମୟରେ ତାକୁ କୋଳରେ ନେଇ ଲୌରୀନ, ତାହାରି ପାଖରେ ସୁନେଲୀ ଫ୍ରେମରେ ମହାରାଣୀ ଭିକ୍ଟୋରିଆଙ୍କର ଗୋଟିଏ ବହୁତ ବଡ଼ ଚିତ୍ର ଆଉ ପୃଥିବୀ ଥିଲା ଯାହାକୁ ଲୌରୀନ ପ୍ରତ୍ୟେକ ଦିନ ବଡ଼ ଯତ୍ନରେ ପୋଛା-ପୋଛି କରି ଚକ୍‌ଚକ୍ କରୁଥିଲା । ଲୌରୀନ ସହିତ ତାହାର ଅନାଥ ଝିଆରୀ ସୂଜନ ମଧ୍ୟ ରହୁଥିଲା । ପିଲାଦିନରେ ମଟର ତଳେ ଚାପିଯିବା ହେତୁ ତା'ର ପୂରା ଗୋଡ଼ କାଟି ଦିଆ ଯାଇଥିଲା । କିନ୍ତୁ ତା'ର କାଠର ଗୋଡ଼କୁ ଆଶାବାଡ଼ିର ସାହାଯ୍ୟରେ ଘୋଷାରି ଆଶ୍ଚର୍ଯ୍ୟଜନକ ଭାବରେ ଶୀଘ୍ର ଶୀଘ୍ର ଚାଲି ପାରୁଥିଲା ।

"ସୂଜନ, ମୋର ଏଠାକୁ ଆସିବା ଆଠଦିନ ହେଇ ଗଲାଣି, କେତେଦିନ ପର୍ଯ୍ୟନ୍ତ ଏମିତି ବସି ରହିବି ? ଆଣ୍ଟିକୁ କହିବି ଏବେ ମତେ କେଉଁଠି ହେଲେ କିଛି କାମ ଯୋଗାଡ଼ କରିଦେଉ ।"

"କାମ ?" ସୂଜନ ଖୁବ୍ ଜୋର୍‌ରେ ହସି ପକେଇଲା "ଏଠାରେ ତ କାମ ପରେ କାମ ଅଛି ଇଡ଼ିଅଟ । ଚିନ୍ତା କାହିଁକି କରୁଛୁ, ଆଣ୍ଟି ଏତେ କାମ ଲଦି ଦେବ ଯେ ସମ୍ଭାଳିଲେ ସମ୍ଭାଳି ହେବ ନାହିଁ । ଆଜି ଏହି କାମରେ ତ ବୁଢ଼ି ବାହାରକୁ ଯାଇଛି । ଏଠାକୁ ଆ," ସେ ଆଶାବାଡ଼ି ଧରିକରି ନିଜର ରେଲଡବାର ବର୍ଥ ପରି ପଲଙ୍କ ଉପରେ ବସିଯାଇଥିଲା ।

"ମୋର ଏହି ଗୋଡ଼ ଦେଖୁଛୁ ତ ? ଏଠାରେ ତ ଆଣ୍ଟିର ସୁନାର ଅଣ୍ଡା ଦେଲାବାଲୀ ହଂସ ଅଛି ଦେଖ ।" ସେ ନିଜର ନିର୍ଜିବ ଗୋଡ଼ରେ ଲାଗିଥିବା ଅଦୃଶ୍ୟ ପ୍ରଥମ ଭାଗକୁ ଖୋଲିକରି ରଖି ଦେଇଥିଲା ।

"ଏହିଥିରେ ଏକା ଥରକେ ତିରିଶ-ତିରିଶ ସୁନାର ପଟୀ ସ୍ମଗଲ କରିପାରେ । ବୁଢ଼ିର ଅସଲି ଫାର୍ମର ପ୍ରତ୍ୟେକ ଦିନ ବଡ଼ ଅଣ୍ଡା ଦେଇ ପାରୁନା ଲେଘନ କୁକୁଡ଼ା

ହିଁ ମୁଁ, ବୁଝିଲୁ ।"

ଅସଦୁଲ୍ଲା ଆଉ ପାର୍ବତୀର ରକ୍ତ ସତେଜ ହେଇଗଲା । ସୂଜନ ସଙ୍ଗେ ସଙ୍ଗେ କଲୀ ମଧ ବଡ଼ ସ୍ୱାଭାବିକ ଭାବରେ ପକ୍ଷୀ ଫଡ଼ଫଡ଼ କରି ବୁଲିବାକୁ ଲାଗିଲା - କେବେ କଲିକତା, କେବେ ବମ୍ବେ ଆଉ କେବେ ମାଡ୍ରାସ । ୟୁ.ଏ.ଆର. ଏବଂ ଚାଇନାର ଅଧିକାର ଦେବା ସୁନା ସେଥର ମାଡ୍ରାସରେ ଅବତରଣ କରିବାର ଥିଲା । ମାଡ୍ରାସର ସୀମା ପାଖରେ ହିଁ କଲୀର କାରକୁ ସେଥର ତିନି-ଚାରି ରେଭେନ୍ୟୁ ଇଣ୍ଟେଲିଜେନ୍ସର ଉଦ୍ଧତ କର୍ମଚାରୀମାନେ ଘେରି ଯାଇଥିଲେ । ସୂଜନର କାଠର ଗୋଡ଼ ଭୟରେ ଠକ-ଠକ କରି ଥରି ଉଠିଲା । ସ୍ୱୟଂ କଲୀର ମୁଠିଭିତରର ଅଣ୍ଟାରେ ଶିବଙ୍କ ଗଳାରେ ଲାଗିଥିବା ପତଳା ନାଗୀନ ପରି ସୁନାର କେତେକ ପତ୍ର କ୍ଷଣକ ପାଇଁ ବିଚଳିତ ହେଇ ଉଠିଥିଲା ।

ଗୁଜରାତୀ ବାଳିକା ରଶ୍ମୀ ଦେବେ, ଆଣ୍ଟିର ପଲଟ୍ରି ଫାର୍ମର ସବୁଠାରୁ ନୂତନ ଓ ଅପରିଷ୍କୃତ, ଡରକୁଳି କୁକୁଡ଼ା ଥିଲା ।

"ହାଏ ମୁଁ ମରିଗଲି, ବର୍ତ୍ତମାନ କ'ଣ ହେବ ? ମୋର ପିତା ମତେ ଗୁଳିମାରି ଉଡ଼େଇ ଦେବ", ସେ ଥରିବାକୁ ଲାଗିଲା ।

"ଚୁପ କର ମୂର୍ଖ", କଲୀ ଫୁସ୍ ଫୁସ୍ କରି କହିଥିଲା, "ତୋର ପିତା ମନ୍ତ୍ରୀ ଅଛନ୍ତି, ଆଉ ବର୍ଷ ବର୍ଷ ଧରି ଏହି କାମ କରୁଥିବେ । ଖବରଦାର ତୁ ଚେହେରାରେ କୁଞ୍ଚିତ ରେଖା ଯଦି ଦେଖେଇବୁ ।"

କାରରୁ ଓହ୍ଲେଇ କରି ସେ ବହୁତ ମନ ଖୁସିରେ ହସି କରି ଶିଙ୍ଗ ଘଷିବାକୁ ତରତର ହେଉଥିବା କ୍ରୋଧୀ ଷଣ୍ଢପରି ଅଫିସରଙ୍କ ଆଡ଼କୁ ଆଗେଇ ଗଲା ।

"କହନ୍ତୁ, ଆପଣମାନେ ହାତ ଉଚ୍ଚାକରି କ'ଣ ଆମକୁ କାର ଅଟକେଇବା ପାଇଁ ଆଦେଶ ଦେଇଥିଲେ" ସେ ବହୁତ ଦୁଷ୍ଟାମୀରେ ହସିବାକୁ ଲାଗିଲା ।

"ଆଜ୍ଞା ହଁ," ଚାରି ଜଣଙ୍କ ଭିତରେ ସବୁଠାରୁ ଗମ୍ଭୀର ଆଉ ମୋଟା-ତଗଡ଼ା ପୋଲିସର ପୋଷାକ ପିନ୍ଧିଥିବା ଅଫିସର ରୁକ୍ଷ ଉତ୍ତର ଦେଲା ।

"ଓହୋ", କଲୀ ମାଇଲ ଷ୍ଟୋନ ଉପରେ ବସି, ଖରାର ଫେଣ୍ଟମ ଚଷମା ଓହ୍ଲେଇ କରି ରୁମାଲରେ ଚେହେରା ପୋଛି ହସିକରି କହିଲା, "ମୁଁ ଭାବିଥିଲି ହୁଏତ "ହେଣ୍ଡସ୍ ଅପ୍" କରି, ଆମ ଚାରିଜଣଙ୍କ ସୌନ୍ଦର୍ଯ୍ୟରେ ଡରିକରି ଆପଣମାନେ ଚାରିଜଣ ସ୍ୱୟଂ ହତିୟାର ପକେଇ ଦେଉଛନ୍ତି ।"

ଚାରିଜଣଙ୍କ ମଧ୍ୟରେ ସମସ୍ତଙ୍କଠାରୁ ଛୋଟ ଆଉ ଚଞ୍ଚଳ ଟୋକା ଅଫିସର 'ଖୁ-ଖୁ' କରି ହସିବାକୁ ଲାଗିଲା, କିନ୍ତୁ ଅନ୍ୟ କ୍ଷଣରେ ବରିଷ୍ଠ ଗମ୍ଭୀର ଅଫିସରର କଠୋର ଦୃଷ୍ଟିରେ ସଂକୋଚ କରି ଆଟେନ୍‌ସନ୍ ଭଙ୍ଗିରେ ଛିଡ଼ା ହେଇଗଲା ।

"ଆମକୁ ସୂଚନା ମିଳିଛି ଯେ, କିଛି ସୁନା ସ୍ମଗଲର ଆଜି ଏଠାକୁ

ଅଣାଯାଉଛି । ଆପଣଙ୍କର ନୁହଁ, ଯେତେକ ଆସୁଥିବା-ଯାଉଥିବା ଗାଡ଼ିର ଆମେ ତଲାସି ନେଉଛୁ ।"

"ଓ, ଆଇ ସୀ," କଲୀ ପୁଣି ହସିଲା । ତା'ର ଗାଲର ଗଭୀର ଗାତରେ ପୋଷାକ ପିନ୍ଧିଥିବା ବରିଷ୍ଠ ଅଧିକାରୀଙ୍କୁ ଛାଡ଼ିକରି ଶେଷ ତିନି ଟୋକା ଅଫିସର ପୋଷାକ ସହିତ ଗଳା ପର୍ଯ୍ୟନ୍ତ ଘଷି ହେଇଗଲେ ।

"ନିଅନ୍ତୁ ନା ତଲାସି, କିନ୍ତୁ ତଲାସି କାହାର ନେବ ? ଆମର ନା ଆମର କାରର ? ସୂଜନ ଡାର୍ଲିଂ, ତମେମାନେ ସମସ୍ତେ ତଳକୁ ଓହ୍ଲେଇ ଆସ, ଏହି ମହାଶୟ ଆମର ତଲାସି ନେବେ । କହୁଛନ୍ତି, ଆମେ ସୁନା ସ୍ମଗଲ କରିବାକୁ ଆସିଛୁ ।"

ତିନିଜଣ ଲାଜ ଲାଜ ହେଇ ହସି ଅପ୍ସରାମାନେ ତଳକୁ ଓହ୍ଲେଇ ଆସିଲେ । ଏକେଲା ଘନ ନିଶବାଲା ଅତ୍ୟନ୍ତ ଚତୁର ସରଦାର ଡ୍ରାଇଭର ହ୍ୱିଲ ଧରି ନିର୍ବିକାର ମୁଦ୍ରାରେ ସିଟ ଉପରେ ବସି ରହି ଥିଲା ।

କଲୀ ହସିକରି କହିବାକୁ ଲାଗିଲା, "ବାଃ ସରଦାରଜୀ, ଆପଣ ମଧ ଓହ୍ଲେଇ ଆସନ୍ତୁନା । ସବୁଠାରୁ କଡ଼ା ତଲାସୀ ଏହାଙ୍କର ନେବେ ସାର, ଜଣାନାହିଁ ଘନ ଦାଢ଼ି ଆଉର ଜୁଡ଼ାର ଜଟାରେ ସୁନାର କୌଣସି ଭାଗୀରଥୀ ଲୁଚେଇ ବସି ଥିବ ।"

ହଠାତ୍ ଜଣାନାହିଁ କେଉଁଠାରୁ ପାଖ କଲେଜର ଟୋକାମାନେ ଭିଡ଼ କରି କାରକୁ ଘେରିକରି ଛିଡ଼ା ହେଇଗଲେ ।

"ମାଲା ସିହ୍ନା ଅଟେ, ମୁଁ ବେଟ ଲଗେଇ ପାରେ", ଗୋଟିଏ ସ୍ୱର ଫୁସ ଫୁସ କରି କହିଲା । ପୁଣି ସେହିକଥାର ଗୁଜବ ପୁରା ଭିଡ଼ରେ ଗୁଞ୍ଜରି ଉଠିଲା ।

"ଦେଖା ନା ?" କଲୀକୁ ସେହି ସ୍ପଷ୍ଟ ଫୁସଫୁସ କଥା ନୂତନ ପ୍ରେରଣା ଦେଲା । ସେ ନିଜର ଭୁବନମୋହିନୀ ହସର ଦର୍ପଣରେ ଗାଲର ଗଭୀର ଗାତକୁ ପୁଣି ଚମକେଇଲା, "ଆପଣ ଚିହ୍ନି ପାରିଲେ ନାହିଁ, ମୋର 'ଫେନ' ମତେ ଚିହ୍ନି ପକେଇଲେ । ମହାଶୟ, ଆମେ ସୁନା ସ୍ମଗଲ କରିବାକୁ ନୁହଁ, କିନ୍ତୁ ନିଷିଦ୍ଧ ଦକ୍ଷିଣ ପ୍ରଦେଶରେ ସୁବର୍ଣ୍ଣ-ବୃଷ୍ଟି କରିବାକୁ ଆସିଛୁ, ବୁଝିଲେ ?"

ବର୍ତ୍ତମାନ ପର୍ଯ୍ୟନ୍ତ ଖେଳୁଥିବା ପରିହାସ-ରସିକ କଲୀ ଏଣ୍ଡୁଅ ପରି ରଂଗ ବଦଳେଇ ଦେଲା । ତାହାର ପତଳା ନାକ ଆଗରେ ଥିବା କ୍ରୋଧ ଫଡ଼ ଫଡ଼ ହେବାକୁ ଲାଗିଲା, "ଏଠାରେ ଆମେ ଫିଲ୍ମର ସୁଟିଂ ପାଇଁ ଆସିଛୁ । ଭାବିଥିଲି ଆପଣଙ୍କ ମାଡ୍ରାସ ଆମର ଶ୍ରଦ୍ଧାରେ ସ୍ୱାଗତ କରିଥାନ୍ତା, କିନ୍ତୁ ଦେଖିଲୁ ନା ରଶ୍ମୀ, କେମିତି ମୂର୍ଖ ଅଶିକ୍ଷିତ ଲୋକଙ୍କର ଦେଶ ଅଟେ । ଚାହିଁଲେ ଆପଣଙ୍କୁ ସୁ କରି ପାରିବେ, ଏହା କ'ଣ ଆପଣ ଜାଣନ୍ତି ?"

"କହିଥିଲି ନା ମୁଁ ମାଲାଅଟେ, ମିସ୍ ଅଟୋଗ୍ରାଫ ।"

"ଏହି ଖାତାରେ ଦେଇ ଦିଅନ୍ତୁ ମିସ୍, ଏମାନଙ୍କୁ ଏବେ ତଡ଼ି ଦେଉଛୁ ଆମେ ।

ଆପଣ ଚିନ୍ତା କରନ୍ତୁ ନାହିଁ ।" ଆଉ ଚାରୋଟି ଫୁଟାଣିଆ ଅଫିସରଙ୍କୁ ଛାତ୍ରମାନେ ଦୂର ପର୍ଯ୍ୟନ୍ତ ଘଉଡ଼ି ଦେଲେ ।

'ରେଭେନ୍ୟୁ ଇନ୍‌ଟେଲିଜେନ୍‌ସ୍'ର ଚାରି ଅଧିକାରୀ ଦୂରରୁ ହିଁ ଛାତ୍ରମାନଙ୍କ ଖାତା ଓ ପାଠ୍ୟ ପୁସ୍ତକରେ ହସ୍ତାକ୍ଷର କରୁଥିବା ଚାରି ଅପ୍‌ସରାଙ୍କୁ ଅସହାୟ ହୋଇ ହାତ ବାନ୍ଧି ଦେଖିବାକୁ ଲାଗିଲେ । ଟାଲୁ-ଟାଲୁ କଲୀ ଏକ ଫ୍ଲାଇଂ କିସ୍ ଚାରିଜଣଙ୍କ ଆଡ଼କୁ ଉଡ଼େଇ ଦେଲା ଓ ଆନନ୍ଦଦାୟକ ତାରକମାନଙ୍କର ରହସ୍ୟମୟ ଦଳ, ଜୋରରେ କାରକୁ ଦଉଡ଼େଇ ମାଡ୍ରାସ୍‌ର ଗନ୍ତବ୍ୟ ସ୍ଥାନରେ ସୁନା ଢାଳି ରାତାରାତି କଲିକତା ଫେରି ଯାଇଥିଲେ । ଏହାପରେ କଲୀ ସ୍ୱେଚ୍ଛାରେ ଏହି ଧନ୍ଦା ଛାଡ଼ିଦେଲା । ଏବେ ତା'ର ପାଦ ସ୍ୱୟଂ ମହାନଗରୀରେ ଜମି ଯାଇଥିଲା କାହାରି କାନ୍ଧର ଆଶ୍ରୟର ଏବେ ତା'ର ଆବଶ୍ୟକତା ନ ଥିଲା ।

ଯେଉଁ ଫ୍ଲାଟରେ କଲୀ ରହୁଥିଲା, ତାହାରି ସାମ୍ନାରେ ଗୋଟିଏ ଲାଲ ଇଟାର ତିଆରି ବଡ଼ ସୁନ୍ଦର ଘର ଥିଲା । କଲୀକୁ କଲିକତାର ସେହି ଆଧୁନିକ କଳାତ୍ମକ ଫ୍ଲାଟର ଭିଡ଼ରେ ଛିଡ଼ା ହୋଇଥିବା ଏମିତି ଲାଗୁଥିଲା ଯେମିତି ସାଜ-ସଜ୍ଜା ହୋଇଥିବା ତାହାରି ପରି ଆଧୁନିକା ମାନଙ୍କର ଫମ୍ପା ପ୍ରତିଭା ମଧ୍ୟରେ, କେହି ଜଣେ ଓଢ଼ଣୀ ଦେଇଥିବା ଲଜ୍ଜାଶୀଳ ଗ୍ରାମବଧୂହିଁ ଛିଡ଼ା ହୋଇଛି । ନା ତା'ର ଦ୍ୱାରରେ ପରଦା ଥିଲା, ନା ଝରକାଗୁଡ଼ିକରେ । ଟିକିଏ ନିକଟକୁ ଗଲେ ହିଁ ଭିତରର ବଖରାଗୁଡ଼ିକର ଅନ୍ତରଙ୍ଗ ଛବିକୁ ସ୍ପର୍ଶ କରିଥିବା କଲୀର ଉତ୍ସୁକ ଦୃଷ୍ଟି ସିଧା ରୋଷେଇ ଘର ପର୍ଯ୍ୟନ୍ତ ପହଞ୍ଚି ଯାଉଥିଲା, ଯେଉଁଠାରେ ଗୃହର ସଜ୍ଜାରେ ମେଳ ଖାଉଥିବା ସରଳ ଆଉ ପ୍ରୌଢ଼ ଗୃହ ସ୍ୱାମିନୀ କେବେ କଡ଼େଇରେ ଶୁଦ୍ଧ ଉତ୍ତର ପ୍ରଦେଶୀ ମସଲାରେ ପାଳଙ୍ଗ ସାଗ ଛୁଙ୍କ ଦିଏ, ଆଉ କାଞ୍ଚନିକ ସ୍ୱାଦ ନେଇ କଲୀର ନାକର ପୁଡ଼ା ଖୁସିରେ ଫଡ଼ଫଡ଼ ହେଉଥିଲା ।

'ଦବଦାରୁ'ରେ ମା'ର ପଡ଼ିଶାରେ ରହୁଥିଲେ ମିସେସ୍ ଜୋଶି । କଲୀ ତାଙ୍କୁ କେବେ ହସିବା ଦେଖି ନାହିଁ । ଯେବେ ଛୁଟି ମାନଙ୍କରେ ଘରକୁ ଆସେ, ଦେଖେ ଉଦାସ ଜୋଶି ଖୁଡ଼ୀ ରୋଷେଇରେ କରେଇରେ କିଛି-ନା-କିଛି ଘାଣ୍ଟୁଛି । ମନେ ହେଉଥିଲା ହାତ କେଉଁଠି ଅଛି, ଚିତ୍ତ କେଉଁଠି । କେବେ ସ୍ୱୟଂ ଭଡ଼ ଭଡ଼ ହୁଅନ୍ତି, କେବେ ଚୁପ୍‌ହୋଇ ଚୁପଚାପ ବସିଥାଏ । ସ୍ୱୟଂ ତାଙ୍କର ଝିଅ ଦିନେ କଲୀକୁ କହିଥିଲା, ତିନି ଝିଅ ପରେ ଜନ୍ମିଥିବା ତାଙ୍କର ସୁକୁମାର ପୁତ୍ର ଘୋଡ଼ାରୁ ପଡ଼ିକରି ମରି ଯାଇଥିଲା । ସେଇ ଦିନରୁ ମା' ଏମିତି ହୋଇ ଯାଇଛି । କଲୀ ଯେବେ ଯାଉଥିଲା ସେ ବହୁତ ଯତ୍ନରେ ତାକୁ ରନ୍ଧାବଢ଼ା ଆଉ ଖିଆପିଆ ଜାଗାରେ ବସେଇ କରି ସ୍ୱୟଂ ନିଜ ହାତରେ ନାନା ପ୍ରକାରର ସ୍ୱାଦିଷ୍ଟ ପାହାଡ଼ି ତରକାରି ତିଆରି କରି ଖୁଆଉଥିଲା ।

କଲିକତାର ସେହି ଲାଲ ଇଟାର ଘରର ଗୃହସ୍ୱାମିନୀଙ୍କୁ ଦେଖିକରି କଲୀର କୋଶି ଖୁଡ଼ୀର ହିଁ ମନେପଡ଼ି ଯାଏ । ସେମିତି ହିଁ ଉଦାସ ଦୃଷ୍ଟି, ବଡ଼-ଟିପା, ଏଇ ପର୍ଯ୍ୟନ୍ତ ଯେ ଦବି ଯାଇଥିବା ଓଠର ନିୟନ୍ତ୍ରିତ ହସ ମଧ୍ୟ ଏକଦମ ଖୁଡ଼ୀପରି ଥିଲା । ଦିନେ ସେ ଅଫିସ ଯାଉଥିଲା, ପ୍ରତିଦିନର ଅଭ୍ୟାସରୁ ତା'ର ଦୃଷ୍ଟି ସ୍ୱୟଂ ହିଁ ଲାଲ କୋଠା ଉପରେ ପଡ଼ିଲା । ବରଣ୍ଡାରେ ହିଁ ସେହି ଶାନ୍ତ ମହିଳା ଛିଡ଼ା ହେଇଥିଲା ।

"କ'ଣ ଝିଅ, କେଉଁଠି ଚାକିରି କରୁଛ କି, ପ୍ରତ୍ୟେକଦିନ ଏହି ସମୟ ତମକୁ ଯିବାର ଦେଖୁଛି ?"

"ଆଜ୍ଞା ହଁ", କଲୀ ସେହି ସିଧା କାନିରେ ଏକଦମ ଅବଙ୍ଗାଳି ମହିଳାର ମୁହଁରେ ସୁସ୍ପଷ୍ଟ ବଙ୍ଗଳା ଶୁଣିକରି ଅବାକ୍ ହେଇଗଲା ।

"କ'ଣ ଏଠାରେ ରହୁଛ ?"

"ଆଜ୍ଞା ହଁ, ତିନୋଟି ଫ୍ଲାଟ ଛାଡ଼ିକରି ଚତୁର୍ଥରେ ।"

"କେବେ ଆସିବ, ମୁଁ ଏକା ରହେ । ମନ ଖୁସି ହେଇଯିବ ।"

ଆଉ ପୁଣି ତୃତୀୟ ଦିନ, ନିୟତି କଲୀକୁ କୌଣସି ଜାଦୁର ଗାଲିଚାରେ ବସେଇ କରି ସେଠାରେ ତା'ର ଜିନିଷ ପତ୍ର ସହିତ ପହଞ୍ଚେଇ ଦେଇଥିଲା ।

ରେବତୀଶରଣ ତିବାରୀଙ୍କ କଲିକତାରେ ରହିବା ଦୁଇ ପୁରୁଷ ବିତି ଯାଇଥିଲା । ତାଙ୍କର ଗୋସେଇଁ ବାପାକୁ କାଳୀ ମନ୍ଦିରରେ ଶତଚଣ୍ଡୀ ପାଠ କରିବାକୁ କଲିକତାର ପ୍ରସିଦ୍ଧ ଜମିଦାର ପାହାଡ଼ରୁ ଡକେଇ ଥିଲେ । ଧିରେ ଧିରେ କଲିକତାରେ ତାଙ୍କର ଯଜମାନୀରେ ଉତରୋତ୍ତର ବୃଦ୍ଧି ହେବାକୁ ଲାଗିଲା । ସେହି ନିଷ୍ଠାବାନ୍ ତେଜସ୍ୱୀ ବ୍ରାହ୍ମଣର ଚମକୁ ଥିବା ଲଲାଟ, ସୁମଧୁର କଣ୍ଠ, ସୁସ୍ପଷ୍ଟ ସଂସ୍କୃତ-ଉଚ୍ଚାରଣ ତାଙ୍କୁ ବଙ୍ଗଳାର ସମୃଦ୍ଧ ବୈଷ୍ଣବ ପରିବାରର ପୁରୋହିତ କରିଦେଲା । ପୁତ୍ରକୁ ମଧ୍ୟ ସେ ଏହି ଆଶାରେ ସଂସ୍କୃତ ପଢ଼ିବାକୁ କାଶୀ ପଠେଇ ଥିଲେ ଯେ, ଶାସ୍ତ୍ରୀ ପରୀକ୍ଷା ପାଶ୍ କରି ପିତାର ଯଜମାନୀ ସମ୍ଭାଳି ନେବ । କିନ୍ତୁ ଶାସ୍ତ୍ରୀ ପୁଅ ପିତାର ପ୍ରସ୍ତାବ ଅସ୍ୱୀକାର କରିଦେଲା କଲିକତାର ହିଁ ଏକ ମାରୱାଡ଼ି କଲେଜରେ ସେ ସଂସ୍କୃତ ପଢ଼ିବାକୁ ଲାଗିଲା, ପୁଣି ସ୍ୱୟଂ ନିଜ ପୁତ୍ର ରେବତୀଶରଣକୁ ମଧ୍ୟ ଇଂରାଜୀ ସ୍କୁଲରେ ଦାଖିଲ କରି ଦେଲା । ଉଚ୍ଚ ଶିକ୍ଷା ପ୍ରାପ୍ତ ହେଇ, ରେବତୀଶରଣ ସର୍ବୋଚ୍ଚ ସରକାରୀ ପଦରେ ପହଞ୍ଚି କରି ନିଜର ଶାସ୍ତ୍ରୀ ପିତାର, ପୁତ୍ରକୁ ଅଫିସର ହେବା ଦେଖିବା ପାଇଁ ସ୍ୱପ୍ନ ପୂରା କରି ଦେଇଥିଲା । ଏବେ ସେ ଛୁଟିନେଇ, ପୂର୍ବ ପୁରୁଷଙ୍କ ଘରରେ ରହୁଥିଲା । ଦୁଇ ପୁଅଙ୍କୁ ନିଜ ସମାଜରେ ବିବାହ କରେଇଥିଲା, ବଡ଼ ପୁଅ ପ୍ରବୀର କାବୁଲ ଦୂତାବାସରେ ଉଚ୍ଚ ପଦସ୍ଥ ଅଫିସର ଥିଲା, ଛୋଟ ପୁଅ ସୁବୀରର ଦୁଇ ବର୍ଷ ପୂର୍ବେ ଭାରତ-ପାକିସ୍ତାନ ଯୁଦ୍ଧରେ ମୃତ୍ୟୁ ହେଇ ଯାଇଥିଲା । ହୁଏତ ସେହି ସୁଦର୍ଶନ ଯୁବା ପୁତ୍ରର ଅକାଳ ମୃତ୍ୟୁ ବୃଦ୍ଧ ଦମ୍ପତିଙ୍କୁ ଅସ୍ୱାଭାବିକ ଭାବରେ ଚୁପ୍‌ଚାପ୍ କରି

ଦେଇଥିଲା ।

ପୁଣି ପୂର୍ବବର୍ତ୍ତୀ ବର୍ଷ ସେହି ପରିବାରରେ ଗୋଟିଏ ଦୁର୍ଘଟଣା ଘଟି ଯାଇଥିଲା । ପରିବାରର ଜ୍ୟେଷ୍ଠ ପୁତ୍ର ଯେବେ ମାତା-ପିତାଙ୍କର ଲକ୍ଷେ ମୁଣ୍ଡ ବାଡ଼େଇଲା ପରେ ମଧ୍ୟ ବିବାହ ପାଇଁ ରାଜି ନ ହେବାରୁ ହାରିକରି ବଡ଼ ଭଉଣୀ ଛୋଟ ଭାଇ ପାଇଁ ସୁନ୍ଦରୀ ବହୁ ଖୋଜି ଦେଲା । ତାହାରି ସମ୍ବନ୍ଧରେ ନଣନ୍ଦ ସହିତ ।

ବିବାହର ବର୍ଷ ମଧ୍ୟ ପୁରି ନ'ଥିଲା ସୁବୀରକୁ ଯୁଦ୍ଧରେ ଯିବାକୁ ପଡ଼ିଲା । କେବେ ବାଡ଼ମେର, କେବେ ଜୋଧପୁର, କେବେ କାଶ୍ମୀର । ଯେଉଁ ଯେଉଁଠାରେ ପାକିସ୍ତାନୀ ବମ୍ ପକଉଥିଲେ, ସେଠାକୁ ଯେମିତି ଜାଣିଶୁଣି ତାକୁ ଯିବା ପାଇଁ ଆଦେଶ ମିଳୁଥିଲା । ତେବେ ମଧ୍ୟ କେହି ତାହାର ବାଳ ବଙ୍କା କରି ପାରିଲେ ନାହିଁ । କିନ୍ତୁ ଯେମିତି ହିଁ ଯୁଦ୍ଧବନ୍ଦିର ଘୋଷଣା ହେଲା, କୌଣସି ବିଶ୍ୱାସଘାତୀ ପାକିସ୍ତାନୀର ଗୋଟିଏ ଗୁଳି ତାକୁ ଥଣ୍ଡା କରିଦେଲା ।

ରେବତୀଶରଣ ତିବାରୀ ସଙ୍ଗେ ସଙ୍ଗେ ବହୁକୁ କଲିକତା ନେଇ ଆସିଲେ । ଏତେ ବଡ଼ ଘର ଥିଲା ଆଉ ମଧ୍ୟ ସମସ୍ତ ସୁବିଧା ଥିଲା – ବିଧବା ବହୁ ତାଙ୍କରି ପାଖରେ ରହିକରି ପଢ଼ିବ । ପୁଣି ସେ ସ୍ୱୟଂ ବହୁକୁ କଲେଜରେ ଭର୍ତ୍ତି କରିଦେଇ ଆସିଲେ । କଲେଜ ଯିବାକୁ ଲାଗିଲାରୁ ସ୍ୱୟଂ ଶାଶୁ ଜିଦ୍‌କରି ହାତରେ ସୁନାର ଚୁଡ଼ି ପିନ୍ଧେଇ ଦେଲେ ।

ସିଧା-ସିଧା ଡରୁଆ ସୁନ୍ଦରୀ ପାହାଡ଼ି ବହୁର ନଇଁଥିବା ବେକ, ଧୀରେ ଧୀରେ ସର୍ପଗନ୍ଧାର ଫଣା ପରି ଉଠିବାକୁ ଲାଗିଲା । ଏବେ, ସେ କେବେ କେବେ ହଳଦୀ ଓ ଚୂନର ଟୀକା ମଧ୍ୟ ଲଗଉ ଥିଲା । ଗୃହର ବଡ଼ ଝିଅ ଜୟା ମା'ଙ୍କ ଘରକୁ ଆସିଲାରୁ ଏକ ବର୍ଷର ସଦ୍ୟ ବିଧବା ବହୁର ଶୃଙ୍ଗାର ଦେଖିକରି ଚକିତ ହେଇଗଲା । ହାତମାନଙ୍କରେ ସୁନାର ଚୁଡ଼ି, ଗଳାରେ ଚେନ ଆଖିରେ ଖରାର ଚଷମା ଆଉ କାଖରେ ଜାକିଥିବା ପୁସ୍ତକଗୁଡ଼ିକ ।

"ଆମ୍ମା", ସେ ମା'କୁ ଏକାନ୍ତରେ ଟାଣିକରି ବୁଝେଇ ମଧ୍ୟ ଥିଲା, "ତୁମର କ'ଣ ଏକଦମ ଷାଠିଏ ବର୍ଷ ହେଇ ଯାଇଛି ? ସୁବୀରର ବହୁକୁ ପଢ଼େଇ – ଲେଖେଇ ତା'ର ପାଦରେ ଛିଡ଼ା କରେଇବାକୁ ଚାହୁଁଛ । ଇଏ ସବୁ ଠିକ୍ ଅଛି, କିନ୍ତୁ ତୁମେତ ତାହାକୁ ଠେଲିକରି ଦଉଡ଼ିବା ମଧ୍ୟ ଶିଖଉଛ ! କିଏ କହିବ ଇଏ ନାକ ଟେକୁଥିବା ଚମ୍ପା ଅଟେ, ତମେତ ଏହାର ଆକୃତି ହିଁ ବଦଳେଇ ଦେଇଛ ।"

"ତା ହେଲେ କ'ଣ ହେଇଗଲା ଝିଅ, ସୁବୀର ଥିଲେ କେତେ ପିନ୍ଧିଥାନ୍ତା – ତାଙ୍କି ହେଇଥାନ୍ତା । ବର୍ତ୍ତମାନ ବୟସ ମଧ୍ୟ କେତେ !"

"ତା ଠିକ ଅମ୍ମା, କିନ୍ତୁ ଏମିତି ମଧ୍ୟ କେତେ ଗେହ୍ଲା । ପଅରଦିନ ସିନେମା ଯାଇଥିଲା, ଆଜି ପୁଣି କୌଣସି ବାନ୍ଧବୀ ସହିତ ଚାଲିଗଲା ।"

"କ'ଣ କରିବି ଜୟା । ଘରେ ରହିଲେ ଚୁପ୍‌ଚାପ ବସି ଜଣା ନାହିଁ କଣ-କଣ ଚିନ୍ତା କରି କାନ୍ଦୁଥାଏ, ଛୁଆ ତ ଏବେ ଅଛି ।"

ଆଉ ପୁଣି ସେହି ଛୁଆ ଦିନେ ସମସ୍ତଙ୍କ କାନ କାଟି ଦେଲା ।

ସୁବୀରର ମୃତ୍ୟୁ ପରେ ଲାଲ ବଙ୍ଗଳାରେ ଭଜନ-କୀର୍ତ୍ତନ ପ୍ରାୟ ହେଉଥିଲା । କେବେ ନବଦ୍ୱୀପରୁ କେହି କୀର୍ତ୍ତନ ମଣ୍ଡଳୀ ଆସୁଥିଲା, କେବେ ବିଷ୍ଣୁପୁରରୁ । ରାତି ରାତି ଧରି ଝାଞ୍ଜ-କରତାଳ ଆଉ ମୃଦଙ୍ଗର ସଙ୍ଗତ ସହିତ କେବେ ମା'ଙ୍କର ସୁମଧୁର ଗୀତର ଗୁଞ୍ଜନ ହେଉଥିଲା, କେବେ ରାମ ପ୍ରସାଦ୍ କୀର୍ତ୍ତନ ଗାଉ-ଗାଉ ସ୍ୱୟଂ ରେବତୀଶରଣ ସ୍ମୃତି ହରଉ ଥିଲେ ।

ବର୍ଷ ବର୍ଷ ଧରି ବେଙ୍ଗଲରେ ରହିବାରୁ ତିବାରୀ ପରିବାରର ଚାଲି-ଚଳନ, କଥାବାର୍ତ୍ତା ଏପର୍ଯ୍ୟନ୍ତ କି ପିନ୍ଧିବାରେ ମଧ୍ୟ ସୁଦୀର୍ଘ ବଙ୍ଗ-ପ୍ରବାସର ସ୍ପଷ୍ଟ ଛାପ ପଡ଼ି ଯାଇଥିଲା । ସ୍ୱୟଂ ଗୃହସ୍ୱାମୀନୀର ବ୍ୟକ୍ତିତ୍ୱରେ କୁମାଉନ ଏବଂ ବେଙ୍ଗଲର ସଂସ୍କୃତିର ଅଦ୍ଭୁତ ସମ୍ମିଶ୍ରଣ ଥିଲା । ସେ ଗଳାରେ ପାହାଡ଼ୀ ମଙ୍ଗଳ ସୂତ୍ର ପିନ୍ଧେ, କିନ୍ତୁ ହାତର ଚୁଡ଼ି ମଝିରେ ଥାଏ ଶଙ୍ଖର ଚୁଡ଼ି ଆଉ 'ନୋଆ' । ପାଦରେ ପାଦର ମୁଦି ରହିଥିଲା କିନ୍ତୁ ସିନ୍ଥିରେ ଗାଢ଼ ସିନ୍ଦୂରର ରେଖା । ସିଧା ପଣତର ସାଢ଼ୀର କାନିରେ ବେଙ୍ଗଲର ଗୃହିଣୀ ପରି ଚାବିର ପେନ୍ଥା । ହିନ୍ଦୀ କହିଲେ ମନେ ହେଉଥିଲା କେହି ବଙ୍ଗାଳୀ ମହିଳା ହିନ୍ଦୀ କହୁଛି । ପୁଅ ଝିଅମାନଙ୍କ ନାମ ମଧ୍ୟ ଶୁଦ୍ଧ ବଙ୍ଗାଳୀ ଥିଲା, କିନ୍ତୁ ରୂପ-ରଙ୍ଗ ଥିଲା ବିଶୁଦ୍ଧ ପାହାଡ଼ି । ଦୁଇ ଝିଅ ବେଙ୍ଗଲରେ ହିଁ ଜନ୍ମ ହୋଇଥିଲେ ଆଉ ସେଠାକାର ଜଳବାୟୁରେ ବଢ଼ିକରି ବଡ଼ ହୋଇଥିଲେ । ତେବେ ମଧ୍ୟ ସେମାନଙ୍କର ଗୌର ବର୍ଣ୍ଣ, ନିର୍ଦ୍ଦୋଷ ଗଠଣ ଦେଖିକରି ଦୂରରୁ କେହି ମଧ୍ୟ କହି ପାରୁଥିଲା ଯେ, ସେ ପାହାଡ଼ି ଅଟେ । ଛୋଟ ପୁଅର ମଣିଷେ ଉଚ୍ଚ ଫଟୋକୁ ଦେଖିକରି କଲୀ ମୁଗ୍ଧ ହୋଇ ଯାଇଥିଲା । ଏମିତି ଯୁବକ ପୁତ୍ରର ମୃତ୍ୟୁଠାରୁ ବଡ଼ ଦୁଃଖ ମା-ବାପ ପାଇଁ ଆଉ କ'ଣ ହୋଇ ପାରିଥାନ୍ତା ? ଆଉ ପୁଣି ଏହି ଯୁବା ପୁତ୍ରର ସ୍ମୃତିରେ ଘରର ବହୁ ମଧ୍ୟ କଳଙ୍କ ଲଗେଇ ଚାଲି ଯାଇଥିଲା ।

ରେବତୀଶରଣ ତିବାରୀଙ୍କ ଏଠାକୁ ସାଧୁମାନଙ୍କରର ଆଗମନ କୌଣସି ନୂତନ ଘଟଣା ନଥିଲା । ପ୍ରତ୍ୟେକ ଦିନ କେହି ନା କେହି ବାବା ଆସୁଥିଲେ । ତାଙ୍କର ଘନିଷ୍ଠ ମିତ୍ର ଘୋଷାଲ ବାବୁହିଁ ପ୍ରଥମେ-ପ୍ରଥମେ ସ୍ୱାମୀ ବିଦୁରାନନ୍ଦନଜୀଙ୍କୁ ତାଙ୍କର ଏଠାକୁ ଆଣିଥିଲେ । ଲମ୍ବା ଚଉଡ଼ା ବ୍ୟକ୍ତିତ୍ୱ ପଠାଣ ପରି ସ୍ୱାମୀଜୀ ଥିଲେ । ଗାଲ୍ ଯେମିତି ଲାଲ ସେଉ ପରି, କାନ୍ଧ ପର୍ଯ୍ୟନ୍ତ ଝୁଲୁଥିବା କୁଞ୍ଚୁକୁଞ୍ଚିଆ ବାଳ ଆଉ କୌଣସି ମୂର୍ଖ ବାଳକ ପରି ଦୁଧ ରଙ୍ଗର ହସ । ତିବାରୀ ଦମ୍ପତି ତାଙ୍କୁ ଦେଖିଲାମାତ୍ରେ ତାଙ୍କର ଦାସାନୁଦାସ ହୋଇ ଯାଇଥିଲେ । ମଧୁର କଣ୍ଠରେ ଗାଉଥିବା ଭଜନ ଦୂର-ଦୂରରୁ ଲୋକଙ୍କୁ ଟାଣିବାକୁ ଲାଗିଲା । ସନ୍ଧ୍ୟା ହେଲାମାତ୍ରେ ଅଗୁରୁ ଚନ୍ଦନର ସୁଗନ୍ଧିତ ଧୂଆଁରେ ଆବେଷ୍ଟିତ ମୃଗଚର୍ମ ଉପରେ

ବସି ସ୍ୱାମୀଜୀଙ୍କର ଶାନ୍ତ ମୂର୍ତ୍ତି ଯିଏ ଦେଖୁଥିଲା ତାହାର ମନର ସମସ୍ତ କଳୁଷ, ସଂଶୟ ସ୍ୱୟଂ ଧୋଇ ହେଇ ଯାଉଥିଲା । କେହି କହୁଥିଲା ଶହେ ବର୍ଷର ଅଟନ୍ତି, କେହି କହୁଥିଲା ପରବ୍ରହ୍ମ ଅଟନ୍ତି ଭାଇ, ବୟସର କ'ଣ ଠିକଣା, ଜଣା ନାହିଁ ଦୁଇଶହ ବର୍ଷର ହେବେ ।

ଦିନେ ଚମ୍ପାର ଶାଶୁ ସ୍ୱାମୀଜୀଙ୍କ ଦୁଇ ପାଦ ଧରି, "ମହାରାଜ, ଆପଣ ତ ବଦ୍ରିନାଥ ଯାଉଛନ୍ତି । ଜଣାନାହିଁ କେବେ ଫେରିବେ, ଯିବା ପୂର୍ବରୁ ମୋର ଏହି ଅଭାଗିନୀ ବହୁକୁ ଦୀକ୍ଷାମନ୍ତ୍ର ଦେବାକୁ ପଡ଼ିବ ।"

ଜଣା ନାହିଁ କେମିତି ଦୀକ୍ଷାମନ୍ତ୍ର ସ୍ୱାମୀଜୀ ଦେଲେ । ସକାଳେ ଶାଶୁ ଉଠିଲାରୁ ଦେଖିଲେ ନା ବହୁ ଥିଲା ନା ସ୍ୱାମୀ ! ସମସ୍ତ ଲୁଗା ଖୋଜିଲେ, ପାଗଳୀ ପରି ଦଉଡ଼ି ବୃଦ୍ଧ ଦମ୍ପତି ଦକ୍ଷିଣେଶ୍ୱର ଗଲେ । କେବେ କେବେ ସ୍ୱାମୀଜୀ ସେଠାକୁ ମଧ୍ୟ ଚାଲି ଯାଉଥିଲେ, ଜଣା ନାହିଁ ବହୁ ମଧ୍ୟ ତାଙ୍କ ସହିତ ଚାଲି ଯାଇଥିବ । ସେହି ଧୂର୍ତ୍ତ ତାଙ୍କର ସୁନ୍ଦରୀ ବହୁକୁ ନେଇକରି କେଉଁଠିକୁ ପଳେଇ ମଧ୍ୟ ଯାଇପାରେ ଏହି କଳ୍ପନା ସରଳ ଦମ୍ପତିଙ୍କ ନିଷ୍କପଟ ମସ୍ତିଷ୍କରେ ଆସି ନ ଥିଲା ।

ଦିନ କଟିଗଲା, ରାତି ମଧ୍ୟ କଟିଗଲା, ଦୁହେଁ ଅର୍ଦ୍ଧ-ପାଗଳ ପରି ହେଇଗଲେ । ବଡ଼ଝିଅକୁ ଟ୍ରଙ୍କ କଲ କଲେ, ତୃତୀୟ ଦିନ ଜୋଇଁ-ଝିଅ ଆସିଲେ, ଜୋଇଁ ପୋଲିସ୍ ବିଭାଗର ବରିଷ୍ଠ କର୍ମଚାରୀ ଥିଲେ ।

"ଜୟା ଆପଣଙ୍କୁ ପ୍ରଥମରୁ କହି ଦେଇଥିଲା ଅମ୍ମା, ଆପଣ ବହୁକୁ ବହୁତ ସ୍ୱାଧୀନତା ଦେଇ ଦେଲେ । ଚାହିଁଲେ ମୁଁ ବର୍ତ୍ତମାନ ଲମ୍ପଟକୁ ଧରିକରି ଆପଣଙ୍କ ପାଦତଳେ ରଖିପାରିବି । କିନ୍ତୁ କ'ଣ ଆପଣ ତାକୁ ଗ୍ରହଣ କରି ପାରିବେ ?"

ଦୁଇ-ତିନି ଦିନ ପର୍ଯ୍ୟନ୍ତ ସ୍ୱାମୀଜୀଙ୍କର ଅସଂଖ୍ୟ ଦର୍ଶନାର୍ଥୀ ଭକ୍ତ, ଆସି-ଆସି କରି ଫେରିଗଲେ । ସ୍ୱାମୀଜୀ ବଦ୍ରିନାଥ ଚାଲି ଯାଇଛନ୍ତି ।

ଆଉ ବହୁ ?

ସେ ତା'ର ମା'ଙ୍କ ଘରକୁ ଚାଲି ଯାଇଛି, ଏବେ ସେଠାରେ ପଢ଼ିବ, କଲିକତାରେ ତା'ର ମନ ଲାଗିଲା ନାହିଁ । ଏହି ପ୍ରକାରେ ତିବାରୀ ପରିବାରର କଳଙ୍କ କେବଳ ପରିବାରର କିଛି ହିଁ ସଦସ୍ୟ ପର୍ଯ୍ୟନ୍ତ ସୀମିତ ଥିଲା ।

"ପ୍ରବୀରକୁ ଲେଖିକରି କ'ଣ ହେବ" - ଆସିଲା ପରେ ସ୍ୱୟଂ ଜାଣିଯିବ, "କହିକରି ଶାନ୍ତ ପ୍ରକୃତି ରେବତୀଶରଣ ବଡ଼ ଝିଅର ଲେଖିଥିବା ବଡ଼ ଚିଠି ଚିରି ଦେଇଥିଲା ।

ଅମ୍ମା ସୁବୀରର ବଖରାହିଁ କଲୀପାଇଁ ଖାଲି କରି ଦେଇଥିଲା ।

"ଏହି ବଖରାରେ ସବୁଠାରୁ ବେଶି ପବନ ବହେ ଏବଂ ଏକଦମ କୋଣରେ ଅଛି । ଏଇଥିରେ କାହାରି ଆସିବା ଯିବାରେ ମଧ୍ୟ ଡମର, କେବେ କୌଣସି ଅସୁବିଧା ହେବ ନାହିଁ । ଝିଅ, କିନ୍ତୁ ତୁ ଏକେଲା ଡରିବୁ ନାହିଁ ତ ?" ଚିନ୍ତିତ ସ୍ୱରରେ ଅମ୍ମା

ପଚାରିବା ସରଳ ପ୍ରଶ୍ନ କଲୀକୁ ମନକୁ ମନ କୁତୁକୁତୁ ଲାଗିଲା ।

"ସେ କାହିଁକି ଡରିବ ?"

"ମୁଁ ଆଉ ବାବୁଜୀ, ଦୁଇ ବଖରା ଛାଡ଼ି ତୃତୀୟ ବଖରାରେ ଶୋଉ ଆଉ ମହାବୀର ରାତି-ସାରା ଦୃଢ଼ତାର ସହିତ ପହରା ଦିଏ । ଏହି ବଖରାର ଦ୍ୱାର ଏକଦମ ସଡ଼କର ସାମ୍ନାରେ ଖୋଲେ, ତୁମେ ଏଇଥିରେ ଆସି-ଯାଇ ପାରିବ ।"

କଲୀ ପ୍ରାୟ ଖାଇବା ବାହାରେ ଖାଇ ନେଉଥିଲା ଆଉ ଯେବେ ଘରେ ରହୁଥିଲା ଅମ୍ମା ତାକୁ ଜବରଦସ୍ତୀ ନିଜ ସହିତ ବସେଇ କରି ଖୁଆଉଥିଲା ।

ସ୍ୱଦେଶରୁ ଏତେ ଦୂରରେ ଥିଲା, ସେଇଥିପାଇଁ ପାହାଡ଼ର ଚଢ଼େଇ ମଧ ତାକୁ ଭଲ ଲାଗୁଥିଲା । ଲକ୍ଷେ ବଙ୍ଗାଳୀ ହୁଅନ୍ତୁ, କଲୀର ଜନ୍ମ ମଧ ପାହାଡ଼ରେ ହେଇଥିଲା ଆଉ ସେଠାରେ ରହିକରି ବଡ଼ ହେଇଥିଲା । ପୁଣି ବିଚାରି ଝିଅର ନା ମା ଥିଲା ନା ବାପ ଥିଲା । ଦୁହେଁ ହିଁ ତାକୁ ବହୁତ ଛୋଟ ଥିଲାବେଳେ ଦିବଂଗତ ହେଇ ଯାଇଥିଲେ । କୌଣସି ମାଉସୀ ତାକୁ ପାଳି ଥିଲା, ଏହିସବୁ କଥା ବନେଇ ଚୁନେଇ କଲୀ ସରଳ ଅମ୍ମାକୁ ଏମିତି ପ୍ରବର୍ତ୍ତେଇ ଥିଲା ଯେ ସେ ତାକୁ ଭଡ଼ାର କଥା ପକେଇବାକୁ ଦେଉ ନଥିଲା ।

## ଆଠ

ଯେଉଁ ବଖରାରେ କଲୀ ରହୁଥିଲା ତାହାର କାଚ ଲାଗିଥିବା ଆଲମାରିରେ ଏବେ ମଧ ସୁବୀରର ବାହାଘରର ବାସନକୁସନ ସଜା ହେଇଥିଲା - ଏମିତି ହିଁ ସାଧାରଣ ପିତଳ, କଂସା ଆଉ ମୁରାଦାବାଦୀ କଟେକଇ ଥାଳି-ପରାତ, ଲୋଟା, ପିକଦାନୀ, ଯେମିତି ମଧବିତ୍ତ ପାହାଡ଼ି କନ୍ୟାକୁ ଯୌତୁକରେ ମିଳିଥାଏ । ଗୋଟିଏ କୋଣରେ ଏକ ଜୋଡ଼ା ହଳଦିଆ ରଙ୍ଗରେ ରଙ୍ଗ କରା ହେଇଥିବା ହଳଦିଆ ପଟାରେ ଦୁଇଟି ଲାଲ ରଙ୍ଗର ଅସୁନ୍ଦର ଶୁଆ ଲାଲ ଚଞ୍ଚୁରେ ଲେମ୍ବୁ ଲଟକେଇ ଥିବା ଟିକିଏ ମଧ ଅସ୍ପଷ୍ଟ ହେଇ ନ ଥିଲା ।

ଯେଉଁ ସୂକ୍ଷ୍ମ କାରୁକାର୍ଯ୍ୟ ହେଇଥିବା ତଥା ଦର୍ପଣ ଲାଗିଥିବା ପଲଙ୍କରେ କଲୀ ଶୋଉଥିଲା, ସେ ମଧ ସୁବୀର ବାହାଘରର ପଲଙ୍କ ଥିଲା, ସେହି ଜାହାଜ ପରି ପଲଙ୍କରେ କଲୀ ପରି କୋଡ଼ିଏଟି କିଶୋରୀ ଏକା ସାଙ୍ଗରେ ଗଡ଼େଇ ତଡ଼େଇ ପାରିବେ । ଧିରେ ଧିରେ କଲୀ ବଖରାର କାୟା ବଦଳାଇ ଦେଲା । ଯୌତୁକର କଂସାବାସନ ବାଲା ଆଲମାରୀକୁ ସେ ଆକର୍ଷକ ସୂକ୍ଷ୍ମ କାମ ହେଇଥିବା ପରଦାରେ ଢାଙ୍କି ଦେଲା, ଗୋଟିଏ କୋଣରେ ସେ ବାକ୍ସ-ସୁଟ୍‌କେଶ୍‌କୁ ମଧ ଢାଙ୍କି ଢୁଙ୍କି କରି ଛୋଟ ଦୀବାନ ମଧ କରି ଦେଇଥିଲା । ଶୂନ୍‌ଶାନ୍ କମରାର ବଦଳ ସଜ୍ଜାକୁ ଦେଖିକରି ଅମ୍ମା ପ୍ରସନ୍ନ ହେଇ ଯାଇଥିଲା ।

ଏମିତିରେ ଦୀବାନ ଉପରେ ଟଙ୍ଗା ହୋଇଥିବା ଦୁଇଟି ଅଶୁଭ ଚିତ୍ରକୁ କାଢ଼ିଦେଇ ସେ ବଖରାର କିଛି ଅଂଶରେ ଆହୁରି ମଧ୍ୟ ସାଜସଜ୍ଜା କରି ପାରିଥାନ୍ତା, କିନ୍ତୁ ସେ ମନକୁ ମନ ବୁଝିଥିଲା ଯେ - ମୃତ ଯୁବା ପୁତ୍ରର ବଖରାରେ ଲାଗିଥିବା ସେହି ଚିତ୍ରକୁ କଲୀର ଆଖିକୁ ଲୁଚେଇ ଅମ୍ମା ପ୍ରତ୍ୟେକ ଦିନ ମମତାରେ ଦେଖି ଯାଉଥିଲା, ଏତେ ବଡ଼ କୋଠାରେ କମକରି ବାରଟି ବଖରା ଥିଲା । ତେବେ ମଧ୍ୟ ଅମ୍ମା ତାକୁ ସେହି ବଖରାରେ କାହିଁକି ରଖିଥିବ ? ହୁଏତ କମରାର ଶୂନ୍ୟତାରୁ ସେ ସ୍ୱୟଂ ମୁକ୍ତି ପାଇବାକୁ ଚାହୁଁଥିଲା ।

ଉଠୁଣୁ-ବସୁଣୁ, ଶୋଇବା-ଚେଇଁବା, ପତଳା ନିଶ ମଝିରେ ନିଜର ବଙ୍କା ହସର ପ୍ରେତର ନିର୍ଜୀବ ଚିତ୍ରଟି କଲୀକୁ ଖରାପ ଭାବରେ ଭୟଭୀତ କରୁଥିଲା । କେବେ କେବେ ସେ ଟେବୁଲ କ୍ଲଥ୍ ନେଇ ତାକୁ ଢାଙ୍କି ଦେଉଥିଲା ।

କାନ୍ଥର ଅନ୍ୟଦିଗରେ ପୁରା ପରିବାରର ଗୋଟିଏ ଗ୍ରୁପ୍ ଫଟୋ ଲାଗିଥିଲା, ଯାହାର ସଦସ୍ୟମାନଙ୍କର ଅଧା ଦେହ ଉଇ ଫଟୋର ଚଉକାଠ ଭିତରେ ପହଞ୍ଚି ଖାଇ ସାରିଥିଲେ । ଫଟୋ ହୁଏତ ପଚିଶ-ତିରିଶ ବର୍ଷ ପୂର୍ବର ଥିଲା । ହଳଦିଆ ରଙ୍ଗର ଚିତ୍ର ଉପରେ ଚାରିଦିଗରେ ଆହୁରି ରଙ୍ଗୀନ ଅଙ୍କିତ ଚିତ୍ର ତିଆରି ହୋଇ ଯାଇଥିଲା । ଗୃହସ୍ୱାମୀ ସେହି ଯୁଗର ସାହେବି ବେଶଭୂଷାରେ ଜମେଇ କରି ବସିଥିଲେ । ପାରସି ଢଙ୍ଗରେ, ଖୁବ ଲମ୍ବା ପଣତ ଲଗେଇ, ଆଣ୍ଠୁ ଉପରେ ଦୁଇ ହାତ ରଖି ଅମ୍ମା ହସୁଥିଲା । ଆଖପାଖ ଆଣ୍ଠୁ ପର୍ଯ୍ୟନ୍ତ ସ୍କର୍ଟ ଆଉ ମଝିରେ ଜାପାନି କଣ୍ଢେଇ ପରି ଦୁଇ ଝିଅ ଏବଂ ସେଲର ସୁଟ୍‌ରେ ଜାଆଁଳା ପରି ମନେ ହେଉଥିବା ଦୁଇ ଭାଇ ଜଣେ ଅନ୍ୟର ହାତଧରି ସଂକୋଚରେ ଛିଡ଼ା ହୋଇଥିଲେ, ଦୁଇ ଚିତ୍ରକୁ କାଢ଼ିଦେଲେ ବଖରାଟି ନିଶ୍ଚୟ ଉଜ୍ଜ୍ୱଳ ହୋଇ ପାରିଥାନ୍ତା, କିନ୍ତୁ କଲୀ ଜାଣି-ଶୁଣିକରି ଦୁଇଟିକୁ ସେଠାରେ ରହିବାକୁ ଦେଇଥିଲା । ଏକରେ ସେ ଘରେ ବହୁତ କମ ସମୟ ରହୁଥିଲା । ଏଠାରେ କେତେକ ବିଦେଶୀ ଅତିଥିଙ୍କୁ ନେଇକରି ତାକୁ ଲମ୍ବା ଯାତ୍ରାରେ ଯିବାକୁ ପଡୁଥିଲା । ଆଗ୍ରା, ଦିଲ୍ଲୀ, ନାଗାର୍ଜୁନ, ଭାଖଡ଼ା ଆଦି ବୁଲେଇ-ବାଲେଇ ପୁରା ମାସକ ପରେ ଫେରୁଥିଲା ।

ଆସିଲା ମାତ୍ରେ ସେ ଦେଖିଲା ଗୋଲ ବଖରାର ଦରଜାରେ ଆକର୍ଷକ ପରଦା ଲାଗିଛି । ଜଣାନାହିଁ କେଉଁଠାରୁ ଧାଡ଼ି ଧାଡ଼ି ଫୁଲ କୁଣ୍ଡ ଆସି ରହିଛି । ଗୋଟିଏ ଦଶ-ବାର ବର୍ଷର ଗୋଲଗାଲ ଗୋରା ଝିଅ, ଲୁହାର ଫାଟକରେ ଦୁଇ ପାଦ ରଖିକରି ଦୋଳିରେ ଝୁଲୁଥିଲା । କଲୀର ଗାଡ଼ି ଦେଖିଲା ମାତ୍ରେ ଡେଇଁକରି ଭିତରକୁ ଚାଲିଗଲା ।

ଅଫିସର ଲମ୍ବା ଗାଡ଼ି କଲୀର ସୁଟକେଶ୍ ଓହ୍ଲେଇ ଦେଇ ଚାଲିଗଲା ।

ତା'ର ଅନୁପସ୍ଥିତିରେ ହୁଏତ ଅମ୍ମାର ବଡ଼ ଝିଅର ପରିବର ଆସିଥିବେ । ବର୍ଷରେ ଥରେ ଶୀତଦିନର ଛୁଟିରେ ଅମ୍ମାର ଦୁଇ ଝିଅ ପାହାଡ଼ରୁ ଆସୁଥିଲେ । ଦୋଳିରେ ଝୁଲୁଥିବା ଝିଅ ହୁଏତ କଲୀର ଆସିବାର ସୂଚନା ଦେଇ ଆସିଥିଲା । କଲୀ ପ୍ରଥମେ ଭାବିଲା ସ୍ୱୟଂ ହିଁ ଅମ୍ମାକୁ ଯାଇକରି ନିଜର ଆସିବାର ସୂଚନା ଦେଇ ଆସିବ । ତାକୁ ଏବେ ପୁଣି

ଦ୍ୱିପ୍ରହରର ଗାଡ଼ିରେ ଲଖନଉ ଯିବାର ଥିଲା । ଚିକନର ସାଢ଼ୀର କୌଣସି ପ୍ରଦର୍ଶନର ମଡ଼େଲ ହେବାର ବନ୍ଧନରେ ସେ କିଛି ନବୁଝି-ନଶୁଝି ହିଁ ଦସ୍ତଖତ କରି ଦେଇଥିଲା । ସେତେବେଳେ କ'ଣ ଜଣାଥିଲା । ଏହି ଏକ ମାସ ଭିତରେ ତାହାର ହାଡ଼ସବୁରେ କଷ୍ଟ ହେବ ।

"ଆରେ, ତୁ ଆସିଗଲୁ ! ଗୋଟିଏ ତାର କରି ଦେଇଥାନ୍ତୁ ତାହେଲେ ମହାବୀର ଷ୍ଟେସନ ଚାଲି ଯାଇଥାନ୍ତା, ଗାଡ଼ିତ ଗ୍ୟାରେଜରେ ହିଁ ଦିନ-ରାତି ପଡ଼ି ରହିଥାଏ", କହୁ କହୁ ଅମ୍ମା ଆସିକରି ମୋଡ଼ା ଉପରେ ବସିଗଲା ।

"ନା ଅମ୍ମା, ଅଫିସର ଷ୍ଟାଫ୍ କାର ଆସି ଯାଇଥିଲା । ମତେ ବର୍ତ୍ତମାନ ପୁଣି ତିନିଦିନ ପାଇଁ ବାହାରକୁ ଯିବାକୁ ପଡ଼ିବ ।" ଏକ ମାସ କାଳ ବୁଲିବୁଲି କଲୀର ମୁହଁ ଝାଉଁଳି ପଡ଼ିଥିଲା ।

"ଚୁଲ୍ଲିରେ ଯାଉ ଏ ଚାକିରି", ଅମ୍ମା ଅସନ୍ତୁଷ୍ଟ ସ୍ୱରରେ କହିବାକୁ ଲାଗିଲା । "ଏହା ମର୍ଧ କ'ଣ ଯେ ବାଳିକାକୁ ବୁଲେଇ-ବାଲେଇ ମାରି ପକାଅ, ଜୟା-ମାୟା ଦୁହେଁ ଆସି ଯାଇଛନ୍ତି । ମାୟା ତ ଆଜି ନିଜର ବାନ୍ଧବୀ ସହିତ ଦେଖା କରିବାକୁ ଯାଇଛି, ତୁ ଗାଧେଇ-ପାଧେଇ ଆ, ତୋ ସହିତ ସମସ୍ତଙ୍କୁ ପରିଚୟ କରେଇ ଦେବି ।" ଝିଅମାନଙ୍କର ପରିବାର ଆସିଯିବାରୁ ଆମ୍ମାର ଚେହେରାରେ ଯେମିତି ନୂତନ ଦୀପ୍ତି ବଢ଼ିଯାଇଥିଲା ।

କଲୀ ଗାଧେଇ-ପାଧେଇ କରି ଆଉ ସ୍ୱୟଂ ନିଜର ଚେହେରା ତାହାର ଆଖିରେ ଅଜଣା ହେଇ ଧକ୍କା ଖାଇଗଲା କେମିତି ଦୁର୍ଦ୍ଦଶା ହେଇ ଯାଇଥିଲା ଚେହେରାର, ଫୁଲା-ଫୁଲା ଆଖି ତଳେ କଳା ଦାଗ, ରୁକ୍ଷ ବାଳ ।

ଶରୀର ପ୍ରତି ପ୍ରକୃତରେ ଅନ୍ୟାୟ କରୁଥିଲା । ରାତି-ଦିନ ବୁଲିବା, ତା ଉପରେ ଅଖାଦ୍ୟ ।

ଏମିତି ସେ ବା ଆମ୍ମାର ଝିଅମାନଙ୍କ ସହିତ ସାକ୍ଷାତ କରି ପାରିଥାନ୍ତା । କେତେ ରାତିର ସମବେତ ଜାଗରଣ ପୁରା ଚେହେରାରେ ଫୁଟି ଉଠିଥିଲା । ସେ ପ୍ରଥମେ ଖୁବ୍ ଡେରି ପର୍ଯ୍ୟନ୍ତ ପୁରା ଜୋରରେ ପାଇପ ଖୋଲିକରି ତାରି ତଳେ ବସି ରହିଥିଲା । ବିଜୁଳୀରେ ବାଳ ଶୁଖେଇ କଳିଙ୍ଗ ପିନ୍ ଖୋଲିକରି ଓ ଗୁଛା-ଗୁଛା ନରମ ବାଳକୁ କାନ୍ଧ ଉପରେ ବିଛେଇ ଦେଲା ବଙ୍କା ସିନ୍ଥୀ ବାହାରିବାରୁ ତା'ର ଚେହେରା ଆହୁରି ପିଲାଳିଆ ହେଇ ଯାଉଥିଲା । ପୁଣି ସେ ତା'ର ସବୁଠାରୁ ସୋବର ସାଢ଼ୀ ବାହାର କଲା । ଆନ୍ଧ୍ର ଖଦଡର ଅଫ୍-ହ୍ୱାଇଟ୍ ସେହି ସାଡି ଯାହାକୁ ପିନ୍ଧି ସେ ମାଡ୍ରାସ ହେଣ୍ଡଲୁମ୍ ଏମ୍ପୋରିୟମରେ ଦେଶ-ବିଦେଶରୁ ଏକତ୍ରିତ ହେଇଥିବା ପଚିଶ ମଡ଼େଲର ସୁନ୍ଦର ଚେହେରାରେ ଝାଡୁ ମାରି ରଖି ଦେଇଥିଲା । ଆଉ ଏକ ଲାଲ ଜରିର ପଣତ ଅନ୍ୟପାଖରେ କଳା ମାଟିର ଧଡ଼ିରେ, ଜରିର ଚମକୁଥିବା ବିଦ୍ୟୁତ ବହ୍ନି, ଯାହା କୌଣସି ବିଜୁଳୀ ପରି ପଡ଼ି ଯାଉଥିବା

ଲୋକକୁ ବିସ୍ଫୋଟର ପ୍ରଥମରୁ ହିଁ ଭସ୍ମୀଭୂତ କରି ଦେଉଥିଲା । କାନରେ ସେ କେବଳ ହୀରାର ଚକଚକ କରୁଥିବା କର୍ଣ୍ଣଫୁଲ ହିଁ ପିନ୍ଧୁଥିଲା । ଏହି କର୍ଣ୍ଣଫୁଲର ସ୍ୱାମିନୀ ହେବା ପାଇଁ ତାକୁ ଜୀବନକୁ ହାତର କଟୋଟିରେ ରଖି, ଚାଲୁଥିବା ଟ୍ରେନ୍‌ରୁ ଡେଇଁବାକୁ ପଡ଼ିଥିଲା ।

କେମିତି ଦୁଃସାହସୀ କଳିଜା ଥିଲା ସେତେବେଳେ । ଆଉ ଏବେ ?

ଏକ ଲମ୍ବା ସମୟ ପର୍ଯ୍ୟନ୍ତ ସେ ନିଆଁ ପ୍ରଜ୍ୱଳିତ କରି ବଡ଼ ଚୁଲିରେ ହାତ ଦେଇ ଖୋଲିବାରେ ଲାଗିଥିଲା, କିନ୍ତୁ ବର୍ତ୍ତମାନ ଗୋଟିଏ ସାମାନ୍ୟ ଅଗ୍ନିକଣା ତାକୁ ଭୟଭୀତ କରି ଦେଉଥିଲା । ପକ୍ଷୀର କଳିଜା ହେଇ ଯାଇଥିଲା ତାହାର । କେବେ-କେବେ ହଠାତ୍ ସେ ନିଦରେ ହିଁ ଜୋରରେ ଚିତ୍କାର କରି ଅଗୁଥିଲା । ମନେହେଉଥିଲା, କିଏ ଛାତି ଉପରେ ଚଢ଼ି ତା'ର ତଣ୍ଟିକୁ ଚିପି ଦେଉଛି । ନିଜର କଣ୍ଠରୁ ବାହାରି ଥିବା, ଗୋଁ ଗୋଁ କରି ଅସ୍ୱାଭାବିକ ଭୟଭୀତ କରିବା ଶବ୍ଦରେ ସେ ନିଜେ ସ୍ୱୟଂ ହିଁ ଲଜ୍ଜିତ ହେଇ ନିଦରୁ ଉଠି ବସୁଥିଲା । ଝାଳ-ନାଳ ହେଇ, ସେ ପୁଣି ବହୁତ ଡେରି ପର୍ଯ୍ୟନ୍ତ ଶୋଇ ପାରୁ ନ ଥିଲା ।

ନିଜର କମ୍ପାନୀର ଡାକ୍ତର ଗୁପ୍ତା ପାଖକୁ ସେ ଗଲା, ସେ ହସିକରି କହିଥିଲେ, ନର୍ଭସ ମିସ୍ ମଜୁମଦାର ନର୍ଭସ, ବାହା ହେଇ ଯାଅ, ବେଶ୍ ପୁଣି ଆଉ କେହି ଛାତି ଉପରେ ବସି ତଣ୍ଟି ଚିପିବ ନାହିଁ ।

ହାତର ଛୋଟ ଘଡ଼ିକୁ ଆଉଁଷି କରି କଲୀ ମଣିବନ୍ଧରେ ଲଗେଇଲା । ଚାରି ଦିଗରେ ହୀରାର ବର୍ତ୍ତୁଳାକାର ଧାଡ଼ିରେ ଘେରିଥିବା ଘଡ଼ିର ଭିତରେ ବଙ୍କା-ଟଙ୍କା ରୋମାନ ଅକ୍ଷର ଛୋଟ ପିମ୍ପୁଡ଼ି ପରି ଚକ୍‌ଚକ୍ କରୁଥିଲା । ଏହି ଘଡ଼ି ଲୌରୀନ ଆଣ୍ଟିର ଉପହାର ଥିଲା । ଥରେ ଏକା ଥରକେ ତିନୋଟି ଘଡ଼ି ସ୍ମଗଲ କରିବାର କଠିଣ ଦାୟିତ୍ୱ ଲୌରୀନ କଲୀକୁ ଦେଇଥିଲା ଏବଂ ସେହି ଦାୟିତ୍ୱ ସଫଳତା ପୂର୍ବକ ନିର୍ବାହ କରିବାର ପୁରସ୍କାର ସ୍ୱରୂପ ସେହି ଖୁବ୍ ସୁନ୍ଦର ଘଡ଼ି ପାଇଥିଲା । କୋଳରେ ଥିବା ଭଡ଼ାରେ ଆଣିଥିବା ଏକ ଶିଶୁ ଆଉ ସେହି ଶିଶୁର ନେପକିନରେ ତୁଳା ଭିତରେ ଖୁନ୍ଦା ଖୁନ୍ଦି ହେଇ ବିଦେଶି ଘଡ଼ି ଥିଲା । ଏମିତି ଶ୍ରେଷ୍ଠ ଶିଶୁ କଲୀ ତା ଜୀବନରେ ପ୍ରଥମ ଥର ଦେଖିଥିଲା । ବମ୍ବେରୁ କଲିକତା ପର୍ଯ୍ୟନ୍ତର ଯାତ୍ରା ଏବଂ ଶକ୍ତି ଯେ ଥରେ ହେଲେ କାନ୍ଦି ନାହିଁ ।

ଦେଖିବାକୁ ଏମିତି ଗୋଲାପ ଫୁଲ ପରି ଯେମିତିକି ମହମ ଢଳା ହେଇଛି । ସେହି ଡବୀରେ ଝିଅମାନଙ୍କର ଗୋଟିଏ ମନୋହର ଟିମ ବମ୍ବେରୁ କଲିକତା ଯାଉଥିଲା । ଲମ୍ବା-ଲମ୍ବା ପୁରୁଷ ଚେହେରା ବାଲୀ ସବୁ ବାଳିକା ଥିଲେ । ସେହି ଘୋଡ଼ାମୁହିଁ ମାନଙ୍କର ଦଳ ନିଜର କୋଚ ଆଉ ମୋଟୀ ମେନେଜର ସହିତ କଲୀର କୋଳର ଶିଶୁର ପଛରେ ଯେମିତିକି ପାଗଳ ହେଇ ଯାଇଥିଲେ ।

"ଇଏ ଆପଣଙ୍କ ପିଲା ? ସତରେ, କିଏ ବିଶ୍ୱାସ କରିବ", ତାଙ୍କର ଲମ୍ବା କୋଚ

କହିଥିଲା ।

"କାହିଁକି ?" କଲୀ ସଂକୋଚ କରି ପଚାରି ଥିଲା । କେଉଁଠି ସି.ଆ.ଡ଼ି. ଶୁଙ୍ଘି ଦେଇ ନାହିଁ ତ ?

"ନା ଆଜ୍ଞା, କ୍ଷମା କରିବେ, ଆପଣ ତ ନିଜେ ପିଲା ମନେ ହେଉଛନ୍ତି", ଆଉ ନିଜର ବତିଶି ଦାନ୍ତ ଦେଖେଇ କରି ସେ ହିଁ ହିଁ କରି ହସିବାକୁ ଲାଗିଥିଲା ।

ଟିମର ପ୍ରତ୍ୟେକ ବାଳିକା ତାକୁ ଜଣ-ଜଣ କରି କୋଳକୁ ନେଇଗଲେ, ହକିଷ୍ଟିକ ପରି ହେଇଗଲା, ସଙ୍କଟରେ ପଡ଼ିଥିବା ଥୁଣ୍ଟା ଗଛ ପରି ବାହୁରେ ଡେଇଁଲା, କୁତୁକୁତୁ କଲା, ଚୁମା ଦେଲା, କିନ୍ତୁ ଶହେ କୋଡ଼ିଏ ବିଦେଶୀ ଘଡ଼ିଗୁଡ଼ିକୁ ଲେଙ୍ଗୁଟି ବନ୍ଧା ଥିବା ଶିଶୁ ପହେଲବାନ, କେଲେଣ୍ଡରର ପିଲାମାନଙ୍କ ହସରେ ସମସ୍ତଙ୍କୁ ମୋହିବାକୁ ଲାଗିଲା । ଲୌରୀନ ଆଣ୍ଟିର ଏହି ଅନ୍ତିମ କାମ କରିଥିଲା କଲୀ । ସେହି ରାତିରେ ଆଣ୍ଟି ତାହାର ମଣିବନ୍ଧରେ ଚୁମାଦେଇ ତାକୁ ଘଡ଼ି ପିନ୍ଧେଇ ଦେଇଥିଲା ।

"ସୁନାରେ ଘୋଡ଼େଇ ରଖିବା ପରି ଅଟେ ଏହି ଦକ୍ଷ ମଣିବନ୍ଧ ଆଉ ଏହି ଚେହେରା । ଏହା ତୁମର ସବୁଠାରୁ ବଡ଼ ଅସ୍ତ୍ର ଅଟେ କଲୀ ।"

"କାହିଁକି ଆଣ୍ଟି ?" ନ ଜାଣିଲା ପରି କଲୀ ପଚାରି ଥିଲା ।

"କାହିଁକି ? ଏଇଥି ପାଇଁ ମୋର ଝିଅ, ଯଦି କାହାର ଖୁନ ମଧ୍ୟ କରିଦେବୁ, ତେବେ ମଧ୍ୟ ଅଦାଲତ ତତେ ଛାଡ଼ି ଦେବ - ଏମିତି ନିର୍ଦ୍ଦୋଷ ଚେହେରା, ଏମିତି ନିଷ୍ପାପ ଆଖି ଆଉ ଦେଶୀ ମୁଣ୍ଡଲଣ୍ଡା କରିବା ଧାରୁଆ ଛୁରି ପରି ତେଜ ଅଙ୍ଗୁଳିଗୁଡ଼ିକ ।"

କଲୀ ଗର୍ବରେ ଦର୍ପଣକୁ ଆହ୍ୱାନ ଦେଲା । ହାତରେ ବଟୁଆ ଆଉ କାନ୍ଧରେ ଏୟାର ବେଗ ନେଇ ସେ ଅମ୍ମାର ପରିବାର ସହିତ ସାକ୍ଷାତ କରିବାକୁ ଚାଲିଗଲା ।

"ଦେଖ ଆସିଗଲା କଲୀ, ଏଇ ମାତ୍ର ତୋର ହିଁ କଥା କହୁଥିଲି । ବହୁତ ଆୟୁଷ ତୋର ଅଛି । ଇଏ ହେଉଛି ମୋର ବଡ଼ ଜୋଇଁ ଦାମୋଦର ଆଉ ଇଏ ଛୋଟ ହେଉଛି ନବୀନ, ଇଏ ଜୟା ଅଟେ, ମାୟା ତ ଜଣା ନାହିଁ କେବେ ଫେରିବ ।"

ବହୁତ ନମ୍ରତା ସହକାରେ ନଇଁପଡ଼ି କଲୀ ଭାରତ ନାଟ୍ୟମର ନର୍ତ୍ତକୀ ପରି ମୁଦ୍ରାରେ ନମସ୍କାର କଲା ଆଉ ଅମ୍ମାର ପାଖକୁ ଚଉକି ଟାଣିକରି ବସିଗଲା ।

"ମୁଁ ଏଇମାତ୍ର ଏମାନଙ୍କୁ କହୁଥିଲି ଯେ, ଏହି ତିନି ମାସରେ କଲୀ ଅତି କମ୍‌ରେ ଦେଢ଼ ମାସ ମୋ ପାଖରେ ରହିଥିବ । ତେବେ ମଧ୍ୟ ମତେ ଏମିତି ଲାଗେ ଯେମିତି ବରଷ ବରଷ ଧରି ମୋ ସହିତ ରହିଛି", ଅମ୍ମା ପାନ ବିଡ଼ାଏ ମୁହଁରେ ଚୋବେଇ ଚୋବେଇ ବଡ଼ ନିଜର ପରି କଲୀର ପିଠି ଥାପୁଡ଼େଇ କହିବାକୁ ଲାଗିଲା, "ଆଉ ଏହି ପଳାତକର ଏହି ଅବସ୍ଥା ଯେ ଯେତେବେଳେ ଦେଖ ସେତେବେଳେ ଏୟାର ବେଗ କାନ୍ଧରେ ଲଗେଇ ଚଢ଼େଇ ପରି ଉଡ଼ିବାକୁ ପ୍ରସ୍ତୁତ । ମନେ ହେଉଛି, ଆଜି ପୁଣି ଉଡ଼ିବାକୁ ଯାଉଛି, କାହିଁକି ଝିଅ ?

"ନା ଅମ୍ମା", କଳୀ ହସିଲା । ନିଜର ଗୋଟିଏ ହସର ଘାତକ ପ୍ରହାରରେ ସେ ଅମ୍ମାର ଦୁଇ ପ୍ରଭାବିତ ଜୋଇଁଙ୍କୁ ପାଗଳ କରି ଦେଲା, ଏହା ବୁଝିବାକୁ ତାକୁ ଡେରି ହେଲାନାହିଁ ।

ସେ ଆଶ୍ୱସ୍ତ ହେଇକରି ଏବେ, ନିଜର ଅନ୍ୟ ପ୍ରାଣଘାତକ ଅସ୍ତ୍ର ଛାଡ଼ିଦେଲା, ବିଳମ୍ବିତ ହସର ଦର୍ପଣରେ ସେ ଜାଣି-ଶୁଣି ଦୁଇ ଆକର୍ଷିତ ଗାଲର ଖାଲର ଚମକ ସେ ଦୁଇ ପୁରୁଷଙ୍କ ଆଖିକୁ ଚକଚକ କରିଦେଲା ।

"ଏଇ ଥର ଉଡୁନାହିଁ ଅମ୍ମା, ଟ୍ରେନରେ ହିଁ ଯିବାକୁ ହେବ ।"

"କେବେ ଫେରିବୁ ?"

"ଜଣା ନାହିଁ ଅମ୍ମା; ମୋର ଏହି ଭିନ୍ନ ଧରଣର ଚାକିରିରେ ତ ସବୁବେଳେ ଯିବା ନିଜ ପାଦରେ ହେଉଛି ଆଉ ଫେରୁଛି ପରର ପାଦରେ ।"

ଅମ୍ମାର ବଡ଼ ଜୋଇଁ ଦାମୋଦର ପ୍ରସାଦ କଳୀକୁ ଆଖିରେ ଆଖିରେ ପିଇ ଯାଉଥିଲା, ଏହା ହୁଏତ ତା'ର ଚିଡ଼ିଚିଡ଼ି ହେଉଥିବା ପତ୍ନୀ ଦେଖି ନେଇଥିଲା ।

"କ'ଣ ମହାଶୟ, ଆଜି ଗାଧେଇବା-ପାଧେଇବା ହେବ ନାହିଁ ନା କ'ଣ, ଅମ୍ମା କେତେବେଳ ପର୍ଯ୍ୟନ୍ତ ତମର ଖାଇବା ଧରି ବସି ରହିବ ?"

ଜୟାର ରୁକ୍ଷ କଣ୍ଠ-ସ୍ୱର ଶୁଣିଲା ମାତ୍ରେ କଳୀ ପଲକ ମାତ୍ରକେ ବୁଝି ନେଲା ଯେ, ତା'ର ଅନୁପସ୍ଥିତିରେ ମାତୃଗୃହରେ ହଠାତ୍ ପହଞ୍ଚି ସୁନ୍ଦରୀ କଳୀକୁ ଦେଖିକରି ସେ ନିଶ୍ଚୟ ହିଁ ପ୍ରସନ୍ନ ହେଇ ନାହିଁ ।

"ଏବେ ତ ଦଶହିଁ ବାଜିଛି ଅପା", ଛୋଟ ଜୋଇଁ ନିଜ କାନ ପାଖର ବାଳକୁ ଠିକ୍ କଲା, "ଶ୍ୱଶୁର ଘରକୁ ଆମେ ଆସିଛୁ, ଏଠାରେ ଭୋଗ-ବିଳାସ ନ କରିବୁତ ତେବେ କେଉଁଠି କରିବୁ ?" ପୁଣି ସେ କଳୀ ଆଡ଼କୁ ଦେଖିକରି ହସିବାକୁ ଲାଗିଲା । ତା'ର ପରିହାସରେ ଚିଡ଼ିଯାଇ ଜୟା ଆହୁରି ନିଆଁପରି ଜଳି ଉଠିଲା ।

"ଆଜ୍ଞା ହଁ, ମାୟା ନାହିଁ ତ ସେଇଥି ପାଇଁ ମଧୁର କଥା ବାହାରୁଛି । ସେ ଥିଲେ ତ ଯାଙ୍କର ପାଟିରୁ କଥା ବାହାରି ନଥାନ୍ତା ।"

ଦାମୋଦର ପ୍ରସାଦର କ୍ଷୁଧାତୁର ଦୃଷ୍ଟି ଏବେ ପର୍ଯ୍ୟନ୍ତ କଳୀର ଅର୍ଦ୍ଧାଙ୍ଗ ଗିଳି ସାରିଥିଲା । ଏବେ ସେ ବହୁତ ମନୋଯୋଗ ସହିତ ସେହି ମନ୍ଦୋଦରୀର କ୍ଷୀଣ କଟିକୁ ନିଜର ଆଖିର ଇଞ୍ଚ ଟେପରେ ମାପୁଥିଲା । କିନ୍ତୁ ସେ କ'ଣ ପ୍ରଥମ ପୁରୁଷ ଥିଲା ଯାହାର ଆଖି କଳୀର ଏହି ସୁଡ଼ୌଲ କଟିକୁ ଦେଖି ବହୁମୂଲ୍ୟ ପଥର ପରି ଅଚେତନ ହେଇ ଯାଇଛନ୍ତି ?

"ମନେ ହେଉଥିଲା ଆମର ବିଦେଶୀ ଭକ୍ତି ତମର ହିଁ ଏହି ହାତମୁଠାରେ ଧରି ହେଉଥିବା ଅଣ୍ଟା ପାଇଁ ଲେଖାଯାଇଛି ମିସ୍ ମଜୁମ୍ଦାର"-ଫ୍ରେଞ୍ଚ ପରଫ୍ୟୁମର ବୋତଲକୁ ଗାଲରେ ଲଗେଇ କରି ସେହି ବିଜ୍ଞାପନ ଥିବା ଚିତ୍ର ଉଠେଇ ଥିବା ବିଦେଶୀ ଫଟୋଗ୍ରାଫର

ତା'ର କାନ ପାଖରେ ଆସି ଫୁସ୍ ଫୁସ୍ କରି କହି ଯାଇଥିଲା - "ଜାଣିଛ କେଉଁ ବିଦେଶୀ ଉକ୍ତି ? ୟୁ ସୁଡ୍ ଅଲଉୟେଜ ହୋଲ୍ଡ ଏ ବୋଟଲ ବାଇନେକ ଏଣ୍ଡ ଏ ଓମେନ ବାଇ ହାର ୱେଷ୍ଟ ।"

ଆଜି ଦାମୋଦର ପ୍ରସାଦକୁ ସେହି ଉକ୍ତିର ମୂକ ପୁନରାବୃତ୍ତି କରିବା ଦେଖି କଲୀ ମନକୁ ମନ ହସିବାକୁ ଲାଗିଲା । ଗୋଟିଏ ଟିନଏଜର ଝିଅର ପିତା ହେଉଛି ଏହି ବ୍ୟକ୍ତି, କିଏ କହିବ ?

ଆଉ ଯାହା ହେଉ, ଅମ୍ମା ଖୁବ୍ ଦେଖି-ଚାହିଁ କରି ଜୋଇଁ ବାଛି ଥିଲେ । ରଙ୍ଗ ସଫା ନ ହେଇ ମଧ ଦାମୋଦର ପ୍ରସାଦର ଶରୀର ଆଉ ଚେହେରାର ଆଡ଼ମ୍ବରରେ କିଛି ରାଜପୁତୀ ଚମକ ଥିଲା । କିନ୍ତୁ ଗମ୍ଭୀର ଚେହେରାରେ ମିଶିଯିବା ପରେ ଚଞ୍ଚଳ ଦୃଷ୍ଟି ପୁରାପୁରି ମିଶୁ ନଥିଲା । ମନେ ହେଉଥିଲା, ସ୍ୱଭାବତଃ ଏହି ବ୍ୟକ୍ତି ଏମିତି ନ ଥିଲା ଯେମିତି ସେ ଗମ୍ଭୀର ହେବାର ଚେଷ୍ଟା କରୁଥିଲା । ଏକ ଅନୁସନ୍ଧାନୀ ଦୃଷ୍ଟିର ଫୋକସ ସେହି ପତଳା ସୂତାରେ ବନ୍ଧା ମୁଖୋସକୁ ବହୁତ ସହଜରେ ଓହ୍ଲେଇ ପାରିଥାନ୍ତା । ବହୁତ ଯତ୍ନ ଆଉ ନିୟମିତ ଅଭ୍ୟାସରେ ଢାଙ୍କିଥିବା ଗମ୍ଭୀରତା, ସାମାନ୍ୟ ଉତ୍ତେଜନାରେ ପ୍ଲାଷ୍ଟିକର ଖସି ଯାଉଥିବା ଆବରଣରେ ହିଁ ଖସିଯାଏ, କଲୀକୁ ଦେଖିକରି ସେ ସ୍ୱୟଂ ହିଁ ମୁଖୋସ ଓହ୍ଲାଇ କରି ବୁଲି ଯାଉଥିଲା । ଏକରେ ବହୁ ବିଳମ୍ବରେ ତା'ର ନିଯୁକ୍ତି ସଭ୍ୟତାର ପଛରେ ରହିଯାଇ ପୁରାପୁରି ଜଙ୍ଗଲୀ ଇଲାକାରେ ହେଉଥିଲା । ଉତ୍ତରାଖଣ୍ଡର ସୀମାବର୍ତ୍ତିତ ଇଲାକାରେ ମୋଟା ନାକ ଆଉ ଧୂଆଁଳିଆ ଆଖିବାଲା ଭୋଟିଆ ସ୍ତ୍ରୀମାନଙ୍କୁ ଦେଖି-ଦେଖି ତାର ଆଖିକୁ କଷ୍ଟ ହେବାରେ ଲାଗିଥିଲା । ସେ ଏକହିଁ ବର୍ଷ ସେଠାରେ ରହିକରି ଅତି ଖରାପ ଭାବରେ କ୍ଳାନ୍ତ ହେଇ ଯାଇଥିଲା । ଏଇଥି ପାଇଁ କଲିକତା ଆସିବା ପରେ ତାକୁ ଯାମିନୀ ରାୟର ଚିତ୍ରାଙ୍କିତ ଆଖିବାଲୀ ଶ୍ୟାମଳ କୃଷ୍ଣବର୍ଣ୍ଣ ବିଶିଷ୍ଟ ସୁନ୍ଦରୀ ସାମାନ୍ୟ ଚେହେରାର ବଙ୍ଗାଳୀ ବାଳିକା ଅପ୍ସରା ପରି ଲାଗୁଥିଲେ । ତା ଉପରେ କଲୀ କ'ଣ ସାଧାରଣ ସୌନ୍ଦର୍ଯ୍ୟର ଶ୍ରେଣୀରେ ଅନ୍ତର୍ଭୁକ୍ତ ଥିଲା ।

ଅମ୍ମାର ଛୋଟ ଜୋଇଁ ନବୀନ ମଧ ଦୁଇ ପୁତ୍ରର ପିତା ଥିଲା, ତେବେ ମଧ ଚାହିଁଲେ ଏବେ ମଧ ବରବେଶ ସାଜି ବର ହେଇପାରିବ । ତା'ର ଚେହେରା ଲକ୍ଷେ ଲୋକର୍ ଲୋକ ଗହଳିରେ ଦେଖିଲେ ମଧ, କଲୀ ଚିହ୍ନି ପାରିଥାନ୍ତା ଯେ ସେ ନୈନିତାଲ ବା ଆଲମୋଡ଼ାର ହେବ । ପୁରାପୁରି ସଫା ଚିକ୍କଣ ରଙ୍ଗ, ଝିଅମାନଙ୍କ ପରି ବହୁତ ରସରସିଆ ଗଭୀର ଲିପଷ୍ଟିକ୍ ଲଗେଇଛି ପରି ମନେହୁଏ ।

"ଏଇ ଅମ୍ମା, ମୁଁ ତୁମର କଲିକତାରେ ଶଳେ ମଶା ବହୁତ ଅଛନ୍ତି, ସାରା ରାତି ଶୋଇପାରି ନାହିଁ ।" ସେ ପ୍ରଥମ ଥର ମୁହଁ ଖୋଲିଲା ଆଉ ନିଜର ଗୋରା ଗୋରା ବାହୁକୁ କୁଣ୍ଡେଇବାକୁ ଲାଗିଲା ।

"ଜଣାନାହିଁ ତମକୁ କେମିତି ମଶା କାମୁଡୁଛନ୍ତି ନବୀନ", ଜୟା ଚିଡଚିଡ଼ା ସ୍ୱରରେ

କହିବାକୁ ଲାଗିଲା, "ଆମେ ମଧ୍ୟ ତୁମର ପାଖ ବଖରାରେ ରହୁଛୁ, କେଉଁଠି ହେଲେ ଗୋଟିଏ ମଶା ଖୋଜିଲେ ମିଳେ ନାହିଁ ।"

ତାହାର ସ୍ୱରକୁ ଶୁଣିକରି କଲୀର ମନେହେଲା ଯେ, ସେ ଆଜି ହୁଏତ ତାହାର ଉପସ୍ଥିତିରେ ରାଗିଯାଇ ପବନ ସହିତ ଝଗଡ଼ା କରିବାକୁ ପ୍ରସ୍ତୁତ ହେଇ ଯାଇଛି ।

କଲୀ ପ୍ରଥମ ଥର ତାକୁ ଭଲ ଭାବରେ ଦେଖିଲା । ରଙ୍ଗ ଗୋରା ହେଲେ ମଧ୍ୟ ଆବଶ୍ୟକତା ଠାରୁ ଅଧିକ ଲମ୍ବା ନାକ ପୁରା ଚେହେରାର ରଙ୍ଗ ନଷ୍ଟ କରି ଦେଇଥିଲା । ନିରେଖି ଦେଖିଲେ ଗଳାରେ ସାମାନ୍ୟ ଭାବରେ ଉଠିଥିବା ସେହି ଗଳଗ୍ରହ ମଧ୍ୟ ସ୍ପଷ୍ଟ ଦେଖିବାକୁ ମିଳେ, ଯାହାକୁ ଜୟା ମଙ୍ଗଳ ସୂତ୍ରର ତୃତୀୟ ମାଳିରେ ଲୁଚେଇବାର ଚେଷ୍ଟା କରିଥିଲା । ତେବେ ମଧ୍ୟ କଲୀର ତୀକ୍ଷ୍ଣ ଦୃଷ୍ଟି ତା ଉପରେ ପଡ଼ି ଯାଇଥିଲା ।

"ଆରେ", ସେ ନ ଜାଣିଲା ପରି କହିବାକୁ ଲାଗିଲା, "ତମ ବେକରେ କ'ଣ ହେଇଯାଇଛି ? କ'ଣ କୌଣସି ବିଷାକ୍ତ ପୋକ କାମୁଡ଼ି ଦେଇଛି ?"

ଏପର୍ଯ୍ୟନ୍ତ ଗର୍ବରେ ଫାଟି ଯାଉଥିବା ଜୟା ଲାଜକୁଳୀ ଲତା ପରି ସଂକୁଚିତ ହେଇଗଲା । କିଛି ଉତ୍ତର ନଦେଇ କରି ସେ ସଂକୁଚିତ ଦେଇ ବେକକୁ ନୁଆଁଇ ଦେଲା ।

ଅମ୍ମା ଅସ୍ୱାଭାବିକ ନିସ୍ତବ୍ଧତାକୁ ଭାଙ୍ଗି ଦେଲା, "ଜଣା ନାହିଁ କେଉଁଠାରୁ ଏହି ଗଳଗ୍ରହ ଏଇ ବର୍ଷ ଏହା ପଛରେ ଲାଗିଯାଇଛି । ପ୍ରକୃତରେ ଯେଉଁଠାରେ ଦାମୋଦର ଚାକିରି କରେ, ସେଠାକାର ପାଣିରେ, ଶୁଣିଛି, ଆୟୋଡ଼ିନ ବହୁତ କମ ଅଛି । ଏହାରି ଚିକିତ୍ସା କରେଇବା ପାଇଁ ଏଠାକୁ ଆସିଛି ।"

"ଓହୋ", କଲୀର ସ୍ୱରରେ କୃତ୍ରୀମ ସହାନୁଭୂତିର ଝଲକ ଜୟାଠାରୁ ଲୁଚି ରହିଲା ନାହିଁ । ଏଠାକୁ ଏହି କଳହପ୍ରିୟ ଟୋକି ନ ଆସିଥିଲେ, ତେବେ କ'ଣ ତା'ର ଗଳଗ୍ରହର ବୁଲେଟିନ୍ ଅମ୍ମା ଯାହାକୁ-ତାହାକୁ ପ୍ରକାଶ କରିଥାନ୍ତା ।

"ମୁଁ ଯାଉଛି ଅମ୍ମା", ହସୁଥିବା କଲୀ ଉଠିବାରୁ ଘରର ଦୁଇ ଜୋଇଁଙ୍କର ମୁଗ୍ଧ ଦୁଇ ଜୋଡ଼ା ଆଖି ତାହାର ହାତମୁଠାରେ ବନ୍ଦ ଥିଲା ।

"ମନେ ହେଉଛି, ମତେ ନେବାକୁ ଅଫିସ୍‌ର ଷ୍ଟାଫ୍ କାର୍ ଆସିଯାଇଛି ।"

ଗାଡ଼ିର ଶବ୍ଦ ନିକଟକୁ ଆସିଲା, ଛାତଥିବା ଗେଟ ପାଖରେ ପହଞ୍ଚି କରି ଅଟକି ଗଲା ।

କଲୀ ଉଠିକରି ବାହାରକୁ ଆସି ଦେଖିଲା ଗାଡ଼ି କେଉଁଠାରେ ନଥିଲା । ମନେ ହେଉଥିଲା ପଡ଼ୋଶୀ ଜଷ୍ଟିସ୍ ମୁଖାର୍ଜୀଙ୍କର ହିଁ କାରର ଶବ୍ଦ ଥିଲା । ପ୍ରାୟ ଏମିତି ହୁଏ ଯେ, ସେ ସେହି ଗାଡ଼ିର ସନ୍ଦେହରେ ପ୍ରସ୍ତୁତ ହେଇ ବାହାରକୁ ଚାଲିଆସେ । ମନେହୁଏ ସେମାନଙ୍କ ଛାତ୍‌ଥିବା ଗେଟ ପାଖରେ କୋଟ ପାଖରେ କାର ରହିଛି ।

କାହିଁକି ନା ପଛ ରାସ୍ତାରେ ବୁଲିକରି, ବଙ୍ଗଳାର ଗ୍ୟାଲେରୀର କାନ୍ଥରେ କାନ ଲଗେଇ କିଛି ସମୟ ଅମ୍ମାର ଗଳଗ୍ରହ ଧାରିଣୀ ଗର୍ବି ଝିଅ ଆଉ ଫୁଟାଣିଆ ଜୋଇଁ

ଦୁଇଜଣଙ୍କ ଉପରେ ତା'ର ଉପସ୍ଥିତିରେ ହେଉଥିବା ପ୍ରତିକ୍ରିୟାର ଆନନ୍ଦ ନିଆଯାଉ ? ସେ ମନକୁ ମନ ନିଜର ଯୋଜନାରେ ପ୍ରସନ୍ନ ହେଇଉଠିଲା । ଏମିତି ହେଇପାରେ ନାହିଁ ତାହାର କଳହପ୍ରିୟ ବ୍ୟକ୍ତିତ୍ୱକୁ ନେଇ ଗରମାଗରମ ଆଲୋଚନା ଚାଲୁ ନଥିବ । ନିଶ୍ଚୟହିଁ ଗର୍ବୀ ଝିଅ ଅମ୍ମାକୁ କୃଷ୍ଣକଲୀକୁ ଘରେ ଶରଣ ଦେଇଥିବା ପାଇଁ ଗାଳି ଦେଉଥିବ ।

ଏମିତି ମଧ୍ୟ କଲୀକୁ ପିଲାଦିନରୁ କାନ୍ଥରେ କାନ ଲଗେଇ, ଗୋପନୀୟ କଥା ଶୁଣିକରି ତା'ର ଆନନ୍ଦ ନେବାର ଖରାପ ଅଭ୍ୟାସ ରହିଛି । ଏକପ୍ରକାର ବାଣୀ ସେନ ହିଁ ତାହାର ଏହି ମନ୍ଦ ଅଭ୍ୟାସ ପାଇଁ ଉତ୍ତରଦାୟୀ ଥିଲା ।

"ଟିକିଏ କାନ ଲଗେଇ କରି ଶୁଣୁଥିଲା ଯେ କଳା ଚାନ୍ଦ, ତୋର ବଦମାସ ଆୟା କେଉଁ ପାଗଳ ସହିତ କଥା କହୁଛି", ସେ କଲୀର ଶିଶୁ କାନକୁ ପିଲାଦିନରୁ ହିଁ ଦକ୍ଷ କରି ଦେଇଥିଲା ।

ସ୍କୁଲ ଯିବା ପରେ ସେ ନନ୍‌ମାନଙ୍କର ଡରମେଟରୀର କାନ୍ଥରେ କାନ ଲଗେଇ ଲୁଚେଇ କରି ସେମାନଙ୍କର କଥା ଶୁଣୁଥିଲା - କେଉଁ ମଦର ତା ପାଇଁ କେମିତି ବିଷ-ବାନ୍ତି କରୁଛି, କେଉଁ ଝିଅକୁ ଆଜି ସ୍କୁଲର କଠୋର ନିୟମ ଭଙ୍ଗ କରିଥିବା ପାଇଁ ଦଣ୍ଡ ମିଳିବ, ସବୁକିଛି ତାକୁ ପ୍ରଥମରୁ ଜଣା ଯାଉଥିଲା ।

ହାତର ବେଗ ନେଇ କଲୀ ପର୍ଶିୟେନ ବିରାଡ଼ି ପରି ଭେଲଭେଟ ପାଦ ରଖି କରିଡ଼ୋରରେ ଲୁଚିକରି ଛିଡ଼ା ହେଇଗଲା । ତାକୁ ମନେ ହେଲା ଅମ୍ମାର ବଖରାର କାନ୍ଥ ଭେଦ କରି, ଜୟାର ଉଚ୍ଚ ଉତ୍ତେଜିତ ସ୍ୱର କଲୀର କାନର ପୁରା ପର୍ଦ୍ଦାକୁ ଛିଣ୍ଡେଇବାରେ ଲାଗିଲା ।

"ତମେ ମଧ୍ୟ ଅମ୍ମା ଖାଣ୍ଟି ମାଟିର ମୁଣ୍ଡାହିଁ ରହିଗଲ", ସେ କହୁଥିଲା । "ପଥମେ ସେହି ଦୁଷ୍ଟ ତଥା ଭୟଙ୍କର ବଦମାସ ସ୍ୱାମୀକୁ କେଉଁଠାରୁ ଧରି ନେଇ ଆସିଲୁ, ଯେତେବେଳେ ତୋର ବହୁକୁ ନେଇକରି ପଳେଇ ଗଲା ସେତେବେଳେ ତମର ଚେତା ପଶିଲା ନାହିଁ । ଏବେ ଜଣାନାହିଁ କେଉଁଠାରୁ ଏହି ଟୋକିକୁ ଧରି ଆଣିଛୁ । ଭଡ଼ା-ଫଡ଼ା ମଧ୍ୟ ଦେଉଛି କି, ନା ପୁଣି ପ୍ରତ୍ୟେକ ଦିନ ମାଗଣାରେ ଖାଇବା ବାଣ୍ଟୁଛୁ ?"

ଅମ୍ମା ଧିର ସ୍ୱରରେ କ'ଣ କହିଲା, କଲୀ ଶୁଣି ପାରିଲା ନାହିଁ ।

"ହଁ ! ମୁଁ ତ ପ୍ରଥମରୁ ବୁଝିପାରିଛି ଯେ ଏମିତି ଚତୁର ଝିଅ କଣ କିଛି ଭଡ଼ା ଦେଉଥିବ ? କିନ୍ତୁ ଅମ୍ମା ତମର କ'ଣ ହେଇ ଯାଇଛି, ସତରେ । ଏମିତି ସୁନ୍ଦର କୁମାରୀ ଝିଅକୁ ତମେ ତିନି ଦିନର ଜଣାଶୁଣାରେ ନିମନ୍ତ୍ରଣ କରି ଘରେ ରଖିଦେଲ । କ'ଣ ବାପାଙ୍କୁ ପଚାରି ଥିଲ ?"

ଅମ୍ମାର ସ୍ୱର ଏବେ ବିରକ୍ତ ହେଇ ଉଠିଲା, "ଜୟା, ସେ ବିଚାରି ଝିଅ ଏଠାରେ ରହୁଛି କେତେଦିନ ହେଲା । ଖାଇବା ବାହାରେ ଖାଏ, ଆଉ ପ୍ରାୟ ଗସ୍ତରେ ଯାଏ । ଆଜି ଲଖନଉ ତ କାଲି ଦିଲ୍ଲୀ-ବମ୍ବେ । ମୋର ଦୟା ହେଲା, ଏକରେ ପାହାଡ଼ି ଝିଅ ।"

"ଆଁଛା ଅମ୍ମା, ମଜୁମଦାର କେବେଠାରୁ ପାହାଡ଼ି ହେବାକୁ ଲାଗିଲେ", ଜୟାର ହସ ହୁଏତ ଛୋଟ ଜୋଇଁକୁ ଉତ୍ତେଜିତ କରିଦେଲା ।

"ଠିକ୍ କହୁଛି ଅମ୍ମା, ଚେହେରା ସେଣ୍ଟ-ପର୍ସେଣ୍ଟ ପାହାଡ଼ି ମନେ ହେଉଛି, ନା କ'ଣ କହୁଛ ଦାମୋଦର ଭାଇ ?"

"ଆରେ, ଏମିତି ମଧୁର ପାହାଡ଼ି କହୁଛି ନବୀନ," ଅମ୍ମା ଛୋଟ ଜୋଇଁକୁ ନିଜ ସପକ୍ଷରେ ପାଇ ଉତ୍ସାହିତ ହେଇ କହିବାକୁ ଲାଗିଲା, "କହୁଥିଲା ଯେ ତାଙ୍କ ପଡ଼ୋଶୀ କେହି ଜୋଶୀର ତିନୋଟି ଝିଅ ଥିଲେ, ସେମାନଙ୍କ ଠାରୁ ଶିଖିଛି । ଏବେ ଆମେ-ତୁମେ ପାହାଡ଼ିଙ୍କ ଠାରୁ ତ ସେ ବଙ୍ଗାଳି ହିଁ ଭଲ । ମତେ ତ ପାହାଡ଼ି ଜମାରୁ ଆସେ ନାହିଁ । ବେଲା ସେନକୁ ତ ତମେ ଜାଣିଛ ଜୟା, ନିଜର ସହୋଦର ଭାଇକୁ ମଧ୍ୟ ପେୟିଂ ଗେଷ୍ଟ କରି ରଖୁଥିଲା । ସେ କେମିତି କଲୀକୁ ଛାଡ଼ି ଦେଇଥାନ୍ତା । ଗୋଟିଏ ଛୋଟ ବଖରାକୁ ଶହେ କୋଡ଼ିଏ ଦେଉଥିଲା । ତା ଉପରେ ଦିନ-ରାତିର ଗଜର-ଗଜର । ଇଏ ତ ମତେ କିଛି କହି ନାହିଁ, ସେ ତ ତା'ର ଚାକରାଣୀ ସେ ଦିନମାନଙ୍କରେ ଆମର ମଧ୍ୟ ବାସନ ମାଜୁଥିଲା, ସେ କହୁଥିଲା, ତେଣୁ ମୁଁହିଁ ତାକୁ ଏଠାକୁ ଜବରଦସ୍ତି ନେଇ ଆସିଲି । ଆଉ ପୁଣି ଝିଅ, ତୁ ଆଉ ମାୟା ଏବେ ଚାରିଦିନ ରହିକରି ଶ୍ୱଶୁର ଘରକୁ ଚାଲିଯିବ, କଲୀ ଏଠାରେ ରହିବ, ତାହେଲେ ମୋର ଘଣ୍ଟେ, ଦୁଇ ଘଣ୍ଟା ମନ ଖୁସି ହେଇଯିବ । ଏବେ ଗତ ମାସରେ ମତେ ଆଉ ତୋର ପିତାକୁ ଏକା ଥରକେ ଏମିତି ଫ୍ଲୁ ହେଇ ଯାଇଥିଲା ଯେ, ପଲଙ୍କ ଉପରେ ବେହୋସ ପଡ଼ି ରହିଲୁ । ଏହି ପରର ଝିଅ ଦୁର୍ଦ୍ଦିନରେ ନିଜର ହେଇଗଲା । ଏମିତି ସେବା କଲା ଇଏ ଯେ, ପୁଅ ଦାମୋଦରର ନିଜ ଝିଅ କରିଥାନ୍ତା ।"

"ହଁ, ହଁ, ତମର ନିଜର ଝିଅମାନେ ଯେମିତି କିଛି କାମ କରନ୍ତି ନାହିଁ", ଜୟା ମା'କୁ ହୁଏତ ଚିଡ଼େଇବା ପାଇଁ ଅଣ୍ଟାରେ ଲୁଗା ଭିଡ଼ି ଥିଲା ।

"ଯଥେଷ୍ଟ ହେଇଛି ବନ୍ଧୁ", ଦାମୋଦରର ଗମ୍ଭୀର ସ୍ୱର ବିରକ୍ତ ହେଇ ଜୟାକୁ ଧମକେଇ ଦେଲା, "ଅମ୍ମାର ଘର, ଯାହାକୁ ଚାହିଁବ ରଖିବ, ତମର ଏଠାରେ ଏବେ କ'ଣ ଅଧିକାର ଅଛି ?"

"ହଁ, ଆଜ୍ଞା, ହଁ", ଜୟା ଚିଡ଼ିଚିଡ଼ି ହେଇ କହିଲା, "କେମିତି ଅଧିକାର ନାହିଁ, ଶୁଣେ ତ । ନୂଆ ନିୟମ କାନୁନ ହିନ୍ଦୁ ଘରର ଝିଅକୁ ମଧ୍ୟ ପିତୃଗୃହରେ ସମାନ ଅଧିକାର ଦେଇଛି, ପୁଣି ଦେଖିବ ବଡ଼ଭାଇ କାବୁଲରୁ ଆସିଲା ମାତ୍ରେ ଏହାକୁ ଠେଙ୍ଗା ଧରିକରି ଦୌଡ଼ି ଆସିବେ ।"

କଲୀ ଚୁପ୍‌ଚାପ ବାହାରକୁ ଚାଲି ଆସିଲା ।

ସ୍ପଷ୍ଟ ଥିଲା ଯେ ଏବେ ଘରରେ ତା'ର ଲାଳନ ପାଳନ ହେଇପାରିବ ନାହିଁ । ୱାଇ, ଡବ୍ଲ୍ୟୁ, ସି.ଏ.ର ୱାର୍ଡ଼ନ, ଲିଣ୍ଡା ଏଣ୍ଡରସନକୁ ସେ ରୈମନୀ ଠାରୁ ଜାଣେ । ତା'ର ସେହି ରୈମନୀ ସ୍କୁଲର ପରିଚୟ ସୂତ୍ରକୁ ଧରି କରି ସେ ତାକୁ ଆଗରୁ ଦୁଇ ତିନିଥର

ଦେଖାକରି ଆସିଥିଲା । ସେଠାରେ ଗୋଟିଏ ବଖରା ମିଳିଗଲେ ତାକୁ ପରିଶ୍ରମ କରିବାକୁ ପଡ଼ିବ ନାହିଁ, ଏହା ସେ ଜାଣିଥିଲା । କିନ୍ତୁ ଚତୁର ଲିଣ୍ଡା ହୁଏତ ମିସନାରୀମାନଙ୍କର ଦୁଷ୍ଟ ଏଜେଣ୍ଟ ମଧ୍ୟ ଥିଲା । ଯେତେବେଳେ ହିଁ କଲୀ ତା ସହିତ ସାକ୍ଷାତ କରିବାକୁ ଯାଉଥିଲା, ସେ ନିଜ ଚତୁରତାର ସହିତ ତିଆରି କରିଥିବା ମୁଠିଏ ଚଢ଼େଇ ଦାନା ବୁଣି ଦେଉଥିଲା । ଜୟାର କଟୁକ୍ତି ଶୁଣିକରି, ସେ ସିଧା ଲିଣ୍ଡା ପାଖକୁ ଚାଲିଗଲା ।

"ବହୁଦିନ ଆଗରୁ ମୁଁ ତୁମକୁ ଗୋଟିଏ ବଖରା ପାଇଁ କହିଥିଲି ଲିଣ୍ଡା, କ'ଣ ଏବେ ମଧ୍ୟ ତମେ ମତେ ସେଇ ବଖରା ଦେଇପାରିବ ?" କିଛି ଲଜ୍ଜିତ ହେଇକରି କଲୀ ପଚାରିଲା । ପ୍ରଥମ ଥର ବଡ଼ ଉଦାରତାରେ ଦିଆ ଯାଇଥିବା ବଖରାକୁ ସ୍ୱୟଂହିଁ ପଦାଘାତ କରିଥିଲା ।

"ଦେଇ କାହିଁକି ନ ପାରିବି ଡାର୍ଲିଂ," ସେ ହସିକରି କହିଲା, କିନ୍ତୁ ମୋର କଥାର ବିଚାର କାହିଁକି କରୁନାହୁଁ ? ଖ୍ରୀଷ୍ଟିୟାନ ହେଇଯାଅ ଆଉ ଏକା ଥରେ ତମକୁ କେତେକ ସୁବିଧା ଉପଲବ୍ଧ ହେଇଯିବ । ପ୍ରତ୍ୟେକ ବର୍ଷ ଆମ ମିସନ କେତେକ ପ୍ରତିଭାଶାଳୀ ଛାତ୍ରମାନଙ୍କୁ 'ଇଣ୍ଟରନେସ୍‌ନାଲ ଲିଭିଂ ସ୍କିମ୍‌ରେ ବାହାରକୁ ପଠାଏ । ତୁମଠାରେ ଜନ୍ମଜାତ ପ୍ରତିଭା ଅଛି, ଚାହିଁବ ଯଦି ଫ୍ରାନ୍ସର ଖୁବ୍ ଭଲ ଫେସନ ସ୍କୁଲରେ ଶିକ୍ଷା ଲାଭ କରିପାରିବ । ରହିବା, ଖାଇବା-ପିଇବା ସବୁକିଛି ବିଦେଶୀ ପରିବାର ସହିତ ଆଉ ଭାଗ୍ୟ ଭଲ ଥିଲେ, 'ୟୁ କେନ ଅଲ୍‌ଓ୍ୱେଜ ହୁକ ସମଓ୍ୱାନ' ।"

ଠିକହିଁ କହୁଥିଲା ଲିଣ୍ଡା । ନା ତାକୁ ପିତାର ଠିକଣା ଜଣାଥିଲା, ନା ମା'ର କୁଳ-ଗୋତ୍ରର । କ'ଣ କୌଣସି ନିଷ୍ଠାବାନ ହିନ୍ଦୁ ପରିବାର ତାକୁ କେବେ ଘରର ବହୁ କରିବାକୁ ରାଜି ହେବ ?

ମାତା-ପିତା ଦୁହେଁ କୁଷ୍ଠ ରୋଗୀ, ପାଳିତ ହେଲା ବେଶ୍ୟାମାନଙ୍କୁ ବଜାରରେ ଆଉ ବେଶ୍ୟାର ସ୍ତନପାନ କରିଥିଲା । ବାଃ, କେମିତି ଭଲ 'କ୍ରିଡ଼େସିୟଲ୍' ଥିଲା । କଲୀକୁ ମଧ୍ୟ କେବେ କେବେ ହସମାଡ଼େ ଆଉ କେବେ ଚିତ୍ତରେ ଉଛୁଳି ଉଠୁଥିବା ତୀବ୍ର ବିଦ୍ରୋହର ତରଙ୍ଗ ତାକୁ ଉଦ୍‌ବେଳିତ କରି ଦେଉଥିଲା । ଯେଉଁ ପରିବାରରେ ତିନିମାସ ରହିକରି ସେ ନିଜକୁ ବହୁତ ଅଂଶରେ ତାହାର ମର୍ଯ୍ୟାଦାକୁ ଅନୁକୂଳ କରି ସାରିଥିଲା, ତାହାର ଜ୍ୟେଷ୍ଠ ପୁତ୍ର ଏବେ ତାକୁ ଠେଙ୍ଗା ନେଇକରି ଘଉଡ଼ିବାକୁ ଚାଲି ଆସୁଥିଲା । ସେହିଘର କ'ଣ ଏବେ ତା ପାଇଁ ନିରାପଦ ସ୍ଥାନ ରହିଯାଇଥିଲା ?

ସଂସାରର କୌଣସି ପୁରୁଷ ଠେଙ୍ଗା ନେଇକରି ଘଉଡ଼ି ପାରିବ ନାହିଁ । ଏତିକି ସେ ଜାଣି ଥିଲା । ଅମ୍ମାର ଦୁଇ ଜୋଇଁଙ୍କୁ ଯେବେ ସେ ନିଜର ସାମାନ୍ୟ-ସାଜସଜ୍ଜାରେ ହିଁ ଚାରି ଦିଗରେ ଜ୍ଞାନଶୂନ୍ୟ କରିଦେଲା ତେବେ ସେ କାବୁଲିବାଲା କେଉଁ କ୍ଷେତର ମୂଳା ଥିଲା । ସେ ଏମିତି ଅମ୍ମାଠାରୁ ତାଙ୍କ ପୁତ୍ରଙ୍କ ବିଷୟରେ ବହୁତ କିଛି ଶୁଣି ସାରିଥିଲା । ସେହି ପୁଅ ଏବେ ଅମ୍ମାର ଦୁଃଖ ଦେଉଥିବା ଘା ଥିଲା । ରୂପରେ ଆଉ ସ୍ୱଭାବରେ,

ଦୁଇଟିରେ ନିଜର ଅନ୍ୟ ଭାଇ-ଭଉଣୀ ଠାରୁ ଭିନ୍ନ ।

'ଖାଟୋ ବଙ୍ଗାଳୀ ଛେଲେ ଜନ୍ମେଛେ ତୋମାର ମା', ତା'ର ପୃଥିବୀକୁ ଆସିବା ମାତ୍ରେ ବଙ୍ଗାଳୀ ଦାଇ କହିଥିଲା । ସତରେ ନିଖାଲିସ ବଙ୍ଗାଳୀ ବାଳକ ହିଁ ଜନ୍ମିଥିଲା ଆଉ ସେମିତି ହିଁ ଚେପ୍ଟା ମୁଣ୍ଡ, ଘନ କଳା ବାଳ ଆଉ ଏମିତି ଶ୍ୟାମଳ ରଙ୍ଗ ଯେ ପିଲାବେଳେ ପୁରାପୁରି ଛୋଟ ଜାତିର ମନେ ହେଉଥିଲା ପୁଅ, ଅମ୍ମା କହୁଥିଲା ।

## ନଅ

ଅମ୍ମାର ସେହି ଜ୍ୟେଷ୍ଠ ପୁତ୍ର ମହାକ୍ରୋଧୀ ଆଉ ଜିଦି ସ୍ୱଭାବର ହେଇଥିବ, ଏହା କଲୀ ସେମାନଙ୍କ କଥାବାର୍ତ୍ତାରୁ ହିଁ ବୁଝିପାରିଥିଲା । ଭଉଣୀମାନଙ୍କ ସହିତ ପ୍ରାୟ ହିଁ ଏହି ଭାଇର ସଂଘର୍ଷ ହେଉଥିଲା । ଛୋଟ ମାୟା କୌଣସି ନାଟକ ସଙ୍ଘର ସଦସ୍ୟା ଥିଲା । ଭାଇକୁ ଏସବୁ ଏକଦମ୍ ପସନ୍ଦ ନଥିଲା । ସେ ଭଉଣୀର ସେଠାକୁ ଯିବା ଗୋଟିଏ ଧମକରେ ବନ୍ଦ କରି ଦେଇଥିଲା । ବେଶ୍, ପୁଣି ଭାଇ-ଭଉଣୀ ମଧ୍ୟରେ ତିନିବର୍ଷ ପର୍ଯ୍ୟନ୍ତ କଥାବାର୍ତ୍ତା ବନ୍ଦ ରହିଥିଲା । ପଢ଼ିବାରେ ଖୁବ୍ ଭଲ ପିଲାଦିନରୁ ଥିଲା, ଏକଦମ ଉଚ୍ଚ ଚାକିରିର ପରୀକ୍ଷା ପାସ୍ କରିଥିଲା । ଗୋଟାକ ପରେ ଗୋଟିଏ ସମୃଦ୍ଧ ପରିବାରରୁ ସମ୍ବନ୍ଧ ମଧ୍ୟ ଆସିବାରେ ଲାଗିଲା, କିନ୍ତୁ ତା'ର ଉଚ୍ଚ ପସନ୍ଦର ଦ୍ୱାରରେ କେହି ସୁନ୍ଦରୀ କନ୍ୟାର ଚିତ୍ର ଠିକ୍ ବସେଇ ପାରୁ ନ ଥିଲା । ଅମ୍ମା ଆଉ ଭଉଣୀମାନେ ବହୁତ ତା ପଛରେ ଲାଗନ୍ତି, ହସି କରି ଏମିତି କହି ଦେଉଥିଲା, 'ଅମ୍ମା, ମୋ ଯୋଗ୍ୟ ବାଳିକା ଏବେ ଭଗବାନ ସୃଷ୍ଟି କରି ପାରିନାହାନ୍ତି । ହାରିକରି ଅମ୍ମା ଚୁପ ରହି ଯାଉଥିଲା । ଥରେ ଜୟା ହିଁ କହିଲା, "କେଜାଣି ଅମ୍ମା, ନିଜର ହିଁ ଚାକିରିର କେଉଁ ଝିଅକୁ ପସନ୍ଦ କରି ନେଇଛି । ଆମର ଅଲମୋଡ଼ାର ଦକ୍ଷିଣୀ କଲେକ୍ଟର ଅଛି, ତାଙ୍କର ମଧ୍ୟ ସ୍ତ୍ରୀ ତାଙ୍କ ସହିତ ପଢ଼ିଥିବା ଆଇ.ଏ.ଏସ୍. ଅଟେ । ନୈନିତାଲବାଲାର ମଧ୍ୟ ପତ୍ନୀ ତାଙ୍କ ସହିତ ପଢ଼ୁଥିବା କେହି ଝିଅ ଅଟେ । ପଚାରୁନୁ କାହିଁକି, ହୁଏତ ବଡ଼ଭାଇ ମଧ୍ୟ କାହାକୁ ବାଛି-ବୁଛିକରି ପସନ୍ଦ କରିଛନ୍ତି ।"

ଯେତେବେଳେ ଚାରି ପାଞ୍ଚବର୍ଷ ପ୍ରବୀରକୁ ମନେଇ ମନେଇ ଅମ୍ମା ହାରିଗଲା ତେବେ ସେ ଦିନେ ଅସ୍ତ୍ରଶସ୍ତ୍ର ଥୋଇ ଦେଲେ । "ପ୍ରବୀର ବାବା, ନିଜ ସମାଜର ନ ହେଉ, କ'ଣ ଆଉ କୌଣସି-ସମାଜର ଝିଅ ତୋର ପସନ୍ଦ ହେଇଛି ? ଯଦି ଏମିତି ହେଇଥାଏ, ତେବେ ମଧ୍ୟ ଏବେ ଆମର କୌଣସି ଆପତ୍ତି ନାହିଁ । ତୋର ମାମୁଁର ପୁଅ ମଧ୍ୟ ଗତବର୍ଷ ମେମ ଆଣିଛି । ଛାଡ଼, ବଂଶତ ଚାଲିବ ।" କିନ୍ତୁ ପ୍ରବୀର ଅମ୍ମାର ଏହି ଉଦାର ପ୍ରସ୍ତାବର ଉତ୍ତରରେ ମଧ୍ୟ କେବଳ ହସି ପକେଇ ଥିଲା ।

"କହିଥିଲି ନା ମୁଁ," ଅମ୍ମା ବହୁତ ଗର୍ବରେ ଜୟାକୁ କହିଥିଲା, "ମୋର ପୁଅ,

ମୋର ସଂସ୍କାରୀ ପୁଅ ଅଟେ । ଯେତେବେଳେ ଦେଶ-ବିଦେଶ ବୁଲିକରି ମଧ୍ୟ ତାହାର ପଇତା ତା ସହିତ ରହିଲା, ତେବେ କ'ଣ ସେ ନିଜ ଏରୁଣ୍ଡିକୁ ଫେରିକରି ତାକୁ ଭାଙ୍ଗିଦେବ ?"

ଦୁଇ ପୁତ୍ରଙ୍କର ଯଜ୍ଞୋପବୀତ ସଂସ୍କାର ଏକା ଥରକେ ହେଇଥିଲା, କିନ୍ତୁ ଯେଉଁଠି ଛୋଟ ପୁଅ ତୃତୀୟ ଦିନରେ ହିଁ ପଇତା ଓହ୍ଲାଇ କରି ଖୁଣ୍ଟିରେ ଟଙ୍ଗେଇ ଦେଇଥିଲା, ସେଠାରେ ବଡ଼ ପୁଅର ନିୟମିତ ସନ୍ଧ୍ୟା-ପୂଜା ଦିନକ ପାଇଁ ମଧ୍ୟ ବନ୍ଦହେଇ ନ ଥିଲା । ଇଂରେଜୀ ସାହିତ୍ୟରେ ଏମ୍.ଏ. କରିଲା ପରେ ମଧ୍ୟ ସେ ସଂସ୍କୃତର ପ୍ରକାଣ୍ଡ ବିଦ୍ୱାନ ଥିଲା । ପ୍ରପିତା ମହଙ୍କର ବିରାଟ ସଂସ୍କୃତର ଲାଇବ୍ରେରୀକୁ କେତ୍ନେ ଉଇ ଖାଇ ଯାଇଥିଲେ । ଯାହା କିଛି ରହି ଯାଇଥିଲା, ତାକୁ ସେ ପଢ଼ି ଦେଇଥିଲା । ଯେତେବେଳେ ବର୍ଷ ବର୍ଷ ଧରି ଅନୁନୟ-ବିନୟ କରିଲା ପରେ ସେ ବିବାହ ପାଇଁ ରାଜି ହେଲା ନାହିଁ, ତେଣୁ ହାରିକରି ତା'ର ଛୋଟଭାଇର ବାହାଘର ସେହି ରୂପବତୀ କନ୍ୟା ସହିତ କରି ଦିଅଗଲା, ଯାହାର ସମ୍ବନ୍ଧ କେବେ ଘରର ଜ୍ୟେଷ୍ଠ ପୁତ୍ର ପାଇଁ ଆସିଥିଲା ।

"ଯେଉଁ-ଯେଉଁ ଝିଅମାନଙ୍କର କେବେ ଏହି ନିରାଶ୍ରୟ ସହିତ କଥାବାର୍ତ୍ତା ଚାଲିଥିଲା, ସମସ୍ତଙ୍କର ପିଲା ହେଇକରି ସ୍କୁଲମାନଙ୍କରେ ପଢ଼ିବାକୁ ଲାଗିଲେଣି, ଆଉ ଇଏ ଏବେ ମଧ୍ୟ ଲାଙ୍ଗୁଡ଼ କଟା ହେଇ ବୁଲୁଛି । ପଇଁତିରିଶ ବର୍ଷର ହେଇଯିବ, ଏବେ କ'ଣ ଆଶା କରିବି ଏହାର", ଗୋଟିଏ ଲମ୍ବା ନିଶ୍ୱାସ ନେଇକରି ଅମ୍ମା ଲୁହପୋଛି ନେଉଥିଲା ।

ଛୋଟ ବହୁ ମଧ୍ୟ ଚାଲି ଯାଇଥିଲା । ତା ଉପରେ ବିପତ୍ତି ମଧ୍ୟ ତେନ୍ତୁଳିଆ ବିଛାପରି ଶହ ଶହ ପାଦରେ ଚାଲିକରି ଆସୁଛି । ସୁବୀରର ମୃତ୍ୟୁର ଆଘାତକୁ ଏବେ ମଧ୍ୟ ବୃଦ୍ଧ ଦମ୍ପତି ଭୁଲି ନଥିଲେ ଯେତେବେଳେ ଘରର ବହୁ ପଳେଇ ଗଲା । ଲକ୍ଷେ ଲୁଚେଇଲେ ମଧ୍ୟ ତାହାର କଳଙ୍କ କଥା କ'ଣ ଲୁଚି ପାରିଥାନ୍ତା ? ଲୋକମାନେ ଏଠାରେ ଖୋଳି ଖୋଳିକରି ପଳାତକ ବହୁର କୁଶଳ ପଚାରିବାକୁ ଲାଗିଥିଲେ । ପାଠ ପଢ଼ା ଛାଡ଼ି-ଛୁଡ଼ି କରି ଏକା ଥରକେ ବାପଘରକୁ କାହିଁକି ଚାଲିଗଲା ? ସ୍ୱାମୀଜୀ କେବେ ଫେରିବେ ? ଆଜିକାଲିତ ବଦ୍ରିନାଥର କବାଟ ବନ୍ଦ ରହୁଛି, କେମିତି ଯାତ୍ରାରେ ଯାଇଛନ୍ତି, ଇତ୍ୟାଦି-ଇତ୍ୟାଦି । ରେବତୀଶରଣ ତିବାରୀ ଅତ୍ୟନ୍ତ ସରଳ ସ୍ୱଭାବର ଥିଲେ । କେବେ ତାଙ୍କ ମୁହଁରୁ ଅପ୍ରିୟ ସତ୍ୟ ବାହାରି ପଡ଼ିବ, ଏହି ଭୟରେ ପ୍ରବୀରର ମା' ତାଙ୍କ ସହିତ ଛାୟା ପରି ଲାଗି ରହିଥାନ୍ତି ।

ଏଠାରେ ବଡ଼ ଝିଅ ଜୟାର ଗଳଗ୍ରହ ସହିତ ତା ଉପରେ ମଧ୍ୟ ବିପତ୍ତିର ପାହାଡ଼ ଭାଙ୍ଗି ପଡ଼ିଥିଲା । ଏକରେ ତ ବେକରେ ବାହାରି ଥିବା ଗଳଗ୍ରହ କ୍ଷଣ-କ୍ଷଣକରେ, ଗେସର ବେଲୁନ ପରି ବଢ଼ିବାରେ ଲାଗିଥିଲା, ତା ଉପରେ ଲଜ୍ଜା, କ୍ଷୋଭ ଆଉ ଚିନ୍ତା ତାକୁ ଦୁର୍ବଳ କରି ରଖିଦେଇଥିଲା । ଗଳଗ୍ରହ ସହିତ ସେ ନିଜର ଅନ୍ୟ ଗଳଗ୍ରହକୁ

ନେଇକରି ଏକ ଅନିଶ୍ଚିତ ସମୟ ପର୍ଯ୍ୟନ୍ତ ବାପଘରେ ରହିବାକୁ ଆସିଯାଇଛି, ଏହା ତାହାର ଛୋଟ ଭଉଣୀ ମାୟାକୁ ଛାଡ଼ିକରି ଆଉ କାହାରିକୁ ଜଣା ନଥିଲା । ଦାମୋଦର ପ୍ରସାଦ ମଧ୍ୟ କିଛି ଅଂଶରେ ତା'ର ଗଳଗ୍ରହ ଠାରୁ କିଛି କମ ନଥିଲା । ମାତା-ପିତା କିଛି ସ୍ନେହି ଆତ୍ମୀୟ ସ୍ୱଜନଙ୍କ କହିବାନୁସାରେ ଗେହ୍ଲୀ ବଡ଼ ଝିଅକୁ ଏତେ ଦୂର, ଜଣେ ଏମିତି ଅଜଣା ବ୍ୟକ୍ତିର ଚାଦରରେ ବାନ୍ଧିକରି ପଠେଇ ଦେଇଥିଲେ । ସେତେବେଳେ କ'ଣ ଜାଣିଥିଲେ କି ଲମ୍ବା-ଚଉଡ଼ା ଶରୀରର ଗଢ଼ଣ ଆଉ ଆକର୍ଷକ ଚେହେରାର ସ୍ୱାମୀ ଏହି ଯୁବକର ରଙ୍ଗ ଛାଡ଼ିଗଲା ପରେ ସେ ମୁରାଦାବାଦୀ ଡାଳ ପରି ହିଁ ଶ୍ରୀହୀନ ମନେ ହେବ ।

ଦାମୋଦର ପ୍ରସାଦର୍ ପିତା ଦାରୋଗା ଥିଲେ ଆଉ ମାମୁଁ କଟୁଆଳ । ମାତା ଆଉ ପିତାର ବଂଶରେ, ପୁଲିସ୍ ବିଭାଗର କୁଟିଳତାର ପାଠ ବଡ଼ ଯତ୍ନରେ ପଢିଥିଲା । ପିତା ଆଉ ମାତାର ପଦରୁ ବହୁତ ବଡ଼ ପଦବୀ ପାଇଲା ପରେ ଦାମୋଦର ନିଜର କୁଟିଳତାରେ ଆବଶ୍ୟକତାନୁସାରେ ଢିଲା ଦେଇକରି ତାକୁ ବରଗଛର ଚେର ପରି ଦୂର-ଦୂର ପର୍ଯ୍ୟନ୍ତ ବିସ୍ତାର କରି ନେଇଥିଲା । ଶୁଦ୍ଧ ଘୃତ, କାର୍ତିକୀ ପାହାଡ଼ି ମଧୁ ଆଉ ମେଣ୍ଢାର କଞ୍ଚା ମାଂସକୁ ଛାଡ଼ିକରି ତା'ର ଶୁଷ୍କ ଇଲାକାରେ କିଛି ମିଳୁ ନ ଥିଲା । କିନ୍ତୁ ସୈନ୍ୟବାହିନୀର ଏକ ବହୁତ ବଡ଼ ଅଂଶ ସେଠାରେ ଧାର ଚୂଲା ପାଖରେ ଆସି ବୁଣି ହେଇଗଲେ । ସାମାନ୍ୟ ଚେଷ୍ଟା କରିଲା ପରେ ହିଁ ସେ ନିଜ ବଙ୍ଗଳାରେ ଗୋଟିଏ ଛୋଟ-ମୋଟ ସେଲର ତିଆରି କରି ନେଇଥିଲା । ଲାଞ୍ଚ ନେବାରେ ସେ ଏବେ ନିଜ ପେଶାର ଦକ୍ଷତା ପ୍ରାପ୍ତକରି ନେଇଥିଲା । ଜୟା ଯେବେ କେବେ ବାପ ଘରକୁ ଯାଉଥିଲା, ସେ ଏକା ଥରକେ କେତେକ ନିଯୁକ୍ତି କରି ଦେଉଥିଲା । ବାସନ ମାଜିଲାବାଲୀ, ମହାରାଜିନ, ଜମାଦାରିଣୀ ସମସ୍ତେ ବଙ୍ଗଳାରେ ପାଟରାଣୀ ପରି ସ୍ୱେଚ୍ଛାଚାରିଣୀ ହେଇ ବୁଲୁଥିଲେ । ଦୁରାଚାରୀ ଗୃହସ୍ୱାମୀର ଆଢୁଆଳରେ ବଦମାସ ନୌକର-ଚାକର ମଧ୍ୟ ମନଇଚ୍ଛା ଶିକାର ଖେଳିବାକୁ ଲାଗିଲେ । ଏମିତିରେ ତ ସେହି ପାହାଡ଼ି ଇଲାକାରେ ନିଯୁକ୍ତ ହେଲାପରେ ପ୍ରତ୍ୟେକ ସରକାରୀ ଅଫିସର ଶ୍ରବଣ କୁମାର ହୁଅନ୍ତି, ନିଜର ମାତା-ପିତାଙ୍କୁ ସରକାରୀ ଜୀପ୍‌ରେ ବଦ୍ରିନାଥ-କେଦାରନାଥର ଯାତ୍ରା କରେଇ ନେଉଥିଲେ, କିନ୍ତୁ ଦାମୋଦର ପ୍ରସାଦର ଜୀପ ଏଠାରେ ପେଶୱାର ଟ୍ରିପରେ ଯାଉଥିଲା । ତୀର୍ଥ ଯାତ୍ରୀମାନଙ୍କର ଏମିତି ହିଁ ଗୋଟିଏ ଜୀବଯାତ୍ରୀ ଗୁପ୍ତଚର ହେଇ ହଠାତ୍ ଦାମୋଦର ପ୍ରସାଦର ପଟାକୁ ବସେଇ ଦେଲା । ସେହି ବୁଢ଼ା ଯାତ୍ରୀର ପୁତ୍ର ଏକ ରାଜନୈତିକ ବିରୋଧୀ ଦଳର ସଦସ୍ୟ ଥିଲା ଆଉ ହୁଏତ ଜାଣିଶୁଣି କରି ଚତୁର ପୁତ୍ର ପିତାକୁ ଏହି ଯାତ୍ରାରେ ପଠେଇଥିଲା । ପିତା ପୁତ୍ରର ବୁଝାମଣା ଦେଖିକରି ପ୍ରସନ୍ନ ହେଇଗଲେ । ହଜକରି ମଧ୍ୟ ଆସିଲେ ଆଉ ଚୋର ମଧ୍ୟ ଧରି ପକେଇଲେ । ହିଙ୍ଗୁ ଲାଗିଲାରୁ ଫିଟିକିରି ରଙ୍ଗ ଠିକ୍ । ତାହା ଉପରେ ଆଉ ଗୋଟିଏ କଥା ମଧ୍ୟ ଥିଲା । ସେହି ଦାମୋଦର ପ୍ରସାଦର ଗର୍ବୀ ଶଳା ଥରେ ତା'ର ଝିଅର ସମ୍ବନ୍ଧ ଭାଙ୍ଗି ଦେଇଥିଲା । ପ୍ରତିଶୋଧ କ'ଣ ଛୁରୀ ମାରିକରି ହିଁ ନିଆଯାଏ ? କିନ୍ତୁ ଏହି

ଅଦୃଶ୍ୟ 'ଗୁପ୍ତି'ର ଆକ୍ରମଣ ଦାମୋଦର ପ୍ରସାଦ ପାଇଁ ପ୍ରକୃତରେ ଘାତକ ହେଇ ରହିଗଲା ।

ସେହି ଦିନମାନଙ୍କରେ ଦେଶର ମନ୍ତ୍ରୀ ତାସ୍‌ର ବାବନ ପତ୍ର ପରି ଫେଣ୍ଟା ଯାଉଥିଲେ । ପୁରୁଣା ଭାରି ଚାଲାକ ମନ୍ତ୍ରୀମାନେ ତ ଦୁନିଆଁ ଦେଖିଥିଲେ - ପ୍ରତ୍ୟେକ ବିଭାଗରେ ତାଙ୍କର ଗୋଟିଏ - ନା - ଗୋଟିଏ ଗତାନୁଗତିକ 'ପେଞ୍ଚ' ନିଶ ଉପରେ ଗର୍ବରେ ତାପ ଦେବା, ବ୍ୟାୟାମଶାଳାର ଦେଖାଚାହାଁ କରୁଥିଲେ । ପ୍ରତ୍ୟେକ ବ୍ୟାୟାମଶାଳାରେ ନିରର୍ଥକ ବିଶ୍ୱାସଘାତକତା, ପର ନିନ୍ଦା ଆଉ ମିଥ୍ୟା ଭାଷଣରେ ଓଜନିଆ ରହୁଥିଲା । ଯେଉଁ କେତୋଟି ଅଫିସର ସତ୍ୟ ପରାୟଣ ହେଇ ରହିବାର ଯତ୍ନ କରୁଥିଲେ, ସେମାନଙ୍କ ଉପରେ ଦିନ-ରାତି କାଦୁଅ ଫୋପଡ଼ା ହେଉଥିଲା ଆଉ ସେମାନଙ୍କର ଇହଲୌକିକ ସରକାରୀ ଚିତ୍ରଗୁପ୍ତ ପାଞ୍ଜି ଲେଖି-ଜୋଖି ଏମିତି ଏମିତି ସ୍ଥାୟୀ ସ୍ୱର୍ଣ୍ଣାକ୍ଷରରେ ପଂକ୍ତି ଲେଖି ଦିଆଯାଉଥିଲା ଯେ ସେମାନଙ୍କର ପୂର୍ବ-କୃତ ଉଜ୍ଜ୍ୱଳ ଲେଖା ଧୋଇକରି ସ୍ଲେଟରେ ଲେଖିଥିବା ଅକ୍ଷର ପରି ଅସ୍ପଷ୍ଟ ରହି ଯାଉଥିଲା । ଯଦି ସେ ପୁଣି ମଧ୍ୟ ସତ୍ୟ ଏବଂ ଉତ୍ତମ ବ୍ୟବହାରର ଦୁସ୍ତର ପଥ ତ୍ୟାଗ ନ କଲେ, ତେବେ ତାଙ୍କୁ ବିଭାଗର ଯମଦୂତ ପ୍ରାନ୍ତର ମନଇଚ୍ଛା କୁମ୍ଭୀପାକରେ ସଢ଼ିବାକୁ ପକେଇ ଦେଇ ପାରନ୍ତି - ଗୋରଖପୁର, ଗୋଣ୍ଡା ବା ବଲିୟା । ପ୍ରଜାତନ୍ତ୍ରର ବ୍ୟାଖ୍ୟା ଯଦି କେଉଁଠାରେ ସାକାର ହେଇପାରେ ତ ଏହି ସରକାରୀ ବିଭାଗମାନଙ୍କରେ । କବାଟ ପାଖରେ ଚପରାସୀ ଢୁଲୋଉଥିବ, ଚଉକି ଉପରେ ଅଫିସର ।

ଦାମୋଦର ପ୍ରସାଦର ସେହି ଦିନଗୁଡ଼ିକ ପୁଣି ହେଇ ଆସୁଥିଲା । କିଛିଦିନ ପୂର୍ବେ ସେ ନିଜ ଅଫିସରଙ୍କର ମାତା ପିତା, ଶାଶୁ ଶ୍ୱଶୁର, ସମସ୍ତଙ୍କୁ ବଦ୍ରୀନାଥ-କେଦାରନାଥ କେବଳ ବୁଲେଇ ଆଣି ନ ଥିଲା, ସେମାନଙ୍କ ସହିତ ପ୍ରଚୁର ଶୁଦ୍ଧ ଘୃତ, ମହୁ ଆଉ ଆଠଟି ଏମିତି ମୋଟା ମୋଟା ପାହାଡ଼ି କମ୍ବଳ ଗୋଟିଏ ପଟରେ ଲୋମଥାଇ ପହଞ୍ଚାଇ ଆସିଥିଲା, ଯାହାକୁ ଘୋଡ଼ିହେଇ କରି ସାହେବଙ୍କ ପୁରା ପରିବାର ଖୁବ୍ କମ୍‌ରେ ଅଠେଇଶ ଶୀତ କାଟି ପାରିଥାନ୍ତେ । ସାହେବ ତା ଉପରେ ବହୁତ ପ୍ରସନ୍ନ ହେଇ ଯାଇଥିଲେ । ଏକାନ୍ତରେ ତାକୁ ଡାକିକରି ସେ ଆଶ୍ୱାସନା ମଧ୍ୟ ଦେଇଥିଲେ, "ଏବେ ତମକୁ ଏହି ବର୍ଷ କେଉଁଠିକାର ବଡ଼ ଚାର୍ଜ ଦେଇକରି ପଠେଇ ଦେବି । ମୋର ଶାଶୁ ତୁମ ଉପରେ ବହୁତ ଖୁସି ହେଇଛନ୍ତି ।"

ଦାମୋଦର ନିଶ-ନିଶରେ ହସିକରି କୃତଜ୍ଞତାରେ ଆତ୍ମହରା ହେଇ ଯାଇଥିଲା । ସେହି ଚତୁର ଅଫିସର ଜାଣିଥିଲା ଯେ, ପ୍ରଭୁଙ୍କୁ ପ୍ରସନ୍ନ କରିବା ପୂର୍ବରୁ ପ୍ରଥମେ ତାଙ୍କ ଶାଶୁଙ୍କୁ ପ୍ରସନ୍ନ କରିବା ଅଧିକ ଫଳଦାୟୀ ଅଟେ । ତା'ର ପୂର୍ବ ପଦୋନ୍ନତି ପାଇଁ ମଧ୍ୟ, ତାକୁ ଡି.ଆଇ.ଜି.ର ଶାଶୁ ହିଁ ଆଶୀର୍ବାଦ ଦେଇଥିଲା । ଯେବେ କେଉଁଠି ବାସମତୀର ଗୋଟିଏ ଦାନା ମଧ୍ୟ ଖୋଜିଲେ ମିଳୁ ନ ଥିଲା, ତେବେ ହନୁମାନ ପରି ଉଡୁଥିବା ପୁରା ପର୍ବତ ହାତରେ ଧରି ଆଣିଥିଲା । ବୁଢ଼ୀର ଚରଣରେ ସେ ଚାରି ମହଣ ଏମିତି ବାସମତୀ

ଏକା ଥରକେ ଢାଳିକରି ରଖିଦେଲା ଯାହାର ଗୋଟିଏ ଗୋଟିଏ ଦାନୀ ବିଜୁଳୀ ପରି ସୁଗନ୍ଧରେ ସାହେବର ପୁରା କୋଠାକୁ ସୁବାସିତ କରି ଦେଇଥିଲା ।

କିନ୍ତୁ ଏଥର ଦାମୋଦର ପ୍ରସାଦର ଭାଗ୍ୟ ବଙ୍କା ହେଇକରି ରହିଗଲା ।

ଏଠାରେ ନୂତନ ମନ୍ତ୍ରୀମଣ୍ଡଳ ସାବଧାନ, ସତର୍କ ହେଇ ହାତରେ ହାତକଡ଼ି ଲୁଚେଇ ବୁଲୁଥିଲେ । ପ୍ରତ୍ୟେକ ମନ୍ତ୍ରୀ ପ୍ରତିଯୋଗିତାରେ ପୂର୍ଣ୍ଣ ସଫଳତା ନ ପାଇବା ପର୍ଯ୍ୟନ୍ତ ରାତି-ଅଧ ରାତି ଡାହାଣ-ବାଁ ଚୋର ଧରୁଥିଲେ । ବିଶ୍ୱାସଘାତକତା, ଚୋରାବଜାରୀ, ଘୁଷଖୋରର ସମୂଳ ବିନାଶ କରିବାର ଉତ୍ସାହରେ କେତେକ ଘାସକୁଟା ନଥିବା ଦାଢ଼ି ମଧ ଉପୁଡ଼ା ଯାଇଥିଲା । ପଣି ଦାମୋଦରର ଦାଢ଼ିର ଘାସକୁଟା ତ କୌଣସି ଅନ୍ଧ ମଧ ଅଲଗା କରି ନେଇଥାନ୍ତା । ଯେତେଦିନ ପର୍ଯ୍ୟନ୍ତ ସମ୍ଭାଳିବା ସମ୍ଭବ, ତାକୁ ଏକ ଉପମନ୍ତ୍ରୀ ହିଁ ଗୋଟିଏ ଗୋଡ଼ ଲେଙ୍ଗଡ଼ୀ କରିଦେଇ ଚାରିଦିଗରେ ଚିତ କରି ଦେଇଥିଲା । ତାହାର କଳଙ୍କର କଥା ଏତେ ଲମ୍ବା ଯେ ଭିଜିଲେନ୍ସ ଏକ ଛୋଟ-ମୋଟ ରୁଚିକର ଉପନ୍ୟାସର ସୃଷ୍ଟି କରି ଦେଇଥିଲେ । ସସ୍‌ପେଣ୍ଡ ହେବାପରେ ସେ ସେହି ଜିଲ୍ଲାରେ ରହିଥାନ୍ତା କେମିତି ? ଯେଉଁଠିକାର ସେ ଏବେ ମାନେ କାଲି ପର୍ଯ୍ୟନ୍ତ ଏକ ଏକଛତ୍ର ସମ୍ରାଟ ଥିଲା, ଯେଉଁଠିକାର ପ୍ରତ୍ୟେକ ଦାରୋଗାର ମୋଡ଼ି ହେଇଥିବା ନିଶ ତା'ର ବିଶି ଆଙ୍ଗୁଠିର ସଂକେତରେ ଉଠୁଥିଲା-ପଡୁଥିଲା, ସେଠାରେ ଏବେ କ'ଣ ସେ ଲଙ୍ଗଳା ହେଇକରି ଛିଡ଼ାହେଇ ରହିପାରି ଥାନ୍ତା ?

ସେହି ରାତିରେ ସେ ରୁଷିଥିବା ପତ୍ନୀକୁ ନେଇକରି କଲିକତା ଚାଲି ଆସିଥିଲା । ଯେତେଥର ଅମ୍ମା ବଡ଼ଝିଅର ଶୁଖିଲା ଶୁଖିଲା ଚେହେରା ଦେଖୁଥିଲା ତା'ର ଆଖି ଲୁହରେ ଭରି ଯାଉଥିଲା । ଛୋଟ ଝିଅ ମାୟା, ତାକୁ ତା'ର ଭିଣୋଇଙ୍କର ଦୁଷ୍କୀର୍ତ୍ତିର ପୁରା ଚେହେରା ଦିନେ ଏକାନ୍ତରେ ଶୁଣେଇ ଯାଇଥିଲା ।

"ମୁଁ ତ ଲଜ୍ୟାରେ ମରିଗଲି ଅମ୍ମା", ସେ କାନ୍ଦ କାନ୍ଦ ସ୍ୱରରେ କହିବାକୁ ଲାଗିଥିଲା, "ଭିଣୋଇଙ୍କର ଏକ ବିଧବା ପାଟରାଣୀ ମଧ ଏହାଙ୍କ ନାମରେ ନାଲିସ କରିଛି । କହୁଛି ଏହାଙ୍କୁ ତା'ର ପୁଅର ଭରଣପୋଷଣ ଦେବାକୁ ହେବ, ସେ ତାଙ୍କର ପୁଅ । ଆଉ ଏକ ଜଣ ଭୋଟିଆ ଘୃଣ୍ୟ ସ୍ତ୍ରୀଲୋକ ମୋ ପାଖକୁ ଆସିଥିଲା, ଅପାର ଠିକଣା ପଚାରିବାକୁ । କହିବାକୁ ଲାଗିଲା, ତା'ର ବାପଘର ଠିକଣାରେ ଚିଠି ଲେଖି ସବୁ କିଛି କହିବ । ସାହେବ ତାରତ ମାନ ଇଜ୍ଜତ କିଛି ରଖିଲା ନାହିଁ । ସ୍କୁଲରେ ଅଧାପିକା ଥିଲା, ସାତ ମାସ ହେଲାଣି । ଏବେ ଚାକିରି ମଧ ନାହିଁ, ନାମ ମଧ ଆଉ ସ୍ୱୟଂ ସାହେବ ମଧ ଛି ! ଛି, ମତେତ ଏବେ ଭିଣୋଇ ସହିତ କଥା କହିବାକୁ ମଧ ଘୃଣା ଲାଗୁଛି । ତମେ ଏହି ଦାନବକୁ ଏଠାରେ କେମିତି ରଖିଲ, ଅମ୍ମା ?"

କିନ୍ତୁ ତାକୁ ଅମ୍ମା ବାହାର କରି ପାରିଥାନ୍ତା ? କେତେ ଆୟୋଜନ ଉତ୍ସବ, ସହନାଇ ବଜେଇବା ମଧରେ କେବେ ଯାହାର ପାଦ ପୂଜାକରି କନ୍ୟାଦାନ କରିଥିଲା

ତାକୁ କ'ଣ ଏବେ ଘର ଛାଡ଼ିକରି ବାହାରି ଯିବାକୁ କହି ପାରିଥାନ୍ତା ? କେମିତି ସୁଦର୍ଶନ ସୌମ୍ୟ ଚେହେରା ଥିଲା ଆଉ କେମିତି କଳୁଷିତ ଆଚରଣ !

ପଛ ଦଶ ବର୍ଷରେ ଏହି ପରିବାରରେ କେତେ କ'ଣ ବଦଳି ଯାଇଥିଲା । ଏହି ଘର, ଯେଉଁଠାରେ ଜୟା-ମାୟାର ଅଟ୍ଟହାସ୍ୟ ପ୍ରତିଧ୍ୱନିତ ହେଉଥିଲା, ଯେଉଁଠାରେ ସୁବୀରର ଛାତ ଭାଙ୍ଗିଲାବାଲା ଅଟ୍ଟହାସ୍ୟ ଶୁଣିକରି ଅମ୍ମା କେବେ-କେବେ ପୂଜାରୁ ଉଠିକରି ଧମକ ଦେଉଥିଲା - "ବାବାରେ ବାବା, ରାବଣ ପରି ହସ କାହିଁକି ହସୁଛୁରେ ତୁ ଛୋଟ, ପୂଜା ମଧ୍ୟ କରି ପାରିଲିନାହିଁ ମୁଁ" - ଆଜି ଏହି ଗୃହ କେମିତି ନିର୍ଜନବଣ ପରି ଖାଁ ଖାଁ କରିବାକୁ ଲାଗିଥିଲା । ବାପା ନିଜ ବଖରାରେ ହିଁ ବନ୍ଦ ଦିନ-ରାତି ପେନ୍‌ସନ୍‌ର କାଗଜଗୁଡ଼ିକରେ ବୁଡ଼ି ରହନ୍ତି । ଦୁଇ ଜୋଇଁ ଆଉ ଦୁଇ ଝିଅ ଏକ ସାଙ୍ଗରେ ବସୁଥିଲାବେଳେ ଏକ ଅସ୍ୱାଭାବିକ ନିରବତା ସମସ୍ତଙ୍କୁ ଘେରି ନେଉଥିଲା । କିଛି ନା କିଛି ବାହାନା କରି ମାୟା ନିଜ ବନ୍ଧୁ ସହିତ ଦେଖା କରିବାକୁ ଚାଲି ଯାଉଥିଲା ନହେଲେ ଏକେଲା ପିକଚର ଦେଖିବାକୁ ଚାଲି ଯାଉଥିଲା ।

"ଏକା ଯାଉଛୁ, ଜୟାକୁ ନେଇ ଯାଉନୁ," ଅମ୍ମା କହୁଥିଲା ।

"କ'ଣ ପିକ୍‌ଚର ଦେଖିବ ଏବେ ଅପା, ଏବେ ତ ସେ ଏଇଠି ରହିବ ଅମ୍ମା, ଦେଖୁଥିବ । ମୁଁ ତ ପନ୍ଦର ଦିନରେ ଚାଲିଯିବି ।" ଆଉ କଳିହୁଡ଼ୀ ମାୟା ପ୍ରକୃତରେ ଲୁଗାର ପଣତ ଝାଡ଼ିକରି ଚାଲି ଯାଉଥିଲା । କେତେଥର ଅମ୍ମା ଦାମୋଦରକୁ ପଚାରିବାକୁ ଚାହିଁଥିଲା - କ'ଣ ସତରେ ଏବେ ତାଙ୍କର ଚାକିରି ଚାଲି ଯାଇଛି ? କ'ଣ କୌଣସି କେସ-ଫେସ ଚାଲିଛି ? କିନ୍ତୁ ଜୟା ପ୍ରାୟ ଘରେ ରହୁଥିବାରୁ ଆଉ ତା'ର ଶୁଖିଲା ମୁହଁ ଦେଖିକରି ଅମ୍ମାକୁ ପୁଣି କିଛି ପଚାରିବାକୁ ସାହସ ହେଉ ନଥିଲା । କିନ୍ତୁ ଏଠାରେ ଯେତେଦିନଠୁ ଛୋଟ ଝିଅ ତାକୁ ଦାମୋଦର ପ୍ରସାଦର ଚରିତ୍ର ବିଷୟରେ ଅଶ୍ଳୀଳ କଥାଗୁଡ଼ିକ କହିଥିଲା, ସେ ମନ ଭିତରେ ଅତ୍ୟଧିକ ବ୍ୟାକୁଳ ହେଇ ଯାଇଥିଲା । ଏମିତି ବ୍ୟକ୍ତିକୁ ଯଦି ଏହି ଗୃହରେ ରହିବାର ଥିଲା ତେବେ ସେସବୁ ଜାଣି ଶୁଣି ଏବେ କଲୀକୁ ଏଠାରେ ରଖିପାରିବ ନାହିଁ ।

କଲୀ ତା'ର ଗସ୍ତ ଏଥର ସ୍ୱେଚ୍ଛାରେ ହିଁ ଲମ୍ବା କରି ଦେଇଥିଲା । ଏମିତି ଚାହିଁଥିଲେ ସେ କଲିକତା ଫେରି ପାରିଥାନ୍ତା, କିନ୍ତୁ ବିବିୟନ ଏବେ ଏଲହାବାଦରେ ନିଜର ମାଉସୀ ପାଖରେ ରହିକରି ୟୁନିଭରସିଟି ପଢ଼ିବାକୁ ଲାଗିଥିଲା । ସେହି ହିଁ ତାକୁ କେତେଥର ଏଲ୍‌ହାବାଦ ଆସିବା ପାଇଁ ଲେଖିଥିଲା, "କେବେଠାରୁ ତମକୁ ଦେଖିନାହିଁ, ଏଠାରେ ବୁଲାବୁଲି କରିବା ପାଇଁ ବହୁତ ଜାଗା ଅଛି, ନୈନୀରେ ଅଙ୍କଲ ଡେଭିଡ଼ ମଧ୍ୟ ଖୁବ୍ ଭଲ ଚାକିରି ପାଇ ଯାଇଛନ୍ତି । ଯେବେ ଆଇସକ୍ରିମ୍ ଖାଇବାକୁ ମନେହୁଏ ସେଠାକୁ ଚାଲିଯାଏ, ଆଉ ପ୍ରତ୍ୟେକ ଶୀତଳ ଗପ କଲାବେଳକୁ ତମକୁ ସ୍ମରଣ କରି ଢୋକି ଥାଏ । ମୋର ଏବେ ମଧ୍ୟ ମନେଅଛି, ନୈନିତାଲର ସେହି ପଚା ହୋଟେଲର ପଚା ଆଇସକ୍ରିମ୍ ପାଇଁ

ତୁମେ ପାଗଳ ହେଇ ଯାଉଥିଲ । ନୈନୀର ଆଇସକ୍ରିମ ଖାଇଲେ ତମେ ଏଠାରୁ ଯିବାକୁ କେବେ ଚାହିଁବ ନାହିଁ । ଥରେ ଚାଲିଆସ କଲୀ, ଫର ଓଲ୍ଡ ଟାଇମ୍ ସେକ" ଆଉ କଲୀ ଆଠଦିନର ଲମ୍ବା ଛୁଟି ନେଇକରି ସିଧା ଏଲ୍‌ହାବାଦ ଚାଲିଗଲା ।

କଲୀ ପ୍ରଥମ ଥର ଏଲହାବାଦ ଆସିଥିଲା । କଲିକତା, ଦିଲ୍ଲୀ ଆଉ ବମ୍ବେ ପରେ ତାକୁ ଏହି ସହର ବିଚିତ୍ର ଶୁଖିଲା, ଅନୁର୍ବର ଗ୍ରାମ ପରି ମନେହେଲା ।

ବିବିୟନ ତାର୍ କଜିନ ସହିତ ଷ୍ଟେସନରେ ଛିଡ଼ା ହେଇଥିଲା । କଲୀକୁ ଦେଖିଲା ମାତ୍ରେ ହିଁ ସେ ତାକୁ କୁଣ୍ଢେଇ ଧରିଲା, "ଆଇ ସେ ୟୁ ଆର ମଚ ମଚ....." ସେ ଯେମିତି କଲୀର ସାଜସଜ୍ଜା ଆପାଦମସ୍ତକ ବଦଳି ଯାଇଥିବା ସୌନ୍ଦର୍ଯ୍ୟ ଦେଖିକରି ଘୁଙ୍ଗୀ ହେଇ ଯାଇଥିଲା । 'ମଚ-ମଚ' ପରେ କୌଣସି ବିଶେଷଣ ତାକୁ ମିଳୁ ନଥିଲା ।

"କିଏ କହିବ କି ଇୟେ କଲୀ ମଜୁମଦାର ଅଟେ । ତୁ ତ ବହୁତ ସାଜସଜ୍ଜା କରିଲୁଣି କଲୀ ! ବାପରେ ବାପ, କେଉଁ ସେଣ୍ଟରେ ? ରୈବଲୌନ ? ଶୈନେଲ ? ଆଇ ମଷ୍ଟ ସି ୟୁ ଆର ମଚ-ମଚ..." ସେ ପୁଣି ମଚ-ମଚ କହିବାରେ ଲାଗିଲା ଆଉ କଲୀ ତାର ହାତ ଧରିକରି ହଲେଇ ଦେଲା ।

"ବିବିୟନ, ଭୋକରେ ନାଡ଼ିଭୂଡ଼ି ବାହାରି ଆସିଲାଣି, କ'ଣ ଏହି ଏହ୍ଲାବାଦ ଆସିଲା ବାଲା ଲାଇନ୍‌ରେ ଲୋକେ ଏକାଦଶୀ କରି ଚାଲିଥାନ୍ତି ? କେଉଁଠି ଗୋଟିଏ ବିକ୍ରୟ ଦ୍ରବ୍ୟ ପୂର୍ଣ୍ଣ ପସରାବାଲା ହେଲେ ଦେଖାଯାଇଥାନ୍ତା...."

"ଆରେ ବା ! କ'ଣ ହରନାମଗଞ୍ଜର ବୁଟଚଣା ମଧ ମିଳିଲା ନାହିଁ ତତେ ? ଆମେ ତ ପ୍ରାୟ ହରନାମଗଞ୍ଜର ଷ୍ଟେସନ ପର୍ଯ୍ୟନ୍ତ ଯାଇ, ବୁଟଚଣା ଖାଇକରି ଫେରିଆସୁ", ବିବିୟନ କାଞ୍ଚନିକ ଟାକରା ଫୁଟେଇ କହିବାକୁ ଲାଗିଲା, "କେମିତି ବଢ଼ିଆ ତିଆରି ହୁଏ, ହୁଏ ନା ରୋବର୍ଟ ? ଓହୋ, ଯାକୁ ତ ଚିହ୍ନା କରେଇ ନାହିଁ । ଏହା ସହିତ ପରିଚିତ ହୁଅ, ମୋର କଜିନ ବୋବି ଆଉ ମୋର ପରମପ୍ରିୟ ସୁନ୍ଦରୀ ସଖୀ କୃଷ୍ଣକଲୀ ମଜୁମଦାର ।" ଶ୍ୟାମଳ, ଦୁର୍ବଳ-ପତଳା ଯୁବକ ବାଳକୁ ଯତ୍ନକରି ନଚେଇ ହାତ ମିଳେଇବାକୁ ଆଗେଇ ଆସିଲା । ତାହାର ଲମ୍ବା ଅଙ୍ଗୁଳିରେ ପିନ୍ଧିଥିବା ସିଗ୍ନେଟ ରିଙ୍ଗକୁ ଥରକୁ-ଥର ତା'ର ଆଖିର ତଳେ ବୁଲୋଉଥିଲା, ଏହା କଲୀ ଦେଖି ନେଲା । ବୋବିର ପେଣ୍ଟ ଦୃଢ଼ ଭାବରେ ଶରୀରରେ ସିଲେଇ ହେଲାପରି ଲାଗୁଥିଲା । ସେ କୌଣସି ପତଳା, କୌଣସି ବେଲେଡ଼ାନ୍ସର ପରି ଗୋଡ଼କୁ ନଚେଇ ସେ ନିଜ ଅଠରଶ ଶତାବ୍ଦୀର ମୋଟର ଗାଡ଼ିର ଦୁଆର ଖୋଲିକରି ଡେଇଁଲା ଆଉ ଏମିତି ଢଙ୍ଗରେ ଦୁଆର ଖୋଲିକରି ଏଟେନ୍‌ସନ୍‌ରେ ଛିଡ଼ା ହେଇଗଲା ଯେମିତିକି କୌଣସି ଲିମୋସିନର ଦ୍ୱାର ଖୋଲି ଛିଡ଼ା ହେଇଛି ।

"ଏଥର ବୋବୀର ଏହି ଗାଡ଼ିକୁ ପୁରସ୍କାର ମିଳିଛି କଲୀ," ବିବିୟନ ଆଖି ମାରିକରି କଲୀର ବାହୁରେ ଚିମୁଟି ଦେଲା ।

"ପ୍ରଥମ ପୁରସ୍କାର", ବୋବୀ ବହୁତ ଗମ୍ଭୀର ସ୍ୱରରେ ବିବିୟନକୁ ବାଧା ଦେଲା ।

"ମୋଷ୍ଟ ୱେଲ କେପ୍ଟ କାର", କାରର ସାର୍ଟିଫିକେଟ ମଧ୍ୟ ଏହାକୁ ମିଳିଛି । 'ମାଇ ଡିଅର ଓଲ୍ଡ ଗାର୍ଲ' ବୋବୀ କାରକୁ ବହୁତ ପ୍ରେମରେ ଥାପୁଡ଼େଇ ଷ୍ଟାର୍ଟ କଲା, କିନ୍ତୁ 'ଡିଅର ଓଲ୍ଡ ଗାର୍ଲ' ରଷିକରି ବସି ରହିଲା । ତା'ର ମେସିନ୍‌ରେ ମାଲିକର ସ୍ପନ୍ଦନ ମଧ୍ୟ ହେଲା ନାହିଁ ।

"ଆଜି କିଛି ଥଣ୍ଡା ମଧ୍ୟ ଅଛି । ହୁଏତ ଇଞ୍ଜିନ ଏଥିରେ ଗରମ ହେଉନାହିଁ, ବିବିୟନ", ସେ ଲଜ୍ଜିତ ସ୍ୱରରେ କୈଫିୟତ ଦେଇ ତଳକୁ ଓହ୍ଲାଇ ଆସିଲା ।

"ଏ ଭାଇ", ସେ ପାଖରେ ଛିଡ଼ା ହେଇଥିବା ତିନି ଚାରି ବାଳକକୁ ଡାକିଲା, "ଟିକିଏ ଠେଲିଦେବ, ବକ୍ସିସ୍ ଦେବି ।"

"ମୁଁ ଏହାକୁ ପ୍ରଥମରେ କହି ଦେଇଥିଲି ଯେ ବୋବୀ ରିକ୍ସାରେ ଯିବା, ଗାଡ଼ି ରଖିଦିଅ କିନ୍ତୁ ଶୁଣିଲା ନାହିଁ । ଏବେ ଖୁବ୍ କମରେ ତିନି ଡର୍ଜନ ଲୋକ ଠେଲିବେ, ତେବେ ଏହାର ଭଙ୍ଗା ଗାଡ଼ି ଚାଲିବ ।"

କିନ୍ତୁ ହୁଏତ ସୁନ୍ଦରୀ କଲୀର ସମ୍ମୁଖରେ ଅପଦସ୍ତ ହେବାପାଇଁ ସ୍ୱାମୀର ଲଜ୍ଜିତ ହେବା ଅଚଳ ଗାଡ଼ି ଅନୁମାନ କରି ନେଇଥିଲା । ଗୋଟିଏ ହାଡ଼ଭଙ୍ଗା ଧକ୍କାରେ ସେ ଷ୍ଟାର୍ଟ ହେଇଗଲା ।

"ଥେଙ୍କ ଗଡ୍ ବୋବୀ, ତମର ହୋଙ୍କର ଆଜି ହୁଏତ ଘର ପର୍ଯ୍ୟନ୍ତ ପହଞ୍ଚାଇ ଦେବ ।"

"ଏମିତି କଥାତ ନୁହେଁ ସିସ", ଆଉ ବୋବୀ ହୁଏତ କଲୀ ଉପରେ ନିଜର ପ୍ରଭାବର ମୁଦ୍ରା ଜମେଇବା ପାଇଁ ହୋଙ୍କରର ସ୍ପୀଡ଼ ହଠାତ୍ ଅଧିକ କରିଦେଲା । କଲୀ କେବେ ସଂକୀର୍ଣ୍ଣ ଆଉ କେବେ ଆଶ୍ଚର୍ଯ୍ୟଜନକ ଜୋରରେ ପ୍ରଶସ୍ତ ହେଇ ଯାଉଥିବା ଏଲ୍‌ହାବାଦର ବହୁ ରଙ୍ଗର ସଡ଼କକୁ ଦେଖି ଯାଉଥିଲା । କେବେ ଗନ୍ଧିଆ ବସ୍ତିଘରର ବୁଦାଳିଆ ଜଙ୍ଗଲ ସମ୍ମୁଖରେ ବନ୍ଧା, କାଦୁଅ-ଗୋବର ଲଟପଟ ହେଇଥିବା ଭୀମକାୟ ମଇଁଷି ପାକୁଳି କରୁଥିବା ଦେଖା ଯାଉଥିଲା, କେତେବେଳେ ଚକମକ କରୁଥିବା ସୁନ୍ଦର ଅଟ୍ଟାଳିକାମାନଙ୍କ ମଧ୍ୟରେ ବର୍ଷାକାଳରେ ଛିଡ଼ା ହେଇଥିବା ରେମଲ ଆଉ ନୂଆ ଫିଏଟ ଗାଡ଼ିଗୁଡ଼ିକ ।

"ବେଶ୍ ଏବେ ଆମେ ପହଞ୍ଚି ଯାଇଛୁ, ସେଇଟା ହେଉଛି ଆଣ୍ଟିର ବଙ୍ଗଳା," ବିବିୟନ କହିଲା ।

ବୋବୀ କୁଶଳ ଚାଳକର ମୁଦ୍ରାରେ କେବଳ ବାମ ହାତର କହୁଣିରେ "ହ୍ୱିଲ ସହିତ, ନଇଁପଡ଼ି ସିଗାରେଟ ଜଳଉ ଥିଲା । ତା ସହିତ ପାଖରେ ଲାଗିଥିବା ଛୋଟ ଦର୍ପଣର ମାଧ୍ୟମରେ କଣେଇ ଚାହାଣିରେ କଲୀକୁ ମଧ୍ୟ ଦେଖି ଯାଉଥିଲା । ତା'ର ସବୁବେଳେ କୃତ୍ରିମ ବ୍ୟକ୍ତିତ୍ୱକୁ କ୍ଷଣିକ ଝଲକରେ କଲୀ ମଧ୍ୟ ସେହି ଦର୍ପଣରେ ଦେଖି

ନେଲା । କୌଣସି ବିଦେଶୀ ଚଳଚ୍ଚିତ୍ରର ନାୟକର ସେହି ମୁଦ୍ରାକୁ ବୋବୀ ବହୁ ଯତ୍ନରେ କଣ୍ଠସ୍ଥ କରିଥିବ, ଏହା ସେ ମନକୁ ମନ ବୁଝି ଯାଇଥିଲା ।

"ଆଇ ହୋପ, ଆଣ୍ଟି ଗାଧେଇ-ପାଧେଇ କରି ପ୍ରସ୍ତୁତ ହେଇ ଯାଇଥିବ । ତାଙ୍କୁ ଗାଧେଇବାରେ ମଧ୍ୟ ପୁରାଦିନ ଲାଗିଯାଏ," ବିବିୟନ କହିଲା ।

ବୋବୀ ଗୋଟିଏ ପରିଷ୍କାର ପରିଚ୍ଛନ୍ନ ବଙ୍ଗଳାର ସାମ୍ନାରେ ଗାଡ଼ି ରଖିଦେଲା ଆଉ ଫଟ୍ କରି ଗାଡ଼ିର ଦ୍ୱାର ଖୋଲିକରି, ସୈନ୍ୟମାନଙ୍କ ପରି ପାଦ ରଖି, ଆଉଥରେ ପୁଣି ଏଟେନସନ ମୁଦ୍ରାରେ ଛିଡ଼ା ହେଇଗଲା ।

"ବହୁତ ପରିଷ୍କାର ପରିଚ୍ଛନ୍ନ କଲୋନୀ ଅଟେ, କଲିକତାରେ ତ ଆମେ ଅଧାଗଜ ଆକାଶର ଝଲକ ଦେଖିବାକୁ ହିଁ ବ୍ୟାକୁଳ ହେଇଯାଉଁ", କଲୀ ପ୍ରଶଂସାପୂର୍ଣ୍ଣ ଦୃଷ୍ଟିରେ ଆଣ୍ଟିର ବଙ୍ଗଳାକୁ ପରୀକ୍ଷା କରି କହିଲା ।

"ଆଜ୍ଞା ହଁ, ଆଜ୍ଞା ହଁ, ୟୁ ଆର ରାଇଟ୍," ବୋବୀ ଯେମିତି ଏତେ କ୍ଷଣ ପର୍ଯ୍ୟନ୍ତ କଥା କହିବାକୁ ଛଟପଟ ହେଉଥିଲା - "କଲିକତାରେ ମୁଁ ମଧ୍ୟ ଅନେକ ଦିନ ରହିଛି, ଏଠାରେ ତ ସବୁ ଏଙ୍ଗଲୋ ଇଣ୍ଡିୟାନ ପରିବାର ରହନ୍ତି । ଏମିତିରେ ଆଣ୍ଟିର ବଙ୍ଗଳା ହୁଏତ ଏହି ବସ୍ତିର ସବୁଠାରୁ ପୁରୁଣା ବଙ୍ଗଳା ଅଟେ କିନ୍ତୁ ମନେହୁଏ ଏକଦମ ନୂଆ ଅଟେ, ନୁହେଁ ?" କଲୀର ଗୃହ-ପ୍ରବେଶ ପୂର୍ବରୁ ବୋବୀ ମହା ଉତ୍ସାହରେ ନିଜ ବଙ୍ଗଳାର ସରସ ଭୂମିକା ଦେଇ ତାକୁ ଭିତରକୁ ନେଇଗଲା ।

ବଙ୍ଗଳା ଛୋଟ ହେଲେ ମଧ୍ୟ, ପ୍ରକୃତରେ ପୁରା ଧାଡ଼ିରେ ସବୁଠାରୁ ଆକର୍ଷକ ଲାଗୁଥିଲା । ଘୋଡ଼ାର ନାଳ ଆକାରରେ ତିଆରି ହେଇଥିବା ବାରଣ୍ଡାରେ ତିନି-ଚାରୋଟି ରଂଗ ବେରଙ୍ଗର କୁଲା ଆକାରର ଚଉକି ପଡ଼ିଥିଲା । ସେଗୁଡ଼ିକ ମଝିରେ ଗୋଟିଏ ମାନ୍ଧାତା ଅମଳର, ସେମିତିହିଁ ଆରାମ ଚଉକି ଥିଲା ଯେମିତି କି ପ୍ରାୟ ରେଲୱେ ୱେଟିଂ ରୁମ୍‌ରେ ପଡ଼ିଥାଏ । ତା ଉପରେ ପଡ଼ିଥିବା ନୀଳ ଛିଟର ତିନିକୋଣିଆ କୁସନକୁ ଠିକ୍‌କରି ବିବିୟନ କହିଲା, "ଆ, ତୁ ଏଠାରେ ବସ । ମୁଁ ଦେଖେ - ଆଣ୍ଟି ଗାଧେଇ ସାରିଛି ନା ନାହିଁ ।" ହଠାତ୍ ଥଣ୍ଡା ହାୱାର ଧକ୍କା ସହିତ ବଉଳର ସୁଗନ୍ଧରେ ବାରଣ୍ଡା ଭରି ଗଲା ।

"ବା; କେତେ ବଢ଼ିଆ ବାସନା ଆସିଲା- ପାଖରେ କେଉଁଠି ବଉଳର ଗଛ ଅଛି ହୁଏତ !" କଲୀ ନାକପୁଡ଼ାକୁ ହାତରେ ଘଷି କ୍ଷଣକ ପାଇଁ ଆସି ଲୋପ ହେଇ ଯାଇଥିବା ସୁଗନ୍ଧକୁ ସୁଙ୍ଘିକରି କହିଲା ।

"ଆଜ୍ଞା ହଁ, ବୋବୀ ମୋଡ଼ା ଟାଣିକରି ତା ପାଖକୁ ଘୁଞ୍ଚି ଆସିଲା - "ତିନି ତିନୋଟି ଗଛ ଅଛି । କେବେ କେବେ ତ ଛୋଟ ଛୋଟ ଫୁଲର ଚାଦର ପରି ବିଞ୍ଚି ହେଇଥାଏ ।" କଲୀ ତା'ର ଉତ୍ତରକୁ ନଶୁଣି ହିଁ କାନ୍ଥରେ ଲାଗିଥିବା ବାହାରର ସିଙ୍ଘର ନିର୍ଜୀବ ମୁଣ୍ଡକୁ ଦେଖୁଥିଲା । ସେମାନଙ୍କ ସିଙ୍ଘ ଉପରେ କରାଯାଇଥିବା କଳା ବାର୍ନିସ ଏମିତି ଚକଚକ କରୁଥିଲା, ଯେମିତିକି ଏବେ ଏବେ କେହି ବ୍ରସ କରି ଯାଇଛି ।

"ଏହା ସବୁ କୋରବେଟର ଆଣ୍ଟିକୁ ଦେଇ ଯାଇଥିବା ଉପହାର ଅଟେ । ଆଣ୍ଟିର ପରମ ମିତ୍ର ଥିଲେ, କୋରବେଟ । ତାଙ୍କରି ପାଇଁ ମେନଇଟରର ବାଘନଖର ଏକ ଦର୍ଶନୀୟ ନେକଲେସ୍ ମଧ ଅଛି ଆଣ୍ଟି ପାଖରେ ।" ତା'ର ଅନବରତ ବକର-ବକରରେ କଳୀର ମୁଣ୍ଡ ବଥେଇବାକୁ ଲାଗିଥିଲା, ଏକରେ ସାରା ରାତି ଶୋଇ ମଧ ପାରି ନଥିଲା, ତା ଉପରେ ଭୋକରେ ନାଡ଼ିଭୁଡ଼ି କିଲବିଲ ହେଉଥିଲା । "ଏଇ ଦେଖ", ବିବିୟନ ଚପଲ ଫଟଫଟ କରି ପୁରା ବଙ୍ଗଳାର ପରିକ୍ରମା କରି, ପୁଣି ତା ସମ୍ମୁଖରେ ଛିଡ଼ା ହେଇକରି ହସିବାକୁ ଲାଗିଲା, "ଆମେ ସାରା ବଙ୍ଗଳା ଖୋଜି ଆସିଲେ ଆଣ୍ଟି କେଉଁଠି ଅଛି ଆଉ ଆଣ୍ଟି ସାମ୍ନାରେ ଶୋଇ ସନବାଥ ନେଉଛି ।"

ସବୁଜ ଦୁବ ବିଶିଷ୍ଟ ମଖମଲୀ ଲନରେ, ଏକ ଇନ୍ଦ୍ରଧନୁ ପରି ବିରାଟ ଛାତ ତଳେ, ପିକନିକ୍ ମେଟ୍ରେସ ଉପରେ, ସାଧୁମାନଙ୍କ ପରି ଦୁଇଟି ଗଣ୍ଠିର ଲେଙ୍ଗୁଟି, ଆଉ ପଟି ପରି ପତଳା ଅନ୍ତର୍ବାସରେ, ବିବିୟନର ପୁତନା ପରି ଆଣ୍ଟି, ଆଖିରେ ଖରାର ଚଷମା ଲଗେଇ ଚିତ ହେଇ ପଡ଼ି ସୂର୍ଯ୍ୟସ୍ନାନ କରୁଥିଲା ।

"ବୋବୀ ।" ବିବିୟନ ବୋବୀକୁ ହାତ ଧରି କରି ଉଠେଇ ଦେଲା । "ଏବେ ତ ଆଣ୍ଟି ଗାଧେଇ ମଧ ନାହିଁ, ତାଙ୍କର ସନବାଥର ରିଚୁଏଲ ଚାଲିଛି । ତୁମେ ଯାଇକରି ସାଇମନ୍‌କୁ କହିଦିଅ ଉପସ୍ଥିତ ହେଉ । କଳୀ ବିଚାରିକୁ ବହୁତ ଭୋକ ହେଉଛି.... ।"

ଆଣ୍ଟିର ପାହାଡ଼ ପରି ଦେହ ଦେଖିକରି କଳୀ ଭୟଭୀତ ହେଇ ଯାଇଥିଲା । ଇଏ ନାରୀ ଥିଲା କି ଗଣ୍ଡା !

ଏକରେ ହୁଏତ ଆଣ୍ଟିର ଧରାଶାୟୀ ହେବାର ବିଚିତ୍ର ମୁଦ୍ରାରେ, ତାଙ୍କର ବେଢ଼ଙ୍ଗିଆ ସ୍ଥୁଳତା, କୌଣସି ଆଜେ-ବାଜେ ସିମେଣ୍ଟର ଫଟା ବସ୍ତାରୁ ଝରୁଥିବା ସିମେଣ୍ଟ ପରି ମାଟି ଉପରେ ପଡ଼ିକରି ଚାରିଦିଗରେ ବିଞ୍ଛି ହେଇ ଯାଇଥିଲା । ଦୁଇଟି ମୋଟା-ମୋଟା ବାହୁ ଆଉ ପୁରୁଣା ବରଗଛର ମୋଟା ଗଣ୍ଡି ପରି ହୃଷ୍ଟ ପୁଷ୍ଟ ଗୋଡ଼ର ବିସ୍ତାର, ସେ କୌଣସି ମୋଟରର ଚକ ତଳେ ଚେପାହୋଇ ମୋଟା ବେଙ୍ଗପରି ଅଚଳ ହେଇ ପଡ଼ିଛି, ସନବାଥ ନେଉଥିଲା ।

"ଏ ଦିଗରେ ଆଣ୍ଟି ସ୍ଲିମିଂର ଉଦ୍ଦେଶ୍ୟରେ ଅଛି ।" ବିବିୟନ ହୁଏତ କଳୀର ଆଶ୍ଚର୍ଯ୍ୟ ଚକିତ ଭୟଭୀତ ଦୃଷ୍ଟିକୁ ଚୋରପରି ଧରି ନେଇଥିଲା । "ଏକରେ ହାଇ ବ୍ଲଡ୍‌ପ୍ରେସର ଅଛି, ତା ଉପରେ ଏହି ପୃଥୁଳ ଶରୀର । ଡାକ୍ତରଙ୍କ କହିବା ହେଉଛି ଯେ, କେବେ ଏହି ପୃଥୁଳ ଶରୀର ଯାଙ୍କର ପ୍ରାଣ ନେଇପାରେ । କିନ୍ତୁ ଆଣ୍ଟିର ଉଇକ୍‌ନେସ୍ ହେଉଛି ଖାଇବା । ଦିନ-ସାରା ପରିବା ଝୋଳ ଖାଇକରି କଟେଇ ଦେବ, କିନ୍ତୁ ସନ୍ଧ୍ୟାବେଳେ ଆମ ସମସ୍ତଙ୍କର ଦୃଷ୍ଟିକୁ ଏଡ଼େଇ କ୍ୱାଲିଟିରେ ବସି, ଏକା ଥରକେ ଦେଢ଼ ଡର୍ଜନ ପେସ୍ଟ୍ରି ଖାଇଦେବ । ଏହି କୁପଥ୍ୟ ପାଇଁ ଏହି ସପ୍ତାହରେ ଆଣ୍ଟି ନିଜ ଓଜନ ପୁଣି ତିନି ପାଉଣ୍ଡ ବଢ଼େଇ ଦେଇଥିଲା । ଚାଲ, ତୁ ହାତ ମୁହଁ ଧୋଇ ନେ । ତତେ ତ ବହୁତ

ଭୋକ ହେଉଛି ନା ?"

ପ୍ରକୃତରେ ଭୋକ ପାଇଁ କଲୀର ପ୍ରାଣ କଣ୍ଠାଗ୍ରତ ହେଇ ଆସିଥିଲା । କଣ୍ଢେଇର ଖେଳଘର ଠାରୁ ଛୋଟ ଛୋଟ ବଖରାର ସଜ୍ଜା ଦେଖିକରି କଲୀ ନିଜର ଭୋକ ଏବଂ କ୍ଲାନ୍ତି ଭୁଲି ଯାଇଥିଲା ।

"ଏଇଟା ମୋର ବଖରା ଏଠାରେ ମୁଁ ତୋର ପଲଙ୍କ ମଧ୍ୟ ଲଗେଇ ଦେଇଛି । କେତେ ମଜା ହେବ କଲୀ," ବିବିୟନ ତାହାକୁ ଟାଣିକରି, ତା'ର କୋମଳ ପଲଙ୍କରେ ବସେଇ ଦେଲା । "ଠିକ୍ ଯେମିତି ରେମନୀର ଡୌର୍ମରେ ପହଞ୍ଚି ଯାଇଛୁ । ଜଣାନାହିଁ ତୁ କାହିଁକି କଲିକତା ଚାଲିଗଲୁ । ମୁଁ ତ କହୁଛି ପୁଣି ଏଠାକୁ ଚାଲି ଆ । ତୁ ମୋର ଏହି ଆଣ୍ଟି ସହିତ କଥାବାର୍ତ୍ତା କରିବୁ ତ ପୁଣି କେବେ ଏଲ୍‌ହାବାଦ ଛାଡ଼ିକରି ଯିବାର ନାମ ମଧ୍ୟ ନେବୁ ନାହିଁ । ଦେଖ, ମନେ ହେଉଛି ଆଣ୍ଟି ଆସିଗଲା ।" ଅଧାଶୁଆ କଲୀ ସମ୍ଭାଳି କରି ବସି ପଡ଼ିଲା ।

"ଓ ମାଇ ଡିଅର, କେତେ ଶକ୍ତି ଅଛି ସୂର୍ଯ୍ୟଙ୍କ ଠାରେ ! ମନେ ହେଉଛି ଥରେ ପୁଣି ଷୋହଳ ବର୍ଷର ହିଁ ହେଇ ଯାଇଛି ।" ହସିକରି ଆଣ୍ଟି ଦରଜା ପାଖରେ ଛିଡ଼ା ହେଇଥିଲା ।

"ଆଚ୍ଛା ଇଏ ହେଉଛି ତମର କଲୀ ! ବା ଏକଦମ୍ ସେହି ମାନଚିତ୍ର ଅଟେ, ଯାହା ଯଉବନ କାଳରେ କେବେ ମୋର ଥିଲା ।"

ଗୋଟିଏ ଲମ୍ବା ନିଶ୍ୱାସ ଟାଣିକରି ଆଣ୍ଟି କଲୀର ଆକର୍ଷକ ଅଙ୍ଗରେ ନିଜର ମୁଗ୍ଧ ଦୃଷ୍ଟିର ଫୋକସ ଏମିତି ବାନ୍ଧିକରି ରଖିଦେଲା ଯେ କଲୀ କେବେ ପୁରୁଷଙ୍କର ଏମିତି ପ୍ରଶଂସାତ୍ମକ ଦୃଷ୍ଟିକୁ ମଧ୍ୟ ନିଜ ଉଦ୍ଧତ ସ୍ୱଭାବର ତାଲରେ ସହ୍ୟ କରି ନେଉଥିଲା, ସେ ଆଜି ଜଣେ ସ୍ତ୍ରୀର ମୁଗ୍ଧ ଦୃଷ୍ଟିର ଆକ୍ରମଣ ଫଳରେ ଲାଲ୍ ପଡ଼ି ରହିଗଲା ।

"ଥାର୍ଟିଫୋର, ନାଇନ୍‌ଟିନ୍, ଥାର୍ଟିସିକ୍ସ, ଆଇ କେନ୍ ବେଟ୍, ଏହାହିଁ ଏହି ମାନଚିତ୍ରର ମାପ-କାଠି ହେବ । କ'ଣ ସେତିକି ନା କଲୀ ? ବା, ବହୁତ ଦିନ ପରେ ଗୋଟିଏ ସୁନ୍ଦର ଚେହେରା ଆଉ ସୁନ୍ଦର ଫିଗର ଦେଖିବାକୁ ମିଳିଲା ।" ବଡ଼-ବଡ଼ ଗୋଲାପ ଥିବା ଡ୍ରେସିଂ ଗାଉନରେ ଆଣ୍ଟିର ବିରାଟ ଦେହ ଆହୁରି ସମତଳ ମନେ ହେଉଥିଲା । "ବିବିୟନ ଝିଅ", ଆଣ୍ଟି କହିବାକୁ ଲାଗିଲା, "ଆଜି ମୁଁ ଡେରିରେ ଗାଧେଇବି । ଚାଲ, ପ୍ରଥମେ ଜଳଖିଆ ଶେଷ କରିବା, କଲୀର ଭୋକ ହେଉଥିବ ।"

ଖାଇବା ଘରର ଚମକୁ ଥିବା ଟେବୁଲର ଶୀର୍ଷ ଭାଗରେ, ସବୁଠାରୁ ଚଉଡ଼ା ଚଉକି ଉପରେ ଆଣ୍ଟି ବସି କହିବାକୁ ଲାଗିଲା, "ନିଜର କୋଠାଘରକୁ ପୁରା ଲମ୍ବା - ଚଉଡ଼ାର କ୍ଷେତ୍ରଫଳ ଦେଇକରି ମୁଁ ଏହି ଚଉକି ବନେଇଛି କଲୀ ଦେଖୁଛୁ ନା ? ଏଥିରେ ତମପରି ସାତଟି କଲୀ ଏକା ଥରକେ ବସି ପାରିବେ । ଆସ, ତମେ ମୋ ପାଖରେ ବସିବ ।" କଲୀର ହାତ ଟାଣିକରି ଆଣ୍ଟି ତାକୁ ନିଜ ପାଖରେ ବସେଇ ଦେଲା ।

## ଦଶ

ଡାଲି, ସିଝା ଅଣ୍ଡା ଟୋଷ୍ଟ ସଜେଇ କରି ସାଇମନ ଗୃହସ୍ୱାମିନୀଙ୍କ ପାଇଁ ଏକ ସୁପ-ପ୍ଲେଟରେ ସିଝା ହେଇଥିବା ପରିବାର ଖାକିରଙ୍ଗର ପାଣି ରଖିଗଲା, ତାକୁ ଦେଖି ଆଣ୍ଟି କୌଣସି ମୁଣ୍ଡରେ ଚଢ଼ିଥିବା, ରୋଗୀ ଅବୋଧ ବାଳକ ପରି ମୁହଁ ଶୁଖେଇ ଦେଲା ।

"ଦେଖୁଛୁ ବିବିୟନ, ଏହି ସାଇମନର ଛୁଆ ଆଜି ଏହି ସୁପରେ ପୁଣି ମତେ ଜ୍ୱଳେଇବା ପାଇଁ ଶାଲଗମ ପକେଇ ଦେଇଛି । ତମେ ହିଁ ଦେଖ ଝିଅ କଳୀ, ମନେ ହେଉଛି ନିଜର ପତ୍ନୀର ଧୋତି ଧୋଇକରି ତାହାର ପାଣି ଗରମ କରି ନେଇ ଆସିଛି । ଗୋଟିଏ ଟମାଟୋ ପକେଇ ଦେଇଥାନ୍ତା । ହି କୁଡ଼୍ ହେଭ ପୁଟ ସମ କଲର ।"

"ଆଣ୍ଟି, ତମେ ଜାଣିଛ ଯେ ତମର ଓଜନ ଏ ଦିଗରେ ପୁଣି ବଢ଼ିବାକୁ ଲାଗିଛି । ଡାକ୍ତର ମୋକେଜ ଯେଉଁ ସୁପ ତମକୁ କହିଥିଲେ, ଏହି ସପ୍ତାହରେ ତାହାହିଁ ପିଇବାକୁ ପଡ଼ିବ ।" ବିବିୟନ ଗେଲ କରିବା ସ୍ୱରରେ କହିଲା ଆଉ ପ୍ଲେଟ ଆଣି ସମ୍ମୁଖରେ ଧରିକରି ଚାମୁଚ ତାଙ୍କର ହାତରେ ଧରେଇ ଦେଲା । ଏକ ପ୍ଲେଟରେ ଦୁଇ ଖଣ୍ଡ ଶୁଖିଲା ଟୋଷ୍ଟ ସେଥିରେ ବୁଡ଼େଇ କରି ଶୁଖିଲା ମନରେ ଆଣ୍ଟି ଖାଏ, ଲୋଲୁପ ଦୃଷ୍ଟିରେ ଟେବୁଲ ଉପରେ ଥିବା ଲହୁଣୀର ଗୋଳ ଗିନାକୁ ଏକ ଦୃଷ୍ଟିରେ ଦେଖି କହିବାକୁ ଲାଗିଲା- ଆସନ୍ତା ଥର ସେହି ବଦମାସ ମୋକେଜର କଲିଜାକୁ ଭାଜିକରି ଖାଇବି, ଦେଖିବ । ଆପଣତ ଏକ ପ୍ରକାରର ରେଶମ ବସ୍ତ୍ର ଖାଇକରି ମୋଟା ହେଇଛନ୍ତି । ଏବେ ତୁ ହିଁ କହ ଝିଅ କଳୀ, ଏହି ଶରୀରରେ ଏହି ଦୁଇଖଣ୍ଡ ଶୁଖିଲା ଶେଷ ଆଉ ଏଇ ଆଞ୍ଜୁଳା ଭର୍ତ୍ତି ଗୋଳିଆ ଉଷୁମ ପାଣିରେ କିଛି ଉତପ୍ତ କରି ପାରିବ ? ପ୍ରତ୍ୟେକ ଦିନ ଏହି ଖାଇବା, ତା ଉପରେ ମଧ୍ୟ ଓଜନ ବଢ଼ିବାରେ ଲାଗିଛି । ମୋର ମନେ ହେଉଛି, ଜାଣିଶୁଣି କରି ସେ ଓଜନ ମାପିବାର ମେସିନ୍‌ର ଛୁଞ୍ଚ ଖରାପ କରି ଦେଇଛନ୍ତି । ଅସଲରେ ଯୌବନରେ ମୋ ପାଇଁ ମରୁଥିଲା ମୋଟା, ମୁଁ ଏହାର ପ୍ରପୋଜାଲକୁ ହସିକରି ଅଗ୍ରାହ୍ୟ କରିଥିଲି । ସେହି ବଦଲା ତ ନେଉଛି ଏବେ," ଆଣ୍ଟି ହସିକରି କହିଲା ଆଉ ଝାମ୍ପମାରି ଲହୁଣୀର ଗୋଳା ମୁହଁରେ ପୂରେଇ ଚଟ୍ କରି ଗଳି ଦେଲା, କୌଣସି ଚତୁର ଯାଦୁକର ପରି ଗର୍ବରେ ହସିବାକୁ ଲାଗିଲା ।

"ଦେଖୁଛୁ ବୋବୀ, କେବେ କେବେ ତ ଆଣ୍ଟି ପିଲାଙ୍କୁ ମଧ୍ୟ ପରାଜୟ କରିଦିଏ - କାଲି ଆପଣ ଏମିତି ହିଁ ଝାମ୍ପ ମାରିକରି ପୁରା ଡବଲ ରୋଟି ଖାଇଗଲ ।"

ବିବିୟନର ଧମକରେ ଭୟକରି ଆଣ୍ଟି ନାପକିନ୍‌ରେ ମୁହଁ ପୋଛି କରି ଲଜ୍ଜିତ ହେଇ ଉଠିଗଲା, "ଜଣା ନାହିଁ କ'ଣ ହେଇଯାଏ ମୋର । ଏଠାରେ ମତେ ଭୋକରେ

ମାରିକରି ତୁମେ ମୋର ନିୟମ ବହୁତ ଖରାପ କରି ଦେଉଛ । ଖାଇବା ଦେଖିକରି ନିଜକୁ ସମ୍ଭାଳି ପାରେ ନାହିଁ । ଦେଖ ବିବିୟନ, ଆଜିଠାରୁ ପକ୍କା ଖ୍ରୀଷ୍ଟିୟାନ ରିଜୋଲ୍ୟୁସନ ନେଉଛି । ତମକୁ ନ ପଚାରି ଖାଇବାର ଗୋଟିଏ ଜିନିଷ ମଧ୍ୟ ଜିଭରେ ରଖିବି ନାହିଁ ।"

"ମୋର କ'ଣ ଗଢ଼ିବା - ଭାଙ୍ଗିବା ଆଣ୍ଟି", ବିବିୟନ କଣ୍ଟା ଛୁରୀରେ ଆମଲେଟ୍‌ରୁ ଖଣ୍ଡେ ମୁହଁରେ ରଖି କହିଲା, "ତିନି ତିନି ଘଣ୍ଟା ଗୋଟିଏ, ବନ୍ଦ ଫୁଲକୋବି ପରି ଷ୍ଟିମରେ ସିଝୁଛ, ଗଣି ଗଣି କରି ହଜାର-ହଜାର ଦଉଡ଼ି ଡେଉଁଛ, କିନ୍ତୁ ଏକ ଛଅଇଞ୍ଚର ଜିଭକୁ ଅଟକେଇ ପାରୁନାହିଁ ।"

ଆଣ୍ଟି ଗାଧେଇବାକୁ ଚାଲିଯିବାରୁ କଲୀ ବଡ଼ ସ୍ୱାଭାବିକ ଭାବରେ ଜଳଖିଆ ଖାଇବାରେ ଲାଗିଲା । ଏବେ ପର୍ଯ୍ୟନ୍ତ ଆଣ୍ଟିର କ୍ଷୁଧାତୁରା ଦୃଷ୍ଟିର ତଳେ ସେ ଏକ ଗୁଣ୍ଡା ମଧ୍ୟ ଖାଇ ପାରି ନଥିଲା ।

"ଉଇ କାଣ୍ଟ ଏଫୋର୍ଡ୍ ଟୁ ଲୁଜହାର", ବିବିୟନର ଆଖି ସ୍ନେହାଶ୍ରୁରେ ଆଦ୍ର ହେଇ ଉଠିଲା । "ତୁମେ ଜାଣ ନାହିଁ, ଇଏ ମୋର କେମିତି ହୀରା ଆଣ୍ଟି ଅଟେ । ମମ୍ମୀର ସବୁଠାରୁ ଛୋଟ ଭଉଣୀ ଅଟେ । ମତେ ଆଜି ପର୍ଯ୍ୟନ୍ତ କେବେ ଏହା ମନେ ହେଲା ନାହିଁ ଯେ ମୋର ମା ନାହିଁ । ବୋର୍ଡ଼ିଂରେ ଯିବା ଆଗରୁ ଜନ୍ମର ଦଶବର୍ଷ ପର୍ଯ୍ୟନ୍ତ ମୁଁ ଏହାଙ୍କ ପାଖରେ ରହିଛି । ବୋବୀ ତ ଜନ୍ମର ତୃତୀୟ ବର୍ଷ ଏହାଙ୍କ ପାଖକୁ ଆସି ଯାଇଥିଲା । ଏହି ଶ୍ୱଶୁର ତ ଡେଙ୍ଗୀ ଆଣ୍ଟିକୁ ଜନ୍ମରୁ ଶୀଘ୍ର-ଶୀଘ୍ର ଖାଇଛି ।"

ସେ ବହୁତ ସ୍ନେହରେ ବୋବୀକୁ ଦେଖି ହସିଲା- ଆଖି ତଳକୁ କରି ବୋବୀ ଝିଅମାନଙ୍କ ପରି ଟୋଷ୍ଟକୁ ମୂଷାପରି ଦାନ୍ତରେ କାଟୁଥିଲା ।

"ଏବେ ପଅରଦିନ ଡାକ୍ତର ମୋଜେଜ କହି ଯାଇଛନ୍ତି ଯେ ଆଣ୍ଟିର ରକ୍ତଚାପ ବହୁତ ବଢ଼ିଯାଇଛି, କେବେ ହେଲେ ଷ୍ଟ୍ରୋକ ହେଇପାରେ । ଏଇଥି ପାଇଁ ମୁଁ ଏଠାକୁ ଆସିଲି । ଭାବିଲି, ପଢ଼ିବା ସହିତ ଆଣ୍ଟିର ଦେଖାଶୁଣା କରୁଥିବି, କିନ୍ତୁ ନାଓ ଆଇ ଫାଇଣ୍ଡ, ଇଟ୍ ଇଜ ଇମ୍‌ପସିବୁଲ୍ ।"

ତିନି-ଚାରି ଘଣ୍ଟା ପରେ, ଷ୍ଟିମ-ବାଥରେ ଗରମ ହେଇ ଧୋଇହେଇ ଆଣ୍ଟି ଯେମିତି ଶରୀରକୁ ବର୍ଦ୍ଧଲେଇ ଆସିଲା । ରଙ୍ଗ-ରୂପରେ ସେତ ନୌଖାଲିସ ଏଙ୍ଗଲୋଇଣ୍ଡିଏନ ଥିଲା ହିଁ, ସାଜ-ସଜ୍ଜା ମଧ୍ୟ ସେମିତିହିଁ ଥିଲା । ଏକ ଦୁର୍ବଳ ଫିକା ଲତାପତ୍ର ହେଇ, କେମ୍ବ୍ରିକର ଗାଉନରେ ସେ ତାଙ୍କର ବିସ୍ତାରିତ ମୋଟା ଦେହ ହୁଏତ ଯତ୍ନରେ ବଢ଼ା ଯାଇଥିବା କୌଣସି ଆବରଣରେ ବାନ୍ଧିକରି ରଖି ନେଇଥିଲା । କଟା ହେଇଥିବା କଳା ବାଳରେ ଲଗାହେଇଥିବା ଏଲିସବେଣ୍ଡ, ଗୋଲଗାଲ ବାଲା ସରଳ ଚେହେରାର ଆହୁରି ମଧ୍ୟ ସରଳ ମନେ ହେଉଥିଲା । ନୀଳ ଆଖି, କଳାବାଳରେ ଟିକିଏ ମଧ୍ୟ ମେଳ ଖାଉ ନଥିଲା କିନ୍ତୁ ଶିଶୁ ପରି ଓଠ ମଧ୍ୟରୁ ଉଙ୍କି ମାରୁଥିବା ଆଣ୍ଟିର ମୋତିପରି ଦାନ୍ତ ଦେଖିକରି କଲୀ ବୁଝି ପାରିଲା ନାହିଁ ଯେ ସୌନ୍ଦର୍ଯ୍ୟ କୌଣସି ପ୍ରସିଦ୍ଧ ଡେଣ୍ଟିଷ୍ଟର ଡେଞ୍ଚରରେ ଅଟେ

ନା ସ୍ୱୟଂ ବିଧାତାର ।

"ଓ ମାଇ ଡିଅର କଲୀ, ତମକୁ ମୁଁ କିସ ମଧ କରି ପାରିନାହିଁ, ସାରା ମୁହଁରେ ବଦମାସ ଆୟା ଅଢ଼େଇ ସେର ଅଲିଭ ମାଲିସ୍ କରି ରଖି ଦେଇଥିଲା । ତୁମକୁ ଚୁମାଦେଇ ସ୍ୱାଗତ କରିଥାନ୍ତି ମଧ କେମିତି ! ମୋଷ୍ଟ ୱେଲକମ୍ ମାଇ ବ୍ୟୁଟୀ", ଆଣ୍ଟି ତା'ର କୋମଳ ହାତରେ କଲୀର ଚେହେରାକୁ ଧରି, ଦୁଇ ଗାଲକୁ ଏମିତି ଶାରୀରିକ ଓ ମାନସିକ ଅବସ୍ଥାରେ ଚୁମା ଦେଲା କଲୀର ମନେହେଲା ଲହୁଣୀର ବଟିକା ପରି, ଆଣ୍ଟି ତା'ର ଦୁଇଗାଲକୁ ମଧ ଗିଳି ପକେଇଛି । ଲେଭେଣ୍ଡରର ମାଦକ ସୁଗନ୍ଧରେ କଲୀର ଆଖି ବନ୍ଦ ହେଇଗଲା । କୌଣସି ବିଦେଶୀ ସେଣ୍ଟର ଖୋଲା ବୋତଲ ପରି ଆଣ୍ଟି ଚଉକି ଟାଣିକରି ବସି ପଡ଼ିଲା ।

"କିନ୍ତୁ ଇୟେ କ'ଣ ମୁଁ ଶୁଣୁଛି ଏବେ ଯେ ତୁମେ ଏହି ରବିବାରକୁ ହିଁ ଚାଲିଯିବ । କ'ଣ ସାତ ଦିନରେ ତମେ ଛଟପଟ ହେଇ କଲିକତା ଚାଲିଯିବ । କାହିଁକି ବିବିୟନ, ତେବେତ ଏହାକୁ ଆଜି ହିଁ ପେକ୍‌କରି ଫେରସ୍ତ ପଠେଇ ଦିଅ..."

ବହୁତ ଆଦରରେ କଲୀର ଦୁଇହାତ ଧରିକରି ଆଣ୍ଟି କୃତ୍ରିମ କ୍ରୋଧରେ ହଲେଇ ଦେଲା ।

"ମୋର ଛୁଟି ନାହିଁ, ଇଏତ ଏକ ପ୍ରଦର୍ଶନୀରେ ଆସିଥିଲି, ସେଥିପାଇଁ ଏଠାକୁ ଚାଲି ଆସିଲି – କେବେ କେବେ ତ ଦୁଇ ଘଣ୍ଟା ମଧ ଶୋଇ ପାରେ ନାହିଁ ।"

ଜଣାନାହିଁ କ'ଣ ଭାବିକରି ତୁ ଏହି ଲାଇନ୍‌ରେ ଚାଲିଗଲୁ", ବିବିୟନ କହିବାକୁ ଲାଗିଲା । "ପାଠ ପଢ଼ିବାରେ ଖୁବ୍‌ଭଲ ଥିଲୁ, କାହିଁକି 'ରିକ୍ସ ଫ୍ରାଇଣ୍ଡସ' ଥିଲା ନା ତୋର ଏସ୍.ସୀ.ରେ ? ମୁଁ ତ ଏହାକୁ କେତେଥର କହିଥିଲି ଆଣ୍ଟି, ଯେ ଯିବୁ ଯଦି ଏଲାହାବାଦ ଚାଲ, କିନ୍ତୁ ଏହାକୁ ତ କଲିକତାର ନିଶା ଲାଗିଥିଲା । ହାରିଯାଇ ମୁଁ ଏହାକୁ ଲୌରୀନ ଆଣ୍ଟିର ଠିକଣା ଦେଇ ଦେଇଥିଲି ।"

"ହାୟ, ମୁଁ ମରିଗଲି", ଆଣ୍ଟି ଦୁଇଟି ବେଲୁନ ପରି ବାହୁ ଆକାଶ ଆଡ଼କୁ ଉଠେଇ ଦେଲା, "ଆରେ ଅଭାଗିନୀ, ତୁ ଏହାକୁ ଲୌରୀନ ପାଖକୁ ପଠେଇ ଦେଲୁ । ଏହାକୁତ ବାଘୁଣୀର ପିଞ୍ଜରାରେ ପକେଇ ଦେଇଥିଲେ ଭଲ ହେଇଥାନ୍ତା । କାହିଁକି କଲୀ, ସେହି ପିଶାଚିନୀ ତୋ ଠାରୁ ସେହି କାମ କରେଇ ନାହିଁ ତ, ଯାହା ସୃଜନର ଝିଅର ଗୋଡ଼ରୁ ନିଏ ?"

"କ'ଣ କହୁଛ ଆଣ୍ଟି ?" ଆଶ୍ଚର୍ଯ୍ୟ ହେଇ ବିବିୟନ ଆଣ୍ଟି ଆଡ଼କୁ ବୁଲିଗଲା । "କେତେ ଭଲ ଲୌରୀନ ଆଣ୍ଟି, ମତେ ଷୋହଳ ଜନ୍ମଦିନରେ ଏହି ଘଡ଼ି ସେ ପଠେଇ ଥିଲା କଲୀ, ମନେ ଅଛି ନା ?"

"ହାୟ, ମୋର ସରଳ ଝିଅ । ମାଗଣାରେ ଉପହାର ଦେବ, ଏମିତି ମୂର୍ଖ ଲୌରୀନ ନୁହଁ । ସେ ଯଦି ପାରନ୍ତା ଦୁନିଆଁର ପ୍ରତ୍ୟେକ ଷୋହଳ ବର୍ଷର ସୁନ୍ଦରୀ ଝିଅର ମଣିବନ୍ଧରେ ହୀରାର ଘଡ଼ି ବାନ୍ଧି ଦେବ । ମୁଁ ଯେମିତି ମୁଁ ଜାଣିଲି ଯେ ସେ ତତେ କନଭେଣ୍ଟକୁ ଘଡ଼ି

ପଠେଇଛି ଏମିତି ମୁଁ ମରାମତି କରିଥିଲି ପିଶାଚିନୀକୁ ମୋର ଗୋଡ଼ଧରି କରି କାନ୍ଦିବାକୁ ଲାଗିଲା । ତୁମ ଦୁଇଜଣଙ୍କୁ ମୁଁ କେବେ କିଛି କହିନାହିଁ । ବୋବୀ ଏମିତି କଥା ଡେରିରେ ବୁଝେ ଆଉ ତୁମେ ବୁଝିବା ପାଇଁ ବହୁତ ଛୋଟ ଥିଲ । ଆଉ ହାୟ ! ଏମିତି ସୁନ୍ଦର ଛୁଆକୁ ତମେ ସେଠାକୁ ପଠେଇ ଦେଲ ? କଲୀ, ମୋର ଛୁଆ, ତୁମଠାରୁ କିଛି ଲୁଚେଇବି ନାହିଁ ।"

ଆଣ୍ଟିର ଚିନ୍ତାନ୍ୱିତ ମୁଦ୍ରାରେ କୃତ୍ରିମ ସ୍ନେହର ସ୍ପର୍ଶ ମଧ୍ୟ ନଥିଲା । କଲୀ ମନକୁ ମନ ଆଶ୍ଚର୍ଯ୍ୟରେ ବୁଡ଼ି ଯାଇଥିଲା । ଯାହାକୁ ସେ କାଲି ପର୍ଯ୍ୟନ୍ତ ଦେଖି ମଧ୍ୟ ନ ଥିଲା, ସେ ତାକୁ ଆଜି କେତେ ଆପଣାର ମନେ ହେଉଥିଲା ।

"ସେହି ବୁଢ଼ି ତତେ ଏଇ ବ୍ୟବସାୟରେ ଲଗେଇ ଦେଇ ନ ଥିଲା ତ ?"

"ନା ଆଣ୍ଟି-", କଲୀ ହସିକରି କହିଲା, "ମୁଁ ତ ସେଠାରେ କିଛି ମାସ ରହିଥିଲି, ଯେମିତି ହିଁ ମୁଣ୍ଡ ଟଣ ଟଣ କଲା, ମୁଁ ଆଣ୍ଟିର ଫାର୍ମ ଛାଡ଼ି ଦେଇଥିଲି ।"

"ଫାର୍ମ ଇନଡ଼ିଡ଼", ଆଣ୍ଟି ତା'ର ପିଠିକୁ ଥାପୁଡ଼େଇ ଦେଲା । "ସେଇଥି ପାଇଁତ ମୁଁ ମନକୁ ମନ କହୁଥିଲି । ଲୌରୀନର ବ୍ୟବସାୟରେ ଥିଲେ କ'ଣ ଏହି ଚେହେରା ଏମିତି ସରଳ ଦେଖା ଯାଇଥାନ୍ତା ।"

ସେହି ଚେହେରାର ମରିଚିକାକୁ ନେଇ ଲୌରୀନ ଆଣ୍ଟିର ପ୍ରଶଂସାର ଶବ୍ଦ ଯଦି କଲୀ ଦୋହରାଇ ଦିଏ ତେବେ ? କିନ୍ତୁ ସେହି ଶବ୍ଦକୁ ଦୋହରାଇବା ପରେ ମଧ୍ୟ ହୁଏତ କେହି ସେଗୁଡ଼ିକ ବିଶ୍ୱାସ କରି ନ ଥାନ୍ତା ।

ସାତଦିନରେ ଏଲାହାବାଦ କଲୀର କାୟା ବଦଳେଇ ରଖି ଦେଲା । ତା'ର ମନେ ହେଉଥିଲା ଯେ ଜୀବନ୍‌ରେ ପ୍ରଥମ ଥର ଯଥାର୍ଥ ଧରାତଳର ସ୍ପର୍ଶ କରୁଥିଲା । ଆଜି ପର୍ଯ୍ୟନ୍ତ ସେ କ'ଣ ଜୀବନର ଦୋଳିର ଦିଗହୀନ ଦୋଦୁଲ୍ୟମାନ ଅବସ୍ଥାରେ ଶୂନ୍ୟ ଆକାଶରେ ଝୁଲି ରହୁଥିଲା ? ହୁଏତ ! ସରସ ସ୍ନେହରେ ଉଚ୍ଛୁଳୁ ଥିବା ଆଣ୍ଟିର ସ୍ନିଗ୍ଧ ମାତୃବତ୍ ଉତ୍ସାହ, କେବେ କେବେ ତା'ର ଆଖିକୁ ଗୋଳ କରି ଦେଉଥିଲା । ପନ୍ନାର ଆଖି ମଧ୍ୟ ଏମିତି ନୀଳ ଥିଲା, ତେବେ ପ୍ରଭେଦ କେଉଁଠି ଥିଲା ?

ଏକ ଦୃଷ୍ଟି ଥିଲା, ନୀଳ ଆକାଶ ପରି ଉଦାର - ଆଉ ଦ୍ୱିତୀୟରେ ଥିଲା ଚିତ୍ରାଙ୍କିତ ଆକାଶ ପରି ନେଳିଆ ଶୂନ୍ୟତା । ଜଣେ ତାହାର ଅଭିଶପ୍ତ ଶିଶୁ ଦେହକୁ ଆଘାତ ଦେବାପରେ ଦୟାର ଭିକ ଦେଇକରି କୋଳକୁ ନେଇଥିଲା, ଦ୍ୱିତୀୟଟି ଅପରିଚିତ ହେଇ ମଧ୍ୟ କାହାକୁ କିଛି ନ ପଚାରି ନିଜର ଉଦାର ବାହୁ ମେଲେଇ ଦେଇଥିଲା ।

ଏହି ସାତ ଦିନରେ କଲୀର ଚେହେରାରେ ମେକଅପର ଏକ ସାମାନ୍ୟ ତୁଳିକାର ମଧ୍ୟ ସ୍ପର୍ଶ କରି ନ ଥିଲା, ଚେହେରାର ସ୍ୱାଭାବିକ ଲାବଣ୍ୟରେ କୌଣସି ଦକ୍ଷ କଳାକାରର ପେନ୍‌ସିଲ ସ୍କେଚର ଲାଇଟ୍ ଏଣ୍ଡ ସେଡ୍‌ର ସ୍ନିଗ୍ଧ ଛାୟା ଓହ୍ଲେଇ ଆସିଥିଲା ।

"ବହୁତ ଆଶ୍ଚର୍ଯ୍ୟ ହେଲା, କଲୀ !" ବିବିୟନ ଦିନେ କହିବାକୁ ଲାଗିଲା,

"ବେଙ୍ଗଲରେ ରହୁଛୁ କିନ୍ତୁ ଆଜି ପର୍ଯ୍ୟନ୍ତ କ'ଣ ସତ୍ୟଜିତ ରାୟର ଅନୁସନ୍ଧାନୀ ଦୃଷ୍ଟି ତୋ ଉପରେ ପଡ଼ିନାହିଁ, ଏକଦମ ତାଙ୍କର ଚଳଚ୍ଚିତ୍ରର ନାୟିକାମାନଙ୍କ ସହିତ ଏକାଭଳି ଚେହେରା ତୋର - କ'ଣ, ନୁହେଁ କିରେ ବୋବୀ ?"

ବୋବୀ ସାତ ଦିନରେ ହିଁ ସେହି ସୌନ୍ଦର୍ଯ୍ୟ-ସମୁଦ୍ରରେ କଣ୍ଠ ପର୍ଯ୍ୟନ୍ତ ବୁଡ଼ି ସାରିଥିଲା । କଲୀ ବିଷୟରେ ପଚାରା ଯାଇଥିବା ସାମାନ୍ୟ ସ୍ୱାଭାବିକ ପ୍ରଶ୍ନ ହିଁ ତାକୁ ଲାଲ କରି ଦେଉଥିଲା, ଏହା ବିବିୟନ ମଧ୍ୟ ବୁଝିପାରି ଥିଲା । ଏଇଥିରେ ଜାଣିଶୁଣି କରି କେବେ କେବେ ତାକୁ ଚିଡ଼େଇବାକୁ ଲାଗେ ।

"ଏ ବୋବୀ, ଦେଖେ କେତେ ମିନିଟରେ ତୋର ହେଲିକପ୍ଟର ଆମକୁ ଫାଫାମଉ ପହଞ୍ଚଉଛି ।" ସେ କହେ ଆଉ କୌଣସି ରେସ୍‌କାରର ଉତ୍ତେଜିତ ପ୍ରତିଯୋଗୀ ପରି ବୋବୀ ପ୍ରାଣ ହାତ ପାପୁଲିରେ ଧରିକରି ପୁରା ସ୍ପୀଡ଼ରେ ଗାଡ଼ି ଦଉଡ଼ାଇ ଦିଏ ।

ଫାଫାମଉ ଆଡ଼କୁ ଯାଉଥିବା ନିର୍ଜନ ସଡ଼କର ବକ୍ଷରେ ଅମାନୁଷିକ ଦୁଃସାହସ ସହିତ ବିରାଟ ଜାହାଜ ପରି ଠେଲା-ଟ୍ରକଗୁଡ଼ିକୁ କଚାଡ଼ି ବୋବୀର ଝରଝର ଗତ ଯୌବନା ଗାଡ଼ି ହଠାତ୍ ଷୋଡ଼ଶୀ ପରି ଦଉଡ଼ିବାକୁ ଲାଗେ, ସେତେବେଳେ କଲୀ ଆଉ ବିବିୟନ ଚିତ୍କାର କରି ହସି-ହସି ଗଡ଼ି ପଡ଼ନ୍ତି ।

"ଥାଉ ବୋବୀ, ଏବେ ଥାଉ !" ମନେ ହେଉଥିଲା କାର୍ନିଭାଲର କାର ରେସରେ ହିଁ ଦୁଇଟି ଛୁଆ ମୋଟରକୁ ଦଉଡ଼ଉଛନ୍ତି ।

ନିଜର ପିଲାଳିଆମି ହିଷ୍ଟିରିକେଲ ଚିତ୍କାର କଲୀର କାନରେ ସ୍ୱୟଂ ହିଁ ଅପରିଚିତ ହେଇ ଆଘାତ ଦେଉଥିଲା । ଏକା ଥରକେ ସେ ଏତେ ହସି ନଥିଲା । ତା'ର ମନେ ହେଉଥିଲା ବହୁ ଦିନରୁ ଅସ୍ୱାଭାବିକ ଅଭିନୟର ନିୟମରେ 'ଜାମ' ହେଇଯାଇଥିବା ତା'ର ଶରୀରର ପଞ୍ଜରା ହାଡ଼ କୌଣସି ତେଲ-ଗ୍ରିଜରେ ଚକଚକ କରି ଦେଉଥିବା ମେସିନର ଅବୟବ ପରି ପୁଣି ଥରେ ନୂଆ ହେଇଯାଇଛି ।

ଘରକୁ ଫେରେତ ଅଧା-ଅଧା ରାତି ପର୍ଯ୍ୟନ୍ତ ବିବିୟନ ଇଉନିଭରସିଟିର କଥା ପୁରାଣର ବହି ଖୋଲିକରି ବସିଯାଏ । ଗୋଟିଏ-ଗୋଟିଏ ରୁଚିକର ଅଧ୍ୟାୟ କଲୀର କଣ୍ଠସ୍ଥ ହେଇ ଯାଇଥିଲା ।

"ହାୟ କଲୀ, ତୁ ଆମର ଇଉନଭର୍‌ସିଟିକୁ ଆସିଥିଲେ କ୍ରେଜ ହେଇ ଯାଇଥାନ୍ତୁ, ସତରେ ।" ବିବିୟନ କହିଲାବେଳେ ତା'ର ମନରେ ଲୋଭ ହେଉଥିଲା, କିନ୍ତୁ ନିଜର ଫମ୍ପା କୃତ୍ରିମ ଜୀବନର ସାପର କାତି କ'ଣ ଏବେ ଚାହିଁଲେ ମଧ୍ୟ ଓହ୍ଲେଇ କରି ପକେଇ ପାରିଥାନ୍ତା ?

"ଏବେ ମତେ ଫେରିବାକୁହିଁ ହେବ ବିବିୟନ", ସେ ଆଠଦିନ ଦିନ କହିଲା ।

"ବା, ବା, ଏବେ ତ ତତେ ମାଘ ମାସର ମେଳା ବୁଲେଇ ଦେଖେଇ ନାହିଁ, ଏବେ କେମିତି ଯିବୁ ।"

ସ୍ୱୟଂ ଆଣ୍ଟି ଟେଲିଗ୍ରାମ ଦେଇ ତା'ର ଛୁଟି ବଢ଼େଇ ଦେଇଥିଲା ।

"କାଲି ଅମାବାସ୍ୟାର ସ୍ନାନ ଅଛି, ଖୁବ୍ ବଢ଼ିଆ ମେଳା ହେବ ।" ଆଣ୍ଟି ହସିକରି କହିବାକୁ ଲାଗିଲା, ଆଜି ପର୍ଯ୍ୟନ୍ତ କଲୀ ଦେଶ ବିଦେଶର ଇଣ୍ଡିଏନ ପେଭେଲିଅନର ମଡ଼େଲ ହେଇଛି, ଏଥର ଏହାକୁ ମାଘ ମାସର ମେଳାର ମଡ଼େଲ ବନେଇବା, ଠିକ୍ ବିବିୟନ । ବୋବୀ ନିଜର କ୍ୟାମେରା ଲୋଡ଼କରି ରଖିବୁ, କାଲି ସକାଳୁ ବାହାରିଯିବା । ସାଇମନଙ୍କୁ ମୁଁ କହି ଦେଇଛି ବଜରା ବାହାର କରିବାକୁ ଆଜିହିଁ ସଙ୍ଗମ ଚାଲିଯିବ ।"

ଆଣ୍ଟି କେବେ ବଡ଼ ଖୁସିରେ ନିଜର ବଜରା ତିଆରି କରେଇ ଥିଲା, ନାମ ରଖିଥିଲା 'ଗୋଲ୍ଡେନ ଏରୋ' ଏବେ ସେହି ବଜରା ଗୋଟିଏ ପଣ୍ଡାର ଗୋଦାମରେ ବନ୍ଦ ରହିଥାଏ, କିନ୍ତୁ କେବେ କେବେ ଆଣ୍ଟିର ଅତିଥିମାନଙ୍କ ସମ୍ମାନରେ କୌଣସି ଧ୍ୱଂସ ହେଇଥିବା ରାଜ୍ୟର ହାତୀପରି ସାଜ-ସଜ୍ଜା ହେଇକରି ସଂଗମର ନେଳିଆ ପାଣିରେ ପହଁରେ, ତେବେ ସମସ୍ତଙ୍କ ଦୃଷ୍ଟି ଆକର୍ଷିତ କରିନିଏ । ବଜରାକୁ ବିଶେଷ ରୂପରେ ନକ୍ସାରେ ବାନ୍ଧିକରି କାଟଛାଣ୍ଟ କରାଯାଇଥିଲା । ତାହାର ବେନିସିୟନ ଗୋଣ୍ଡୋଲା ପରି ପତଳା ଦେହକୁ ଦୁଇ ଦିଗରୁ ଦୁଇଟି ତୀକ୍ଷ୍ଣ ସୁନେଲି ତୀର, ସୂର୍ଯ୍ୟର ପ୍ରଖର କିରଣରେ ସ୍ୱୟଂ ହିଁ ପ୍ରଜ୍ୱଳିତ ଅଗ୍ନିଶିଖା ପରି କିରଣ ଛାଡ଼ିବାକୁ ଲାଗନ୍ତି ।

"ମାଘ ମେଳା ଦେଖିବାକୁ ହେଲେ ବହୁତ ସକାଳୁ ଯିବା", ଆଣ୍ଟିର ଉତ୍ସାହର ଅନ୍ତ ନ ଥିଲା, 'ଦୁର୍ଭାଗ୍ୟବଶତଃ ଏଇ ବର୍ଷ କୁମ୍ଭ ନୁହେଁ, ତେବେ ମଧ୍ୟ ସଙ୍ଗମର ମାଘ ମାସର ମେଳା 'ଇଜ କ୍ୱାଇଟ ସମଥିଂ'–ଦେଖିବୁ କଲୀ, ତୋର 'ୱାର୍ଲଡ଼ ଫେୟାର'ରେ ମଧ୍ୟ ଏମିତି ସ୍ୱାଭାବିକ ଗହଳି ହେଉ ନ ଥିବ । ଆଉ ପୁଣି ବଜରା ଅଟକେଇ କରି ସଙ୍ଗମରେ ପାଣିରେ ବୁଡ଼ିବାରେ ଯେଉଁ ଆନନ୍ଦ ହୁଏ, ଆହା-ହା ।" ଆଣ୍ଟି ଆଖି ବୁଜି କରି ସତରେ ସତରେ କାଳ୍ପନିକ ବୁଡ଼ରେ ବୁଡ଼ିବା–ଉଠିବାରେ ଲାଗିଲା ।

"ଆଣ୍ଟିର ଆଇ ପକ୍କା ବ୍ରାହ୍ମଣୀ ଥିଲା", ବିବିୟନ ହସିକରି କହିବାକୁ ଲାଗିଲା, କୌଣସି ଚତୁର୍ବେଦୀର ଏକମାତ୍ର କନ୍ୟା ଥିଲା, ଅଜା ତାକୁ ଲୁଚେଇ ନେଇ ଆସିଥିଲେ, ଏଇଥିରୁତ ମାଘମେଳାରେ ଆଣ୍ଟି ପ୍ରତ୍ୟେକ ବର୍ଷ ସେବକ ହେଇ ଯାଏ ।

"ସତରେ ?"

କଲୀର ବିସ୍ଫାରିତ ଦୃଷ୍ଟିକୁ ବୋବୀ ଅଜଗର ପରି ମୁହଁ ଖୋଲିକରି ଗିଳି ପକେଇଲା । ଆଶ୍ଚର୍ଯ୍ୟର ମୁଦ୍ରା କ'ଣ ଏହି ଅଲୌକିକ ରୂପସୀର ସବୁଠାରୁ ଆକର୍ଷକ ମୁଦ୍ରା ନଥିଲା ? କୌଣସି ସର୍ପିଣୀ ଦ୍ୱାରା 'ହିପ୍‌ନୋଟାଇଜଡ଼' ପକ୍ଷୀ ପରି ବୋବୀ ତାକୁ ପଚରା ଯାଇଥିବା ପ୍ରଶ୍ନର ଉତ୍ତର ଦେବାକୁ ଭୁଲିଗଲା ।

"ଆଉ କଣ ମିଛ କହୁଛି, ଆଣ୍ଟିକୁ ପଚାରି ଦେଖୁ," ବିବିୟନ ବୋବୀକୁ ଗର୍ବରେ ଚେତନା-ଜଗତକୁ ଟାଣି ନେଲା । "ଏ ସିଲି, ହାଉ ୟୁ ସ୍ପେୟାର ?" ସେ ଫୁସ୍‌ଫୁସ୍ କରି ଆଉ ଅବାକ୍ ହେଇ କୌଣସି ପତଳା ପେଣ୍ଡୁଲମ୍‌କୁ ନିଜର ନର୍ତ୍ତକୀ ଅଙ୍ଗୁଳିକୁ ଟାଣି,

ତୀରପରି ବାହାରକୁ ଚାଲିଗଲା ।

"ବହୁତ ଲମ୍ବା କାହାଣୀ ଆଇର ଇଲୋପମେଣ୍ଟର, କେବେ ସମୟ ହେଲେ ଶୁଣେଇବି", ଆଣ୍ଟି କହିଲା, "ପ୍ରଥମେ ଶର୍ମାଙ୍କୁ ଫୋନ କରିଦିଏ ଗାଡ଼ି ପାଇଁ, ସଙ୍ଗମର ପାଖରେ ମଧ୍ୟ ତିଆରି କରିବାକୁ ପଡ଼ିବ ।"

ଆଣ୍ଟି ଫୋନ୍ କରିବାକୁ ଚାଲିଗଲା, ତେବେ ବିବିୟନ କହିଲା, "ଚାଲ, ଇଏ ଭଲ ହେଲା ଯେ କାଲି ବୋବୀର ଗାଡ଼ିରେ ଯିବାକୁ ପଡ଼ିବ ନାହିଁ । ଶର୍ମା ସାହେବଙ୍କ ଗାଡ଼ି ତ ଏକଦମ ମଖମଲ ଉପରେ ଖସେ, ଦେବେ ନିଶ୍ଚୟ ।" ସେ ଗୋଟିଏ ଆଖିର ପତା ବନ୍ଦକରି କହିଲା, "ହି ଡେୟାର ନଟ ରିଫ୍ୟୁଜ, କାହିଁକି ନା ଆଣ୍ଟିର ଓଲ୍ଡ ଫ୍ଲେମ୍ । ଦେଖିବୁ ସକାଳ ହେବା ପୂର୍ବରୁ ଗାଡ଼ି ଆମର ପୋର୍ଟିରେ ପହଞ୍ଚି ଯାଇଥିବ ।

ସତରେ, ଆଣ୍ଟିର କୁକୁଡ଼ା ସକାଳର କୁକୁଡ଼ା ଡାକ ଦେଉଥିବା ବେଳେ ଶର୍ମା ସାହେବଙ୍କ କଳା ଲମ୍ବା ସୁନ୍ଦର ଗାଡ଼ି, କୌଣସି ଶବ୍ଦ ନ କରି ଆସି ପୋର୍ଟିରେ ପହଞ୍ଚି ଗଲା ।

ଆଣ୍ଟିର ଉତ୍ସାହର ଛୁଆଁ ଘରର ସମସ୍ତ ସଦସ୍ୟଙ୍କୁ ଲାଗି ଯାଇଥିଲା । ସାଇମନ ବଜରାକୁ ସଜେଇବା ପାଇଁ ପ୍ରଥମ ଦିନରୁ ଚାଲି ଯାଇଥିଲା । ଭିଡ଼ର ରେଳରେ ପିମ୍ପୁଡ଼ିର ଗତିରେ ଗୁରୁଣ୍ଡି ଶର୍ମାଜୀଙ୍କର ସ୍ଲୀକ ଗାଡ଼ିର କାଚରେ ମୁହଁ ଲଗେଇ କଲୀ ମୁଗ୍ଧ ଦୃଷ୍ଟିରେ ଭିଡ଼ର ରାମଧନୁକୁ ଦେଖୁଥିଲା । ରଙ୍ଗ-ବିରଙ୍ଗ ସୁନା ରୂପାର ଝାଲର ଲଗେଇ ଉଚ୍ଚ ପର୍ଯ୍ୟନ୍ତ ଲେହେଙ୍ଗା, ଦକ୍ଷିଣୀ ସାଢ଼ି, ଯୋଧପୁରୀ ପଗଡ଼ିଗୁଡ଼ିକ, ପଗଡ଼ି ଉପରେ ପୁଟୁଳି ଆଉ ପୁଟୁଳିଗୁଡ଼ିକ ଉପରେ ଭର୍ତ୍ତି ଉଦ୍ଦଣ୍ଡ ପିଲାମାନଙ୍କଠୁ ଆରମ୍ଭ କରି ଜମି ଥିବା ଅର୍ଦ୍ଧନଗ୍ନ କଳା ଚକଚକ କରୁଥିବା ପିଲାମାନେ ! ଥକି ଯାଇଥିବା ଖଣ୍ଡିଆ ହେଇଥିବା ପାଦରେ କଣ୍ଠର ସ୍ୱରଲହରୀର ଗୁଞ୍ଜନ ଅଦମ୍ୟ ଉତ୍ସାହ । କାହାରି-କାହାରି କାନ୍ଧ ଉପରେ ଏକା ସାଙ୍ଗରେ ବସିଥିବା ତିନି-ତିନି, ଚାରି-ଚାରି ପିଲା; ଠିକ୍ ଯେମିତିକି କୌଣସି ହୋଟେଲର ଦକ୍ଷ ବେହେରା ଦୁଇ ହାତରେ ଏକା ଥରକେ କେତେକ ଜୋଡ଼ା ପ୍ଲେଟରେ ଝଲଖିଆ ତିଆରି କରି ହସିକରି ବହୁତ ଖୁସିରେ ଚାଲି ଯାଉଛି, ଏମିତିହିଁ ସେହି ଗାଁଉଲୀ ହର୍ଷଧ୍ୱନି କରୁଥିବା ମାଙ୍କଡ଼ଠାରୁ ମଧ୍ୟ ଅବାଧ ବାଳକମାନଙ୍କୁ ସ୍ୱାଭାବିକ ଭାରସାମ୍ୟ ରକ୍ଷାକରି କାନ୍ଧରେ ବାନ୍ଧି ଚାଲି ଯାଉଥିଲେ । ଏକା ଥରକେ ଚାରି ପାଞ୍ଚୋଟି ବଳଦ ଗାଡ଼ିଗୁଡ଼ିକ ହଠାତ୍ କାର ସହିତ ଦୁଃସାହସୀ ପାଦ ମିଳେଇ ଆଗକୁ - ପଛକୁ ଚାଲିବାକୁ ଲାଗିଲା । ବଳଦ ଗାଡ଼ି ଗୁଡ଼ିକରେ ତିନି-ଚାରି ଏକ ପ୍ରକାର ତୃଣରେ ତିଆରି ଦଉଡ଼ିର ଓଲଟା ଖଟ ଉପରେ ଢୋଲ ଗାଉଥିବା-ବଜଉଥିବା ଗ୍ରାମମାନଙ୍କର ଦଳ କାରର ଝରକା ପାଖରେ ଲାଗିକରି ଗୁରୁଣ୍ଡିଲା ପରି ଚାଲିବାକୁ ଲାଗିଲା । ସମସ୍ତଙ୍କର କେଁ କଟର, ପିନ୍ଧିଥିବା ସାଢ଼ିଗୁଡ଼ିକ ପ୍ରାୟ ଏକ ପ୍ରକାରର ଥିଲା, ହାତରେ କହୁଣି ପର୍ଯ୍ୟନ୍ତ ଚକଚକ କରୁଥିବା ଲାଖର ଚୁଡ଼ି ଆଉ ନାକରେ ସୋନାର ସର୍ଚଲାଇଟ ପରି ଚକ୍‌ଚକ୍ କରୁଥିବା ନଥ ଆଉ

ଗୋଡ଼ରେ ଜଞ୍ଜିର ପରି ପାଉଁଜି ।

ଏଗୁଡ଼ିକ ସବୁ ବୁନ୍ଦେଲଖଣ୍ଡର ଏଗୁଡ଼ିକ ଏମାନଙ୍କର ବିଶିଷ୍ଟ ଅଳଙ୍କାର, ଆଣ୍ଟି କଲୀକୁ କହୁଥିଲା, "ମୁଁ ତ ବର୍ଷ ବର୍ଷ ଧରି ରୀବା-ଛତରପୁରରେ ରହିଛି.... ମାଇ ! ହଣ୍ଡ ବୋୟସ୍ ।"

ତାଙ୍କର କଡ଼ା ଶବ୍ଦ, ସହନାଇ ପରି ବହୁତ ଉଚ୍ଚ ଆନନ୍ଦ ଧ୍ୱନିର ଐକତାନ ବାଦ୍ୟ ବଜଉ ଥିଲା ।

'ଗାଡ଼ି ଚାଳକ ଭାଙ୍ଗି ଦେ ବଳଦ
ଚାଲିଛି ପୂର୍ବ ପବନର ବାଦଲ'

ପରର 'ର'ର ଏକ ମୋହକ ପଶୁକୁ ମଣ କରି ମୋଡ଼ି ଦେବା ସହିତ ମୋଡ଼ା ତରୁଣ ରଙ୍ଗୀନ ପଗଡ଼ିଧାରୀ ଗାଡ଼ି ଚାଳକ ଅଧା ହେଇଥିବା ପଂକ୍ତିକୁ ଧରି କରି, ପ୍ରଥମ ପଂକ୍ତିକୁ ପୁଣି ଦୋହରାଇବାକୁ ଲାଗିଲା । ହଠାତ୍ ଗୀତର ଲୟରେ ଝୁଲି ଝୁଲି ଗାଡ଼ି ଚାଳକକୁ ଗୋଟିଏ ଧୃଷ୍ଟା ନବଯୁବତୀ ଜଣାନାହିଁ କ'ଣ କହିଲା, ଆଉ ସେ କଲୀର କାରର କାଚର ଚୌକାଠରେ ବନ୍ଦ, ବଡ଼ ଆଖିରେ ଆଖି ପକା, ଗୀତର ଅଧା ପଂକ୍ତି ଦୋହରାଉଥିବା କାରକୁ ପଛରେ ପକେଇ ଚାଲିଗଲା । ତାହାର ସଙ୍ଗିନୀର ସହିତ ଥିବା ସ୍ତ୍ରୀ ଲୋକମାନଙ୍କର ପୁରା ଦଳଟି ହସି ଉଠି ମୁହଁ ଫେରେଇ ନେଲେ ।

ଯିଏ ଦେଶ-ବିଦେଶର ସମୃଦ୍ଧ ସମାଜର ଭିଡ଼ର ସମ୍ମୁଖରେ ଦିନ-ରାତି ଛାତି ଫୁଲେଇ ନିତ୍ୟ ନବୀନ ବେଶ-ଭୂଷାର ରଙ୍ଗରସର ଜାଲ ବୁଣୁଥିଲା, ଗର୍ବରେ ଚାଲି ଯାଉଥିଲା, ତାହାକୁ ପ୍ରୟାଗର ଧୂଳିରେ ଭର୍ତ୍ତି ହେଇଥିବା ସଡ଼କରେ ଗୋଟିଏ ଯୁବକ ଗାଉଁଲି ଲୋକଗୀତର ଗୋଟିଏ ହିଁ ପଂକ୍ତି ଲାଜକୁଳୀ ଲତା କରିଦେଲା । କ'ଣ ହେଇ ଯାଇଥିଲା ତା'ର ?

"ସଙ୍ଗମ ପାଖରେ ପହଞ୍ଚି ଯାଇଛୁ କଲୀ, ଖାଲି ଏକ କିଲୋ ମିଟର ପର୍ଯ୍ୟନ୍ତ ଚାଲିବାକୁ ପଡ଼ିବ ଆମକୁ ।"

କାର ଅଟକିଲା ମାତ୍ରେ ବିବିୟନ ବଡ଼ ଉତ୍ସାହର ସହିତ ତଳକୁ ଡେଇଁ ପଡ଼ିଲା ଆଉ କଲୀର ହାତ ଧରିକରି ଭିଡ଼କୁ କାଟି କାଟି ଚାଲିବାକୁ ଲାଗିଲା । ବେଳେ-ବେଳେ ବାଲିରେ ଦୁଇଜଣଙ୍କର ପାଦ ଘସି ହେଇଯାଉଥିଲା । ଉପରକୁ ଉଠେଇଲେ ଚପଲ ସେଠାରେ ରହି ଯାଉଥିଲା ସେଦିଗରେ ବହୁତ ପଛରେ ପଡ଼ି ଯାଇଥିବା ଆଣ୍ଟି ଅଧୈର୍ଯ୍ୟ ହେଇ ଡାକିବାକୁ ଲଗିଲା, "ତୋର ଏହି ଅଭ୍ୟାସ ମୋର ପସନ୍ଦ ନୁହେଁ ବିବିୟନ, ମୁଁ ପଚାରୁଛି, କୋଉ ରେଳଗାଡ଼ି ଚାଲିଯାଉଛି, ଯାହା ପାଇଁ ଏମିତି ଦଉଡ଼ା-ଦଉଡ଼ି ହେଉଛି । ରହି ଯା, ମତେ ଆସିବାକୁ ଦେ, ସାଙ୍ଗ ହେଇ ଯିବା ।"

"ଓ ମାଇ ଗଡ଼", ବିବିୟନ ଅଧୈର୍ଯ୍ୟ ହେଇ ବାଲି ଉପରେ ବସି ପଡ଼ି ଫୁସ୍‌ଫୁସ୍ କରି କହିଲା, "ଦେଖୁଛୁ ନା ଆଣ୍ଟିକୁ, ଏବେ ଆସନ୍ତା ମାଘ ମେଳା ବେଳକୁ ଏଠାରେ

ପହଞ୍ଚିବ ।"

"ଚୁପକର, ଆଣ୍ଟି ଶୁଣିବତ କଣ କହିବ", କଲୀ ସ୍ୱୟଂ ବହୁ ଚେଷ୍ଟାକରି ନିଜର ହସକୁ ଅଟକଉ ଥିଲା ।

କିନ୍ତୁ ପିନ୍ଧିକରି ଆଣ୍ଟି ଆହୁରି ବିରାଟ ଲାଗୁଥିଲା । ତା ଉପରେ ସେହି ହୋ ହଲ୍ଲାରେ ମଧ୍ୟ କାହାରି କ୍ରୁର ରିମାର୍କ, ଯାହାକୁ ହୁଏତ ବିବିୟନ ଶୁଣିପାରି ନଥିଲା, କଲୀ ଶୁଣି ପାରିଥିଲା ।

"ଦେଖ ଭାଇ, ଆଜି ହାତୀ ପେଣ୍ଟ ପିନ୍ଧିକରି ଗାଧୋଇବାକୁ ବାହାରିଛି ।" ଓଠକୁ ଚାପି କଲୀ ହସ ଅଟକେଇଲା ।

ବହୁତ ଡେରିରେ ଅଣନିଶ୍ୱାସୀ ହେଇ, ଝାଳରେ ବୁଡ଼ି ଯାଇଥିବା ଆଣ୍ଟି ସେମାନଙ୍କ ପର୍ଯ୍ୟନ୍ତ ପହଞ୍ଚିଲା ଆଉ ପୁରାଦଳ ପୁଣି ଥରେ ଏକା ସାଙ୍ଗରେ ଚାଲିବାକୁ ଲାଗିଲେ ।

ସାମ୍ନାରେ କୁଟାରେ ଛପର ହେଇଥିବା କୁଡ଼ିଆର ପୁରା ଧାଡ଼ି ବିଞ୍ଚି ହେଇଥିଲା । ଆଲୁଅ ଉଜ୍ଜ୍ୱଳ ହେଲା, କିଛି ତୀର୍ଥଯାତ୍ରୀ ହାତରେ ଚିପୁଡ଼ି, ଟପ ଟପ ପାଣି ପଡୁଥିବା ଧୋତି ପିନ୍ଧି ଫେରି ଆସୁଥିଲେ, କେହି କେହି ଶୁଖିଲା ଧୋତି କାନ୍ଧରେ ପକେଇ ଗାଧେଇବାକୁ ଯାଉଥିଲେ । ବିଭିନ୍ନ ମଣ୍ଡପର ଚିହ୍ନ ତୋରଣ ଦ୍ୱାରରେ ମଧୁର ପ୍ରଭାତି ଗୁଣୁଗୁଣୁ କରିବାରେ ଲାଗିଥିଲା । ଦକ୍ଷିଣର ଭେଙ୍କଟେଶ୍ୱରର ସୁମଧୁର ସ୍ତୁତିର ଗୀତର ସ୍ୱର ଛନ୍ଦକୁ ରୂପକ ତାଳ ସହିତ ପ୍ରତି ଆକ୍ରମଣ କରୁଥିବା ଗୀତ ସହିତ ବାଦ୍ୟଯନ୍ତ୍ରର ମିଳନ ଦେଉଥିବା ଘଣ୍ଟଧ୍ୱନିକୁ କଲୀ ଚକିତ ହରିଣୀ ପରି ଅଟକି ଯାଇ ଶୁଣିବାକୁ ଲାଗିଲା ମାତ୍ରେ ଆଣ୍ଟି ଚଟ୍‌କରି ତାକୁ ତାଙ୍କ ପାଖକୁ ଟାଣିନେଲା । ଫାୟାର ବିଗ୍ରେଡ୍ ପରି ଭିଡ଼ରେ ଭର୍ତ୍ତି ସଡ଼କର ଟ୍ରାଫିକ ଆଡ଼କୁ ସମ୍ପୂର୍ଣ୍ଣ ଉଦାସୀନ ନାଗା ସାଧୁମାନଙ୍କର ଏକ ଦଳ କଲୀର କାନ ଓ ଆଖି ମଧ୍ୟବର୍ତ୍ତୀ ସ୍ଥାନରେ ଗୋଲି ପରି ସାଇଁ ସାଇଁ କରି ଶବ୍ଦ ବାହାରି ଗଲା ।

"ଲୁକ ଏଟ ଦୀଜ ବ୍ୟୁଟୀଜ ମାଇ ଡିଅର", ଆଣ୍ଟି ତାହାର କାନ ପାଖରେ ମୁଣ୍ଡ ରଖିକରି ଫୁସ୍‌ଫୁସ୍ କରି କହିଲା, "କିଛି କହିବି ନାହିଁ, ଆଫ୍ରିକାର ରେଟ୍‌ଲ ସ୍ନେକ ଠାରୁ ମଧ୍ୟ ବେଶି ରାଗି ଏମାନେ ହୁଅନ୍ତି । ମୁଁ ଯେତେବେଳେ ଏହାଙ୍କୁ ପ୍ରଥମ ଥର ଦେଖିଲି ତେବେ ଦୁର୍ଭାଗ୍ୟବଶତଃ ଜୋରରେ ହସି ପକେଇ ଥିଲି । ବାପରେ ବାପ । ଖଜୁରୀ ଗଛରୁ ଲମ୍ବା ଜଣେ ଏମିତି ଲଙ୍ଗଳା - ଗଣ୍ଡି ଦୁଷ୍ଟ ତଥା ଭୟଙ୍କର ବ୍ୟକ୍ତି ନିଜର ପୁରା ଚିମୁଟା ମୋର ପିଠିରେ ଗେଞ୍ଜି ଦେଇଥିଲା ।"

ସାରା ଶରୀରରେ ବିଭୂତି ଲଗେଇ, ପେରିସର ଲେଟେଷ୍ଟ ହେୟାର ଷ୍ଟାଇଲର 'ବୁଫୋ'ରେ ଜଟାକୁ ବାନ୍ଧି ନିଜର ଭୟାବହ ନଗ୍ନତା ଆଡ଼କୁ ସମ୍ପୂର୍ଣ୍ଣ ଉଦାସୀନ, ଲଙ୍ଗଳା ସାଧୁମାନଙ୍କର ସେହି ଦଳ ଏମିତି ଗର୍ବରେ ଛାତି ଫୁଲେଇ ଚାଲି ଯାଉଥିଲେ ଯେମିତି ସମସ୍ତେ ସ୍ୱପ୍ନର ଅଦୃଶ୍ୟ ଲମ୍ବା କୁରୁତା ଆଉ ଜରିର ପଗଡ଼ି ବାନ୍ଧି ଚାଲି ଯାଉଛନ୍ତି ।

"ଏବେ କୁମ୍ଭମେଳା ଦେଖିଥିଲେ ହୁଏତ ପାଗଳ ହେଇ ଯାଇଥାନ୍ତୁ", ଆଣ୍ଟି କହି

ଯାଉଥିଲା "ମନେ ହେଉଛି, ମନେହୁଏ ସମସ୍ତ ଦୁନିଆଁର ମୁଣ୍ଡ ଏଠାରେ ଆସି କରି ପହଞ୍ଚି ଯାଇଛି । ଚାଲ, ଏବେ ଚୁଡ଼ି ଦୋକାନମାନଙ୍କୁ ଯିବା । ଆଜି ମୁଁ ମଣିବନ୍ଧ ଭର୍ତ୍ତି କରି କଳା ଲାଖର ଚୁଡ଼ି ପିନ୍ଧିବି ଆଉ ଚାରି-ଚାରି ଚୁଡ଼ି ସଧବା ସ୍ତ୍ରୀର ସୌଭାଗ୍ୟ ପାଇଁ ଚୁଡ଼ି ନ ପିନ୍ଧି ଉଠିବି ନାହିଁ ।"

"ଏବେ ଦେଖିବୁ କଲୀ", ବିବିୟନ କହିବାକୁ ଲାଗିଲା, "ଖୁଚୁରା ଦୋକାନୀମାନଙ୍କର ଦୋକାନରେ ସାମ୍ନାକୁ ଯାଇ ଆଣ୍ଟି ପାଗଳ ହେଇଯିବ । ପ୍ରତ୍ୟେକ ବର୍ଷ ଜଣାନାହିଁ । କଣ କଣ ସବୁ କିଣିକରି ଏକାଠି କରି ନେଇଯାଏ-ତୁଳସୀର ମାଳା, ଚୁଡ଼ି, ଗଙ୍ଗାଜଳ ।"

"ଆଉ ଗୁଜରାତି ଦାନା ?" ବୋବୀ ପଚାରିଲା ।

"ଆରେ ହଁ, ତାହାତ ଆଣ୍ଟିର ୱିକ୍‌ନେସ୍ ଅଟେ, ପାରୁଥାନ୍ତା ତ ଏକସେର ଏକାଥରକେ ମୁହଁରେ ପୁରେଇ ଦିଅନ୍ତା । ଏଥର ତାଙ୍କୁ ସେଆଡ଼କୁ ଯିବାକୁ ଦେବୁ ନାହିଁ ବୋବୀ ।"

ଦେଖୁ ଦେଖୁ ଆଣ୍ଟି ନେଳିଆ-ସବୁଜ ଚୁଡ଼ିରେ ନିଜର ଗୋଲ ଗୋଲ ଗୋରା ମଣିବନ୍ଧହିଁ କେବଳ ଭର୍ତ୍ତି କରି ନ ଥିଲା, କଲୀ ଆଉ ବିବିୟନକୁ ମଧ୍ୟ ରଙ୍ଗୀନ ଲାଖର ଚୁଡ଼ି ପିନ୍ଧେଇ ଦେଇଥିଲା ।

କଲୀ ଆଜି ପର୍ଯ୍ୟନ୍ତ ଚୁଡ଼ିଗୁଡ଼ିକର ମଧୁର ଝଣ ଝଣ ଶବ୍ଦ ସହିତ ଏକଦମ ଅପରିଚିତ ଥିଲା । କନଭେଣ୍ଟରେ କେବେ ତୀଜଧାର୍ମିକ ପର୍ବପର୍ବାଣୀରେ ତା'ର କୌଣସି ସହପାଠି ଲୁଚି ଛପିକରି ଚୁଡ଼ି ପିନ୍ଧି ଆସିଲେ ମଧ, ରେଭରେଣ୍ଡ ମଦରର ଏକ ଧମକିରେ ତତ୍‌କ୍ଷଣାତ ଖୋଲି ଆୟାକୁ ଦେଇ ଦେଉଥିଲା ।

"ଏବେ ତ ଗାଧେଇ-ପାଧେଇ କରି ପଣ୍ଡା ଦ୍ୱାରା ଚନ୍ଦନର ଟିକା ଲଗେଇବି", ଆଣ୍ଟି କହିଲା, "ତେବେ ମତେ ଦେଖିବୁ କଲୀ, ପକ୍କା ହିନ୍ଦୁସ୍ଥାନୀ ସାଜିବି ଆଜି ।"

"ଡୋଣ୍ଟ ବି ସିଲି ଆଣ୍ଟି", ବିବିୟନ କହିଲା, "ଏହି ଜିନ୍ସ ସହିତ ଚନ୍ଦନ ଲଗେଇ କରି ପୁରା କାର୍ଟୁନ ପରି ମନେହେବ । ଏମିତିରେ ଆମ ଇଉନଭର୍ସିଟିର ପୁଅମାନଙ୍କ ଦଳ ତମକୁ ଏକ ଲୟରେ ଚାହୁଁଛନ୍ତି ।

"ଏହି ବୟସରେ ଏହି ଦୁଇମହଲା ଓଲ୍ଡଫେଶନଡ଼୍ ଘରକୁ ଏବେ ଇଉନିଭର୍ସିଟିର ପୁଅମାନେ ଏକ ଲୟରେ ଚାହିଁ ପାରିବେ ନାହିଁ ବିବିୟନ, ତମେ ନିଶ୍ଚିନ୍ତ ରୁହ । ସେ ତ ଆଜି ସଙ୍ଗରେ ଏଇ ଯେଉଁ ଲିଜ ଟେଲରକୁ ନେଇ ଆସିଛି, ତାକୁହିଁ ଏକ ଦୃଷ୍ଟିରେ ଚାହିଁଥିବେ । ଚାଲ, ତମକୁ କେମିତି ଡରମାଡୁଛି, ମୁଁ ତ ଅଛି ସାଙ୍ଗରେ ।"

ଆଣ୍ଟି ପ୍ରଖର ବେଗରେ ଧକେଇ ହେଇ ଦୁହିଁଙ୍କୁ ଟାଣି ଦୌଡ଼ିଲା ପରି ମନେହେଲା ।

"ଏଇ ବୋବୀ", ଜାଣିଶୁଣି କରି ହୁଏତ ଝିଅମାନଙ୍କ ଭିଡ଼ ଭିତରୁ ଗୋଟିଏ ପତଳା-ପତଳା ଗୋଡ଼ ଆଉ ବୀଟନିକ ପରି ବାଳଥିବା ବାଳକ ଚିତ୍କାର କରି ବୋବୀକୁ

ଡାକିଲା । ତାହାର ଡାକକୁ ନ ଶୁଣିଲା ପରି ବୋବୀ ଜୋରରେ ଚାଲିବାକୁ ଲାଗିଲା-

"ଆଇ ସେ ହେ ଲକି ବଗ", ଏକ ଅଶ୍ଳୀଳ ଅଟ୍ଟହାସ ବୋବୀର ପିଛା କରିବାକୁ ଲାଗିଲା ।

"ଦେଖୁଛ ଆଣ୍ଟି, ସମସ୍ତେ ପଛରେ-ପଛରେ ଆସୁଛନ୍ତି, ଏବେ ଶୀଘ୍ର ବଜରାକୁ ଚାଲ", ବିବିୟନ ଭୀଷଣ ଭାବରେ ଅସ୍ଥିର ହେଉଥିଲା ।

କିନ୍ତୁ କଳୀ ମାପିଚୁପି ପାଦ ପକେଇ ଏମିତି ଆତ୍ମବିଶ୍ୱାସର ସହିତ ଚାଲି ଯାଉଥିଲା, ଯେମିତିକି କୌଣସି ସୈନ୍ୟର ଗୋଟିଏ ଅଂଶର ଅଭିବାଦନ ଗ୍ରହଣ କରୁଛି । ଇଏତ ତାହାପାଇଁ ପ୍ରତ୍ୟେକ ଦିନର ଡାଲି-ଭାତ ଥିଲା । ରଙ୍ଗୀନ ଛାତଥିବା ଡଙ୍ଗାରେ ଛିଡ଼ା ହେଇଥିବା ସାଇମନର ବିଚିତ୍ର ଫିଲ୍ମୀ ବେଶଭୂଷା ଦେଖିକରି ପ୍ରଥମେ କଳୀ ଚିହ୍ନି ପାରିଲା ନାହିଁ । ଯେତେବେଳେ ପାଖକୁ ଆସିକରି ଚିହ୍ନିଲା, ତେବେ ଓଠରେ ହାତ ରଖିକରି ଜୋରରେ ହସି ପକେଇଲା

ବିବିୟନ ଥରକୁ ଥର ପଛକୁ ବୁଲି କରି ଭିଡ଼ରେ ରାସ୍ତା ଭୁଲିଗଲା । ଉଦଣ୍ଡ ସହପାଠିମାନଙ୍କ ଭିଡ଼କୁ ନ ଦେଖି, ଆଶ୍ୱସ୍ତ ହେଇ ପ୍ରବଳ ଅଭିଳାଷାରେ ସେ ବଜରାରେ ଚଢ଼ିବାକୁ ଲାଗିଲା । ଗୋଟିଏ ମୋଟା କାଠର ପଟା, ଯାହାକି ତା'ଣ ସହଜରେ ନଇଁ ଯାଉଥିବା ଦେହର ଭାର ରୋପ ବ୍ରିଜ ପରି ଦୋହଲିବାକୁ ଲାଗିଲା, ବଜରା ପର୍ଯ୍ୟନ୍ତ ସିଡ଼ି ରୂପରେ ମୋଟା ଦଉଡ଼ିରେ ବନ୍ଧାଥିଲା ।

ଦୋହଲି ଟଳମଳ ହେଇ କାଠ ପଟାରେ ପାଦ ରଖିବାକୁ ଏକମତ ହେଇ କଳୀ କୂଳରେ ଛିଡ଼ା ହେଇ ରହିଗଲା, ତେବେ ବୋବୀ ତାକୁ ସହାୟତା କରିବାକୁ ଏମିତି ଆଗେଇ ଆସିଲା ଯେମିତିକି ବାହୁରେ ବସେଇ ଉଠେଇ ନେବ । ତାହାର ହାତ ଧରି ସେ ଦୋହଲୁଥିବା ବଜରାରେ ପହଞ୍ଚିଗଲା । ରଙ୍ଗୀନ ତରଙ୍ଗାୟିତ ଜୋଧପୁରୀ ପଗଡ଼ିରେ ସାଇମନ କୌଣସି ଦେଶୀୟ ରାଜ୍ୟ ଗଡ଼ଜାତର ଚକଚକ କରୁଥିବା ଭୃତ୍ୟ ପରି ଚମକୁ ଥିଲା ।

"ଏହି ପୋଷାକ ଏହାକୁ ଆଣ୍ଟି ଗତ ବର୍ଷ ତିଆରି କରେଇ ଦେଇଥିଲା । ଯାହା କହ ନା ବୋବୀ, ଆମର ସାଇମନ ଏହି ଡ୍ରେସ୍‌ରେ ପୁରାପୁରି ବିଦେଶୀ ଚଳଚ୍ଚିତ୍ରର କୌଣସି ଇଣ୍ଡିଏନ୍ ହିରୋ ପରି ମନେ ହେଉଛି । କ'ଣ, ଲାଗୁଛି ନା କଳୀ ?"

ଗର୍ବରେ ସାଇମନ ଆହୁରି ଜୋରରେ ବଜରା ଚଳେଇବାକୁ ଲାଗିଲା । ଆଣ୍ଟି ତା'ର ସମତଳ ଅଣ୍ଟାରେ ଦୁଇହାତ ରଖି, ତା'ର ପଛରେ ଛିଡ଼ା ହେଇକରି କହିଲା, "ଠିକ୍ ସଙ୍ଗମରେ ଯାଇ ବଜରାକୁ ନେଇ ଲଗେଇବୁ ସାଇମନ, ଯେଉଁଠାରେ ସମସ୍ତେ ଗାଧୋଉଛନ୍ତି, ବୁଝିଲୁ ?"

"ସେ ବୁଝିଗଲା ଆଣ୍ଟି, ଏବେ ତମେ ମଧ ବୁଝି ନିଅ । ସେଠାରେ ଏଇ ସାଇମନ ସାଇମନ କହି ନିଜର ସୈନ୍ୟମାନଙ୍କ ପରି କମାଣ୍ଡ ଦେବନାହିଁ ନହେଲେ ଘାଟର ହିନ୍ଦୁ

ଆମକୁ ଲାଠି ନେଇକରି ଘାଟରୁ ବାହାରକୁ ଘଉଡ଼ି ଦେବେ । ସାଇମନର ନାମ ଏହି ଘାଟ ଭିତରେ ବଦଳେଇବାକୁ ହିଁ ହେବ । ସାଇମନ, କିଛି ଘଣ୍ଟା ପାଇଁ ତମେ ଶ୍ୟାମକୁମାର ହେଇ ରହିବ," ବିବିୟନ କହିଲା ।

ଆଉ ପିଲାଙ୍କ ପରି ସମସ୍ତେ ତାଳି ବଜେଇ କରି ନୂଆ ନାମର ସ୍ୱାଗତ କଲେ ।

"ହାୟ କେମିତି ରୋମାଣ୍ଟିକ ନାମ ଅଟେ, ଶ୍ୟାମ କୁମାର । ମୁଁ ତ କହୁଛି ଏବେ ଏହାର ଏହି ନାମ ରହୁ । କ'ଣ, କହୁଛ ସାଇମନ ? ଇଟ ଗୋଜ ଉଇଥ୍ ୟୋର ଟରବାନ୍ ।"

## ଏଗାର

ଶ୍ୟାମ କୁମାର ତା'ର ବଜରାକୁ କସିକରି ପାଖରେ ରହିଥିବା ବଜରାରେ ବାନ୍ଧି ଦେଲା ଗୋଲ୍ଡନ ଐରୋ"ର ଜାକଜମକକୁ ଦେଖିକରି ସମ୍ମୁଖରେ ଥିବା ଦୁଇ ଅଣାବାଲା ଆରୋହୀମାନଙ୍କରେ ଭର୍ତ୍ତି ହେଇଥିବା ଓଜନିଆ ଜରାଜୀର୍ଣ୍ଣ ଖାକି ରଙ୍ଗର ବଜରା ମୋଟରେ ଭିକାରି ମନେ ହେଉଥିଲା ।

ଜଣ-ଜଣକୁ ଟାଣିକରି ଆଣ୍ଡି ଜବରଦସ୍ତି ବୁଡ଼ ପକେଇଲା । ବଡ଼ ସ୍ୱାଭାବିକ ଭାବରେ ଆଣ୍ଡି ସିଧା ବୁଡ଼ ଦେଲା, ଏକମାତ୍ର ଧୋତିରେ ଗୁଡ଼େଇ ହେଇ ମୁଣ୍ଡ ଓ ମୁହଁ ଘୋଡ଼େଇ ବଜରାରୁ ପାଣିରେ ଓହ୍ଲେଇଲ, ତାକୁ ଦେଖି ହସ ଚାପିକରି କଲୀ ଆଉ ବିବିୟନର ଅବସ୍ଥା ଖରାପ ହେଇଗଲା ।

ଆଣ୍ଡିକୁ ଡରିକରି ପିଲାଙ୍କ ପରି ଗେଲକରି ଜଣେ ପ୍ରଗଲ୍ଭ ଗଭୀର ପାଣିକୁ ଟାଣି ନେଇଯିବାରୁ ବିବିୟନ କହିଲା, "ଆଇ ଏମ୍ ସିଓର ହି ଇଜ୍ ଫ୍ଲଟିଂ ଉଇଥ୍ ଆଣ୍ଡି ।"

ବହୁତ ଭକ୍ତିରେ ବୁଡ଼ ଦେଇଥିବା ଆଣ୍ଡି ଥରକୁ-ଥର ପାଣିରେ ମୁହଁ ବୁଡ଼ାଏ ଆଉ ପୁଣି କୌଣସି ବିରାଟ ହ୍ୱେଲ ମାଛ ପରି ଚଟ୍ କରି ଉପରକୁ ଉଠି ଆସୁଥିଲା । ବହୁତ ଡେରି ପର୍ଯ୍ୟନ୍ତ ବୁଡ଼କୁ ନେଇ ଆଣ୍ଡିର ପୂର୍ଣ୍ଣ ଦଳ ତଟଦେଶକୁ ଫେରି ଆସିଲା । "ଜଣାନାହିଁ କେମିତି ଜାଦୁ ଅଛି ଏହି ପାଣିରେ, ମନେ ହେଉଥିଲା ଏକାଥରକେ ଚାରୋଟି ଷ୍ଟୋନ ଓଜନ ଚାରୋଟି ବୁଡ଼ ମୁଁ ଦେଇଆସିଛି, 'ଆଇ ଏମ୍ ଫିଲିଙ୍ଗ ସୋ ଲାଇଟ୍ ।" ଚାଲ ଏବେ ତିଲକ ଲଗେଇ ନେବା -" ପୃଥୁଳ ଶରୀରରେ ଲାଖି ରହିଥିବା ଓଦା ଧୋତି, ଗୋଲ ଚେହେରାରେ ଲାଖି ଯାଇଥିବା ବାଳ ଆଉ ବାଳକ ପରି ଦୁଧିଆ ହସ ଦେଖିକରି କଲୀର ମନେହେଲା ସେ ଆଣ୍ଡିକୁ ନୁହଁ, ଅନ୍ୟ କାହାକୁ ଦେଖୁଛି ।

ବଜରାର ଗୋଟିଏ କୋଣରେ ଚାଦର ଟାଣିକରି ସମସ୍ତେ ଓଦା ଲୁଗା ବଦଳେଇ ନେଲେ । ଆଣ୍ଡି ପୁଣି ଥରେ ନିଜର ଜିନ୍ସ ପିନ୍ଧିକରି ବାହାରକୁ ଚାଲି ଆସିଲା । "ସାଢ଼ି ଶ୍ୱଶୁର ପାଦରେ ଲାଖିଯାଏ, ବେଶ ବର୍ଷକରେ ମୁଁ ଥରେ ପିନ୍ଧେ ଗଙ୍ଗାସ୍ନାନ ପାଇଁ ।"

ଧିର ମନ୍ଥର ଗତିରେ ବଜରା ଘାଟ ଆଡ଼କୁ ଆଗଉ ଥିଲା । କେତେଗୁଡ଼ିଏ ନଉକା ଥିଲା ଏକା ସାଙ୍ଗରେ । କେଉଁଥିରେ ଗାଉଥିବା-ବଜାଉଥିବା ସ୍ୱାମୀମାନେ, କେଉଁଥିରେ 'ଗଙ୍ଗାମେୟା କି ଜୟ, ଜମୁନାମେୟା କି ଜୟ'ରେ ଆକାଶ କମ୍ପେଇ ଯାତ୍ରୀଙ୍କର ଆନନ୍ଦଧ୍ୱନି, ପାଣିରେ ବହୁଥିବା ଝାଉଁଳି ପଡ଼ିଥିବା ଫୁଲମାଳା ଗୁଡ଼ିକ, ଛିଣ୍ଡା ଲୁଗା ଆଉ ପତ୍ର । କଳୀ ଆଉ ବିବିୟନକୁ ମଧ୍ୟ ଆଣ୍ଟି ଜବରଦସ୍ତି ବୁଡ଼ ପକେଇ ଦେଇଥିଲା ।

"ଅଲ ଇୟୋର ସିନ୍ସ ଇନ୍ ଦି ହୋଲୀ ଗେଞ୍ଜେସ୍", ସେ ହସିକରି କହିବାରୁ କଳୀର ଉତ୍‌ଫୁଲ୍ଲ ଚନ୍ଦ୍ରମୁଖ ଯେମିତିକି କ୍ଷଣକ ପାଇଁ ଝାଉଁଳି ଯାଇଥିଲା । ସେତେବେଳ ଠାରୁ ସେ ଅନ୍ୟମନସ୍କ ହେଇ ବଜରାରେ ବସି କେତେବେଳେ ଗଭୀର ପାଣିରେ କହୁଣି ପର୍ଯ୍ୟନ୍ତ ହାତ ବୁଡ଼େଇ ଭାବିବାକୁ ଲାଗିଥିଲା, କେବେ ସ୍ୱୟଂ ହିଁ ନିଜର ବ୍ୟାକୁଳତାର କୈଫିୟତ ଖୋଜି ଖୋଜି ପାଉ ନ ଥିଲା । କ'ଣ ଏହି ପତିତପାବନୀ ସର୍ବତୀର୍ଥମୟୀ ଭାଗୀରଥୀର ପ୍ରଭାବ ଥିଲା ? କାହିଁକି ତାହାର ଅନ୍ତରାତ୍ମା ଥରକୁ ଥର ଲଙ୍ଗଳା ହେଇକରି ତାକୁ ଆଜି ଏହିପରି ଲଜ୍ଜିତ କରୁଥିଲା ।

ହଠାତ୍ ବଜରା ଆସିକରି ନିୟମାନୁସାରେ ପଟାରେ ଧକ୍କା ଲାଗିଲା ଆଉ ସେ ଅବାକ୍ ହେଇ ଉଦାସୀନ ହେଇଗଲା । ବିବିୟନ ମଧ୍ୟ ଆଖି ମଳି ମଳି ଉଠି ବସିଲା ।

"ମତେ ତ ବେଶ ଭଲକରି ନିଦ ହେଇ ଯାଇଥିଲା । ମନେ ହେଉଛି ଏଥର ସାଇମାନର ସ୍ପୀଡ଼ କିଛି ମନ୍ଥର ହେଇ ଯାଇଥିଲା – ତିନି ବାଜିଗଲାଣି ଆଣ୍ଟି ।"

"ଠିକ୍ ଅଛି, ଚାଲ ଏବେ ଆରାମରେ ବସିକରି ତିଳକ ଲଗେଇବା ଆଉ ପୁଣି ଗରମ-ଗରମ କଚୋଡ଼ି । ଏହି କଚୋଡ଼ିର କାଞ୍ଚନିକ ସୁଗନ୍ଧକୁ ବର୍ଷସାରା ଶୁଙ୍ଘି ଆସୁଛି । ଆଜି ତମେ ମତେ ଅଟକେଇ ପାରିବ ନାହିଁ ବିବିୟନ ।"

କଳୀ ଆଉ ବିବିୟନର ହାତ ଟାଣି ଆଣ୍ଟି କାଠର ଚଉଡ଼ା ପଟାରେ ଚେକାମାରି ବସି ଗୋଟିଏ ଗୋଲ-ଗାଲ ସ୍ନିଗ୍ଧ ମନୋହର ଚେହେରାର ପଣ୍ଡାର ଛତା ସାମ୍ନାରେ ଛିଡ଼ା ହେଇଗଲା । "ଖୁବ୍ ସୁନ୍ଦର ଚନ୍ଦନର ବିନ୍ଦୁ ଲଗେଇବ ପଣ୍ଡା ମହାଶୟ, ଗତଥର ତମେ ଚନ୍ଦନ ଲଗେଇ ଦେଇଥିଲ, ମନେ ଅଛି ନା ?"

"ହାଁ, ହାଁ, ମନେ କାହିଁକି ନାହିଁ ମେମ ସାହେବ", କୌଣସି ଗାଳଢ଼ ପଣ୍ଡା ବହୁଭାଷୀ ପ୍ରଗଲ୍ଭ ପଣ୍ଡା ଏକା ସାଙ୍ଗରେ ଦୁଇଟି ସୁନ୍ଦରୀ ପାରାକୁ ହାତ ଉପରେ ବସିବା ଦେଖି ପ୍ରସନ୍ନ ହେଇଗଲା । "ଏଥର ମେଳା କିଛି ଜମିଲା ନାହିଁ", ସେ କହିବାକୁ ଲାଗିଲା, "ଜଣାନାହିଁ କେଉଁ କେଉଁଠାରୁ ଭୋକିଲା ତୀର୍ଥଯାତ୍ରୀ ପ୍ରୟାଗରେ ଆସି ଏକତ୍ର ହେଇଛନ୍ତି । ଚନ୍ଦନ-ହଳଦୀ ଓ ଚୂନଟୀକା ମଧ୍ୟ ଘରୁ ସାଙ୍ଗରେ ଆଣି ଆସିଛନ୍ତି । ସକାଳରୁ ବସିଛି ଆଉ ଏ ପର୍ଯ୍ୟନ୍ତ ସର୍ବମୋଟ ସାତ ତିନୋଟି ରେଖାର ତିଳକ କରିଛି । ଆଚ୍ଛା ଝିଅ କେଉଁ ରେଖାର ତିଳକ କରେଇବ, ବୈଷ୍ଣବୀ ?"

କଳୀ ଜାଣି ନଥିଲା ନିଜର ବଡ଼ ଆଖିରେ ଆଣ୍ଟି ଆଡ଼କୁ ଅନେଇ ଦେଲା ।

"ହୁଁ-ହୁଁ ପଣ୍ଡା ମହାଶୟ, ସେହି ଓବଲ ସେପ ପରି ଖୁବ୍ ମାନିବ ଏହାର ଚେହେରାରେ । କ'ଣ ଅଛି ନା ?" ଆଣ୍ଟି ବଡ଼ ଉତ୍ସାହରେ କାଠପଟାର କୋଣରେ ବସିଗଲା ।

"କାହିଁକି ନୁହେଁ, କାହିଁକି ନୁହେଁ" ପଣ୍ଡା ମହାଶୟ ତାଙ୍କର ଖମ୍ଆଳୁର ଚଉଡ଼ା ପତ୍ର ପରି ହାତର ପାପୁଲିରେ କଲୀର ଦୁଧପରି ସଫା ମୁହଁକୁ ଧରି ନେଲା, ପୁରାପୁରି ବାଳ ବୈରାଗୀ ପରି ଚନ୍ଦ୍ରମୁଖ ଅଟେ ମାତା ।

ଆଣ୍ଠୁ ଟେକିକରି ବସିଥିବା କଲୀର କପାଳରେ ପଣ୍ଡାର ଚନ୍ଦନ-ହଳଦୀ ଓ ଚୂନ ଥିବା ଗିନାରେ ଚଢ଼େଇର ପରର ତୁଳିକାକୁ ବୁଡ଼େଇ କରି ସେଥିରେ କୁତୁକୁତୁ ଲାଗିବା ପରି ସିହରଣ ଦେବାକୁ ଲାଗିଲା । କେମିତି ବିଚିତ୍ର ଅନୁଭବ ଥିଲା ।

ଯିଏ ବିଦେଶର ଅନେକଗୁଡ଼ିଏ 'ବୋଟିକ୍'ରେ ନିଜର ଉପସ୍ଥିତିରେ ଧନ୍ୟ କରିଥିଲା, ଉଆର୍ଲ୍ଡ ଫେୟାରର ଇଣ୍ଡିଏନ୍ ପେଭେଲିଅନ୍‌ରେ ଯେଉଁ ସୁନ୍ଦରୀର ଏକ ଝଲକ ଦେଖିବା ପାଇଁ ଏକାଠି ହେଇଥିବା ବିଦେଶୀ ଭିଡ଼ ନିଜର ସମସ୍ତ ସଭ୍ୟତା, ଶିକ୍ଷା ଏବଂ ସୁରୁଚିକୁ ଥାକରେ ରଖିକରି ହଠାତ୍ ଦେଶୀ ଯାତରାର ଶସ୍ତା ଭିଡ଼ ପରି ସିଟି ବଜେଇବାରେ ଲାଗିଥାନ୍ତି, ସେ ଆଜି ଜଣେ ଅଶିକ୍ଷିତ ପଣ୍ଡାର ସମ୍ମୁଖରେ ଗାଉଁଲି ବାଳ ବୈଷ୍ଣବୀ ପରି ଆଣ୍ଠୁ ଟେକିକରି ବସି ଯାଇଥିଲା ।

କଣ୍ଠରେ ଝୁଲୁଥିବା ଚାରିଅଣା ଦାମର ତୁଳସୀମାଳା, ଖୋଲା ଓଦା ବାଳରୁ ଟପ ଟପ ହେଇ ପଡୁଥିବା ପାଣି, ଦୁଇଟି କାନକୁ ଛୁଉଁଥିବା ଆଖି ମଝିରେ ଥିବା ସୁନ୍ଦର ନାସିକାରୁ ପ୍ରଶସ୍ତ ଚିକ୍କଣ ଲଲାଟ ପର୍ଯ୍ୟନ୍ତ ଟଣା ହେଇଥିବା ବୈଷ୍ଣବୀ ତିନି ଧାଡ଼ି ରେଖାର ତିଳକ ! କ'ଣ ରସଶାସ୍ତ୍ରର ପୃଷ୍ଠା ଏଠାରେ ସାକାର ହେଇ ଯାଇ ନଥିଲା । ଆଣ୍ଟି ମନ୍ତ୍ରମୁଗ୍ଧ ହେଇ ଏକଦୃଷ୍ଟିରେ ଦେଖିବାକୁ ଲାଗିଥିଲା । ବହୁତ ପୂର୍ବରୁ କମିଶନର ଶର୍ମା ସହିତ ସେ ଖଜୁରାହୋର ଐତିହାସିକ ଯାତ୍ରାରେ ଯାଇଥିଲା । ଆଜି ତାକୁ ଥରକୁ-ଥର ଏମିତି ମନେହେଉଥିଲା ଯେ ସେହି ଖଜୁରାହୋର ସମସାମୟିକ ଚନ୍ଦେଲ ମନ୍ଦିରରୁ କୌଣସି ସୁନ୍ଦରୀ ଦେବକନ୍ୟାର ମୂର୍ତ୍ତି ଜୀବନ୍ତ ହେଇଛି ଏବଂ ପଣ୍ଡା ତାକୁ ତିନି ଧାଡ଼ି ରେଖାର ତିଳକ ଲଗେଇ ଦେଉଛି ।

"ଦି ସେମ୍ ଅନସୋଫିଷ୍ଟିକେଟେଡ୍ ଗାର୍ଲ ଅଫ୍ ଖଜୁରାହୋ", ସେ ମନକୁ ମନ ଏମିତି ବିଡ଼ବିଡ଼ ହେଉଥିଲା ଯେମିତିକି ସେଠାରେ ଆଉ କେହି ନାହାନ୍ତି, "ଠିକ୍ ଯେମିତି ସେହି ମନ୍ଦିରମାନଙ୍କର ନଗ୍ନ ମୂର୍ତ୍ତିଗୁଡ଼ିକର ଅଙ୍ଗର ଏକ ଏକ ଅଳସି କନ୍ୟା ସହିତ ନିଜର ସୌନ୍ଦର୍ଯ୍ୟର ପ୍ରଦର୍ଶନ ନ ଜାଣିଲା ପରି କରୁଥିବା ଦର୍ଶକକୁ ମୋହିତ କରି ଦେଉଥିଲା, କେବେ ହାତରେ ଦର୍ପଣ ନେଇ, କେବେ ବଲରେ ଖେଳିକରି, କେବେ ମଧ୍ୟ ଗ୍ରୀବାକୁ ମୋଡ଼ିଦେଇ – ସି ଡିସ୍‌ପ୍ଲେ ହାର ବିଉଟି ଫ୍ରମ ଅଲ ସାଇଡ୍‌ସ ଅଫ ଦି ବଡ଼ି ।"

"କ'ଣ କହୁଛ ଆଣ୍ଟି ? ଏବେ ଉଠ କଲୀ, ଏକଦମ ହରଦ୍ୱାର ଯୋଗିନୀ ମନେ

ହେଉଛୁ ।" ବିବିୟନ କ୍ଳାନ୍ତ ହୋଇ ଉଠି ଗଲା ।

ହାତରେ ଦର୍ପଣ ନେଇ ନିଜ ଚେହେରାର ବଦଳି ଥିବା ଝଲକ ଦେଖିକରି କଳୀ ଖିଲ-ଖିଲ ହୋଇ ହସୁଥିଲା ବେଳେ କେହି ପଛରୁ ଆସିକରି ତା'ର ପିଠି ଉପରେ ଥଣ୍ଡା ହାତ ରଖିଦେଲା ।

"ହାୟ ମୁଁ ମରିଯାଏ, ଟିକିଏ ଦେଖତ ଏହାକୁ ମହାଶୟା, ପୁରାପୁରି ତମରି ପରି ତିନିଧାଡ଼ି ରେଖାର ତିଳକ ଲଗେଇ କରି କେମିତି ଦେଖାଯାଉଛି ? ଆଜିହିଁ ତତେ ମନେ ପକଉ ଥିଲି ଆଉ ତୁ ମିଳିଗଲୁ ।"

କଳୀ ହଡ଼ବଡ଼େଇ କରି ଉଠିଲା ଆଉ ତା'ର ହାତରୁ ଦୁଇ ତିନୋଟି ହଳଦୀ-ଚୂନ ଗୋଳା ହୋଇଥିବା ଭରା ଗିନା ଝଣ ଝଣ କରି ଅଣେଇ ହୋଇଗଲା ।

"ନାରାୟଣ, ନାରାୟଣ ଟଙ୍କେ ଚାରିଅଣାର ଚନ୍ଦନ ପକେଇ ଦେଇ, ଝିଅ ।" ସେ ବିଡ଼ ବିଡ଼ କରିବାକୁ ଲାଗିଲା । ତିନି ଧାଡ଼ି ରେଖାର ତିଳକ ଅଙ୍କା ହୋଇଥିବା ଚେହେରା ନେଇ କଳୀ ଅମ୍ମା ସହିତ ଲାଖିଗଲା । ସେ ବର୍ତ୍ତମାନ ମଧ ତାହାର ପରିବର୍ତ୍ତନ ହୋଇଥିବା ଚେହେରା ଦେଖିକରି ହସିବାରେ ଲାଗିଥିଲା ।

"ହାଏ ଅମ୍ମା, ଆପଣ ଏଠାକୁ କେମିତି ଆସି ପାରିଲେ ?"

"ଯେମିତି ତୁ ଆସି ପାରିଲୁ", ଅମ୍ମା ହାତର ଭିଜା ଲୁଗାକୁ ପଟା ଉପରେ ରଖିଦେଲା ।

"ଆମକୁ ତ ତୁ କହିକରି ଆସିଥିଲୁ ଯେ ଲଖନଉ ଯାଉଛୁ ଆଉ ଏଠାରେ ବୈରାଗୀ ହୋଇ ଆମଠାରୁ ମଧ ଆଗରୁ ଗଙ୍ଗାରେ ଗାଧେଇଲୁ", ଅମ୍ମା ହସିକରି ଚୁଟକି ମାରିଲା ଆଉ କଣେଇ କରି କଳୀର ସାଥୀମାନଙ୍କର ବିଚିତ୍ର ଭିଡ଼କୁ ଦେଖିଲା । ନିସ୍ତେଜ ଆଣ୍ଟି ଆଶ୍ଚର୍ଯ୍ୟାନ୍ୱିତ ହୋଇ ଏକ ପାଖରେ ଛିଡ଼ା ହୋଇ ଯାଇଥିଲା, ସେହି ତେଜସ୍ୱୀ ନୂତନ ଆସିଥିବା ମହିଳାର ସ୍ନିଗ୍ଧ ଲଲାଟରେ ଚମକୁ ଥିବା ଟୀକା ସାମ୍ନାରେ ତାକୁ ନିଜ ଲଲାଟରେ ଅଙ୍କା ହୋଇଥିବା ତିନିଧାଡ଼ିର ରେଖାର ତିଳକ ପୁରାପୁରି ନକଲି ହୋଇ ଫୋଡ଼ି ହେବାକୁ ଲାଗିଲା ।

ବୀବୀଜୀ ବହୁଦିନରୁ ଇଚ୍ଛା କରୁଥିଲେ ଯେ ଏଲାହାବାଦ ଆସିକରି ଗଙ୍ଗାରେ ଗାଧେଇବେ, କିନ୍ତୁ ଗୃହସ୍ଥିରେ ଏମିତି ବ୍ୟସ୍ତ ଯେ ଚଉଦ ବର୍ଷ ହେଲା ବୀବୀଜୀ ଏଠାରେ ଅଛି ଆଉ ଆଜି ଆସି ପାରିଛି । ଗେହ୍ଲା ପୁଅ ଛୁଟିରେ ଆସିଥିଲା, ତାକୁ ଜିଦ୍‌କରି ଟାଣିକରି ନେଇ ଆସିଛି । କିନ୍ତୁ ମରିଯାଏ, ତୁ କେମିତି ଏଠାକୁ ଆସିଗଲୁ ?"

"ଇୟେ ମୋର ସଖୀ ଅଟେ ଅମ୍ମା, ବିବିୟନ, ଆଉ ଇୟେ ତା'ର ଆଣ୍ଟି, ଇୟେ ଭାଇ - ଇଏ ମତେ ବାଧକରି ଏଠାରେ ଅଟକେଇ ଦେଲା ।"

ହଠାତ୍ ସଖୀର ଖ୍ରୀଷ୍ଟିଆନ ନାମ ଉଚ୍ଚାରଣ ଆଉ ଆଣ୍ଟିର ଲାଲ ପେଣ୍ଟ ଦେଖିକରି ଅମ୍ମାର ବିଧବା ଭଦ୍ରମହିଳା ମଇଁଷି ପରି ହୁରୁଡ଼ି ଉଠିଲା, "ଚାଲ ଭାଉଜ, ଗାଧେଇ-

ପାଧେଇ ଏବେ ତିଳକ ଲଗେଇଛି, ହୁଏତ ପୁଣି ଗାଧେଇବାକୁ ପଡ଼ିପାରେ ।" କ୍ଷଣକରେ ହିଁ ସେହି ପ୍ରଷ୍ଟେଡ଼ ବାଳ ବିଧବାର କର୍କଶ ସ୍ୱଭାବ ପାଣିରେ ତେଲପରି ପହଁରିବାକୁ ଲାଗିଲା । ସେ ବିଡ଼ ବିଡ଼ କରି ଆଗେଇବାରେ ଲାଗିଲା, "ଏହି ହୃଷ୍ଟପୁଷ୍ଟ ପଣ୍ଡାର ମଧ ମୁଣ୍ଡ ଖରାପ ହେଇ ଯାଇଛି, କେତୋଟି ପଇସା ପାଇଁ ଧର୍ମ ଭ୍ରଷ୍ଟ ଦୁରାଚାରୀ ଇସାଇମାନଙ୍କର କପାଳକୁ ରଙ୍ଗ କରୁଛନ୍ତି ।" ଆଣ୍ଟି ଶୁଣିକରି ନ ଶୁଣିଲା ପରି ବହୁତ ନମ୍ରହେଇ ଦୁଇ ହାତ ଯୋଡ଼ିକରି ଅମ୍ମାର ଅଭିବାଦନ କଲା, କିନ୍ତୁ ବିବିୟନର ଚେହେରା ଅପମାନରେ ତମତମ ହେଇ ଉଠିଲା ।

"ଏମାନଙ୍କର କହିବାଟାକୁ ଖରାପ ଭାବ ନାହିଁ ଝିଅ", ଅମ୍ମା ଲଜ୍ଜିତ ହେଇ କଲୀର କାନ୍ଧରେ ହାତ ରଖିଦେଲା, "ଜଣାନାହିଁ କ'ଣ ଦେଖିକରି ତତେ ଇସାଇ ଭାବିଲା । ମୁଁ କାରରେ ଆସିଛି । ପଥର ଦିନ ଚାଲିଯିବି । ତୁ ସାଙ୍ଗରେ ଯିବାକୁ ଇଚ୍ଛା କରୁଥିଲେ ଯାଇପାରୁ ।"

"କିନ୍ତୁ ଅମ୍ମା, ଆମକୁ ଦୁଇ-ତିନିଦିନ ନବୀନ କାକାଙ୍କ ଘରେ ଲଖନଉରେ ରହିବାକୁ ତ ହେବ", ହଠାତ୍ କଲୀର ଦୁଇ ଆଖି, ଅମ୍ମା ପଛରେ ଆସି ଛିଡ଼ା ହେଇଥିବା ଲମ୍ବା ଶ୍ୟାମଳ ଯୁବକ ଆଡ଼କୁ ଉଠିଗଲା ।

ଆଚ୍ଛା ତାହେଲେ ଏଇଠି ରହି ଯା ଅମ୍ମାର ଗେହ୍ଲା ପୁଅ ! ଏତେବେଳ ପର୍ଯ୍ୟନ୍ତ କେଉଁଠି ଲୁଚିଥିଲା ଇଏ ? କଣ ଗଛର ଡାଳରୁ ହଠାତ୍ ଡେଇଁପଡ଼ି ଛିଡ଼ା ହେଇଗଲା ?

"କେମିତି ହିଣ୍ଟ ଦେଉଥିଲା ଶ୍ୱଶୁର, ଏତିକି ମଧ ବୁଝି ପାରିଲା ନାହିଁ । ଏମିତି ଥିକ ସ୍କିନ ଗଣ୍ଡାରର ଚମଡ଼ା ନୁହେଁ କଲୀର ।"

ସ୍ପଷ୍ଟଥିଲା ଯେ ଲଖନଉରେ ଦୁଇ ଦିନର ରହଣିର ସମ୍ଭାବନା ଉଲ୍ଲେଖ କରି ସେ କଲୀକୁ ଭୟଭୀତ କରେଇ ଦେବ ।

ଥରେ କଲୀର ମନେହେଲା ତାକୁ ହସିକରି କହି ଦେବାକୁ, 'ତା'ହେଲେ କ'ଣ ହେଲା ଅମ୍ମା, ମୁଁ ମଧ ଦୁଇ-ତିନି ଦିନ ନବୀନ କାକାଙ୍କ ଘରେ ରହିଯିବି !' କିନ୍ତୁ ଚାରି ଆଖି ତା'ର ହେଲାମାତ୍ରେ ଚେହେରା ବିବର୍ଣ୍ଣ ହେଇଗଲା ।

କେବଳ ଧୋତି ପିନ୍ଧି ତା ଉପରେ ପାଲିସ୍ କରାଯାଇଥିବା ଟିକ କାଠ ପରି ଚକ୍‌ଚକ୍ କରୁଥିବା ନଗ୍ନ ଚଉଡ଼ା ଛାତି, କୌଣସି ଅରଣ୍ୟ ଜଳଶୂନ୍ୟ ବଣର ଖରା ବାଲିରେ ନରବ୍ୟାଘ୍ର ପରି କାହାକୁ କିଛି ବୁଝି ପାରୁ ନଥିବା ତେଜସ୍ୱୀ ଆଖି, ଆଉ ପତଳା ନିର୍ଦ୍ଦୟ ଅଧରର ବ୍ୟଙ୍ଗାତ୍ମକ ବଙ୍କିମ୍ ସ୍ମିତ ହସ ।

ପ୍ରଥମେ କିଛିକ୍ଷଣ ପର୍ଯ୍ୟନ୍ତ ଯେମିତି ସେ ହଳଦୀ ଓ ଚୁନର ଟୀକା, ତିନିଧାଡ଼ି ତିଳକ ଆଉ ଖୋଲା ଭିଜା ବାଳର କୃତ୍ରିମ ଜାଲରେ ଅଟକି ରହିଗଲା, କିନ୍ତୁ ପୁଣି ସେହି ବ୍ୟଙ୍ଗାତ୍ମକ ବଙ୍କିମ୍ ସ୍ମିତ ହସ, ଧାରୁଆ ପତଳା ଛୁରୀ ପରି କଲୀର ଧଡ଼ଧଡ଼ କରୁଥିବା କାଳିଜାରେ ମୁଠା ପର୍ଯ୍ୟନ୍ତ ତଳକୁ ଦବିଗଲା ।

"ହେଭ ନଟ ଉଇ ମେଟ୍ ବିଫୋର ?" ସେ ହସିକରି ପଚାରିଲା ଚଉଡ଼ା ଶିଳ ପରି ଛାତିରେ ପଡ଼ିଥିବା ଯଜ୍ଞୋପବୀତର ହଳଦୀଆ ଡୋର କଲୀର ଗଳାରେ ଫାଶିର ଅଦୃଶ୍ୟ ଫନ୍ଦା ହେଇ ଲାଗିଗଲା ।

"ନା, ତ", କଲୀ ପରକ୍ଷଣରେ ନିଜକୁ ସମ୍ଭାଳି ନେଲା । ଥରେ ସେ ପୁଣି ସେହି ଦୁଧିଆ ଭୋଲା ଚେହେରାର କଲୀ ହେଇଗଲା ଯେଉଁ ଅବକାରିର ବରିଷ୍ଠ ଅଧିକାରିମାନଙ୍କୁ ନିଜର ଛୋଟ ହାତରେ ବହୁତ ସହଜରେ ସେ ନଚେଇ ପାରୁଥିଲା ।

"କିଛି ଚେହେରା ଏମିତି ହିଁ ହୁଅନ୍ତି ସନୀ", ଆଣ୍ଟି ହସିକରି କହିବାକୁ ଲାଗିଲା, "ଯାହାକୁ ଦେଖିକରି ସବୁବେଳେ ଏମିତି ମନେହୁଏ ତାଙ୍କୁ କେଉଁଠି ଦେଖିଛି, ହୁଏତ ଆମର କଲୀର ଚେହେରା ମଧ୍ୟ ଏମିତି ଅଟେ । ମୁଁ ମଧ୍ୟ ଯେବେ ଏହାକୁ ପ୍ରଥମ ଥର ଦେଖିଲି ଦିନସାରା ମନେ ପକେଇବାକୁ ଲାଗିଲି - ହେ ମୋର ଯୀଶୁଖ୍ରୀଷ୍ଟ, କେଉଁଠି ଦେଖିଛି ମୁଁ ଏହାକୁ ।"

"ଚାଲ ଅମ୍ମା, ବଡ଼ ପିଉସୀ ବହୁତ ଆଗକୁ ଚାଲି ଗଲାଣି ।" କିଛି ନ କହି ସେ ଗର୍ବୀ ଯୁବକର ମା'ର ଭିଜିଥିବା ଧୋତି ଉଠେଇ, ଥରେ ହେଲେ ବିଦାୟ ନନେଇ ବା କଟ୍‌ସି କରି ଚାଲିବାକୁ ଲାଗିଲା ।

"ଯାଉଛି ଝିଅ, ଏହାପରେ କଲିକତାରେ ହିଁ ସମୟ କରି କଥା ହେବି ।" ବହୁତ ଆଗକୁ ଚାଲି ଯାଇଥିବା ପୁତ୍ର ସହିତ ଚାଲିବାକୁ ଅମ୍ମା ଲମ୍ବା ଲମ୍ବା ପାଦ ପକେଇ ବାହାରି ଗଲା ବିବିୟନ କହିଲା, "ବ୍ଲାଷ୍ଟ ହିମ, କ'ଣ ଏମାନଙ୍କ ସହିତ ତୁ ରହୁଛୁ କଲୀ ? ବାପରେ ବାପ, ଏହାଠାରୁ ତ କଲିକତାର ଚିଡ଼ିଆଘରର ବାଘ ପିଞ୍ଜରାରେ ରହିବାକୁ କାହିଁକି ଚାଲି ଯାଉନୁ ? କ'ଣ କରନ୍ତି ଏହି ମହାପୁରୁଷ ? ଭାବନ୍ତି ନିଜକୁ ବହୁତ କିଛି ।"

"ହଁ, ଏମ୍ବେସିରେ ଅଛି, ଶୁଣିଛି । ମୁଁ ତ ଏହାଙ୍କୁ ଆଜିହିଁ ଦେଖୁଛି ଆଉ କହୁଛି କ'ଣ ନା ଆମର କେଉଁଠି ଦେଖା ହେଇଛି, ମାଇ ଫୁଟ ।" କଲୀ ହସିକରି ବିବିୟନର ବାହୁ ଧରି କରି ଚାଲିବାକୁ ଲାଗିଲା ।

ବୋବୀର ମନେ ହେଉଥିଲା, ସେ ଡେଇଁକରି କଲୀର ବାଲିରେ ପଡୁଥିବା ଚରଣ-ଚିହ୍ନକୁ ଚୁମା ଦେବାକୁ । ହଠାତ୍ ପିକ୍‌ନିକ୍‌ର ସୁନ୍ଦର-ସନ୍ଧ୍ୟାରେ ଦୃଢ଼ ମାତ୍ର ନିକର୍ମା ହେଇକରି ଡେଇଁ ପଡ଼ିଲା ସେହି ଭାଗ୍ୟବାନ ବ୍ୟକ୍ତିତ୍ୱର ସ୍ୱାମୀକୁ ଦେଖିକରି ବୋବୀର ଚିତ୍ତ କୌଣସି ଅଜ୍ଞାତ ଆଶଙ୍କାରେ ଥରି ଉଠିଥିଲା । ଏହାଙ୍କର ଗୃହରେ କଲୀ ପେୟିଂ ଗେଷ୍ଟ ହେଇ ରହୁଛି । ପୁଣି ବୋବୀ ପାଇଁ ଆଶା କ'ଣ ରହିବ ? କିନ୍ତୁ ଭଲ ହେଲା । ପ୍ରଥମ ସାକ୍ଷାତରେ ଦୁହେଁ ଖୋଲା ତରବାରି ଟାଣି ନେଇଥିଲେ ।

"ମୁଁ ତ କହୁଛି ଆପଣ ଏମିତି ନେରୋ ମାଇନ୍‌ଡେଡ୍ ଲୋକମାନଙ୍କ ମଧ୍ୟରେ ରହନ୍ତୁ ନାହିଁ ମିସ୍ ମଜୁମଦାର", ବୋବୀ ଶୀଘ୍ର ଶୀଘ୍ର ଯାଇ ପାଦରେ ପାଦ ମିଳେଇ

ସୈନ୍ୟମାନଙ୍କ ମାର୍ଚପରି କରିବାକୁ ଲାଗିଲା, "ଆପଣ ଶୁଣିଲେ ନା, ସେହି ଉଚ୍ଛଦାନ୍ତ ଥିବା ସ୍ତ୍ରୀଲୋକ କ'ଣ କହୁଥିଲା । ଖ୍ରୀଷ୍ଟିୟାନ କ'ଣ ତିଳକ ଲଗେଇ ପାରିବେ ନାହିଁ ? ଏବେ ଗତ ମାସରେ ମୁଁ ବେନାରସରେ କେତେକ ଆମେରିକାବାସୀଙ୍କୁ ଧୋତି ଓ କୁରତା ପିନ୍ଧିକରି ତିନିଧାଡ଼ିର ତିଳକ ଲଗାଇ କରି ବୁଲୁଥିବା ଦେଖିଛି ।"

"ଗୋଲି ମାର, ଆମକୁ, କ'ଣ ନେବା-ଦେବାକୁ ପଡୁଛି । ମୁଁ ସେଠାରେ ରହୁଛି କେତେବେଳେ", କଲୀ ହସିକରି କହିବାକୁ ଲାଗିଲା, ମାସକରେ ମୁଁ ପଚିଶ ଦିନ ରହେ । କିନ୍ତୁ ବଙ୍ଗଳାରେ ମୁଁ ପହଞ୍ଚିକରି, ଯେତେବେଳେ କଲୀ ପାଖରେ ଶୋଇପଡ଼ିଲି, ସାରାଦିନର କ୍ଳାନ୍ତ ବିବିୟନ ନିଦରେ ବୁଡ଼ିଗଲା ପରେ ସେ ବହୁତ ଡେରି ପର୍ଯ୍ୟନ୍ତ କଡ଼ ଲେଉଟାଇବାରେ ଲାଗିଥିଲା ।

କେମିତି ଆଶ୍ଚର୍ଯ୍ୟ କଥା ଯେ କ୍ଷଣକ ପାଇଁ ମଧ ସେହି ବ୍ୟକ୍ତି ଭୁଲି ପାରି ନଥିଲା । କିନ୍ତୁ ସ୍ୱୟଂ ସେ ହୁଏତ ପ୍ରଥମେ ବହୁତ ଡେରି ପର୍ଯ୍ୟନ୍ତ ଚିହ୍ନିପାରି ନ ଥିଲା ଆଉ ଯଦି ସେ କିଛି କହି ନ ଥାନ୍ତା, ତେବେ ହୁଏତ ଚିହ୍ନି ମଧ ପାରି ନ ଥାନ୍ତା । ଧୋତିର କଛା ମାରିଥିବା ଏହି ବ୍ୟକ୍ତି ସହିତ ବିଦେଶୀ ବେଶଭୂଷାରେ ଥିବା ସେହି ବ୍ୟକ୍ତି ସନ୍ଧ୍ୟାର ଅସ୍ପଷ୍ଟ ଦେଖାଯାଉ ଥିବା ସେହି ବ୍ୟକ୍ତିରେ କ'ଣ ଆକାଶ-ପାତାଳର ପ୍ରଭେଦ ନ ଥିଲା ?

ତେବେ ମଧ ସେହି ସନ୍ଧ୍ୟା ହୁଏତ ପଲକ ପକେଇବା ମାତ୍ରେ ହିଁ ତାହା ପାଇଁ ଘାତକ ହେଇପାରେ ।

କଲୀ ପରି ଆଉ ଏକ ବ୍ୟକ୍ତି ମଧ ଏମିତି କଡ଼ ଲେଉଟାଉ ଥିଲା । କର୍ଜଲଗଞ୍ଜରେ, ପିଉସୀର ନିଜର ପକ୍କା ଘର ଥିଲା । ଏଲହାବାଦର ଅଧିକାଂଶ ପାର୍ବତୀୟ ପରିବାର କର୍ଜଲଗଞ୍ଜରେ ହିଁ ରହୁଥିଲେ । ସେହି କୁକୁଡ଼ାର ଗୁମ୍ଫାପରି, ଛୋଟ ଛୋଟ ଝରକା, ସଂକୀର୍ଣ୍ଣ ଦରଜା ଆଉ ସାମ୍ନାରେ ଖୋଲା, ନିର୍ଲଜତାରେ ଗନ୍ଧ ହେଉଥିବା ପାଇଖାନା ମଝିରେ ପିଉସୀଙ୍କର ଲାଲ ଇଟାର ଘର ଛୋଟମୋଟ ପ୍ରାସାଦ ପରି ଦେଖା ଯାଉଥିଲା । ତଳର ତିନି-ଚାରୋଟି କୋଠରିରେ ଦର୍ଜି, ଲଣ୍ଡ୍ରି ଆଉ ଗୁଡ଼ିଆର ଦୋକାନରୁ ଅନେକ ଭଡ଼ା ଆସୁଥିଲା । ପୁଣି ପିଉସୀ ଜାଣିଥିଲା, ତା ଉପରେ ବର୍ଷ ବର୍ଷ ଧରି ଆଠ ଅଣାର କଚୁରି ଦାନ୍ତରେ ଧରିକରି ମାଗଣା ଆସୁଥିଲା । ଘରର ଠିକ ତଳ ବଖରାରେ ଅଟାର ଏକ ବିରାଟ ଅଟାକଳ ଦିନ-ରାତି କୋଇଲି ପରି କୁହୁ କୁହୁ ହେଉଥାଏ, ଜଅ-ବାଜରା, ଚଣା-ଗହମ ପେଷା ହେଉଥାଏ । ଆଉ ତାହାରି ନିରନ୍ତର ସହବାସର ପ୍ରଭାବ ହୁଏତ ପିଉସୀର ତୀକ୍ଷଣ ଜିଭରେ ମଧ କ୍ରୋଧ ହେଉଥିଲା । କେବେ ଚାକରାଣୀ, କେବେ ଭଡ଼ାଟିଆ, କେବେ ଜମାଦାରିଣୀକୁ ସେ କୌଣସି କାରଣ ନ ଥାଇ ନିଜ ଦଳକୁ ଟାଣିକରି ନେଇଆସେ ।

"ମତେ ପୁରାପୁରି ବିଧବା ନିରାଶ୍ରୟ ଭାବିଛନ୍ତି ଏହି ବଦମାସମାନେ, ଚାରିମାସ ହେଲା ଏହି ଷଣ୍ଢା-ମୋଟା ଗୁଡ଼ିଆ ଏକ ପଇସା ଭଡ଼ା ଦେଇନାହିଁ । ରାଣ ପକେଇ

କହୁଛି ଭାଉଜ" ସେ ଦୁଇଦିନ ପାଇଁ ଦେଖା କରିବାକୁ ଆସିଥିବା ଗାଉଁଲି ସରଳ ଭାଉଜକୁ ଦଳକୁ ଟାଣି ଶୁଣେଉ ଥିଲା, "ତୁମେମାନେ ତ ମୋର ତରଫରୁ ଆଖି ବନ୍ଦ କରିଦେଲ । ତେଣୁ ତ ଏହି ମୋଟା ବାଘ ହେଇ ଯାଇଛି । କେବେ କେବେ ମନେହୁଏ, ଏହି ଗଣ୍ଡାରକୁ ତା'ର କରେଇରେ ଖୁଆ ସହିତ ନିଆଁରେ ଭାଜି ଦେବାକୁ ।"

ବହୁତ ବଡ଼ କରେଇରେ ସ୍ତୁପାକାର ଖୁଆକୁ ନିଆଁରେ ଭାଜିଲା ବେଳକୁ ମୋଟା ଗୁଡ଼ିଆର କାନରେ ହୁଏତ ପିଉସୀର ହୃଦୟହୀନ ପ୍ରସ୍ତାବର ଅସ୍ପଷ୍ଟ ଧ୍ୱନି ପଡ଼ି ଯାଇଥିଲା । ସେ ସେଠାରୁ ହସିକରି କହିବାକୁ ଲାଗିଲା, "ନିଶ୍ଚୟ ନିଆଁରେ ଭାଜିଦିଅ ପିଉସୀ, କିନ୍ତୁ କରେଇ ଟିକିଏ ବଡ଼ ବସେଇବ । ଏମିତି ନ ହେଉ କି ଠଲେ ପଡ଼ିଯିବି ।"

"ଦେଖୁଛୁ ନା ଭାଉଜ, ବଦମାସ କେମିତି ଥଟ୍ଟା କରୁଛି ମତେ ବିଧବା କଷ୍ଟ ପାଉଥିବା ସ୍ତ୍ରୀଲୋକକୁ, ଯେମିତିକି ମୁଁ ଏହାର ଭାଉଜ ହେବି ।" କିନ୍ତୁ ପିଉସୀର କ୍ରୁଦ୍ଧ କଣ୍ଠସ୍ୱର କିଛିକ୍ଷଣ ପରେ ବଦଳି କରି ମିଠା ସ୍ୱରରେ ଡାକିବାକୁ ଲାଗେ, "ଆରେ ରାଧା କିଷନ, ମୋ ପାଇଁ ଅଧା ସେର ସେହି ଖୁଆର ବରଫି ପଠେଇ ଦେବୁ ଉପରକୁ, ଯାହାକୁ ଏବେ ଭାଜୁଥିଲୁ । ଯେଉଁଦିନ ଖାଇବା ପରେ ମିଠା ଖାଏ ନାହିଁ, ମନେହୁଏ ଭୋଜନ ହିଁ କରିନାହିଁ । ଏମିତି ହୀନ କପାଳିଆ ମିଠା ଦାନ୍ତ ଅଛି ।"

"ଏବେ ନିଅ ପିଉସୀ, ଅଧା ସେର କ'ଣ ତିନିପାଆ ଓଜନ କରି ପଠଉଛି", ଆଉ ଭଡ଼ାର ଗୋଟିଏ ଛୋଟ କିସ୍ତି ରାଧା କିଷନ ତୁରନ୍ତ ଉପରକୁ ପଠେଇ ଦେଉଥିଲା । ପୁଣି ହୁଏତ ସନ୍ଧିପତ୍ରରେ ଦୁଇଜଣଙ୍କର ଦସ୍ତଖତ ମଧ୍ୟ ହେଇଯାଉଥିଲା, କାହିଁକି ନା ସବୁଠାରୁ ଉପର ମହଲାରେ ଗଡ଼ପଡ଼ ହେଉଥିବା ପ୍ରବୀରର କାନରେ ଗୁଡ଼ିଆ ସହିତ ଡେରି ପର୍ଯ୍ୟନ୍ତ ଚାଲିଥିବା ପିଉସୀର ବାକ୍‌ଯୁଦ୍ଧର ବକର ବକର ଶୁଣାଯାଏ ନାହିଁ । କିଛି ସମୟ ପର୍ଯ୍ୟନ୍ତ ପିଉସୀର କର୍କଶ କଣ୍ଠସ୍ୱର, ଅଟାକଳର ଘର-ଘଣ ଶବ୍ଦ ଆଉ ଅମ୍ମାର ନରମସ୍ୱର ଶୁଣୁଥିଲା ପୁଣି ସବୁ ଶାନ୍ତ ହେଇଗଲା । କେତେ ସରଳ ଥିଲା ଅମ୍ମା । ଯେ କେହି ମିଠା କଥାର ଜାଲରେ ତାଙ୍କୁ ଫାଶରେ ପକେଇ ପାରୁଥିଲା । ନା, ତାକୁ ଧୋକା ହେଇ ନଥିଲା । ଠିକ୍ କହିଥିଲା ସେହି ସର୍ଦ୍ଦାର, "ଥରେ ସେହି ଚେହେରାକୁ ଦେଖିଲା ପରେ କେହି ଭୁଲି ପାରିବ ଭାଇନା ।" ଦୁଇ ବର୍ଷ ଆଗରୁ, କିଛିକ୍ଷଣ ପାଇଁ ଦେଖିଯାଇଥିବା ସେହି ଚେହେରାକୁ ସତରେ ଭୁଲିପାରି ନ ଥିଲା । ତେଣୁ ବହୁରୂପିଙ୍କର ଚାତୁର୍ଯ୍ୟରେ ରଙ୍ଗରେ ପୋତି ଦେଇଥିବା, ବାଧ୍ୟ କରି ପବିତ୍ର କରିଥିବା ତିନି ଧାଡ଼ିର ତିଳକ ଲଗେଇ ଥିବା ଚେହେରା ମଝିରେ ମଧ୍ୟ ସେ ଦୁଇ ବର୍ଷର ଫେରାର ଅଭିଯୁକ୍ତାକୁ ସହଜରେ ଚିହ୍ନି ପାରିଥିଲା ।

ସେଥର ଅମ୍ମା-ବାପାଙ୍କୁ ସୂଚନା ଦେଇ ହିଁ ସେ କାବୁଲରୁ କଲିକତା ଚାଲି ଆସିଥିଲା । ଘରେ ପହଞ୍ଚିଲା ତ କବାଟରେ ବଡ଼ ତାଲା ପଡ଼ିଥିଲା । ପଡ଼ିଶାର ଜଷ୍ଟିସ ସାହେବଙ୍କ ଠାରୁ ଜାଣି ପାରିଲା, ଅମ୍ମା-ବାପା ଦୁହେଁ ଜଗନ୍ନାଥ-ପୁରୀର ରଥଯାତ୍ରା ଦେଖିବାକୁ

ଯାଇଛନ୍ତି । କାକା ତା'ର ସମବୟସି ଥିଲେ ଆଉ ମିତ୍ରହିଁ ଅଧିକ ଥିଲେ, କାକା କମ୍ । ଛୋଟ ବୟସରେ ହିଁ ଖୁଡ଼ି କ୍ଷୟରୋଗରେ ଚାଲି ଯାଇଥିଲେ । ପୁଣି କାକା ଦ୍ୱିତୀୟଥର ବାହା ହେଲେନାହିଁ । ସେକ୍ରେଟେରିଏଟ୍‌ରେ ଭଲ ଚାକିରି, ପାଇ ଯାଇଥିଲେ । ନୂଆଁ ଗାଁରେ ବାପା ତିଆରି କରିଥିବା ଦର୍ଶନୀୟ ଦୁଇ ମହଲା କୋଠା ଥିଲା । ଯେବେ ପ୍ରବୀର ଛୁଟିରେ ଘରକୁ ଆସୁଥିଲା, ନବୀନ କାକା ସହିତ ସାକ୍ଷାତ କରିବାର ପ୍ରୋଗ୍ରାମ ଅବଶ୍ୟ କରୁଥିଲା । କହିବାକୁ ଗଲେ ତ ବାପାଙ୍କର ଦାଦା ପୁଅ ଭାଇ ଥିଲେ, କିନ୍ତୁ ବହୁତ ବର୍ଷ ପର୍ଯ୍ୟନ୍ତ ଦୁଇ ଭାଇ ଏହା ଜାଣିପାରି ନଥିଲେ ଯେ ନବୀନ କାକା ସେମାନଙ୍କର ନିଜର କାକା ନୁହନ୍ତି । କପଡ଼ାର ଏମିତି ସୌକିନ ଥିଲେ ଯେ ସେଥିରେ ଅନେକ ଟଙ୍କା ଉଡ଼େଇ ଦେଉଥିଲେ । ଏମିତି ଆମୋଦ-ପ୍ରମୋଦ ସ୍ୱଭାବର ଥିଲେ ଯେ ଗୀତର ଆସରରେ ପହଞ୍ଚି ଗଲେ, ଅଧା ରାତି ପର୍ଯ୍ୟନ୍ତ ଚାଲିଥାଏ ! ମଖମଲ କନାର ଚମ୍ପା ଫୁଲର କଢ଼ଥିବା ସୁନାରୂପାର ଝାଲର ଥିବା ଲଖନଉ ପଞ୍ଜାବୀ, ଇକବର୍ଗା ପାଇଜାମା, କାନ୍ଧ ପର୍ଯ୍ୟନ୍ତ ଝୁଲୁଥିବା ବାଳ ଆଉ ପର୍ଶିୟନ ବିରାଡ଼ିର ନରମ ମୋଟା ଲାଞ୍ଜପରି ପୁଷ୍ଟ ନିଶ । ଅଦ୍ୱିତୀୟ ବ୍ୟକ୍ତିତ୍ୱ ଥିଲା ନବୀନ କାକାଙ୍କର । ପୁତୁରା ଆସିଲେ, କାକା ଉଦାର ଆତିଥ୍ୟ ପ୍ରଦାନକାରୀ ହେଇ ଯାଉଥିଲେ, ଫଣ୍ଡରୁ ଟଙ୍କା ବାହାର କରି ଆଣୁଥିଲେ । କେବେ କୁହ୍ଲଡ଼ୋର କୁଲଫୀ ଫାଲୁଦା ଚାଲି ଆସୁଥିଲା, କେବେ ଦନାରେ ଖସା ଲଡୁ । କିନ୍ତୁ ସେଥର ପ୍ରବୀର ଲଖନଉ ପହଞ୍ଚିଲା ବେଳେ ଦୁର୍ଭାଗ୍ୟବଶତଃ ନବୀନ କାକାଙ୍କୁ ହଠାତ୍ କୌଣସି ଆତ୍ମୀୟର ଶ୍ରାଦ୍ଧ କରିବାକୁ ପାହାଡ଼କୁ ଯିବାକୁ ପଡ଼ିଲା । ଘରର ଚାବି ପ୍ରବୀରକୁ ଦେଇକରି ସେ ଦ୍ୱିତୀୟ ଦିନରେ ହିଁ ଆଲମୋଡ଼ୋ ଚାଲି ଗଲେ ।

ଦିନସାରା ତାଙ୍କର ଅଲଭ୍ୟ ପୁସ୍ତକରେ ଭର୍ତ୍ତି ଆଲମାରିଗୁଡ଼ିକ ପ୍ରବୀର ଉଇହେଇ ଚାଟିବାକୁ ଲାଗିଥାଏ । ସନ୍ଧ୍ୟାରେ ସେ ନିଜର ଏକାନ୍ତବାସରେ ସ୍ୱୟଂ ବିରକ୍ତ ବାରଣ୍ଡାରେ ଛିଡ଼ା ହେଇଗଲା । ଏତେବର୍ଷ ପରେ ମଧ୍ୟ ଲଖନଉ ବହୁତ ବଦଳି ନ ଥିଲା । ନବୀନ କାକାର ନୂଆ ଗାଁର ସେହି ଗଳିର ଏକ-ଏକ ରେଖା ସେମିତିହିଁ ଥିଲା । ସାମ୍ନାରେ ହେଇଥିବା ଛୋଟ ପାର୍କ, ପାର୍କକୁ ଲାଗି ବଡ଼ କୋଠା, ଡାହାଣ ଆଡ଼କୁ ବୁଲି ଯାଇଥିବା ନିଜ ଚାଷଜମି ଉପରେ କାଠର ସେହି ଗଦା, ଆଉ ଗଦାର ସେହି ଢିପ ଉପରେ ବସିଥିବା ବୀନତୀ ଗଦାର ମାଲିକିଆଣୀ ସେହି ବୁଢ଼ି । ଦ୍ୱିତୀୟ ତେଡା-ମେଢ଼ା ଗଳି ଯେଉଁଟା ସିଧା ଅମୀନାବଦର ଛକ ଜାଗାରେ ଯାଇ ମିଶି ଯାଇଥିଲା ଆଉ ଯେଉଁ ଗୋଜିଆ କୋଣର ଖୁଚୁରା ଦୋକାନୀ ଠାରୁ ସେ ମିଠା 'ରଙ୍ଗ ବେରଙ୍ଗର ଗୋଲାକାର ବଟିକା, ଗୁଡ଼ି ଆଉ ମାଂଝା ଆଣୁଥିଲା, ସେ ଏବେ ମଧ୍ୟ ଯେମିତିକି ସେମିତି ଥିଲା । ଟାକୁଆ ଗାଲବାଲା ସେହି ବୁଢ଼ା ଖୁଚୁରା ଦୋକାନୀ ଏବେ ମଧ୍ୟ ସେଠାରେ ଭଙ୍ଗା ଚଷମାକୁ ହଳଦିଆ ଦଉଡ଼ିରେ ବାନ୍ଧିକରି କାନରେ ଲଗେଇ ରଖିଥିଲା । ଅଚ୍ଚ ଟପ-ଟପ ପାଣି ପଡ଼ିବା ସହିତ ହଠାତ୍

ସେହିଦିନ ଘରର ଫ୍ୟୁଜ୍ ଉଡ଼ିଗଲା । ହାଲୁକା ଅସ୍ପଷ୍ଟ ଧୂଆଁ ଲିଆକୁ ଚିରି ବେଳେ-ବେଳେ ଗୋଟିଏ ଅଧେ ଟାଙ୍ଗା ବାହାରି ଯାଉଥିଲା ଆଉ ପୁଣି ସଡ଼କ ଶୁନ୍‌ଶାନ ହୋଇ ଯାଉଥିଲା । ନବୀନ କାକା ସ୍ୱୟଂ ରାନ୍ଧୁଥିଲେ । ପୁତୁରାକୁ ମଧ୍ୟ ସେ ନିଜର ଷ୍ଟୋଭ ପାଥେୟ ସବୁକିଛି ବାହାର କରି ସମର୍ପଣ କରି ଯାଇଥିଲେ । କିନ୍ତୁ ପ୍ରବୀର ତାଙ୍କର ଅନୁପସ୍ଥିତିରେ ପ୍ରତ୍ୟେକ ଦିନ କ୍ୱାଲିଟିରେ ହିଁ ଖାଉଥିଲା । ସେ ଭାବୁଥିଲା ଯେ ତାଲା ଲଗେଇ ବଜାର ଆଡ଼କୁ ବାହାରି ଗଲାବେଳେ ସେହି ଝିଅ ବଙ୍ଗଳାର ଝଡ଼ ତୋଫାନର ଅପ୍ରତ୍ୟାଶିତ ଆବେଗ ପରି ଆସିକରି ତା ସହିତ ଲାଗି ଯାଇଥିଲା ।

"ପ୍ଲିଜ୍, ମତେ କେଉଁଠି ଲୁଚେଇ ଦିଅନ୍ତୁ, ସେ ମତେ ମାରି ପକେଇବ, ପଛରେ-ପଛରେ ଆସୁଛି । ଡେରି କରନ୍ତୁ ନାହିଁ, ପ୍ଲିଜ୍ ।"

ପ୍ରବୀର ରହିଯାଇ ହତପ୍ରଭ ପରି ଛିଡ଼ା ହୋଇଗଲା ।

ସେ କିଏ ଥିଲା ? କିଏ ପିଛା କରୁଛି ? କେଉଁଠାରେ ଲୁଚେଇ ଦେବି ? କ'ଣ ଇଏ ନବୀନ କାକାର ସେହି ଷ୍ଟେନୋ ନୁହେଁତ ।

ସେକ୍ରେଟେରିଏଟର ଗୋଟିଏ ଖ୍ରୀଷ୍ଟିଆନ ଷ୍ଟେନୋକୁ ନେଇକରି ନବୀନ କାକାଙ୍କୁ ଏଠାରେ ଖୁବ୍ ଜଡ଼ିତ କରା ଯାଉଥିଲା । ଅମ୍ମା ତାକୁ କହିଥିଲା, "ଏହାଠାରୁ ନବୀନ କାକା କୌଣସି ପାହାଡ଼ି ସଦ୍‌ଗୃହସ୍ଥର ଝିଅକୁ ନେଇ ଆସିଥାନ୍ତେ । ଶୁଣିଛି ଅଫିସର ସେହି ବାଳିକା ତାଙ୍କୁ ଖୁବ୍ ମାଂସ ଖୁଆଇ ନଷ୍ଟ କରୁଛି, ନବୀନର ଭଉଣୀ-ଭିଣୋଇ ସମସ୍ତଙ୍କୁ ଖୁଆଇ ପିଆଇ କରି ଜାଲରେ ପକେଇଛି ଝିଅଟି । ଦୁର୍ଗୀର ପିଲାମାନେ ତାକୁ ଏବେ ମାଇଁ ଡାକୁଛନ୍ତି, ନବୀନ କାକା ହୁଏତ ସ୍ୱୟଂ ମଧ୍ୟ ତାକୁ ବାହା ହେବାକୁ ଚାହୁଁଥିଲେ, କିନ୍ତୁ ବୃଦ୍ଧ ପିତା ଆତ୍ମହତ୍ୟାର ଲାଲ ପତାକା ଦେଖେଇ ଦେଇଥିଲେ ।"

ନିଶ୍ଚୟ ଏହି ମହିଳା ହେବ, କିନ୍ତୁ ହୁଏତ କିଛି ପଚାରିବାର ନା ସମୟ ଥିଲା, ନା ସେହି ଝଡ଼ ତୋଫାନରେ ଆସି ଯାଇଥିବା ବାଳିକା ତାକୁ ଅବକାଶ ଦେଲା । ସେ ପତ୍ରପରି ଥରିବାରେ ଲାଗିଥିଲା ।

ପ୍ରବୀର ତାହାର ଗୋଟିଏ ହାତ ଟାଣିକରି ନବୀନ କାକାର ୱାଡ଼ରୋବରେ ନିଜର ଟବିଡ଼ର କୋଟ ପଛରେ ଠେଲି ଦେଲା ଆଉ ସ୍ୱୟଂ ପିଛା କରୁଥିବା ରହସ୍ୟମୟ ବ୍ୟକ୍ତିକୁ ଦେଖିବାକୁ ବାରଣ୍ଡାରେ ଛିଡ଼ା ହୋଇଗଲା । ତା'ର ମନେହେଲା; ଯେମିତି କ୍ଷଣକ ପାଇଁ ତା ଦେହରେ ଲାଗି ରହିଥିବା ସେହି ଥରୁଥିବା ବାଳିକା ତା'ର ଶରୀରରେ କଡ଼ା ସୁଗନ୍ଧର କୌଣସି ଅଦୃଶ୍ୟ ସେଣ୍ଟର ବୋତଲହିଁ ଓଲଟେଇ ଦେଇ ଯାଇଛି । ଏମିତି ସୁଗନ୍ଧିତ ପ୍ରସାଧନର ତା'ର ଅଭ୍ୟାସ ନଥିଲା, ଏଇଥି ପାଇଁ କଡ଼ା ସୁଗନ୍ଧ ତାକୁ ଆହୁରି କଡ଼ା ମନେହେଲା । "କ'ଣ ମୁଁ ଭିତରକୁ ଆସି ପାରେ ?"

ଆକସ୍ମିକ ସ୍ୱରରେ ଚମକି ଉଠି ପ୍ରବୀର ଆଖି ଉଠେଇଲା । ପରଦା ଉଠେଇ କରି

ଏକ ଭୟଭୀତ ଲମ୍ବା ସର୍ଦ୍ଦାର ଉଙ୍କି ମାରୁଥିଲା ।

"ଆସନ୍ତୁ", ପ୍ରବୀର ଚଉକି ଟାଣି ଦେଲା ଆଉ ବିନା ଧନ୍ୟବାଦ ଦେଇ ସେ. ଦୁମ୍‌କରି ବସିପଡ଼ି ପ୍ରବଳ ଭାବରେ ଧଇଁସଇଁ ହେବାକୁ ଲାଗିଲା ।

## ବାଆର

"ଏକ୍ସକ୍ୟୁଜ୍ ମି – କିନ୍ତୁ ଏଠାକୁ କୌଣସି ଦୁର୍ବଳ-ପତଳା ବାଳିକା ଆସି ନାହିଁ ? ବହୁତ ଦୁର୍ବଳ କାନ୍ଧ ପର୍ଯ୍ୟନ୍ତ କଟା ହେଇଥିବା ବାଳ, ବଙ୍କା ସିନ୍ଥି, ବହୁତ ବଡ଼ ଆଖି, ହାଲୁକା ଗୋଲାପି ସାଢ଼ି ଆଉ...."

"ନା ଆଜ୍ଞା", ପ୍ରବୀରର ସଂଯତ କଣ୍ଠସ୍ୱର ତା'ର ନିଜର କାନକୁ ଅଜଣା ମନେ ହେଇ ତା'ର କାନରେ ଜୋରରେ ଧକ୍‌କା ଖାଇବାକୁ ଲାଗିଲା ।

ପ୍ରକୃତରେ ପାଦରେ ସ୍କେଟିଂ ହ୍ୱୀଲ ଲଗେଇ କରି ଦଉଡୁ ଥିଲା ହୁଏତ ସେ । ଟିକିଏ ଚିନ୍ତା କରନ୍ତୁ ଏହି ଲମ୍ବା ଗୋଡ଼କୁ ମଧ କଚାଡ଼ି ପକେଇ ଯାଇଛି । ସେ ହସିଲା । ସର୍ଦ୍ଦାର ପ୍ରକୃତରେ ସାଢ଼େ ଛଅ ଫୁଟ୍‌ରୁ କମ ନ ଥିଲା ।

ଚକ୍‌ଚକ୍ କରୁଥିବା ଜୋତା, କାଇଦାରେ ପିନ୍ଧି ଥିବା ସୁଟ୍ ଓ ଟାଇ, ମୋତି ପରି ଚମକୁ ଥିବା ଦାନ୍ତ, ଯାହାକି ସେ ହସିଲା ମାତ୍ରେ ଅନ୍ଧାର ଚେହେରାକୁ ହଠାତ୍ ଜଳେଇ ଦେଇ ଯାଇଥିବା ବେଶି ପାୱାରର ବତୀ ପରି ଉଜ୍ଜ୍ୱଳ କରି ଦେଉଥିଲା, କିନ୍ତୁ ଯାହାର ଚାଲି-ଚଳନ, ଉତ୍ସାହ ଆଉ ଏକ ପରଷ୍ଠିଆ ଶରୀରର ଗଠନ ପାଇଁ ପ୍ରବୀର ତାହାକୁ ଯୁବକ ଭାବି ଥିଲା, ଡିଆସିଲିର କ୍ଷଣିକ ଆଲୋକରେ ତାହାର ପ୍ରୌଢ଼ ଚେହେରା ଦେଖିକରି ସେ ଆଶ୍ଚର୍ଯ୍ୟ ହେଇଗଲା । ସଜା ହେଇଥିବା ଦାଢ଼ିର ବାଳ ଖିଚିଡ଼ି ଥିଲା ଆଉ ସୁଦର୍ଶନ ଚେହେରା କୁଞ୍ଚକୁଞ୍ଚିଆ ହେଇ ଭର୍ତ୍ତିହେବାକୁ ଲାଗିଥିଲା ।

"ଭେରି ଷ୍ଟ୍ରେଂଜ", ସେ କହିବାକୁ ଲାଗିଲା, "ମତେ ଦୂରରୁ ବିଲକୁଲ ଏମିତି ଲାଗିଲା ଯେ ସେ ଏହି ଲୁହାର ବୁଲି ବୁଲି ଯାଇଥିବା ପାହାଚରେ ବିଲେଇ ପରି ଡେଇଁ ଡେଇଁ ଚଢୁଥିଲା । ହୁଏତ ଧୋକା ହେଇଥିଲା – କିନ୍ତୁ କ'ଣ ଆପଣ ଦୟାକରି ମତେ ଥରେ ଆପଣଙ୍କର କୋଠାର ଗଳି-କନ୍ଦି ଦେଖିବାକୁ ଦେବେ ? ସେ ଜଙ୍ଗଲି ବିଲେଇ ପରି କେଉଁଠି ହେଲେ ଲୁଚିପାରେ ?"

"ଆପଣ ଖୁସିରେଦେଖି ପାରନ୍ତି, କିନ୍ତୁ ପୁରା ଘରର ଫ୍ୟୁଜ୍ ଉଡ଼ିଯାଇଛି ଆଉ ମୋ ପାଖରେ ଟର୍ଚ୍ଚ ମଧ ନାହିଁ", ପ୍ରବୀର କହିଥିଲା । କିନ୍ତୁ ସର୍ଦ୍ଦାରର ଯେମିତି ବିଶ୍ୱାସ ହେଉ ନ ଥିଲା ଯେ ସେହି ଛଳନାମୟୀ କୋଠାରୁ ବାହାରକୁ କେଉଁଠିକୁ ଯାଇଛି ।

"ମୁଁ ବୁଝିପାରୁଛି ଆଜ୍ଞା", ସେ ବହୁତ ଲଜ୍ଜିତ ସ୍ୱରରେ କହିବାକୁ ଲାଗିଲା,

"ଏକରେ ତ ପ୍ରବଞ୍ଚକ ଚୋର ପରି ଆପଣଙ୍କର ଜାଣି ନ ଥିବା ବଙ୍ଗଳାକୁ ଡେଇଁ ଆସିଛି, ତା ଉପରେ ଗଳି-କନ୍ଦି ଅନୁସନ୍ଧାନ କରିବା ପାଇଁ ଆପଣଙ୍କର ଅନୁମତି ମାଗୁଛି । କିନ୍ତୁ ଥରେ ଖୋଜିନିଏ, ତାହେଲେ ହୁଏତ ସାନ୍ତ୍ୱନା ପାଇଯିବି ।" ସର୍ଦ୍ଦାରର ଯେମିତିକି ସେଇ ଦୁର୍ବଳ ବାଳିକାକୁ ଖୋଜିବା ଛଡ଼ା ଶାନ୍ତି ପାଉ ନ ଥିଲା । ସେ ପ୍ରବୀର ସହିତ ଡିଆସିଲିର କାଠି ଜଳେଇ ଉହୁଙ୍କି-ଉହୁଙ୍କି ଛାତର କଡ଼ି-କାଠ ପର୍ଯ୍ୟନ୍ତ ଖୋଜି ଆସିଲା । ଥରେ ୱାଡ଼ରୋବର ଅଧାଖୋଲା ପିଠିଆଡ଼କୁ ଝୁଙ୍କି ପଡ଼ି ପଲଙ୍କର ତଳକୁ ଉଙ୍କିମାରିବାକୁ ଲାଗିଲା, ସେତେବେଳେ ପ୍ରବୀରର କେବେ ଧଡ଼ ଧଡ଼ କରୁ ନଥିବା ଲୁହାର କଲିଜା ଧଡ଼ ଧଡ଼ କରି ଉଠିଥିଲା । ହୁଏତ ତାକୁ ଦେଖିପାରିଛି, ତେବେ ସେ କ'ଣ କହିବ ସେହି ସଭ୍ୟ ଶାନ୍ତ ସର୍ଦ୍ଦାର । ଯେଉଁ ପ୍ରବୀର କେବେ ମିଛ କହେ ନାହିଁ, ଏକ ଅଜଣା ରହସ୍ୟମୟୀ ବାଳିକା ପାଇଁ ଏତେ ବଡ଼ ମିଛ କେମିତି କହି ପକେଇଲା ?

ସର୍ଦ୍ଦାର ପୁଣି ଥରେ ବାହାରକୁ ଆସିକରି ହତାଶ ହେଇ ଚଉକିରେ ବସିପଡ଼ିଲା ।

"କ'ଣ କହିବି, ଭାଇ ସାହେବ, କଥା ମଧ୍ୟ ଏମିତି ଯେ କହିବାକୁ ମଧ୍ୟ ଲଜ୍ଜ୍ୟାରେ ମୁଣ୍ଡ ନଇଁଯାଉଛି । ଆମର ସ୍ୱାଧୀନ ହିନ୍ଦୁସ୍ଥାନରେ ଏବେ ଏମିତି ବାଳିକାମାନେ ମଧ୍ୟ ଜନ୍ମ ହେଉଛନ୍ତି । ପ୍ରାୟ ବର୍ଷେ ହେବାକୁ ବସିଲାଣି, ମୋର ସ୍ତ୍ରୀ ସିମ୍‌ଲାକୁ ତା'ର ଅସୁସ୍ଥ ମା'କୁ ଦେଖିବାକୁ ଯାଇଛି । ମୁଁ ସୈନ୍ୟ ବାହିନୀରେ ଅଛି, ମତେ ବ୍ରିଗେଡ଼ିଅର ବେଦୀ କହନ୍ତି", ସେ ନିଜର ସଂକ୍ଷିପ୍ତ ପରିଚୟ ସହିତ ହଠାତ୍ ଚଉକିରୁ ଡେଇଁ ପଡ଼ି, ପ୍ରବୀର ସହିତ ହାତ ମିଳେଇଲା, ପୁଣି ବସିକରି କହିବାକୁ ଲାଗିଲା, "ଗୁରୁଙ୍କର ଇଚ୍ଛା ଏମିତି ହେଲା କି ମା'ତ ଠିକ ହେଇଗଲା, ତାହାର ଅସୁସ୍ଥତାର ଖବର ପଚାରିବାକୁ ଯାଇ ଝିଅ ଚାଲିଗଲା ! ଗୋଟିଏ କାର ଏକ୍ସିଡ଼େଣ୍ଟରେ ମୋର ସ୍ତ୍ରୀର ମୃତ୍ୟୁ ହେଇଗଲା । ମୁଁ ଲଦାଖରେ ଥିଲି, ଝିଅ ଦିଲ୍ଲୀରେ ମୋର ମା ପାଖରେ ଥିଲା ଆଉ ପୁଅ ଖଡ଼ଗ ବା ସଲାରେ । ଦୁହିଁଙ୍କୁ ଏହି ଖବର ଦେବାକୁ ମୁଁ ସିମଲାରୁ ଫେରି ଦିଲ୍ଲୀ ଯାଉଥିଲି । ଯିବାକୁ ବସିବାରୁ ଶାଶୁ ମୋର ସ୍ତ୍ରୀର ସମସ୍ତ ଗହଣା ମତେ ଦେଇ ଦେଲେ । ମୋର ସ୍ତ୍ରୀର ତା'ର ଗହଣା ସହିତ ବିଚିତ୍ର ସମ୍ପର୍କ ଥିଲା । କେତେଥର ବୁଝେଇଲି ଯେ ବେଙ୍କରେ ରଖି ଦେବାକୁ, କିନ୍ତୁ ଯେଉଁଠାକୁ ଯାଏ, ତା'ର ଛୋଟ ମୋଟ ଲକର ସଙ୍ଗରେ ଯାଉଥିଲା । ଏବେ ଆପଣଙ୍କୁ କ'ଣ କହିବି, ସେମିତି ଅମୂଲ୍ୟ ହୀରାର ସେଟ୍ ହୁଏତ ଏବେ ଲକ୍ଷେ ପଚିଶ ହଜାରରେ ମଧ୍ୟ ମିଳିବ ନାହିଁ । ମୋର ସ୍ତ୍ରୀ ଫିରୋଜପୁରର ବେଦୀ ପରିବାରର ଝିଅ ଥିଲା ଆଉ ମୋର ଶ୍ୱଶୁର ଲଣ୍ଡନ, କାନାଡ଼ା ଆଉ ଆମେରିକାର ଗୁରୁଦ୍ୱାରରେ ପରିଚାଳକ ଥିଲେ । ପ୍ରଥମେ ମୁଁ ସମସ୍ତ ଗହଣା ନିଜ ଶାଶୁଙ୍କୁ ଫେରେଇ ଦେଲି, "ମୋର ତ ଅମୂଲ୍ୟ ହୀରା ଚାଲିଗଲା, ମା ମୁଁ ଏଗୁଡ଼ିକୁ କ'ଣ କରିବି", ମୁଁ କହିବାରୁ ସେ କାନ୍ଦିବାକୁ ଲାଗିଲେ- 'ତମ ଝିଅର ନିର୍ବନ୍ଧ ହେଇ ଯାଇଛି, ଏବେ ଏଗୁଡ଼ିକର ଦରକାର ହେବ, ପୁଅ । ଆଉ ଏଟେଚି ଖୋଲିକରି ସେ ମତେ ପୁରା ଲିଷ୍ଟ ସହିତ ମିଳେଇ କରି ଗୋଟିଏ ଗୋଟିଏ

ଜିନିଷ ବୁଝେଇ ଦେଇଥିଲେ ।

"ଟ୍ରେନ୍ ଚାଲିବାରୁ ମୁଁ ଏଟେଚିକୁ ତକିଆ ତଳେ ରଖିଦେଲି ଆଉ ଶୋଇ ପଡ଼ିଲି ।"

"ସେହି କୁପେରେ ମୋ ସହିତ ଏକ ବାଳିକା ମଧ୍ୟ ଯାତ୍ରା କରୁଥିଲା । ସେହି, ଯାହାର ପିଛା କରି ମୁଁ ଏହି ପର୍ଯ୍ୟନ୍ତ ଦୌଡ଼ି ଆସିଛି । ପ୍ରଥମେ ମତେ ବହୁତ ଏମବାରସିଂ ଲାଗିଲା, ଭାଇ ସାହେବ, ଏତେ ଲମ୍ବା ଯାତ୍ରା ଆଉ ସାଙ୍ଗରେ ଏକେଲା ସେହି ଯୁବତୀ ଚଞ୍ଚଳ ବାଳିକା । ବାଳିକାଟି ବହୁତ ଚଞ୍ଚଳ ଥିଲା । କେତେବେଳେ ଶୋଇ ପଡୁଥିଲା, କେତେବେଳେ ଏକା ଝଟକାରେ କଟା ବାଳକୁ ପଛକୁ ପକଉ ଥିଲା, କେବେ ଝରକା ବନ୍ଦ କରୁଥିଲା, କେବେ ଖୋଲୁଥିଲା । ମୁଁ ଶୋଇ ଶୋଇ ତାହାର ଧୂର୍ତ୍ତ ଚଗଲାମୀ ଦେଖିକରି ନିଜ ଝିଅ ତେଜେନ୍ଦର ହିଁ କଥା ମନେପଡୁଥିଲା । ସେ ମଧ୍ୟ ଏକ ଜାଗାରେ ଚୁପଚାପ ବସିପାରେ ନାହିଁ, ଯେମିତିକି କୋଡ଼ିଏଟି ଡାଆଁସ ଏକାଥରକେ କାମୁଡ଼ୁଛନ୍ତି । କିଛିକ୍ଷଣ ପର୍ଯ୍ୟନ୍ତ ମୁଁ ତାକୁ ଦେଖିବାରେ ଲାଗିଲି, ପୁଣି ମୋର ଆଖି ମନକୁ ମନ ନିଦରେ ବନ୍ଦ ହେବାକୁ ଲାଗିଲା । ଏକରେ କେତେ ରାତି ହେଲା ଶୋଇ ନ ଥିଲି । ଏକ ହାଲୁକା ନିଦ ପରେ ମୁଁ କଡ଼ ଲେଉଟାଇବାରୁ ଦେଖିଲି ସେହି ବାଳିକା ସିଟ୍ ତଳକୁ ଗୋଡ଼ ଓହଳାଇ ସିଗାରେଟ୍ ପରେ ସିଗାରେଟ୍ ଫୁଙ୍କିବାରେ ଲାଗିଥିଲା । ମୁଁ ତାକୁ ଦେଖିକରି ଆଶ୍ଚର୍ଯ୍ୟ ହେଇଗଲି । ସୈନ୍ୟବାହିନୀରେ ରହିଛି - ସେ ମଧ୍ୟ ଲଦାଖ, ଲେହ ଆଉ ସିକିମ୍‌ରେ, ଯେଉଁଠାରେ ସିଗାରେଟ୍ ଆଉ ରମ ବିନା କେହି ମଧ୍ୟ ସୈନ୍ୟ ବଞ୍ଚିପାରେ ନାହିଁ । କେମିତି-କେମିତି ଚେନ ସ୍ମୋକର ମଧ୍ୟ ଦେଖିଛି । କିନ୍ତୁ ଏହି ଛୁଆ ତ ସମସ୍ତଙ୍କୁ ପଛରେ ପକେଇ ଦେଇଛି । ଥରେ ମନେହେଲା, ପଚାରେ, 'ଝିଅ କାହିଁକି ନିଜକୁ ଏମିତି ଧ୍ୱଂସ କରୁଛ', 'କିନ୍ତୁ ପୁଣି ଚୁପ୍ ରହିଗଲି - ଆଜିକାଲିର ଝିଅମାନଙ୍କର କ'ଣ ଠିକ୍ ଠିକାନା, କିଏ ବାରୁଦ ଗଦାରେ ନିଆଁ ଲଗେଇବ । ଯଦି କିଛି ଓଲଟା ସିଧା କହି ବସିବତ ଲଜ୍ଜିତ ହେଇ ଲମ୍ବା ଯାତ୍ରା କଟେଇବାକୁ ପଡ଼ିବ । ନିଜର ତେଜେନ୍ଦରକୁ କେବେ କଥା ମଝିରେ କଥା କହିଦେଲେ, ତେବେ ସେ ଆଘାତ ଦେଲା ପରି ଜବାବ ଦିଏ । ପୁଣି ସେ ତ ଅଜଣା, ପରର ଝିଅ ଥିଲା ।

"ମୁଁ କଡ଼ ଲେଉଟାଇ ଶୋଇ ପଡ଼ିଲି । ଅଧାରାତିରେ ମତେ ଏମିତି ଲାଗିଲା ଯେମିତିକି କେହି ମୋର ମୁଣ୍ଡପାଖରୁ କିଛି ଟାଣି ନେଇଛି ।"

"ମୁଁ ହଡ଼ବଡ଼ କରି ଉଠିଲି ଆଉ ସ୍ୱିଚ୍ ଅଣ୍ଡାଳିବାକୁ ଲାଗିଲି । ଏମିତି ସୁଯୋଗରେ ଟ୍ରେନ୍‌ର ସ୍ୱିଚ୍ ଜାଦୁକରର କାଠର ଗିନା ତଳେ ଲୁଚିଥିବା ଗୋଲି ପରି ଡାହାଣରେ-ବାଆଁରେ ଲୁଚୁକାଳି ଖେଳିବାକୁ ଲାଗେ । ଯେଉଁଠି ହାତ ଅଣ୍ଡାଳିବ ସେଇଠି ଝରକାର ଛିଟ୍‌କିନି ହାତରେ ଲାଗେ ।"

କୌଣସି ପେଶା କରୁଥିବା କାହାଣୀ କହିଲାବାଲା ପରି ସବୁଠାରୁ ରହସ୍ୟମୟ

ମୋଡ଼ ଠାରେ ଆସିକରି ବ୍ରିଗେଡ଼ିଅର ବେଦୀ ହଠାତ୍ ଚୁପ୍‌ହେଇ ଯାଇଥିଲା । ପ୍ରବୀରଙ୍କୁ ମଧ୍ୟ ଏବେ ସେହି କାହାଣୀରେ ଆନନ୍ଦ ପାଇବାକୁ ଲାଗିଥିଲା ।

"ପୁଣି ?" ନ ଚାହିଁକରି ମଧ୍ୟ ପଚାରି ବସିଥିଲା ।

"ବେଶ୍ ସାହେବ, ପୁଣି ବହୁତ ଡେରିରେ ସ୍ୱିଚ୍ ମିଳିଲା, ବିଜୁଳି ଜଳେଇଲି ତ ଦେଖିଲି କ'ଣ କି ସେହି ବାଳିକା ହାତରେ ମୋର ଏଟେଚି ନେଇକରି ଦରଜା ପାଖରେ ଛିଡ଼ା ହେଇଥିଲା । ମୁଁ ଭାବଗତି ଦେଖି, ତଳକୁ ଡେଇଁଲି ଆଉ ଡେଇଁ କରି ତା'ର ବାହୁକୁ ଧରି ପକେଇଲି । 'ଟିକିଏ ବୁଝିସୁଝି ସର୍ଦ୍ଦାରଜୀ', ସେହି ବାଳିକା ବିକଟ ହସ ହସିବାକୁ ଲାଗିଲା, "ଏମିତି ନ ହେଉ କି ଆପଣଙ୍କୁ ଏଟେଚ୍ ଛଡ଼େଇ ନେଇ ଅନୁତାପ କରିବାକୁ ପଡ଼େ ।"

"ଏଟେଚି ମୋର ଅଟେ, ତୁ ଏହାକୁ ମୋର ମୁଣ୍ଡ ପାଖରୁ ବାହାର କଲୁ କେମିତି ?" ମୁଁ ହୁଏତ କ୍ରୋଧରେ ଅତିମାତ୍ରାରେ ପାଗଳ ପରି ପ୍ରଳାପ କରୁଥିଲି । ଏକରେ ହାଇ ବ୍ଲଡ୍ ପ୍ରେସରର ରୋଗୀ ମୁଁ, ତା'ଉପରେ ସେହିବାଳିକାର ଚୋରି ଆଉ ଗୁଣ୍ଡାମି ପାଇଁ ମୁଁ ନିଜଠାରୁ ବାହାରି ଯାଇଥିଲି ।

"ଦେଖନ୍ତୁ', ସେ ଶିକୁଳି ଆଡ଼କୁ ହାତ ବଢ଼େଇଲା 'ଆପଣ ଏଟେଚି ଛଡ଼େଇ ନେଲେ ଆଉ ମୁଁ ଶିକୁଳି ଟାଣିଲି । ମୁଁ ଗୋଟିଏ ଚିତ୍କାରରେ ପୁରା ଟ୍ରେନ୍‌ର ଯାତ୍ରୀମାନଙ୍କୁ ଏଠାରେ ଜମା କରିଦେବି ଆଉ କହିବି ଏହି ଦାଢ଼ିଆ ମୋର ଇଜ୍ଜତର ଡକାୟତି କରୁଥିଲା । ଏଟେଚି ତ ଆପଣଙ୍କୁ ମିଳିଯିବ, କିନ୍ତୁ ଇଜ୍ଜତ ଚାଲିଯିବ । ଏମିତି ସୁଯୋଗରେ ଲୋକମାନେ ସ୍ତ୍ରୀଲୋକର ହିଁ କଥାରେ ବିଶ୍ୱାସ କରନ୍ତି, ପୁରୁଷ ଲୋକର ନୁହଁ - ଟିକିଏ ନିଜର ବୟସ ଦେଖନ୍ତୁ, ଏହି ବୟସରେ ଏହି ଅସମ୍ମାନ ଆଉ ବଦନାମୀର ଧକ୍କାକୁ କ'ଣ ଆପଣ ସହିନେବେ ?"

"ଠିକ କହୁଥିଲା ବାଳିକା । ହୁଏତ ଲୋକେ ତାହାରି ସରଳ ଚେହେରାକୁ ବିଶ୍ୱାସ କରିଥାନ୍ତେ । ମୁଁ ଯଦି ଏହା ମଧ୍ୟ କହିଥାନ୍ତି ଯେ, ମୋର ପତ୍ନୀର ତେର ଦିନ ପାଳନ କରି ଫେରୁଛି, ତେବେ ମଧ୍ୟ ହୁଏତ ମୋର ଫୁଟେଇ ଥିବା ଗୋଲି ମୋର ଦେହରେ ଲାଗିଥାନ୍ତା । "ପତ୍ନୀ ନାହିଁ, ଏହାଠାରୁ ଖୁବ୍ ସୁନ୍ଦର ଏକଲା ବାଳିକାକୁ ଦେଖିକରି ବଉଳ ଆସିଯାଇଛି ବିପତ୍ନୀକର", ହୁଏତ ଲୋକେ ଏହା କହିଥାନ୍ତେ ।

'କ'ଣ ଆପଣ ଭାବୁ ନାହାନ୍ତି ସର୍ଦ୍ଦାରଜୀ', ସେ ବହୁତ ସରଳତାରେ ଏମିତି ହସିବାକୁ ଲାଗିଲା ଯେମିତିକି ଏବେ ତାର ଦୁଧ ଦାନ୍ତ ମଧ୍ୟ ଭାଙ୍ଗିନାହିଁ, କ'ଣ ପ୍ରେମ ନକରି ଆପଣଙ୍କ ଇଜ୍ଜତରେ ଡକାୟତି କରିବି, ଭଲ ଏଇଥିରେ ଯେ ଖାଲି ଆପଣଙ୍କ ଏଟେଚିକୁ ଡକାୟତି କରି ଚାଲିଯାଏ ।"

"ମତେ ତ ଯେମିତି ପକ୍ଷାଘାତ ରୋଗ ହେଇ ଯାଇଥିଲା । ଏତିକିରେ ହୁଏତ ସିଗ୍‌ନେଲ ନ ପାଇ ଗାଡ଼ି କୌଣସି ନିର୍ଜନ ବଣର ମଝିରେ ହଠାତ୍ ଅଟକି ଯାଇ

ସିଟିଗୁଡ଼ିକରେ କାନକୁ ଫୋଡ଼ିବାକୁ ଲାଗିଲା ।"

"ମୁଁ ତାହାରି କହିଥିବା କଥାରେ ଅଡୁଆରେ ପଡ଼ିଥିଲି, ହେଇ ପାରିଥାନ୍ତା ମୋର ତେଜେନ୍ଦର ମାସକ ପୂର୍ବରୁ ହେଇଥିବା ନିର୍ବନ୍ଧ ମଧ ଏହି ମିଛ ବଦନାମୀରେ ଭାଙ୍ଗି ଯାଇଥାନ୍ତା । ମୁଁ ସମ୍ଭାଳି ଗଲି, ତା'ର ପୂର୍ବରୁହିଁ ସେହି ଚାଖଣ୍ଡକର ଟୋକି ମୋର ଏଟେଚି ନେଇକରି ହସିକରି ଓହ୍ଲେଇକରି ଅନ୍ଧକାର ନିର୍ଜନ ବଣରେ ହଜିଗଲା । ଗାଡ଼ି ଯେମିତିକି ତାହାରି ପାଇଁ ଅଟକି ଥିଲା । ମୁଁ ପ୍ରତିମା ପରି ଛିଡ଼ା ହେଇଗଲି - ଖୋଲା ଦରଜା, ଚାଲୁଥିବା ଗାଡ଼ି ସହିତ ଚଟାପଟ ଖୋଲି ଖୋଲିକରି ବନ୍ଦ ହେଇଗଲା, ତେବେ ମୋର ଚେତନା ଫେରିଲା । ପୋଲିସକୁ ଖବର ଦେଲେ ମଧ କ'ଣ ହେଇଥାନ୍ତା ! ଆଜି ଏତେଦିନ ପରେ ସେ ମତେ ପୁଣି ଚାରବାଗର ଷ୍ଟେସନରେ ଦେଖିଲା । ଜିନିଷ ପତ୍ର ସେଇଠି ରଖି ମୁଁ ତାହା ପଛରେ ଦୌଡ଼ିଲି କିନ୍ତୁ ଦେଖନ୍ତୁ ନା, ଯାହାର ରିକ୍ସାର ଏତେଦୂର ପର୍ଯ୍ୟନ୍ତ ପିଛା କରି ଆସିଲି, ସେ ଏହି ଗଳିରେ ଓହ୍ଲେଇଲା ମାତ୍ରେ ପୁଣି ଜାଦୁ ପରୀ ପରି ଉଡ଼ିଗଲା । ଆଜି ଯଦି ମିଳିଥାନ୍ତା, ତେବେ ଟୋକିର ତଣ୍ଟିକୁ ସେଇଠି ଚିପି ଦେଇଥାନ୍ତି ।"

ସର୍ଦ୍ଦାରଜୀଙ୍କର ବ୍ଲଡ୍ ପ୍ରେସର ତାଙ୍କର ଲାଲ ପତଳା ଦଉଡ଼ି ପରି ଆଖିରେ ଓହ୍ଲେଇ ଆସିଥିଲା ।

"କ୍ରାଇମ୍ ଡଜ ନଟ୍ ପେ ବ୍ରଦର", ସେ ସିଗାରେଟର ଖଣ୍ଡକୁ ଫୋପାଡ଼ି ଦେଇ ଉଠିଗଲା, "ଦେଖିବେ ଦିନେ ନା ଦିନେ କୁକୁର ମରଣ ପରି ମରିବ ।"

"ହେଇପାରେ, ଏଇ ଆଜିକାର ବାଳିକା ଆଉ କେହି ଆପଣଙ୍କୁ ପିଛା କରିବା ଦେଖି ଭୟଭୀତ ହେଇ ଦୌଡ଼ିବାକୁ ଲାଗିଥିଲା । କେବେ କେବେ କେତେକ ଚେହେରା ଧୋକା ମଧ ଦେଇଯାଏ ।"

"ଜୀ ମହାଶୟ, ଏମିତି କଥା ନୁହେଁ । ସେହି ଚେହେରା ଧୋକା ଦେଇ ପାରିବ ନାହିଁ । ତାକୁ ଥରେ ଦେଖିନେଲା ପରେ ହୁଏତ ଆପଣ ମଧ ଭୁଲିପାରିବେ ନାହିଁ - ଭେରି ଅରିଜିନାଲ ଆଇଜ୍ - ଏବେ ମୁଁ ଯାଏ, ଜିନିଷ ପତ୍ର ଚୌକିଦାରକୁ ସମର୍ପଣ କରି ଆସିଥିଲି, ଆପଣଙ୍କୁ ବହୁତ ବହୁତ ଧନ୍ୟବାଦ", ସର୍ଦ୍ଦାର ବହୁତ ନମ୍ରତାରେ ନଇଁପଡ଼ି ପ୍ରବୀରର ଦୁଇ ହାତ ଧରିଲେ ସୈନ୍ୟମାନଙ୍କ ପରି ଜୋରରେ ହଲେଇ ଦେଇଥିଲା । "ଆପଣଙ୍କର ବହୁତ ସମୟ ନଷ୍ଟ କଲି, କିନ୍ତୁ ଆପଣଙ୍କୁ ସବୁ କଥା କହିବାରୁ ପୁରାପୁରି ଲାଇଟ୍ ଫିଲ୍ କରିବାକୁ ଲାଗିଛି ।"

ଯାଉଁ-ଯାଉଁ ବ୍ରିଗେଡ଼ିଆର ବେଦୀ ନିଜର ଚମକୁ ଥିବା ବ୍ରିଫକେସ୍‌ରୁ ବାହର କରି ନିଜର ଚକ୍‌ଚକ୍ କରୁଥିବା ଭିଜିଟିଙ୍ଗ କାର୍ଡ଼ ମଧ ଦେଇ ଯାଇଥିଲା ।

ତାଙ୍କର ଯିବା ପରେ ମଧ ପ୍ରବୀର କିଛି ସମୟ ପର୍ଯ୍ୟନ୍ତ ଚଉକି ଉପରେ ପ୍ରତିମା ପରି ବସି ରହିଥିଲା । ପୁଣି ତାକୁ ତା'ର ୱାଡ଼ ରୋବରେ ବନ୍ଦ ଦୁର୍ବଳ-ପତଳା ବାଳିକା ମନେ ପଡ଼ିଲା, ତା'ପରେ ସେ ହଡ଼ବଡ଼େଇ କରି ଆଲମାରି ଖୋଲିବାକୁ ଡେଇଁ ପଡ଼ିଲା ।

ସେହି ସମୟରେ ଘରଟା ବିଜୁଳି ଆଲୁଅରେ ଚକମକ କରି ଉଠିଲା । ଜଣାନାହିଁ ଏତେ ଡେରି ପର୍ଯ୍ୟନ୍ତ ଗରମ କପଡ଼ା ସହିତ ବନ୍ଦ ବାଳିକା ଶ୍ୱାସରୁଦ୍ଧ ହେଇ ବେହୋସ ହେଇ ଯାଇଛି ।

କିଛି ସମୟ ପର୍ଯ୍ୟନ୍ତ ଅନ୍ଧାରରେ ଅଭ୍ୟସ୍ତ ତା'ର ଆଖି ବିଜୁଳିର ଆକସ୍ମିକ ପ୍ରକାଶରେ ହଠାତ୍ ଅନେଇ ପାରିଲା ନାହିଁ । କିନ୍ତୁ ଠିକ୍ ଭାବରେ ପଲକ ପକେଇ ସେ ଦେଖିଲା । ଯାଦୁକରର ଭୟଭୀତ ହେଇଥିବା ଯାଦୁକରର ଚାତୁର୍ଯ୍ୟରେ ବନ୍ଦ ହେଇଥିବା ୱାଡ଼ରୋବ ଖୋଲି ସେହି ଛଳନାମୟୀ ଅଦୃଶ୍ୟ ହେଇ ସାରିଥିଲା । କିନ୍ତୁ ଯାଇଛି କେଉଁ ବାଟରେ ।

ପଛରେ ଥିବା ଏକମାତ୍ର ମାର୍ଗ ନବୀନ କାକା ସ୍ୱୟଂ ହିଁ ତାଲା ପକେଇ ବନ୍ଦକରି ଯାଇଥିଲେ । ଉଞ୍ଚା-ଉଞ୍ଚା ଖିଡ଼ିକିରେ କେତେ ଲମ୍ବା ମଣିଷର ଗୋଡ଼ ହେଇ ଥାଉ ନା କାହିଁକି, କେବେ ପହଞ୍ଚି ପାରେ ନାହିଁ । ତେବେ କ'ଣ ସେ ଛାତରେ ଥିବା ଟାଙ୍କିର ପାଇପକୁହିଁ ଧରି ସର୍ପିଣୀ ପରି ଧିରେ ଧିରେ ଚାଲି ଯାଇଥିଲା ।

ଆଉ କେଉଁଠି ହାତ ଖସି ଯାଇଥିଲେ ତେବେ । କଳ୍ପନାରେ ହିଁ ପ୍ରବୀର ଶିହରି ଉଠିଥିଲା । ସେ ନିଶ୍ଚୟ ସେହି ପାଇପ ଲାଇନ୍‌କୁ ଧରି ଓହ୍ଲେଇ ଥିଲା । କାରଣ ଟାଙ୍କି ପାଖରେ ହିଁ ସେହି କୋମଳ ଛୋଟ ପାଦର ଚାଖଣ୍ଡକର ସ୍ୱେଡ଼ ଚପଲ ଓଲଟା ପଡ଼ି ଥିବା ପ୍ରବୀରକୁ ମିଳିଥିଲା । ସେ ଚପଲ ଉଠେଇ କରି ଓଲଟାଇ ପାଲଟାଇ ଦେଖି ମଧ୍ୟ ଥିଲା, ପୁଣି ବିରକ୍ତ ହେଇ ତଳ ସଡ଼କ ଉପରକୁ ଫୋପାଡ଼ି ଦେଇଥିଲା ।

କ'ଣ କରିବ ସେହି ଅଜଣା ସିଣ୍ଡ୍ରେଲାର ଚପଲ ମାଗଣାରେ, ସେମାନଙ୍କର ଚତୁର ସ୍ୱାମିନୀ କ'ଣ ସହଜରେ ଧରା ପଡ଼ିପାରିବ ? ନବୀନ କାକାଙ୍କୁ କିଛି କହିବା ବ୍ୟର୍ଥ ଥିଲା । ତାଙ୍କୁ ପ୍ରବୀର ଜାଣିଥିଲା । ଏମିତି ଗୁପ୍ତଚର କାମ କରିବାକୁ ତାଙ୍କୁ ବହୁତ ଆନନ୍ଦ ମିଳୁଥିଲା । ହୁଏତ ଚପଲ ତାଙ୍କୁ ଦେଖେଇଲେ ପୋଲିସ୍ କୁକୁରକୁ ଆଣି ଶୁଙ୍ଘେଇ ମଧ୍ୟ ଦେଇଥାନ୍ତେ ଆଉ ଅଯଥା ଏକ ତୋଫାନ୍ ସୃଷ୍ଟି ହେଇଥାନ୍ତା । ପୁଣି ପ୍ରବୀର ଜଣାନାହିଁ କ'ଣ ଭାବି ଦୌଡ଼ିଲା, ୱାଡ଼ରୋବରେ ଝୁଲୁଥିବା ନିଜର ଟବୀଡ଼କୋଟର ପକେଟ୍‌ଗୁଡ଼ିକୁ ଅଣ୍ଡାଳିବାକୁ ଲାଗିଥିଲା । ସେଥିରେ ତା'ର ବଟୁଆ ଥିଲା । ଜଣାନାହିଁ, ଯାଉ ଯାଉ ବାଳିକା ପକେଟ କାଟି କରି ଯାଇଛି । କିନ୍ତୁ ବଟୁଆ ଯେମିତିକି ସେମିତି ରହିଥିଲା ।

ନବୀନ କାକା ଫେରିକରି ଆସିବା ପରେ ସେ ତାଙ୍କୁ ଗୋଟିଏ ଶବ୍ଦ ମଧ୍ୟ କହି ନଥିଲା । କହିଥିଲେ କାକା ନିଶ୍ଚୟ ତାକୁ ଥଟ୍ଟାରେ ଉଡ଼େଇ ଦେଇଥାନ୍ତେ ।

ଅସ୍ପଷ୍ଟ ଅନ୍ଧାରରେ ଯେଉଁ ବହୁତ ବଡ଼ ଭୟଭୀତ ତରଳ ଆଖିକୁ ସେ ମୁହୂର୍ତ୍ତକ ପାଇଁ ଦେଖିଥିଲା, ଆଜି ସଂଗମ ତଟରେ ତାହାକୁ ସେ ବଡ଼ ସହଜରେ ଚିହ୍ନି ପାରିଥିଲା । କଲିକତାରେ ପହଞ୍ଚିଲା ମାତ୍ରେ ଅମ୍ମାଙ୍କୁ ସାବଧାନ କରିବାକୁ ପଡ଼ିବ । ତା'ର କଥାରେ ତାକୁ ଏମିତି ମନେ ହେଇଥିଲା ଯେ ସେ ଅଜ୍ଞାତ ରହସ୍ୟମୟୀ ଅମ୍ମାର ଦୁଃଖ ସମୟରେ ତାଙ୍କର ବହୁତ ନିଜର ହେଇ ଯାଇଥିଲା ।

ଜୟାକୁ ନେଇକରି ଅମ୍ମା ଏଠାରେ ବହୁତ ଦୁଃଖୀ ହେଇ ଯାଇଥିଲା । ମାୟା ମଧ୍ୟ ଶ୍ୱଶୁର ଘରେ ବହୁତ ପ୍ରସନ୍ନ ଥିଲା, ଏମିତି କଥା ନୁହେଁ । ତେବେ ମଧ୍ୟ ତା'ର ଖୁସିବାସିଆ ସ୍ୱଭାବ ନିଜକୁ ପରିସ୍ଥିତମାନଙ୍କରେ ଅନୁକୂଳ କରି ପକଉଥିଲା । ସଂଯୁକ୍ତ ପରିବାରରେ ମଧ୍ୟ ବଡ଼ ବହୁ ଥିଲା । ବିବାହ ପରେ ଦିନେ ମଧ୍ୟ ପତି ସହିତ ସ୍ୱତନ୍ତତାର ମୁକ୍ତ ଉଡ଼ିବା ପାଇଁ ପର ଫଡ଼୍ ଫଡ଼୍ କରି ପାରିଥିଲା, ତେବେ ମଧ୍ୟ ସେ ମା-ଭାଇ ପାଖରେ ମୁହୂର୍ତ୍ତକ ପାଇଁ କାନ୍ଦି କରି ତାର ବର୍ଷ ସାରାର ସଞ୍ଚିତ ବ୍ୟଥା କ୍ଷଣକରେ ଭୁଲିଭାଲି କରି ରହି ଯାଉଥିଲା । ଭାଇ କାବୁଲରୁ କଣ କଣ ଆଣିଛି, ଅମ୍ମା ତା ପାଇଁ କେତୋଟି ନୂଆ ଶାଢ଼ୀ କିଣିଛି, ତାହାର ସନ୍ତୋଷଜନକ ଉତ୍ତର ପାଇଲା ମାତ୍ରେ ସେ ତା'ର ଶ୍ୱଶୁର ଘରର ମର୍ମାନ୍ତିକ କଷ୍ଟକୁ ବହୁତ ସହଜରେ ହଜମ କରି ପାରୁଥିଲା । କିନ୍ତୁ ଜୟା ବାପଘରେ ମଧ୍ୟ ଚୁପଚାପ ରହୁଥିଲା । ପତିର ଚଞ୍ଚଳ ନୀଚ ସ୍ୱଭାବ ସେହି ଗର୍ବୀ ଗମ୍ଭୀର ଝିଅର ଭିତରେ ଭିତରେ କ୍ଷୟ କରୁଥିବା ହତ୍ୟାକାରୀ କୀଟାଣୁ ମାନଙ୍କ ପରି ମିଶେଇ ଦେବାକୁ ଲାଗିଛି, ଏହା ପ୍ରବୀର ମନକୁ ମନ ଖୁବ୍ ବୁଝି ପାରିଥିଲା । ଦାମୋଦରର ସଂସ୍ପେନସନ୍‌ର ଖବର ପାଇଲା ମାତ୍ରେ ପ୍ରବୀର ନିଜର ସହପାଠୀ ମିତ୍ରକୁ ଚିଠି ମଧ୍ୟ ଲେଖିଥିଲା । ସୌଭାଗ୍ୟବଶତ ସେ ହୋମ ଡିପାର୍ଟମେଣ୍ଟରେ ହିଁ ସେକ୍ରେଟେରୀ ପଦରେ ଥିଲା । ଦୁହେଁ ଆଇ.ଏ.ଏସ୍.ହେଇ ଏକା ସାଙ୍ଗରେ ବାହାରି ଥିଲେ, ପୁଣି ପ୍ରବୀର ସହିତ ତହାର ପ୍ରଗାଢ଼ ମିତ୍ରତା ମଧ୍ୟ ହେଇ ଯାଇଥିଲା । ସେ ପ୍ରବୀରର ପତ୍ରର ଉତ୍ତର ଦେବାକୁ ଯାଇ ନିଜର ହିଁ ଦୁଃଖର କଥା କାନ୍ଦି ପୃଷ୍ଠା ଭର୍ତ୍ତି କରି ଦେଇଥିଲା ।

"ତମେତ ମୋର ସେହି ଅବସ୍ଥା କରିଦେଲ ପ୍ରବୀର", ସେ ଲେଖିଥିଲା, "ଯେ ଆପଣତ ମାଗୁଥିବା ଭାବନାରେ ଛିଡ଼ା ହେଇଥିବା ଜଜମାନ ଏଠାକାର ଅଫିସରମାନଙ୍କର ଏବେ କେବଳ କଣ୍ଟାର ରାଜମୁକୁଟ ଛଡ଼ା ଆଉ କିଛି ରହିନାହିଁ । ଅଫିସରର ଚ଼ଉକିର ନାମରେ ଏଠାରେ କଣ୍ଟାରେ ପୁରି ରହିଛି ହଠଯୋଗୀ ପରି କଣ୍ଟକ ଶଯ୍ୟା ମାତ୍ର ରହିଯାଇଛି । ତାହାରି ଉପରେ ଦମମାରି ଶୋଇ ରହୁଛି । କେବେ, ଏସେମ୍ଲି କେଉଁ ଅବାଗିଆ ପ୍ରଶ୍ନ, କେଉଁ ଉଚ୍ଚ ପଦସ୍ଥ ଅଫିସର ପାଇ ବିଷବୃକ୍ଷ ଘାତକ ବାଣ ତିଆରି ହୋଇଯିବ, ତାର ଠିକଣା ନାହିଁ । କିଛିଦିନ ପୂର୍ବରେ ଦୁର୍ଭାଗ୍ୟବଶତଃ ମୋର ପତ୍ନୀ ଏକ ଉଦ୍ଧତ ସ୍ୱଭାବର ଚପରାସୀକୁ ରାଗିଯାଇ ହୁଏତ କିଚି ଗାଳିଗୁଲଜ ଦେଇଥିଲା । ବର୍ତ୍ତମାନ ତାର ନିଶରେ ଶକ୍ତି ଅଛି, ମୋର ନିଶ ନଇଁ ପଡ଼ିଛି । ତମେ ଲେଖିଛ, 'ତୁମେ ବଡ଼ ଭାଗ୍ୟବାନ ଯେ ସ୍ୱଦେଶରେ ଚାକିରି କରୁଛ, ଖୁବ୍ କମରେ ଆତ୍ମୀୟ-ସ୍ୱଜନଙ୍କର ଭଲ ତ କରିପାରୁଛ ।' ତମର ଚିଠି ପଢ଼ିକରି ମତେ ହସ ମାଡୁଛି, ବହୁତ ଅନିଚ୍ଛା ସହ ତମକୁ ଆଜି ଉତ୍ତରରେ ଆଜିଠାରୁ ଅଶୀବର୍ଷ ପୂର୍ବ ମେରୀଡ଼ିଥ ଟାଉନସେଣ୍ଡଙ୍କର ଲେଖିଥିବା କେତେକ ପଂକ୍ତି ପଠଉଛି- 'ଉଡ଼ ୟୁ ଲାଇକ୍ ଟୁ ଲିଭ ଇନ୍ ଏ କଣ୍ଟ୍ରି ହ୍ୱାୟାର ଏଟ ଏନି ମୋମେଣ୍ଟ ଇୟୋର ୱାଇଫ୍ ଉଡ଼ ବି ଲାଇବୁଲ ଟୁ ବି ସେଣ୍ଟେନ୍ସ ଅନ ଏ କ୍ଲାସ ଚାର୍ଜ ଅଫ୍ ସ୍ଲାଫି

ଏନ ଆୟା ଟୁ ଥ୍ରି ଡେଜ ଇମ୍‌ପ୍ରିଜ୍‌ନମେଣ୍ଟ' ।" ସ୍ପଷ୍ଟ ଥିଲା ଯେ ବୁଡ଼ି ଯାଉଥିବା ଦାମୋଦରକୁ ଏବେ ଏକମାତ୍ର କୁଟାର ସାହାଯ୍ୟ ମଧ ସେ କରିପାରୁ ନ ଥିଲା । ତେବେ ମଧ ସେହି ଅକର୍ମଣ୍ୟ ନିର୍ଲଜ ବ୍ୟକ୍ତିର ନିର୍ଲଜ ବ୍ୟବହାର ଦେଖିକରି ପ୍ରବୀର ଆଶ୍ଚର୍ଯ୍ୟ ହେଇ ଯାଇଥିଲା । ଯେଉଁଠି ଜୟା ଗୋଟିଏ କୋଣରେ ଚୁପ୍‌କରି ଲୁଚିଯାଇ, ଫୁଲିଥିବା ଆଖି ଉଠେଇ କରି ଘରକୁ ଆସିଥିବା ଭାଇ ଆଡ଼କୁ ଠିକ ଭାବରେ ଅନେଇ ପାରୁ ନ ଥିଲା, ସେହି ଦାମୋଦର ଶଳାର ଗମ୍ଭୀର୍ ସ୍ୱଭାବ ଜାଣିକରି ମଧ ନିଜର ସେହି ଶସ୍ତା ଦୁଷ୍ଟ ବ୍ୟବହାରର ପୁନରାବୃତ୍ତି କରିବାରେ ଲାଗିଥିଲେ ।

'କଣ ଶଳା ସାହେବ, କିଛି ଗୋଟିଏ ଅଧେ ବୋତଲ ସ୍ମଗଲ କରି ଆଣିଛ ମୋ ପାଇଁ ?' ସେ ଆସିଲା ମାତ୍ରେ ହିଁ ଦାମୋଦର ତା'ର ପ୍ରଥମ ପ୍ରଶ୍ନ ପଚାରି କରି ବାମ ଆଖିକୁ ବୁଜି ଦେଇଥିଲା ।

ଦାମୋଦରକୁ ହୁଏତ ଏଥର ଶ୍ୱଶୁର ଘରରେ ସ୍ଥାୟୀ ଘର ଜ୍ୱାଇଁ ହେବା ପାଇଁ ସେତିକି ସୁବିଧା ମିଳି ନଥିଲା, ତେବେ ମଧ ତାହାର ଚେହେରାରେ ଗୋଟିଏ କୁଞ୍ଚନ ରେଖା ମଧ ଦେଖାଯାଇ ନ ଥିଲା ।

"ଆରେ ଭାଇ ପ୍ରବୀର, ଏବେ ତମଠାରୁ କିଛି ଲୁଚେଇ ହେବ କି ? ମାୟାର ସମ୍ପର୍କୀୟ ପ୍ରେସ୍ ରିପୋର୍ଟର ଘରେ ରହିଲେ ଏହି ଲାଭ ହୁଏ, କ'ଣ ସତ ନା ମାୟା ?"

ଭାଇ ପାଖରେ ବସିଥିବା ମାୟାର ଚେହେରା କ୍ରୋଧରେ ତମତମ ହେଇ ଉଠିଥିଲା । କେବେ ଏହି ସୁଦର୍ଶନ ଭିଣୋଇର ଏମିତି ପରିହାସ, ତା'ର କୁମାରୀ ଗେଲବସର ଜୀବନର ମାଘକୁ ମଧ ଫଗୁଣ କରି ଦେଉଥିଲା, ଆଜି ସେହି ଭିଣେଇ ତାହାର ଆଖିରେ କାଲି ପରି ଫୋଡ଼ି ହେବାକୁ ଲାଗିଥିଲା ।

"ତମର ତ ବଡ଼ ବଡ଼ ଲୋକଙ୍କ ସହିତ ଚିହ୍ନାଜଣା ଅଛି । ମୁଁ ଜାଣିଚି ଯେ ତମେ ମତେ ବିପତ୍ତିରୁ ରକ୍ଷା କରି ପାରିବ କିନ୍ତୁ ଆମର ଅମ୍ମାଜୀ ତ ଏମିତି ଖଣ୍ଡା ବୁଲେଉଛି ଯେ କହିବାର ନୁହଁ । କେଉଁଠି ପାନର ପତ୍ରରେ ପରିକ୍ରମା ହେଉଥିଲା ଆଉ ଏବେ ସେହି ରାଜ୍ୟର ରାଜପ୍ରସାଦର ଅବସ୍ଥା ଏମିତି ଯେ ରାଜ୍ୟ ଅଛି କିନ୍ତୁ ପ୍ରିଭିପର୍ସ ଛଡ଼େଇ ନେଇ ଯାଉଛନ୍ତି । ନାମକୁ ମାତ୍ର ଏବେ ମଧ ଜାମାତା ରାଜା ଅଟେ । କିନ୍ତୁ କେହିଁ ଏକ କପ ଚା ପାଇଁ ମଧ ପଚାରେ ନାହିଁ ।"

ମାୟା ହିଁ ସେଦିନ ତାକୁ ଏକାନ୍ତରେ ବୁଝେଇ ଯାଇଥିଲା । ଯେମିତି ମଧ ହେଉ ଯାତ୍ରାରୁ ଫେରି ସେହି ଅମ୍ମାର ପାଳନ କରିଥିବା ବାଳିକାକୁ ବାହାର କରିବାକୁ ହେବ ।

"ମୁଁ ତ ତାକୁ ଦେଖିନାହିଁ । କିନ୍ତୁ ତା'ର ସୌନ୍ଦର୍ଯ୍ୟରେ ଏହି ଦୁଇଜଣଙ୍କ ଆଖି ଝଲସି ଯାଇଛି । ଏହାଙ୍କର ମଧ କ'ଣ କୌଣସି ଠିକଣା ଅଛି । ତା ଉପରେ ଭିଣେଇ ଏଇଠି ଥାଉଁ ଥାଉଁ ଏହି ଦୁସ୍ସାହସ କେମିତି ହେଲା ? ଯେତେବେଳେ ଦେଖ ତେବେ କଲୀର ହିଁ ବର୍ଣ୍ଣନା, ଶୁଣି- କାନ ପାଚିଯାଇଛି । ନିଜର ଝିଅମାନେ ତ ଯେମିତି ପରର

ହେଇ ଯାଇଛନ୍ତି ।"

ଯେଉଁ ଅପରିଚିତା ଘରରେ ରହିଥିବା ଶାନ୍ତିକୁ ମଧ୍ୟ ନଷ୍ଟ କରି ମନୋମାଳିନ୍ୟର ଅଦୃଶ୍ୟ କାନ୍ଥର ମୂଳଦୁଆ ରଖି ଦେଇଥିଲା, ତାକୁ ବାହାର ନ କରିବା ପର୍ଯ୍ୟନ୍ତ, ହୁଏତ ଘରର ଅଡୁଆରେ ପଡ଼ିଥିବା ଗଣ୍ଠିଗୁଡ଼ିକ ଆହୁରି ଅଡୁଆରେ ପକେଇବ - ଏହା ପ୍ରବୀର ବୁଝିଯାଇଥିଲା। କଲିକତାରେ ପହଞ୍ଚିବା ପରେ ଦ୍ୱିତୀୟ ଦିନରେ ସେ ଅମ୍ମାକୁ ଏକାନ୍ତରେ ପୁରାକଥା ବହୁତ ଡେରି ପର୍ଯ୍ୟନ୍ତ ବୁଝେଇବାକୁ ଚେଷ୍ଟା କଲା, କିନ୍ତୁ ସେ ଥରକୁ ଥର ନିଜର ହିଁ କଥା ଦୋହରାଇବାରେ ଲାଗିଥିଲା, "ଯାହାକୁ ମୁଁ ଅନୁରୋଧ, ଖୋସାମତ କରି ଏହି ଘରକୁ ଆଣିଛି, ତାକୁ ଆଜି କୌଣସି କଥା ନ ଥାଇ କେମିତି ଯିବାକୁ କହିଦେବି ? ଆଉ ପୁଣି ପୁଅ ଲକ୍ଷେ ହୁଅନ୍ତୁ, ଦାମୋଦର କ'ଣ ଏତେ ତଳକୁ ଖସିଯାଇଛି ତା'ର ଝିଅ ବୟସର ବାଳିକାର ପଛରେ ଦଉଡ଼ିବ ?"

"ଠିକ୍ ଅଛି ଅମ୍ମା, ତମେ କହି ପାରିବ ନାହିଁ, ତ ମୁହିଁ ତାହାକୁ କହିଦେବି - କଲିକତାରେ କ'ଣ ତାକୁ କେଉଁଠି ଆଉ ରହିବା ପାଇଁ ଗୋଟିଏ ବଖରା ସେ ଠିକ୍ କରି ପାରିବ ନାହିଁ ?

ଯେଉଁଠି ଗୋଟିଏ ଘରରେ କଲୀର ଆସିବାର ପୂର୍ବରୁ ହିଁ ତାକୁ ବାହାର କରିବାର ଷଡ଼ଯନ୍ତ୍ର କରାଯାଉଥିଲା, ସେଠାରେ ଗୋଟିଏ ଅନ୍ୟ ସୀମିତ ପରିବାର, ବିଦାୟ ନେଉଥିବା କଲୀକୁ ସ୍ନେହପୂର୍ଣ୍ଣ ଆଗ୍ରହରେ ଥରକୁ ଥର ଅଟକେଇବାକୁ ଲାଗିଥିଲା । ଜଣାନାହିଁ କେତେଥର କଲୀର ରିଜରଭେସନ୍ କେନ୍‌ସେଲ କରି ଦିଆଗଲା, ଛୋଟ ବିଛଣା ବାନ୍ଧିବା ହୋଲ୍ଡର ଦୁଇ ଥର ବନ୍ଦ କରି ପୁଣି ଢ଼ିଲା ହେଇ ଖୋଲିଗଲା ।

ଏକ ସପ୍ତାହର ଆମୋଦ-ପ୍ରମୋଦ ଏବଂ ସବୁଠାରେ ନୂତନ ପରିବେଶରେ କଟିଥିବା ମଧୁର ଦିନର ସ୍ମୃତି କଲୀ ମୁଠାରେ କସିକରି ସଜେଇ ନେଇ ଯାଉଥିଲା ।

ଟ୍ରେନ ଚାଲିବାକୁ ଲାଗିଲା, ତେବେ ମଧ୍ୟ ଆଣ୍ଟି ନିଜର ଉଦାର ପ୍ରସ୍ତାବ ଦୋହରାଇବାରେ ଲାଗିଥିଲା, "ଏବେ ମଧ୍ୟ ଯାଅ ନାହିଁ କଲୀ, ଚାକିରି କ'ଣ ଏଠାରେ ମିଳିବ ନାହିଁ ? କମିଶନର ।ଶର୍ମା ସବୁବେଳେ ମୋର ମୁଠାରେ ବନ୍ଦ ରହନ୍ତି । କେଉଁଠି ହେଲେ ରଖେଇ ଦେବେ ।"

ଉତ୍ତରରେ କଲୀ ଫିକଫିକ୍ କରି ହସିବାରେ ଲାଗିଥିଲା । ଧିରେ ଧିରେ ତିନୋଟି ସ୍ନେହି ଚେହେରା ଅଦୃଶ୍ୟ ହେଇଗଲେ । କାଲି ସେ ଏହି ସମୟରେ କଲିକତାରେ ପହଞ୍ଚି ଯାଇଥିବ । ପୁଣି ସେହି ଅଶୁଭ ଜୀବନ । ବିଦେଶୀ ଅତିଥିମାନଙ୍କର ଲୋଲୁପ ଦୃଷ୍ଟିର ଚାବୁକର ମାଡ଼ ତଳେ, ପୁଣି ତାଙ୍କୁ ସେହି ଶ୍ମଶାନଘାଟ, ଅବଧୂତମାନଙ୍କର ଆଡ୍ଡାରେ ବୁଲିବା ଦୁଦୁରା, ଚରସର ଦମ ଯୋଗାଇବାର ବିଚିତ୍ର ଡ୍ୟୁଟି ବା ବିଦେଶୀ ସଙ୍ଗୀତର ଧୁନ ସହିତ କୌଣସି ଟେକ୍ସଟାଇଲର ପ୍ରାଣହୀନ ବିଜ୍ଞାପନର ନିରର୍ଥକ ହସ ବୁଣି, ଦର୍ଶକମାନଙ୍କୁ ମୁଗ୍ଧ କରିବାକୁ କ୍ଲାନ୍ତିକର କଠିଣ ପରିଶ୍ରମ । ଘରକୁ ଫେରିବା ପରେ ଅମ୍ମାର ବିଦେଶରୁ

ଫେରିଥିବା ଗର୍ବୀ ପୁତ୍ରର ନୋଟିସ୍ ହୁଏତ ତାକୁ ମିଳିଯିବ । କିନ୍ତୁ କଳୀ ଘରରେ ପହଞ୍ଚିଲା ପରେ ଅମ୍ମାଙ୍କ ପରିବାର ସହିତ ଦେଖା କରିବାକୁ ଯାଇଥିଲା । ଏକା ବାପା ଆରାମ ଚଉକିରେ ବସି ଖବର କାଗଜ ପଢୁଥିଲେ । କଳୀର ପାଦ ଶବ୍ଦ ଶୁଣି ସେ ଚମକି ପଡ଼ି ଦେଖିଲେ ।

"ଆରେ ଆପଣ ଆସିଗଲେ ମିସ୍ ମଜୁମଦାର । ପ୍ରବୀରର ଅମ୍ମା ଆଜି ସମସ୍ତଙ୍କୁ ନେଇକରି ଦେଖା-ସାକ୍ଷାତ କରିବାକୁ ଚାଲିଯାଇଛି । ଆପଣତ ଭୋଜନ କରି ନ ଥିବେ ?"

ବାପା ଖବର କାଗଜ ଟେବୁଲ ଉପରେ ରଖିକରି ଉଠିଗଲେ । ସେହି ସ୍ନେହପ୍ରବଣ ଗମ୍ଭୀର ବ୍ୟକ୍ତିଙ୍କର ସମ୍ମୁଖରେ ମୁଖରା କଳୀ ଲଜ୍ଜିତ ହେଇ ସ୍ୱୟଂ ସଂକୁଚିତ ହେଇ ଯାଉଥିଲା । କେତେଥର ସେ ତାଙ୍କୁ କଥା ମଝିରେ କଥା କହିବାକୁ ଚାହିଁଥିଲା, "ଆପଣ କହିକରି କାହିଁକି ଲଜ୍ଜିତ କରୁଛନ୍ତି ବାପା, ମୁଁ କ'ଣ ଆପଣଙ୍କ ଝିଅ ହେଇ ପାରିବି ନାହିଁ ?"

କିନ୍ତୁ ସେ ନିଜର ଅସହାୟ ପରିସ୍ଥିତି ବୁଝି ପାରିଥିଲା । ତା'ର ଅଭିଶପ୍ତ ଜନ୍ମର ଇତିହାସ ଜାଣିବା ପରେ କ'ଣ କେହି ସହଜରେ ତାକୁ ଝିଅ କରିପାରେ । ଆଉ ପୁଣି ଏହି ପବିତ୍ର ବ୍ୟକ୍ତିତ୍ୱ, ସରଳ, ଉଦାର ପିଲାପରି ନିଷ୍କପଟ ସ୍ନେହ-ସ୍ନିଗ୍ଧ ହସ, ନିଷ୍କପଟ ଆଖିରୁ ଖସି ଯାଉଥିବା ଚଷମା, ଆମ ସଂଯମୀ ଜୀବନର ଜୀବନ୍ତ ବିଜ୍ଞାପନ ପରି ଚମକୁଥିବ ତେଜସ୍ୱୀ ମସ୍ତକ । ବୁଢ଼ା ହେବା ପରେ ତାଙ୍କର ପ୍ରତାପୀ ବଡ଼ପୁଅ ମଧ୍ୟ ହୁଏତ ଏମିତି ମନେ ହେବ । କୌଣସି ଜୀର୍ଣ୍ଣ ମନ୍ଦିରର ପ୍ରାଙ୍ଗଣରେ ପହଞ୍ଚିଲା ମାତ୍ରେ ଯେମିତି ପାଦରେ ପିନ୍ଧିଥିବା ଚମଡ଼ାର ଚପଲ ସ୍ୱୟଂ ହିଁ ଫୋଡ଼ି ହେବାକୁ ଲାଗେ - ନ ଖୋଲି ଦେବ ମୂର୍ତ୍ତିଙ୍କ ଦର୍ଶନର ସ୍ୱୟଂଚିତ୍ତ ମଧ୍ୟ ଅନୁମତି ଦିଏ ନାହିଁ, ସେମିତି ବାପାଙ୍କୁ ଦେଖିଲା ମାତ୍ରେ କଳୀର ମନେହୁଏ, ତାହାର ଅପବିତ୍ର ଉପସ୍ଥିତିକୁ ସେ କୌଣସି ଦୈବୀ ଘ୍ରାଣଶକ୍ତି ଦ୍ୱାରା ଶୁଙ୍ଘିକରି ନାକର ରନ୍ଧ୍ରକୁ ସଂକୁଚିତ କରି ଦେଇଛି । ସେ ଦୂରରେ ହିଁ ଛିଡ଼ା ହେଇଯାଏ, କିଛି ମଧ୍ୟ କହିପାରେ ନାହିଁ, "ନା ବାପା, ଆପଣ ମୋର ଚିନ୍ତା କରନ୍ତୁ ନାହିଁ । ମୁଁ ବର୍ତ୍ତମାନ ଅଫିସ ଯାଉଛି । ସେହି କେଣ୍ଟିନରେ କିଛି ଖାଇପିଇ ଦେବି ।"

ତା'ର ବଖରା ଖୋଲିକରି ସେ ଭିତରକୁ ଗଲା ଆଉ ବହୁ ଦିନରୁ ବନ୍ଦ ହେଇଥିବା ବଖରାରେ ଶ୍ୱାସରୁଦ୍ଧ ହେଇ ଏକ ପ୍ରଜ୍ଜ୍ୱଳିତ ପବନରେ ତାକୁ ପୁଣି ବାହାରକୁ ଠେଲି ଦେଲା । ମନେ ହେଉଥିଲା ବିଦ୍ୟୁତର ଧକ୍କାରେ କୌଣସି ହୀନକପାଳି ଝିଟିପିଟି ହିଁ ମରି କରି ସଢ଼ି ଯାଇଥିଲା ବା ହୁଏତ କେହି ମରିଯାଇଥିବା ମୂଷା କେଉଁଠି ଚାପି ହେଇ ରହି ଯାଇଥିଲା । ନାକ ଉପରେ ରୁମାଲ ରଖିକରି ସେ ବହୁତ ଦୁଃସାହସରେ ଆଗକୁ ଗଲା ଆଉ ତେଇଁକରି ଝରକା ଖୋଲିଦେଲା । ଦୁର୍ଗନ୍ଧର ସୂତ୍ରକୁ ଧରିକରି ସେ ବିଜୁଳୀର ତାରରେ ଲାଖିଥିବା ଓ ଗନ୍ଧଉଥିବା ନିର୍ଜ୍ଜିବ ଝିଟିପିଟିକୁ କାଠରେ ଫୋଡ଼ିକରି ବାହାରେ ପକେଇଲା,

ଆଉ ଏକ ଧୂପକାଠି ଜଳେଇ କରି କାନ୍ଥରେ ଖୋସିଦେଲା ।

ସେହି ଶୂନ୍ୟ ବଖରାରେ ତାକୁ ଆଣ୍ଟିର ସ୍ନେହି ପରିବାରର ସ୍ମୃତି କ୍ଷଣକ ପାଇଁ ବିଚଳିତ କରିଦେଲା, ପୁଣି ସେ ହାତର ଘଡ଼ି ଖୋଲି କରି ଟେବଲ୍ ଉପରେ ରଖିଦେଲା । ଏମିତି ସମୟ ନଷ୍ଟ କଲେ କାମ ହେବନାହିଁ । ଗାଧେଇ-ପାଧେଇ ଅଶୁଭ ଚେହେରାକୁ ସମ୍ଭାଳିବାକୁ ପଡ଼ିବ । ନିଜର କ୍ଲାନ୍ତ ଚେହେରାକୁ ଦର୍ପଣରେ ଦେଖିକରି ସେ ହସିଲା । ଆଜି ଟିକିଏ ଭଲକରି ଶୃଙ୍ଗାର କରିବାକୁ ହେବ । ସଙ୍ଗମ ତଟର ଯେଉଁ ବୈଷ୍ଣବୀର ନିରାବରଣ ସୌନ୍ଦର୍ଯ୍ୟକୁ ଶକ୍ତିଶାଳୀ ଶତ୍ରୁ ଦେଖିଥିଲା, ତାହାର ବାସି ରୂପରେଖାକୁ ପୁଣି ଟାଣିବାରେ କାମ ଚଳିବ ନାହିଁ, ଏଥର ସଜବାଜ ଟିକିଏ ଭଲକରି କରିବାକୁ ହେବ । ବୀର ଯୋଦ୍ଧାର ତରବାରୀ, ଯେମିତି ହେଉ ନା କହିଁକି, ଯେତେବେଳେ ପର୍ଯ୍ୟନ୍ତ ଶାଣ ପଥରରେ ଘଷିକରି ଧାର ସେବକମାନେ ନ କରିଛନ୍ତି, କ'ଣ ଶତ୍ରୁର ଛାତିରେ କେବେ ଘଷି ପାରିବ ?

## ତେର

ଡ୍ରେସିଂ ଟେବୁଲ ସାମ୍ନାରେ ଛିଡ଼ା ହେଇ ନିଜର ଚେହେରାର ଆକର୍ଷକ କ୍ଲୋଜଅପ ଦେଖିକରି ସେ ପ୍ରଥମେ ନିଜର ସବୁଠାରୁ ଲୋଭନୀୟ ହସ କଣ୍ଠସ୍ଥ କରିଦେଲା । ପୁଣି କଳିଙ୍ଗ ଫିସର ହାତକଡ଼ି-ବେଡ଼ିରେ ଡେରିରେ ବନ୍ଧା ହେଇଥିବା ବନ୍ଦି କେଶଗୁଚ୍ଛକୁ ଏକ ଝଟକାରେ ନିଜର ସୁଡୌଳ କାନ୍ଧରେ ପକେଇ ଦେଲା । ଗାଧେଇ-ପାଧେଇ କରି ଚେହେରାରେ ସତେଜତା ଆସି ଯାଇଥିଲା । ଶରୀର-ମନ ସ୍ୱୟଂ ହି ଏକ ଅଜଣା ପୁଲକରେ ଭରି ଉଠିଥିଲା ।

"ଆପଣ ସବୁବେଳେ ହାତ ନଥିବା ବ୍ଲାଉଜ ହିଁ ପିନ୍ଧନ୍ତୁ ମିସ ମଜୁମ୍‌ଦାର ।" କେବେ ବୋବୀ କହିଥିଲା ।

"କାହିଁକି" କଲୀ ଜାଣିଶୁଣି କରି ଜାଣି ନଥିବା ପରି ହେବାର ଚେଷ୍ଟାକରି ମୁଗ୍ଧ ବୋବୀକୁ ଉସକେଇ ଥିଲା । ପୁଣି ନିଜର ସୌନ୍ଦର୍ଯ୍ୟର ପ୍ରଶଂସା ଶୁଣିବାକୁ କେଉଁ ସୁନ୍ଦରୀକୁ ଆନନ୍ଦ ମିଳି ନ ଥାନ୍ତା ?

"ନାତ ଏମିତି ସୁନ୍ଦର ବହୁକୁ ଦେଖିବାକୁ ସଂସାର ବଞ୍ଚିତ ହେଇଯିବ", ବୋବୀ ତ୍ରିଭଙ୍ଗି ଭଙ୍ଗିମାରେ କାନ୍ଥରେ ଲାଗିକରି ଗଳାର ସ୍କାର୍ଫ ଠିକ୍ କରୁ କରୁ ହସିବାକୁ ଲାଗିଲା ।

"ଓହୋ, ଆମର ବୋବୀର ପେଟରେ ଦାଢ଼ି ଉଠିବାକୁ ଲାଗିଛି ! ଆରେ ମୂର୍ଖ, ତୁ ଏମିତି ବଢ଼ିଆ କମ୍ପ୍ଲିମେଣ୍ଟ ଦେବାକୁ କେବେଠୁ ଶିଖିଛୁ ?" ଆଣ୍ଟି ଜଣାନାହିଁ କେଉଁଠାରୁ ଆସିକରି ହସିକରି ତା'ର ପଛରେ ଛିଡ଼ା ହେଇ ଯାଇଥିଲା ଆଉ ବାଳିକାମାନଙ୍କ ପରି ଲଜ୍ଜିତ ବୋବୀ ଝାଲନାଳ ହେଇ ଯାଇଥିଲା ।

ତାହାର ଲଙ୍ଗଳା ବାହୁ ଉପରେ ଖସୁଥିବା ବୋବୀର ମୁଗ୍ଧ ସିନ୍‌ସିୟର ଦୃଷ୍ଟି କେବେ ମିଛ ଖୋସାମତ କରି ନ ଥିବ ।

କଲୀ ବାହୁ ନ ଥିବା ବ୍ଲାଉଜଟିହିଁ ପିନ୍ଧିଲା । ପୁଣି ବ୍ଲାଉଜର ବହୁତ ତଳ ପର୍ଯ୍ୟନ୍ତ ଖୋଲା ଗଳାରେ ଆଣ୍ଟି ଦେଇଥିବା ବାଘ ନଖର ପେଣ୍ଡେଟ ଝୁଲେଇ କରି ସେ ଦୁଇହାତକୁ ପଛକୁ ବାନ୍ଧିକରି ଛିଡ଼ା ହେଇଗଲା । ଦର୍ପଣର ପ୍ରତିବିମ୍ବ ହସିକରି ପ୍ରତ୍ୟୁତ୍ତର ଦେଲା, "ବେଶ୍ ଏମିତି ହିଁ ହାତ ବାନ୍ଧିକରି ଛିଡ଼ାହେଇ ରହିବ ଆଉ ଗଡ଼ ଜିତିଯିବ ।" କେମିତି ସିମ୍ବୋଲିକ ପେଣ୍ଡେଟ ଝୁଲେଇ ଦେଇଥିଲା ସେ । ଆଣ୍ଟି ଦେଇଥିବା କୋରବେଟର ଦୁର୍ଲଭ ଉପହାର, ଯାହାକୁ ଚାହିଁଲାପରେ ସେ କୌଣସି ମ୍ୟୁଜିୟମକୁ ମଗା ଯାଉଥିବା ଦାମରେ ବିକ୍ରିକରି ପାରିଥାନ୍ତା ।

"ଆଣ୍ଟି ଏମିତି ରେଆର ବାଘନଖ, ସତରେ, ମତେ ଦେଉଛି ?" ଆଶ୍ଚର୍ଯ୍ୟ ହେଇ ବଡ଼ ବଡ଼ ଆଖି ଫାଡ଼ିକରି କଲୀ ବିଶ୍ୱାସରେ ଆଣ୍ଟିକୁ ଭଲକରି ଦେଖିବାକୁ ଲାଗିଲା ଅଉ ତାଙ୍କ ଗଳାରେ ଦୁଇ ବାହୁ ରଖି ଛୁଆପରି ଝୁଲିବାକୁ ଲାଗିଥିଲା ।

"ତୁମେତ କହୁଥିଲ, ଏହା ରୁଦ୍ରପ୍ରୟାଗର ସେହି ହିଂସ୍ର ମେନଇଟରର ବାଘନଖ ଅଟେ, ଯିଏ ସତରଟି ଗ୍ରାମରେ ଆତଙ୍କ ସୃଷ୍ଟିକରି ଦଶଟି ସ୍ତ୍ରୀଲୋକ, କୋଡ଼ିଏଟି ପୁରୁଷ ଆଉ ଜଣାନାହିଁ କେତୋଟି ମହିଷିଙ୍କର ଅଣ୍ଡିରା ଛୁଆଙ୍କୁ ଗିଳି ଦେଇଥିଲା ।"

"ଇଉ ଆର ରାଇଟ୍ ହନି", ଆଣ୍ଟି ନିଜର ହାତରେ କ୍ଲିପ୍ସ ଠକ ଠକ କରି ବାଘନଖ କଲୀର ସୁରେଇ ପରି ବେକରେ ଝୁଲେଇ ଦେଇଥିଲା । "ଏହାଠାରୁ ସୁନ୍ଦର ମ୍ୟୁଜିୟମ ଏହାକୁ ଆଉ କେଉଁଠାରେ ମିଳି ପାରିଥାନ୍ତା । ଏବେ ଏହି ବାଘନଖ ଆମର କଲୀକୁ ଅନ୍ୟ ନରଭକ୍ଷକଙ୍କୁ ଠାରୁ ରକ୍ଷା କରୁଥିବ । କଲୀ, ମାଇ ଲଭ, ଏହା ସହିତ ସବୁବେଳେ ହଳଦିଆ ସାଢ଼ି ପିନ୍ଧିବୁ । ପୁରାପୁରି କୁମାଉଁର ହିଂସ୍ର ବାଘୁଣି ପରି ମନେହେବୁ...."

କଳା ଇରିଥିବା ଚଉଡ଼ା ଧଡ଼ିର ହଳଦିଆ ଗଡ଼ୱାଲି ସାଢ଼ି କଲୀ କେବେ ବହୁତ ଖୁସିରେ କିଣିଥିଲା । କିନ୍ତୁ ଯେବେ ମଧ ସେ ତାକୁ ପିନ୍ଧିକରି ଇଣ୍ଡିଏନ ପେଭେଲିଅନ୍‌ରେ ହସିକରି ଛିଡ଼ା ହେଉଥିଲା, ବିଦେଶୀ ଗ୍ରାହକମାନଙ୍କର ଦୃଷ୍ଟି ଦୋକାନରୁ ଯାଇ ମାଲିକିଆଣି ଉପରେ ନିବିଷ୍ଟ ହେଇ ଯାଉଥିଲା । ଦୁଇଥର ସେହି ସାଢ଼ି ପିନ୍ଧିଥିଲା ଆଉ ଦୁଇଥର ଯାକ ଛିଡ଼ା ହେଇ ହେଇ ବିଦେଶର ଟଙ୍କା କରେ ଦୁଇଟା ବିକ୍ରି ହେଉଥିବା ସସ୍ତା ବିବାହ ପ୍ରସ୍ତାବକୁ ହସି ହସି କରି ଅସ୍ୱୀକାର କରିବାରେ ଲାଗିଥିଲା ।

ଆଜି କଲୀ ସୁଟ୍‌କେଶର ପୁରାପୁରି ତଳୁ ସେହି ମାରାତ୍ମକ ସାଢ଼ି ବାହାରି ଥିଲା । ଅଫିମର ବିଷକୁ ସମ୍ପୂର୍ଣ୍ଣ ରୂପରେ ଘାତକ କରିବାକୁ ଯାଇ ଲୋକେ ଶୁଣିଛନ୍ତି, ଆଚାରର ତେଲ ମିଶେଇ କରି ଚାଟନ୍ତି । ଆଜି ଏହି ବାଘନଖହିଁ ତା ପାଇଁ ଆଚାରର ତେଲ ହେବ । ଯତ୍ନ ସହକାରେ ପିନ୍ଧିଥିବା ହଳଦିଆ ସାଢ଼ିର ଚଉଡ଼ା ଇରିବାଲା କଳା ଆଁଚଲ ପିଠି ଉପରେ ବ୍ୟାପୀଗଲା । ନଗ୍ନ ସୁଡୌଲ ବାହୁରେ ପିନ୍ଧିଥିବା ସାପର ମୁହଁର ମୋଡ଼ି

ଆଉ ଏକ ଧୂପକାଠି ଜଳେଇ କରି କାନ୍ଥରେ ଖୋସିଦେଲା ।

ସେହି ଶୂନ୍ୟ ବଖରାରେ ତାକୁ ଆଣ୍ଟିର ସ୍ନେହି ପରିବାରର ସ୍ମୃତି କ୍ଷଣକ ପାଇଁ ବିଚଳିତ କରିଦେଲା, ପୁଣି ସେ ହାତର ଘଡ଼ି ଖୋଲି କରି ଟେବଲ୍ ଉପରେ ରଖିଦେଲା । ଏମିତି ସମୟ ନଷ୍ଟ କଲେ କାମ ହେବନାହିଁ । ଗାଧେଇ-ପାଧେଇ ଅଶୁଭ ଚେହେରାକୁ ସମ୍ଭାଳିବାକୁ ପଡ଼ିବ । ନିଜର କ୍ଲାନ୍ତ ଚେହେରାକୁ ଦର୍ପଣରେ ଦେଖିକରି ସେ ହସିଲା । ଆଜି ଟିକିଏ ଭଲକରି ଶୃଙ୍ଗାର କରିବାକୁ ହେବ । ସଙ୍ଗମ ତଟର ଯେଉଁ ବୈଷ୍ଣବୀର ନିରାବରଣ ସୌନ୍ଦର୍ଯ୍ୟକୁ ଶକ୍ତିଶାଳୀ ଶତ୍ରୁ ଦେଖିଥିଲା, ତାହାର ବାସି ରୂପରେଖାକୁ ପୁଣି ଟାଣିବାରେ କାମ ଚଳିବ ନାହିଁ, ଏଥର ସଜବାଜ ଟିକିଏ ଭଲକରି କରିବାକୁ ହେବ । ବୀର ଯୋଦ୍ଧାର ତରବାରୀ, ଯେମିତି ହେଉ ନା କହିଁକି, ଯେତେବେଳେ ପର୍ଯ୍ୟନ୍ତ ଶାଣ ପଥରରେ ଘଷିକରି ଧାର ସେବକମାନେ ନ କରିଛନ୍ତି, କ'ଣ ଶତ୍ରୁର ଛାତିରେ କେବେ ଘଷି ପାରିବ ?

## ତେର

ଡ୍ରେସିଂ ଟେବୁଲ ସାମ୍ନାରେ ଛିଡ଼ା ହେଇ ନିଜର ଚେହେରାର ଆକର୍ଷକ କ୍ଲୋଜଅପ ଦେଖିକରି ସେ ପ୍ରଥମେ ନିଜର ସବୁଠାରୁ ଲୋଭନୀୟ ହସ କଣ୍ଠସ୍ଥ କରିଦେଲା । ପୁଣି କଳିଙ୍ଗ ଫିସର ହାତକଡ଼ି-ବେଡ଼ିରେ ଡେରିରେ ବନ୍ଧା ହେଇଥିବା ବନ୍ଦି କେଶଗୁଚ୍ଛକୁ ଏକ ଝଟକାରେ ନିଜର ସୁଡ଼ୌଳ କାନ୍ଧରେ ପକେଇ ଦେଲା । ଗାଧେଇ-ପାଧେଇ କରି ଚେହେରାରେ ସତେଜତା ଆସି ଯାଇଥିଲା । ଶରୀର-ମନ ସ୍ୱୟଂ ହି ଏକ ଅଜଣା ପୁଲକରେ ଭରି ଉଠିଥିଲା ।

"ଆପଣ ସବୁବେଳେ ହାତ ନଥିବା ବ୍ଲାଉଜ ହିଁ ପିନ୍ଧନ୍ତୁ ମିସ ମଜୁମ୍‌ଦାର ।" କେବେ ବୋବୀ କହିଥିଲା ।

"କାହିଁକି" କଳୀ ଜାଣିଶୁଣି କରି ଜାଣି ନଥିବା ପରି ହେବାର ଚେଷ୍ଟାକରି ମୁଗ୍ଧ ବୋବୀକୁ ଉସକେଇ ଥିଲା । ପୁଣି ନିଜର ସୌନ୍ଦର୍ଯ୍ୟର ପ୍ରଶଂସା ଶୁଣିବାକୁ କେଉଁ ସୁନ୍ଦରୀକୁ ଆନନ୍ଦ ମିଳି ନ ଥାନ୍ତା ?

"ନାତ ଏମିତି ସୁନ୍ଦର ବହୁକୁ ଦେଖିବାକୁ ସଂସାର ବଞ୍ଚିତ ହେଇଯିବ", ବୋବୀ ତ୍ରିଭଙ୍ଗି ଭଙ୍ଗିମାରେ କାନ୍ଥରେ ଲାଗିକରି ଗଳାର ସ୍କାର୍ଫ ଠିକ୍ କରୁ କରୁ ହସିବାକୁ ଲାଗିଲା ।

"ଓହୋ, ଆମର ବୋବୀର ପେଟରେ ଦାଢ଼ି ଉଠିବାକୁ ଲାଗିଛି ! ଆରେ ମୂର୍ଖ, ତୁ ଏମିତି ବଢ଼ିଆ କମ୍ପ୍ଲିମେଣ୍ଟ ଦେବାକୁ କେବେଠୁ ଶିଖିଛୁ ?" ଆଣ୍ଟି ଜଣାନାହିଁ କେଉଁଠାରୁ ଆସିକରି ହସିକରି ତା'ର ପଛରେ ଛିଡ଼ା ହେଇ ଯାଇଥିଲା ଆଉ ବାଳିକାମାନଙ୍କ ପରି ଲଜ୍ଜିତ ବୋବୀ ଝାଳନାଳ ହେଇ ଯାଇଥିଲା ।

ତାହାର ଲଙ୍ଗଳା ବାହୁ ଉପରେ ଖସୁଥିବା ବୋବାର ମୁଗ୍ଧ ସିନ୍‌ସିୟର ଦୃଷ୍ଟି କେବେ ମିଛ ଖୋସାମତ କରି ନ ଥିବ ।

କଳୀ ବାହୁ ନ ଥିବା ବ୍ଲାଉଜହିଁ ପିନ୍ଧିଲା । ପୁଣି ବ୍ଲାଉଜର ବହୁତ ତଳ ପର୍ଯ୍ୟନ୍ତ ଖୋଲା ଗଳାରେ ଆଣ୍ଡି ଦେଇଥିବା ବାଘ ନଖର ପେଣ୍ଡେଟ ଝୁଲେଇ କରି ସେ ଦୁଇହାତକୁ ପଛକୁ ବାନ୍ଧିକରି ଛିଡ଼ା ହେଇଗଲା । ଦର୍ପଣର ପ୍ରତିବିମ୍ବ ହସିକରି ପ୍ରତ୍ୟୁତ୍ତର ଦେଲା, "ବେଶ୍ ଏମିତି ହିଁ ହାତ ବାନ୍ଧିକରି ଛିଡ଼ାହେଇ ରହିବ ଆଉ ଗଡ଼ ଜିତିଯିବ ।" କେମିତି ସିମ୍ବୋଲିକ ପେଣ୍ଡେଟ ଝୁଲେଇ ଦେଇଥିଲା ସେ । ଆଣ୍ଡି ଦେଇଥିବା କୋରବେଟର ଦୁର୍ଲଭ ଉପହାର, ଯାହାକୁ ଚାହିଁଲାପରେ ସେ କୌଣସି ମ୍ୟୁଜିୟମକୁ ମଗା ଯାଇଥିବା ଦାମରେ ବିକ୍ରିକରି ପାରିଥାନ୍ତା ।

"ଆଣ୍ଡି ଏମିତି ରେଆର ବାଘନଖ, ସତରେ, ମତେ ଦେଉଛି ?" ଆଶ୍ଚର୍ଯ୍ୟ ହେଇ ବଡ଼ ବଡ଼ ଆଖି ଫାଡ଼ିକରି କଳୀ ବିଶ୍ୱାସରେ ଆଣ୍ଡିକୁ ଭଲକରି ଦେଖିବାକୁ ଲାଗିଲା ଅଉ ତାଙ୍କ ଗଳାରେ ଦୁଇ ବାହୁ ରଖି ଛୁଆପରି ଝୁଲିବାକୁ ଲାଗିଥିଲା ।

"ତୁମେତ କହୁଥିଲ, ଏହା ରୁଦ୍ରପ୍ରୟାଗର ସେହି ହିଂସ୍ର ମେନଇଟରର ବାଘନଖ ଅଟେ, ଯିଏ ସତରଟି ଗ୍ରାମରେ ଆତଙ୍କ ସୃଷ୍ଟିକରି ଦଶଟି ସ୍ତ୍ରୀଲୋକ, କୋଡ଼ିଏଟି ପୁରୁଷ ଆଉ ଜଣାନାହିଁ କେତୋଟି ମହିଷିଙ୍କର ଅଣ୍ଡିରା ଛୁଆଙ୍କୁ ଗିଳି ଦେଇଥିଲା ।"

"ଇଉ ଆର ରାଇଟ୍ ହନି", ଆଣ୍ଡି ନିଜର ହାତରେ କ୍ଲିପ୍ସ ଠକ ଠକ କରି ବାଘନଖ କଳୀର ସୁରେଇ ପରି ବେକରେ ଝୁଲେଇ ଦେଇଥିଲା । "ଏହାଠାରୁ ସୁନ୍ଦର ମ୍ୟୁଜିୟମ ଏହାକୁ ଆଉ କେଉଁଠାରେ ମିଳି ପାରିଥାନ୍ତା । ଏବେ ଏହି ବାଘନଖ ଆମର କଳୀକୁ ଅନ୍ୟ ନରଭକ୍ଷକଙ୍କୁ ଠାରୁ ରକ୍ଷା କରୁଥିବ । କଳୀ, ମାଇ ଲଭ, ଏହା ସହିତ ସବୁ ବେଳେ ହଳଦିଆ ସାଢ଼ି ପିନ୍ଧିବୁ । ପୁରାପୁରି କୁମାଉଁର ହିଂସ୍ର ବାଘୁଣି ପରି ମନେହେବୁ...."

କଳା ଜରିଥିବା ଚଉଡ଼ା ଧଡ଼ିର ହଳଦିଆ ଗଡ଼ବାଳି ସାଢ଼ି କଳୀ କେବେ ବହୁତ ଖୁସିରେ କିଣିଥିଲା । କିନ୍ତୁ ଯେବେ ମଧ୍ୟ ସେ ତାକୁ ପିନ୍ଧିକରି ଇଣ୍ଡିଏନ ପେଭେଲିଅନ୍‌ରେ ହସିକରି ଛିଡ଼ା ହେଉଥିଲା, ବିଦେଶୀ ଗ୍ରାହକମାନଙ୍କର ଦୃଷ୍ଟି ଦୋକାନରୁ ଯାଇ ମାଲିକିଆଣି ଉପରେ ନିବିଷ୍ଟ ହେଇ ଯାଉଥିଲା । ଦୁଇଥର ସେହି ସାଢ଼ି ପିନ୍ଧିଥିଲା ଆଉ ଦୁଇଥର ଯାକ ଛିଡ଼ା ହେଇ ହେଇ ବିଦେଶର ଟଙ୍କା କରେ ଦୁଇଟା ବିକ୍ରି ହେଉଥିବା ସସ୍ତା ବିବାହ ପ୍ରସ୍ତାବକୁ ହସି ହସି କରି ଅସ୍ୱୀକାର କରିବାରେ ଲାଗିଥିଲା ।

ଆଜି କଳୀ ସୁଟ୍‌କେଶର ପୁରାପୁରି ତଳୁ ସେହି ମାରାତ୍ମକ ସାଢ଼ି ବାହାରି ଥିଲା । ଅଫିମର ବିଷକୁ ସମ୍ପୂର୍ଣ୍ଣ ରୂପରେ ଘାତକ କରିବାକୁ ଯାଇ ଲୋକେ ଶୁଣିଛନ୍ତି, ଆଚାରର ତେଲ ମିଶେଇ କରି ଚାଟନ୍ତି । ଆଜି ଏହି ବାଘନଖହିଁ ତା ପାଇଁ ଆଚାରର ତେଲ ହେବ । ଯତ୍ନ ସହକାରେ ପିନ୍ଧିଥିବା ହଳଦିଆ ସାଢ଼ିର ଚଉଡ଼ା ଜରିବାଲା କଳା ଆଁଚଲ ପିଠି ଉପରେ ବ୍ୟାପୀଗଲା । ନଗ୍ନ ସୁଡୌଲ ବାହୁରେ ପିନ୍ଧିଥିବା ସାପର ମୁହଁର ମୋଡ଼ି

ହେଇଥିବା ବାଜୁବନ୍ଧ ଏବେ ପଛରେ ଛିଡ଼ା ହେଇଥିବା ଶତ୍ରୁକୁ ସହଜରେ ଦଂଶନ କରି ପାରିଥାନ୍ତା, ଆଉ ଯଦି କେଉଁଠି ଶତ୍ରୁ ସହିତ ସାମ୍ନା-ସାମ୍ନି ଲଢ଼େଇ ହେଇଗଲା ତାହେଲେ ଆଙ୍ଗିର ଅପୂର୍ବ ବାଘନଖ ଚତୁର କପଟି ଆଫଜଲ ଖାଁଠାରୁ ଶସକ୍ତ ଶତ୍ରୁର ମଧ୍ୟ ପେଟ କଣାକରି ଦେଇ ପାରିଥାନ୍ତା ।

ଆଜି ସେ ମଧ୍ୟ ଦେଖି ନେବ କେଉଁ ଆଫଜଲ ଖାଁ ତାହାଠାରୁ ବଞ୍ଚିକରି ଯାଇପାରିବ ।

"ଅମ୍ମା କେତେବେଳକୁ ଆସିବେ ବାପା ?" ସେ ବଖରାର ଝରକା ଦେଇ ଲୁଚିକରି ପଚାରିଲା । ନିଜର ସେହି ଚକଚକିଆ, ବହୁତ ଛନ୍ଦକପଟରେ ପିନ୍ଧିଥିବା ସାଢ଼ିରେ ସେ ବାପାଙ୍କ ସାମ୍ନାକୁ ଯାଇ କ'ଣ ଛିଡ଼ା ହେଇ ପାରିଥାନ୍ତା ?

"ଆସୁଥିବ ଝିଅ, ଚାରିଟା ବେଳେ ସେମାନେ ସମସ୍ତେ ପୁଣି ଆଲୀପୁର ଯିବେ ।"

ବହୁତ ଡେରି ପର୍ଯ୍ୟନ୍ତ କଲୀ ତା'ର ବଖରାର ଏକମାତ୍ର ଚଉକିରେ ପ୍ରତିମା ପରି ସ୍ଥାପିତ ହେଇ ବସି ରହିଥିଲା, ଯେଉଁଥିରେ ସାଢ଼ିର ଗୋଟିଏ ପରସ୍ତ ମଧ୍ୟ ଏପାଖ ସେପାଖ ହୋଇ ନଥିଲା । ତାକୁ ସ୍ୱୟଂ ମନେ ହେଲା ଯେ ସେ ପ୍ରସିଦ୍ଧ ରଙ୍ଗମଞ୍ଚର ପୃଷ୍ଠଭୂମିରେ ପ୍ରସ୍ତୁତ କରାଯାଉଥିବା କୌଣସି ବହୁଚର୍ଚ୍ଚିତ ନାଟକରେ ମହତ୍ତ୍ୱପୂର୍ଣ୍ଣ ନାୟିକାର ଅଭିନୟ କରିବା ପାଇଁ ସଜବାଜ ହେଇ ବସିଛି, ଆଉ ଯେ କୌଣସି ସମୟରେ ପରଦା ଉଠିଯିବ । ଦର୍ଶକମାନଙ୍କ ମଧ୍ୟରେ ଯେଉଁ କଳା-ସମୀକ୍ଷକର ଆଖି ସେ ବାନ୍ଧିବାକୁ ଚାହୁଁଛି, ହେଇପାରେ, ସେ ଅଭିନୟ ସମାପ୍ତ ହେଲାପରେ ଦର୍ଶକମାନଙ୍କ ସହିତ ତାଳିର ଘଡ଼ଘଡ଼ ଶବ୍ଦରେ ଯୋଗଦାନ ଦେଇ ତାକୁ ଆକାଶରେ ଚଢ଼େଇ ରଖିଦେବ, ଆଉ ହେଇପାରେ ଯେ ତାହାର ଶସ୍ତା ଅଭିନୟର ଛଳନା ଜାଣି ପାରିବା ପରେ ତାକୁ "ଚଟ" କରି ମାଟିରେ ମିଶେଇ ଦେବ ।

ପ୍ରତ୍ୟେକ କାରର ଶବ୍ଦ ସହିତ ଧଡ଼ଧଡ଼ କରୁଥିବା କଳିଜା ମୁହଁ ପର୍ଯ୍ୟନ୍ତ ଆସି ଯାଉଥିଲା । ସାଢ଼େ ଦଶ ବାଜି ସାରିଥିଲା ଆଉ ଏଗାରଟାରେ ତାକୁ ଅଫିସରେ ପହଞ୍ଚିବାକୁ ହେବ । "ଚୁଲ୍ଲିରେ ଯାଉ ଆଫଜଲ ଖାଁ । ସେ କବାଟରେ ତାଲା ଲଗେଇ କରି ଗେଟ୍‌ରୁ ବାହାରକୁ ବାହାରିଲା ବେଳକୁ ହିଁ ନୂତନ ଫିଆଟ ତାକୁ ଲାଗିକରି ଭିତରକୁ ଚାଲିଗଲା । ଗାଡ଼ିର ଛୋଟ କଳେବର ଖୁନ୍ଦାଖୁନ୍ଦି ଭର୍ତ୍ତି ହେଇ ଥିଲା - ଅମ୍ମା, ତାଙ୍କର ଦୁଇ କୋଳିଁ, ଦୁଇ ଝିଅ ଆଉ ସ୍ୱୟଂ ଚାଳକ ହେଇଥିବା କାବୁଲିବାଲା ।

ବା ବା କେମିତି ବଢ଼ିଆ, ନାମ ଦୃଷ୍ଟିକୁ ହଠାତ୍ ଆସିଥିଲା । ସ୍ୱାଭାବିକ ସ୍ୱଚ୍ଛ ହସର ଦର୍ପଣ ଚମକଉ ଥିବା କଲୀ ଘରକୁ ଫେରିଥିବା ପରିବାରର ସ୍ୱାଗତ କରିବାକୁ ଓଲଟି ଗଲା ।

"ଅମ୍ମା", ଗେଟ୍‌ରୁ ହିଁ ସେ ଓଲଟି ପଡ଼ି ହାତ ହଲେଇଲା ଆଉ ଅମ୍ମାକୁ ତାଙ୍କର ଗଣ୍ଠିଲି ସହିତ ଚୁମ୍ବକ ପରି ଟାଣି ନେଲା ।

"ଆରେ ରେ, ତୁ କେବେ ଉପରୁ ହଠାତ୍ ଖସିଲୁ ? ଯେବେ ଦେଖ ତେବେ ଚାଳ କଣାକରି ହିଁ ହଠାତ୍ ଉପରୁ ଖସୁଛୁ ତୁ ! ଆଉ ଆସିଲା ମାତ୍ରେ ପୁଣି କୁଆଡ଼କୁ ଚାଲିଯିବୁ ?"

ଅମ୍ମା ତା ପାଖରେ ପହଞ୍ଚିକରି ତା'ର ଚକମକ ସାଢ଼ିକୁ ଦେଖିବାକୁ ଲାଗିଲା । ଏମିତି ସାଜ-ସଜ୍ଜା କରି ଝିଅ କେବେ ଅଫିସ ଯାଉ ନ ଥିଲା । "କ'ଣ, ଝିଅ, ଆଜି କେଉଁଠିକୁ ଭୋଜି-ଫୋଜି ଖାଇବାକୁ ଯାଉଛୁ ନା କ'ଣ ?" ବହୁତ ସ୍ନେହରେ ଅମ୍ମା ତାହାର ପିଠି ଆପୁଡ଼ାଇ ପଚାରିଲା ।

"ନା ଅମ୍ମା", କଲି ହସିଲା, "ଆଜି ନିଜ ଅଫିସର ଭୋଜି ଖାଇବାକୁ ଯାଉଛି ।" ସ୍ୱରକୁ ସେ ଜାଣିଶୁଣି କରି ଅବରୋହ ଉପରକୁ ଟାଣି ନେଲା, ଯାହାଦ୍ୱାରା ମଟରର ଟାଙ୍କର ତାଙ୍କୁଣି ଉଠାଇ ତାକୁ ଠିକ୍ କରିବାକୁ ନଇଁ ପଡ଼ିଥିବା ଗମ୍ଭୀର ଚାଳକ ମଧ୍ୟ ଶୁଣି ପାରିବ । "ଜଣାନାହିଁ ଆଜି ଖାଇବା ପାଇଁ କ'ଣ କ'ଣ ମିଳିବ ଅମ୍ମା – ଗାଳି ଗୁଲଜ ଆଉ ଧମକ । ବଡ଼ ସାହେବଙ୍କୁ ନ ପଚାରି ଏତେଦିନର ଲମ୍ବା ଛୁଟି ନେଇକରି ଏଇଠି ସେଇଠି ବୁଲିବାର ଫଳ ଚାଖିବାକୁ ଯାଉଛି ।"

ଜୟା ଥରେ ତୀକ୍ଷ୍ଣ ଦୃଷ୍ଟିରେ ତାକୁ ଦେଖିକରି ଭିତରକୁ ଚାଲି ଯାଇଥିଲା । ଦାମୋଦର ନିର୍ଲଜ୍ଜ ମୁଗ୍ଧ ଦୃଷ୍ଟିର ଚାବୁକ ସିଧାସଳଖ କଲୀର ଅର୍ଦ୍ଧନଗ୍ନ ପିଠି ଉପରେ ପଡ଼ିବାକୁ ଲାଗିଥିଲା । ନବୀନ ସେହି ବ୍ୟବସାୟୀ ସୁନ୍ଦରୀ ମଡ଼େଲର ଛବିକୁ ଦେଖି ଖୋଲା ମୁହଁ ବନ୍ଦ କରିବା ମଧ୍ୟ ଭୁଲିଗଲା । ନିଜର ଦିନସାରା ପିନ୍ଧିଥିବା କୁଞ୍ଚ ପଡ଼ିଥିବା ସାଢ଼ିର ଜରିବାଲା କାନିକୁ ହାତରେ ସେ ଠିକ୍ କରୁ କରୁ ଅମ୍ମାର ଝିଅ ମାୟା କୃତ୍ରିମ ହସି ଅଭ୍ୟର୍ଥନା ବିସ୍ତାରିତ କରି ତା ଆଡ଼କୁ ଆଗେଇ ଆସିଲା ।

"ଅମ୍ମା ତ ଦିନ-ରାତି ଆପଣଙ୍କର ହିଁ କଥା ସବୁବେଳେ କହୁଥିଲେ- ବହୁତ ଇଚ୍ଛା ଥିଲା ଆପଣଙ୍କୁ ଦେଖିବା ପାଇଁ ।" କିନ୍ତୁ ସୁନ୍ଦର ଚେହେରାର କୃତ୍ରିମ ହସ ସ୍ୱୟଂହି ତାହାର କଥାକୁ ସ୍ପଷ୍ଟ ଭାବରେ ଖଣ୍ଡନ କରୁଥିଲା, ଏହା ହୁଏତ ଅମ୍ମାର ଅଭିନୟ କଳାରେ ପୁରାପୁରି ଅନଭ୍ୟସ୍ତ ଛୋଟଝିଅ ବୁଝିପାରିଲା ନାହିଁ ।

"ମୁଁ ଯେଉଁଦିନ ଗଲି, ସେଦିନ ଆପଣ ହୁଏତ କେଉଁଠିକୁ ଚାଲି ଯାଇଥିଲେ । ଏବେ ତ ଅଫିସ ଯାଉଛି, ଫେରିଲେ ହିଁ ଆପଣଙ୍କ ସହିତ ସାକ୍ଷାତ କରିବାକୁ ଯିବି ।" ଆଖିର କୋଣରେ କଲୀ ଗର୍ବୀ ଚାଲକର ପିଠିକୁ-ଦେଖିନେଲା । ଏବେ ମଧ୍ୟ ଟାଙ୍କି ଭିତରେ ମୁହଁ ପୁରେଇ ଜଣାନାହିଁ କ'ଣ କରୁଥିଲା – କ'ଣ ଥରେ ହେଲେ ଦେଖିବ ନାହିଁ ହୀନକପାଳିଆ ?

କେମିତି ଔଦ୍ଧତ୍ୟରେ ଟାଣି ହେଇଥିବା କାନ୍ଧ ଥିଲା, ଆଉ ଖରାର ଚଷମା ଲଗେଇ ପୁରା ଇଟାଲୀୟ ଟୁରିଷ୍ଟ ମନେ ହେଉଥିଲା ଗର୍ବୀଟା ।

କଲୀ ପାଦର ଚପଲର ଫିତା ଠିକ୍ କରିବାକୁ ନଇଁଥିଲା କି ନାହିଁ ପରିଚିତ ମାଂସଳ

କଣ୍ଠସ୍ୱରର ଶବ୍ଦରେ ଅଟକି ଗଲା ।

ଚଟକରି ସେ ଗାଡ଼ିର ବହୁତ ସମୟ ପର୍ଯ୍ୟନ୍ତ ଉଠିଥିବା ଢାଙ୍କୁଣି ବନ୍ଦ ହେଲା ।

"ମତେ ଘୋଷ ସହିତ ଦେଖା କରିବାକୁ ଯିବାକୁ ହେବ ଅମ୍ମା, ଭୋଜନ ସେଇଠି କରିନେବି । ଚାରିଟା ବାଜିଲା ବେଳକୁ ଗାଡ଼ି ଫେରେଇ ଆଣିବି, ସେତେବେଳେ ତମକୁ ଆଲିପୁର ନେଇଯିବି ।"

କଲୀର ସଙ୍ଗେ ସଙ୍ଗେ ଗାଡ଼ି ମଧ୍ୟ ଗେଟ୍‌ରୁ ବାହାରି ଗଲା ।

କଲୀ ଜାଣିଶୁଣି କରି ଆରେ କହି ଚାଲୁଥିବା ଗାଡ଼ିର ରାସ୍ତା କଟେଇ ନିଜ ସହିତ ତାକୁ ମଧ୍ୟ ଅଟକେଇ ଦେଲା ।

ନ ଚାହିଁଲେ ମଧ୍ୟ ଅପ୍ରତ୍ୟାଶିତ ବ୍ରେକର ଝଟକା ସହିତ ଚାଳକର ତଳେ ଜାଣିଶୁଣିକରି ପଡ଼ିଗଲା ଦୁଃସାହସୀ ସୁନ୍ଦରୀ କଲୀର ହସୁଥିବା ଆଖିକୁ ଦେଖି ନେଲା । କିଛି ନ କହି ପ୍ରବୀର ଧିର ଗତିରେ ଗାଡ଼ି ପୁଣି ଆଗେଇ ନେଲା । କେଟର ପିଲରର ଚାଲରେ ଧିରେ ଧିରେ ଚାଲିଥିବା ଗାଡ଼ି ସହିତ ମାପିଚୁପି ପାଦ ପକେଇ କଲୀ ମଧ୍ୟ ହସକରି ଚାଳକର ଝରକା ପାଖରେ ଛିଡ଼ା ହେଇଗଲା ।

"ଏକ୍ସକ୍ୟୁଜ୍ ମି", ସେ କହିଲାରୁ ପ୍ରବୀରର ଚେହେରା କ୍ରୋଧରେ ତମତମ ହେଇଗଲା ।

କେମିତି ଖେଳୁଛି ଏହି ବାଳିକା । ପଛରେ ଅମ୍ମା ଛିଡ଼ା ହେଇଛି, ଦାମୋଦର ଅଛି, ନବୀନ, କୟା ଅଛନ୍ତି – କାହିଁକି ସେ ଥରକୁ ଥର ଜାଣିଶୁଣି କରି ତାହାର ଚଳନ୍ତି ଗାଡ଼ିର ସମ୍ମୁଖରେ ଚତୁର ଧର୍ମଘଟକାରୀ ପରି ଧାରଣା ଦେଉଛି ?

"ଆପଣ ସେଦିନ ପଚାରି ଥିଲେ ନା, ଯେ ଆମର ହୁଏତ କେଉଁଠି ଦେଖା ହେଇଛି ।" ଗାଲରେ ଆକର୍ଷକ ଗାତର ଗଭୀରତାରେ ଏବେ ଶକ୍ତିର ଗର୍ବରେ ଦୋହଲୁଥିବା ମସ୍ତ ମସ୍ତ ଜଙ୍ଗଲି ହାତୀ ମଧ୍ୟ ଧୋକାରେ ପଡ଼ି ବୁଡ଼ି ପାରିଥାନ୍ତା ।

"ଠିକ୍ କହିଥିଲେ ଆପଣ । ଆପଣଙ୍କୁ ତ ନୁହଁ, କିନ୍ତୁ ଆପଣଙ୍କର ଏହି ଟବୀଡ଼୍ କୋଟକୁ ଦେଖିକରି ମତେ ମଧ୍ୟ ଯେମିତି ବହୁତ ପରିଚିତ ପରି ଲାଗୁଥିଲା । ମନେ ହେଉଥିଲା, ଯେମିତି ବହୁତ ଡେରି ପର୍ଯ୍ୟନ୍ତ କୌଣସି ଆଲମାରିରେ ରଖାହେଇଥିବା ଦେଖିଥିଲି ।"

ବର୍ତ୍ତମାନର ହସ, ସେ ହସିଥିଲା, ଯାହାକୁ ଦର୍ପଣର ସମ୍ମୁଖରେ କୌଣସି ଓଜସ୍ୱୀ ନେତାର ଭାଷଣ ପରି ଥରକୁ ଥର ଆବୃତ୍ତି କରି କଲୀ ଚକଚକ କରି କଣ୍ଠସ୍ଥ କରିଥିଲା ।

ପ୍ରବୀର ପୁଣି ସେହି ଉଦାସୀନ ଦୃଷ୍ଟି ନିଜର ଷ୍ଟିଅରିଂ ହ୍ୱିଲ ଉପରେ ନିକ୍ଷେପ କଲା ଆଉ ଧିରେ ଚତୁର ଚାଳକର ଦକ୍ଷତାରେ ଗାଡ଼ି ଅନ୍ୟଆଡ଼କୁ ବାହାର କରି ଜୋରରେ ଧୂଳି ଉଡ଼େଇ ଚାଲିଗଲା ।

କଲୀ ହସିକରି ଚାଲିବାକୁ ଲାଗିଲା । ତାହାର ଅନୁମାନ ଠିକ୍ ଥିଲା । ଏହି

ବ୍ୟକ୍ତିକୁ ତା'ର ଅଭଦ୍ରତାର ଦଣ୍ଡ ଦେବାକୁ ହିଁ ହେବ ନିଜର ଛୋଟ ଜୀବନରେ ସେ ଅସଂଖ୍ୟ ପୁରୁଷ ଦେଖି ନେଇଥିଲା । ଆଉ ଆଜି ପର୍ଯ୍ୟନ୍ତ କ'ଣ ଏକ ମଧ୍ୟ ଏମିତି ପରିଚିତ ପୁରୁଷଥିଲା, ଯିଏ ତାହାର ସୌନ୍ଦର୍ଯ୍ୟର ପ୍ରଶଂସା କରିବାର ପୁନରାବୃତ୍ତି କରି ନାହିଁ ? 'କମନ୍ କର୍ଟସୀ'ର, ମଧ୍ୟ ଏକ ମହତ୍ତ୍ୱ ଅଛି । ଦେଖୁଛି ଯେ ସେ ଚାଲିକରି ଯାଉଛି, କିନ୍ତୁ ତେବେ ମଧ୍ୟ ମିଛରେ ହେଉ କ'ଣ ଥରେ ଲିଫ୍ଟ ଦେବାର ଭଦ୍ର ପୁରୁଷୋଚିତ ପ୍ରସ୍ତାବ କରି ପାରି ନ ଥାନ୍ତା ? ଏମିତି ନମ୍ର ମିଷ୍ଟଭାଷୀ ଅମ୍ମାର ପୁତ୍ର ହେଇ ଏମିତି ରୁକ୍ଷ କେମିତି ଜନ୍ମହେଲା ?

ସେଦିନ କଳୀ ଅଫିସରେ ପହଞ୍ଚିଲାରୁ ମି. ଶେଖରନ ବହୁତ ଭଲ ମୁଡ୍‌ରେ ଥିଲେ ।

ହୁଏତ କଳୀର ଚିତାବାଘର ଚମଡ଼ା ପରିଧାନ ପରି ହଳଦିଆ କଳା ସାଢ଼ିର ପ୍ରଶଂସା ଲଗଂଳା ହେଇ ତାଙ୍କର କ୍ଷୁଧାତୁର ଦୃଷ୍ଟିରେ ସ୍ପଷ୍ଟ ହେଇ ଉଠିଥିଲା । ଏତେଦିନ ପର୍ଯ୍ୟନ୍ତ ଏହି ବାଳିକା ନ ଥିବାରୁ ମନେ ହେଉଥିଲା ଅଫିସର ତେଜ ଚାଲି ଯାଇଥିଲା ।

"ବହୁତ ଲମ୍ବାଛୁଟି ନେଇଗଲ ମିସ୍ ମଜୁମଦାର, କ'ଣ ଅସୁସ୍ଥ ହେଇ ଯାଇଥିଲ ?"

"ଆଜ୍ଞା ହଁ", କଳୀ କ୍ଷଣକ ଭିତରେ ଉତ୍‌ଫୁଲ୍ଲ ଚେହେରାରେ ନିଜର ଅପୂର୍ବ ଅଭିନୟ କଳାର ତୁଳିକା ବୋଳି କରି ମ୍ଳାନ କରିଦେଲା । "ଭୀଷଣ ଭାବରେ ଫ୍ଲୁ ହେଇଯାଇ ଥିଲା ସାର, ଏବେ ମଧ୍ୟ ପୁରାପୁରି ଠିକ୍ ହେଇ ପାରିନାହିଁ । ତେବେ ମଧ୍ୟ ଆଜି ଚାଲି ଆସିଲି । ଭାବିଲି, ଯଦି ଏଠାରେ ଆପଣ ଭାବିବେ ଯେ ବାହାନା କରୁଛି ।"

"ନା-ନା, ମୁଁ ଏମିତି କାହିଁକି ଭାବିବି ? ଆଜି ପର୍ଯ୍ୟନ୍ତ କ'ଣ କେବେ ଆପଣ ଦିନକ ପାଇଁ ମଧ୍ୟ ଛୁଟି ନେଇଥିଲେ ? ୟୁ ନିଡ଼େଡ୍ ଏ ଚେଞ୍ଜ । କିନ୍ତୁ ଏଠାରେ ଆପଣଙ୍କ ପାଇଁ ବହୁତ କାମ ଆସି ଯାଇଛି ।" ବାଚାଳ ଶେଖରନର ଦୃଷ୍ଟି ଆକର୍ଷକ ଗ୍ରୀବାକୁ ବାନ୍ଧିକରି ଝୁଲଥିବା ବାଘନଖ ଉପରେ ନିବଦ୍ଧ ହେଇ ଯାଇଥିଲା, କଳୀ ଏହାକୁ ଦେଖି ନେଇଥିଲା ।

ଏକ ଅଜବ ଶ୍ୱାସରୁଦ୍ଧ ଅବସ୍ଥା ତା'ର ଗଳାକୁ ଚିପିବା ପରି ମନେହେଲା । ଏହି ବ୍ୟକ୍ତି ଅଫିସର ଅନ୍ୟ କେତେକ କର୍ମଚାରୀମାନଙ୍କ ପରି କେବେ ତାହାକୁ ଖୋଲିକରି ପ୍ରଣୟ ନିବେଦନ କରିଥିଲେ ହୁଏତ କଳୀର ତାହାର ଉପସ୍ଥିତିରେ ଏମିତି ଶ୍ୱାସରୁଦ୍ଧ ଅବସ୍ଥା ହେଇ ନ ଥାନ୍ତା । କିନ୍ତୁ କିଛି ନ କହିକରି ମଧ୍ୟ ତାହାର ଗୋଟିଏ ଗୋଟିଏ ଅଙ୍ଗକୁ ନିଜର ପ୍ରଖର ଦୃଷ୍ଟିର ଅଦୃଶ୍ୟ ତେଜରେ, ଝାଉଁଳେଇ କରି ରଖି ଦେଇଥିବା ଶ୍ୟାମଳ ଯୁବକ ପରି ଦେଖା ଯାଉଥିବା ସମ୍ମୁଖରେ କପଟୀ ପ୍ରୌଢ଼ର ସମ୍ମୁଖରେ ଲାଜକୁଳୀ ଲତା ହେଇ ସଂକୁଚିତ ହେଇଯାଏ ।

ଶେଖରନ କମ୍ପାନୀର 'ଯେଉଁ ଉଚ୍ଚ ସିଂହାସନରେ ବସିଥିଲେ, ସେହି ଗଦିରେ ଅନ୍ୟକେହି ଭାରତୀୟ ଅଫିସର କେବେ ବସି ନ ଥିଲା । ସେହି ଅସାଧାରଣ ବ୍ୟବସାୟ

ବୁଦ୍ଧି ସମ୍ପନ୍ନ ମସ୍ତିଷ୍କକୁ ସ୍ୱୟଂ କମ୍ପାନୀର ମାଲିକ ନିକୋଲସନ ସାହେବ ଆନ୍ଧ୍ରପ୍ରଦେଶରୁ ଖୋଜିକରି ଆଣିଥିଲେ । ମି. ଶେଖରନ ଆଇ.ସି.ଏସ୍. ଥିଲେ କିନ୍ତୁ ବିବାହିତ ସୁନ୍ଦରୀ ପତ୍ନୀର ଜୀବଦ୍ଦଶାରେ ହିଁ ସେ ଏକ ଅନ୍ୟ ସୁଲୋଚନା ସହିତ ବିବାହ କରିଥିଲେ । ସେହି ପ୍ରେମ ପାଇଁ ତାଙ୍କୁ ବହୁତ ବଡ଼ ମୂଲ୍ୟ ଦେବାକୁ ପଡ଼ିଥିଲା । କିଙ୍ଗ ଏଡ୍‌ୱାର୍ଡ଼ଙ୍କ ପରି ଉଚ୍ଚ ଚାକିରିର ରାଜସିଂହାସନ ତ୍ୟାଗ କରି ସେ ବିଦେଶ ଚାଲି ଯାଇଥିଲେ । ସେହିଠାରେ ତାଙ୍କର ପରିଚୟ ନିକୋଲସନ ସାହେବଙ୍କ ସହିତ ହେଇଥିଲା ଆଉ ସେହି ଇଣ୍ଡିଆର କଳା ଯୁବକର ଚେହେରାରେ ଚମକୁ ଥିବା ଦୁଇଟି ବୁଦ୍ଧିଦୀପ୍ତ ଆଖିର ଆକର୍ଷଣ ତାଙ୍କୁ ବାନ୍ଧିଦେଲା । ସେହି ଦିନଠାରୁ ମି.ଶେଖରନ ସେହି ଚଉକିରେ ବସିଥିଲେ ।

ତାଙ୍କର ଅଫିସରେ ଏକମାତ୍ର କଳୀ ହିଁ ରିସେପସନିଷ୍ଟ ନ ଥିଲା । ଇଂରେଜଙ୍କ ଠାରୁ ଉଜ୍ଜ୍ୱଳ ରଙ୍ଗ ଆଉ ନେଳି ଆଖିବାଲି କନଭେଣ୍ଟ ଶିକ୍ଷିତା ସୁନ୍ଦରୀ ପର୍ବତ-କନ୍ୟା ମିସ୍ ଜୋଶୀ, ଉର୍ବସୀ ପରି ନୃତ୍ୟପ୍ରବୀଣା ରଙ୍ଗ-ରସର ଜାଲ ବୁଣୁଥିବା ଓଡ଼ିଶାର ମିସ୍ ପଟ୍ଟନାଏକ ଯିଏ ରିସେପ୍‌ନିଷ୍ଟ ହେବା ଆଗରୁ ଦେଶ-ବିଦେଶକୁ ଯାଇକରି ନିଜର ଅପୂର୍ବ କୁଚି ପୁଡ଼ି ନୃତ୍ୟରେ ଲକ୍ଷ-ଲକ୍ଷ ବିଦେଶୀଙ୍କ ହୃଦୟ ପ୍ରସନ୍ନ କରି ନିଜ ମୁଠିରେ ବନ୍ଦକରି ଫେରିଥିଲା ଆଉ ତୃତୀୟ ମିସଡ଼ଟା, ଯିଏ ଅକାଶରେ ଉଡ଼ିବାରୁ କ୍ଲାନ୍ତ ହେଇ ସ୍ୱେଚ୍ଛରେ ଗଗନଚାରିଣୀ ଏୟାରହୋଷ୍ଟେସ୍‌ର ପଦ ତ୍ୟାଗକରି ପୃଥିବୀକୁ ଓହ୍ଲେଇ ଆସିଥିଲା । କିନ୍ତୁ ତେବେ ମଧ ବିଶେଷ କାମ ପଡ଼ିଲେ କଲୀ ଉପରେ ଚାପ ପଡ଼େ । ଅନ୍ୟ ତିନୋଟି ସୁର-ସୁନ୍ଦରୀମନେ ଏହିକଥାକୁ ନେଇକରି ପ୍ରାୟ ନାରୀ ସୁଲଭ ଇର୍ଷାଗ୍ନିର ଅଗ୍ନିକଣା ବୁଣିବାକୁ ଲାଗେ, କିନ୍ତୁ ତେବେ ମଧ ମିଷ୍ଟର ଶେଖରନଙ୍କୁ ନଇେକରି କଲୀର ନାମ ଖୋଲା ଖୋଲି ବଦନାମ କରିବା ଦୁଃସାହାସ କାହାରି ମଧ ହେଉ ନ ଥିଲା । ହେଇଥାନ୍ତା ମଧ କେମିତି ? ଆଜି ପର୍ଯ୍ୟନ୍ତ କେବେ କେହି ଦୁହିଁଙ୍କୁ ଏକାନ୍ତରେ ବୁଲିବା ମଧ ତ ଦେଖି ନଥିଲେ ।

"ଆମର କିଛି ବିଦେଶୀ ଅତିଥି ଆସିଛନ୍ତି", ଶେଖରନ ଦୁଇ ହାତ ବାନ୍ଧିକରି ଟେବୁଲ ଉପରେ କହୁଣିଙ୍କୁ ରଖିଦେଲା, "ଅତିଥି କ'ଣ, ଅତିଥିମାନଙ୍କର ପୁଅ ଅଛନ୍ତି, ସାଧାରଣ ସ୍ତରର ଅତିଥି ହେଇଥିଲେ, ତେବେ ଜୋଶୀ ବା ପଟ୍ଟନାଏକଙ୍କୁ ସମର୍ପଣ କରି ଦେଇଥାନ୍ତି, କିନ୍ତୁ ଚାରୋଟି ବାଳକ ଏମିତି ପିତାମାନଙ୍କର ପୁତ୍ର ଅଟନ୍ତି ଯାହାର ଆମ କମ୍ପାନୀ ପାଇଁ ବହୁତ ବଡ଼ ମହତ୍ତ୍ୱପୂର୍ଣ୍ଣ ଅଟେ । ଯେବେ ଯେବେ ସ୍ୱଦେଶ ପାଇଁ ଫରେନ ଏକ୍ସଚେଞ୍ଜ ଆର୍ନ କରିବାର ପ୍ରଶ୍ନ ଉଠେ, ତେବେ ସବୁବେଳେ ମୁଁ ତମକୁ ମନେକରେ, ଏକଥା ହୁଏତ ତମେ ଏହା ଭିତରେ ଜାଣି ଯାଇଥିବ ।" ନିଜର ଅପ୍ରତିଭ ସଙ୍ଗିନୀର ମୁଖମଣ୍ଡଳରେ ଦୃଷ୍ଟିପାତ କରି ଶେଖରନ କୁଆ ପରି ଗ୍ରୀବା ବଙ୍କା କରିଦେଲା ।

ମାଲିକର ମୁଖମଣ୍ଡଳ ଉପରେ ସନ୍ଦେହ ରହିତ ରୂପରେ ଅଙ୍କିତ ପ୍ରଣୟ-କ୍ଷୁଧାକୁ ପଢ଼ିକରି ପ୍ରଶଂସିକା ଆଖି ନୁଆଁଇ ନେଲା ।

"ଇୟେସ୍ ସାର୍", ସେ ପଣତକୁ ସାମ୍ନାକୁ ଟାଣିକରି ବାଘନଖକୁ ଢାଙ୍କିଦେଲା । ଘଡ଼ିର ପେଣ୍ଡୁଲମ୍ ପରି ଝୁଲୁଥିବା ପେଣ୍ଡେଣ୍ଟ ଭୋକିଲା ବାଘର ଦୃଷ୍ଟ କ୍ରମଶଃ ପଛକୁ ଓହ୍ଲେଇ କରି ତା'ର ପୁରା ମେରୁଦଣ୍ଡର ହାଡ଼କୁ ସଲସଲ କରିବାକୁ ଲାଗିଲା ।

"ସେହି ଚାରୋଟି ଉଦ୍ଧତ ବାଳକକୁ ଭଲରେ ତମେହିଁ ସମ୍ଭାଳି ପାରିବ । ବିଦେଶରେ ଜଣାନାହିଁ କେଉଁ ଅପରିପକ୍ୱ ଅଧାଖଣ୍ଡିଆ ଯୋଗୀଠାରୁ ଯୋଗର ଦୀକ୍ଷା ନେଇକରି ଆସିଛନ୍ତି । ସଙ୍ଗରେ ଗୋଟିଏ ଝିଅ ମଧ୍ୟ ଅଛି । ମୁଁ ତ ତାକୁ ମଧ୍ୟ ପ୍ରଥମେ ବାଳକ ବୋଲି ଭାବିଥିଲି । ବେନାରସ ଆଉ କାଠମାଣ୍ଡୁ ଯିବାକୁ ଚାହାନ୍ତି । ତମେ ମିଷ୍ଟର ଟୈବେଲିଅନକୁ ନେଇ କରି ଦୁଇଟିଯାକ ସ୍ଥାନକୁ ଯାଇ ସାରିଛ, ଏମାନଙ୍କୁ ମଧ୍ୟ ଏକାଠି କରି ପଥରଦିନ ଚାଲିଯାଅ ।"

"ଓହୋ, ପୁଣି ଲମ୍ବା ଯାତ୍ରା ।" ମନକୁ ମନ କଲୀ ଶିହରି ଉଠିଲା ।

"ବେଶ୍, ଗୋଟିଏ କଥା ପାଇଁ ତମକୁ ୱାର୍ନ କରିବାକୁ ଚାହୁଁଛି", ମିଷ୍ଟର ଶେଖରନ ଗମ୍ଭୀର ସ୍ୱରରେ ଫିସ୍‌ଫିସ୍ କରିବାକୁ ଲାଗିଲା, "ଏହି ହିପ୍ପୀମାନଙ୍କର ଆଜିକାଲି କୌଣସି ଠିକ୍ ଠିକଣା ରହୁ ନାହିଁ । ବୁଦ୍ଧି ଖରଚ କଲେ ଜାଣିପାରିବ କିଛି ନାହିଁ, ଭାଙ୍ଗ, ଚରସ, ଗଞ୍ଜେଇର ଦମ ଲଗେଇ କରି "ଓମ୍" "ଓମ୍' ଡାକିଲେ ଆଉ ହେଇଗଲେ ଯୋଗୀ । ଯେମିତି ତମକୁ ମଧ୍ୟ କିଛି ବଦଭ୍ୟାସ କରେଇ ନ ଦିଅନ୍ତି, ଟିକିଏ ସାବଧାନ ରହିବ । ଶୁଣିଛି, ଏମିତି ଗୋଲି ପକେଟରେ ନେଇ ବୁଲାବୁଲି କରନ୍ତି ଯେ ଥରେ ଖୁଏଇ ଦେଲେ କୁଆଡେ ମୁହଁରେ ଲାଗି ରହେ। ମାନେ ନିଜର ଲାଞ୍ଜ କଟିଛି ତ ସମସ୍ତଙ୍କ ଲାଞ୍ଜ ସଫା କରି ଦିଏ ।"

ପୁଣି ନିଜର ରସିକତାରେ ସ୍ୱୟଂ ପ୍ରସନ୍ନ ହେଇକରି ଶେଖରନ କିଛି ସମୟ ପର୍ଯ୍ୟନ୍ତ ହସିବାକୁ ଲାଗିଲା ।

"ଆପଣ ନିଶ୍ଚିନ୍ତ ରହନ୍ତୁ ସାର, ତେବେ ମୁଁ ଯାଏ ?" ସେ ଉଠିଗଲା । ଶେଖରନ୍ କ୍ଷଣକ ପର୍ଯ୍ୟନ୍ତ କିଛି କହି ପାରିଲେ ନାହିଁ । ଏକ ନାରୀ ମଧ୍ୟରେ ବିଧାତା କେତେ ନାରୀମାନଙ୍କର ବିଭିନ୍ନ ରୂପ ଭର୍ତ୍ତିକରି ରଖି ଦେଇଛି । ତାଠାରେ କେବେ କୌଣସି ରାଣୀ ପରି ତେଜସ୍ୱୀ ଗୌରବ ଅଛି, ତ କେବେ ଗରିବ ସେବିକାର ସ୍ନେହପୂର୍ଣ୍ଣ ସେବିକା ଭାବ । କେବେ ସେ ଲାବଣ୍ୟମୟୀ ଶ୍ରେଷ୍ଠ ଶୃଙ୍ଗାରରେ ନିଜକୁ ଶୃଙ୍ଗାରିତ କରି ସମ୍ମୋହନ କୌଶଳର ପରାକାଷ୍ଠା ପ୍ରସ୍ତୁତ କରିଉଠେ ଆଉ କେବେ ସ୍କର୍ଟ-ବ୍ଲାଉଜରେ ସ୍କୁଲର ବାଳିକା ପରି ସଜବାଜ ହେଇ ଅଫିସ ଚାଲିଆସେ ।

"ତମର ଏୟାର ପେସେଜ ବୁକ୍ ହେଇଯିବ । ମିସ୍ ମଜୁମ୍‌ଦାର, ପୁରା ମାସେ ତମକୁ ବାହାରେ ରହିବାକୁ ପଡ଼ିବ । ଏହା ମଧ୍ୟରେ କମ୍ପାନୀର ଟଙ୍କା ତମେ ନିଜ ହାତର ମଇଳା ଭାବିବ", ମି.ଶେଖରନ୍ କିଛିକ୍ଷଣର ନିରବତା ନିଜେହିଁ ଭାଙ୍ଗିଲେ ।

"ଇଏସ୍ ସାର, ଆପଣଙ୍କର ମୋ ଉପରେ ସବୁବେଳେ ବହୁତ କୃପା ରହିଛି ।" ସେ ବାହାରକୁ ଚାଲି ଆସିଲା ଆଉ କ୍ଷଣକ ପାଇଁ ରହିଯାଇ ଲଲାଟର ଝାଳ ପୋଛିବାକୁ ଲାଗିଲା ।

ବାପରେ ବାପ ! କହିବ କିଛି ନାହିଁ, କିନ୍ତୁ ଆଖି ଆଖିରେ ତାହାର ସମସ୍ତ ପୋଷାକ ଖୋଲିକରି ରଖି ଦେବ ।

"ହାଲୋ କଲୀ", ପଟ୍ଟନାଏକ ତାହାକୁ ହାତ ଧରିକରି ଜାଫରୀର ଗୋଟିଏ କୋଣକୁ ଟାଣିନେଲା ।

"ଫଶିଗଲୁ ନା ଜାଲରେ । ମୁଁ ଜାଣି ମଧ ପାରିଲି ନାହିଁ ଯେ ତୁ ଫେରି ଆସିଛୁ । ନହେଲେ ମୁଁ ପ୍ରଥମରୁ ସାବଧାନ କରି ଦେଇଥାନ୍ତି । ଆମ ତିନିଜଣଙ୍କୁ ପାଳିକରି ଏହି ମାୟାବି ଦଳକୁ ସମର୍ପଣ କରାଯାଇଥିଲା । କିନ୍ତୁ ଯେଉଁ ହୋଟେଲ୍‌ରେ ଏହି ପଞ୍ଚୁ ପାଣ୍ଡବ ନିଜର ଦ୍ରୌପଦୀକୁ ନେଇକରି ଆଶ୍ରୟ ପାଇଥିଲେ, ସେ ମୋର ଭିଣେଇଙ୍କର । ପିଏଇ-ପିଏଇ ପ୍ରଥମ ଦିନରେ ହିଁ ବାଳିକାଟି ଏମିତି ପିଲାଙ୍କ ପରି ଦୁଷ୍ଟାମି ଆରମ୍ଭ କରିଦେଲା ଯେ, ମି.ଶେଖରନ ରାତାରାତି ନିଜେ ଏଠାକୁ ଚାଲି ଆସିଲେ । ମୀରାକୁ ତ ପୁରାପୁରି ବଡ଼ ଜମିଦାର କରି ଦେଇଥିଲା ଭୋକିଲା ସିଂହଟି, ଯୋଗୀ ଦ୍ୱାରା ନୁହଁ, କୌଣସି ପ୍ରବେଶ କରିଥିବା ଭୋଗୀଠାରୁ ଦୀକ୍ଷା ନେଇକରି ଆସିଛନ୍ତି ଏଇ ବଦମାସଗୁଡ଼ିକ । ଏଇଥି ପାଇଁ ଆମେ ତିନିଜଣ ମନା କରି ଦେଇଥିଲୁ । ଆମେ ରିସେପ୍‌ସିନିଷ୍ଟ ଅବଶ୍ୟ ଏଠାରେ, କିନ୍ତୁ ଏମିତି ରିସେପ୍‌ସନ୍‌ର ଆମର ଅଭ୍ୟାସ ନାହିଁ । "ଉଇ ଅଲ୍ କମଫ୍ରମ ଗୁଡ୍ ଫେମିଲିଜ ।" କ'ଣ ଭାବିଛି ଏହି ଶେଖରନ ।"

"ମୋର ଚିନ୍ତା କରନାହିଁ ବାସବୀ", କଲୀ ବଟୁଆ ଖୋଲିକରି ଛୋଟ ଦର୍ପଣରେ ମ୍ଳାନ ପଡ଼ି ଯାଇଥିବା ଲିପ୍‌ଷ୍ଟିକର ଧୂଅଁଳିଆ ରେଖାକୁ ଠିକ୍‌କରି ଦେଲା ଏବଂ ଚାଲିବାକୁ ଲାଗିଲା । "ମୁଁ ମୋର ରକ୍ଷଣାବେକ୍ଷଣ ଖୁବ୍ ଭଲଭାବରେ କରି ପାରିବି । ମତେ ମାଲିକ କରିଲାବାଲା ବ୍ୟକ୍ତି ହୁଏତ ବର୍ତ୍ତମାନ ଜନ୍ମଗ୍ରହଣ କରିନାହିଁ ।" କଲୀ ବଟୁଆକୁ ଫଟ୍‌କରି ବନ୍ଦ୍ କଲା, ସହଯୋଗିନୀର କାନ୍ଧ ଉପରେ ହାଲୁକା ଆଶ୍ୱାସନା ପୂର୍ଣ୍ଣ ଥାପୁଡ଼େଇ ଦେଲା ଆଉ ବାହାରକୁ ଚାଲିଗଲା ।

ମିସ୍ ପଟ୍ଟନାଏକ ମୁଣ୍ଡରୁ ପାଦ ପର୍ଯ୍ୟନ୍ତ ଜଳି ଉଠିଲା । କଲୀ ସେହି ଫୁଟିଲା ଆଖିକୁ ଦେଖିପାରି ନାହିଁ । କେତେଥର ଆଗରୁ ମଧ ସେ ତାହା ଆଡ଼କୁ ବନ୍ଧୁତାର ହାତ ବଢ଼େଇଥିଲା, କିନ୍ତୁ ପ୍ରତ୍ୟେକ ଥର ସେ ତାକୁ ଏମିତି ଛୋଟ କରିଦେଇ ଲିପ୍‌ଷ୍ଟିକକୁ ଠିକ୍ କରିଦେଇ ଚାଲି ଯାଇଥିଲା । ଠିକ୍ ଅଛି ସ୍ୱୟଂ ଭୋଗିବ । ତାହାର କର୍ତ୍ତବ୍ୟ ଥିଲା, ତାକୁ ଆଗରୁ ଜଣେଇ ଦେବା । "ବୁଝିଲେ ବୁଝ ନହେଲେ ଧକ୍କା ଖାଅ ।"

କଲୀ ଘରକୁ ଫେରିଲାବେଳେ ଅନ୍ଧାର ଛିଡ଼ା ହେଇଥିଲା ।

"କେତେଥର ତୋର କବାଟକୁ ଦେଖିଗଲି । ତୋର ତାଲା ଯେବେ ଦେଖ ଲାଗିଛି ।"

"କାହିଁକି ଅସ୍ଥିର ହେଉଛ ଅମ୍ମା", କଲୀ ଆଗକୁ ଆସିକରି ବହୁତ ପ୍ରେମରେ ଦୁଇବାହୁ ଅମ୍ମାର ବେକରେ ରଖିଲା "ପଅରଦିନ ଠାରୁ ଏହି ତାଲା ପୁଣି ପୁରା ଏକ ମାସ ପାଇଁ ଝୁଲୁଥିବ ।"

"କାହିଁକି, ପୁଣି କେଉଁଠିକୁ ଯାଉଛୁ ନା କ'ଣ ?"

"ଏଥର ତ ସତରେ ଉଡ଼ିକରି ଯିବି ଅମ୍ମା, ପ୍ରଥମେ ନେପାଳ ତା'ପରେ ବେନାରସ୍ ।"

ସରଳ ଅମ୍ମାର ଆଖି ଚମକି ଉଠିଲା ! "ନେପାଳ ଯାଉଛୁ ତୁ ? କେମିତି ଭାଗ୍ୟବାନରେ ତୁ । ଏଠାରେ ବର୍ଷ ବର୍ଷ ହେଇଗଲା କହି କହି, ପ୍ରବୀରର ବାପାଙ୍କୁ କେତେଥର କହିସାରିଛି – ପଶୁପତିନାଥଙ୍କର ଦର୍ଶନ କରେଇ ଦିଅ ।"

"ଚାଲ ନା ମୋ ସହିତ, ପଅରଦିନ ତମକୁ ଦର୍ଶନ କରେଇ ଦେବି ।"

"ପ୍ରଥମେ ଭିତରକୁ ଆ । ଆଜି ତୋର ପସନ୍ଦର କଲରା ରାନ୍ଧିଛି । ସକାଳରୁ ବସିରହିଛି", ଅମ୍ମା ତାକୁ ଭିତରକୁ ଟାଣି ନେଇଗଲା । ପ୍ରଥମେ କିଛି ସଂକୋଚ କରି କଲୀ ଆଗେଇ ଗଲା, କିନ୍ତୁ ଗୃହର ଜନହୀନ ଶୂନ୍ୟତାର ଆହ୍ୱାନରେ ସେ ଅଳ୍ପକ୍ଷଣ ପରେ ଆଶ୍ୱସ୍ତ ହେଇ ବହୁତ ନିର୍ଭିକତାରେ ପାଦ ପକଉ ଥିବା ଅମ୍ମା ପଛରେ ଚାଲିଲା ଆଉ ରନ୍ଧା ଘରରେ ପହଞ୍ଚି ପିଢ଼ା ଟାଣିକରି ବସି ପଡ଼ିଲା ।

"ଆରେ ଆଜି କ'ଣ ଘରରୁ ସମସ୍ତଙ୍କୁ ବାହାର କରି ଦେଇଛ, ଅମ୍ମା ?" ହସିକରି କଲୀ ଦାମି ସାଢ଼ିକୁ ଆଣ୍ଠୁ ଭିତରେ ଚାପି ଦେଲା ।

"ଆରେ, ଉଠ, ଜଣାନାହିଁ କେମିତି ବାଳିକା ଅଟେ, ଶହେ ଦେଢ଼ଶହର ସାଢ଼ି ପିନ୍ଧିକରି ଫଟ୍‌କରି ଧୁଆ ହୋଇନଥିବା ପଟା ଉପରେ ବସିଗଲା । ଜା, ଉଠିକରି ଖାଇବା ଘରେ ବସିବୁ, ମୁଁ ପରଠା ଗରମ କରି ଆଣୁଛି ।"

"ଆରେ, ଛାଡ଼ ନା ଅମ୍ମା, ଏଠାରେ ଭୋକରେ ଅନ୍ତନାଡ଼ି ବାହାରିବାକୁ ବସିଲାଣି । ଏବେ ପେଟରେ ହିଁ ପରଠା ଗରମ ହେବ । ଏଇଠି ଦିଅ ।" ଅମ୍ମାର ହାତରୁ ଗିନା ଛଡ଼େଇ ନେଇ କଲୀ ପରଠାରେ କଲରା ଦେଇ ରୋଲ କରି ଦେଲା ଆଉ ନିଜର ସମସ୍ତ ନିୟମ-କାନୁନ ଭୁଲିକରି ଗପାଗପ ଖାଇବାକୁ ଲାଗିଲା । ସେ ଭୁଲି ଯାଇଥିଲା ଯେ ସେ ଆଜି ସକାଳେ ଖାଲି ଗୋଟିଏ କପ୍ ଚା'ପିଇକରି ଘରୁ ବାହାରି ଯାଇଥିଲା ।

ଶେଖରନର ଭୋକିଲା ଦୃଷ୍ଟି ତାହାର ପିଠିର ସୌନ୍ଦର୍ଯ୍ୟକୁ କେବଳ ଦେଖିବାକୁ ପାଇଲା, କିନ୍ତୁ କେହି ତାହାର ଭୋକିଲା ଆତ୍ମାକୁ କେବେ ଦେଖିନାହିଁ । କ'ଣ କେବେ ହେଲେ କେହି ତା'ର ଅନ୍ତରର ବ୍ୟଥାକୁ ଜାଣି ପାରିବ ନାହିଁ ? କେହି ମୁଗ୍ଧ ଦୃଷ୍ଟିରେ

ତାହାର ବଡ଼ ବଡ଼ ଆଖିକୁ ହିଁ ଦେଖିବାରେ ଲାଗିଥାଏ, କେହି ନିର୍ଲ୍ଲଜ ଦୃଷ୍ଟିର ଅଦୃଶ୍ୟ ବର୍ଚ୍ଛା ତା'ର ସୁଡ଼ୌଲ ବକ୍ଷକୁ ଆରପାରିକୁ ଭେଦକରି ତା'ର ବେକଲେସ ଅନ୍ତର୍ବାସର ବନ୍ଧନ ଶିଥିଳ କରିଦିଏ । ଯେତେହିଁ ଲୋଲୁପ ପୁରୁଷ, ସେତେହିଁ ବିଚିତ୍ର ବିଭିନ୍ନ ଦୃଷ୍ଟି । କିନ୍ତୁ କ'ଣ ଆଜି ପର୍ଯ୍ୟନ୍ତ ଏକ ଦୃଷ୍ଟିରେ ସେ ଖାଣ୍ଟି ନିଶ୍ଚଳ ସ୍ନେହର ଏମିତି ଝଲକ ପାଇପାରିଛି ?

ତାଓ୍ୱା ରଖିକରି ଅମ୍ମା ତାଠାରୁ ଗିନା ଛଡ଼େଇ କରି ପରଠା ଗରମ କରିବାକୁ ଲାଗିଲାରୁ କଲୀର ଆଖି ଛଳଛଳ ହେଇଗଲା । ତାରି ଆଡ଼କୁ ପିଠିକରି ଅମ୍ମା ସ୍ୱୟଂହିଁ କହିବାକୁ ଲାଗିଲା, "ଆଜି ସବୁ ଆଲିପୁର ଯାଇଥିଲେ । ସେଠାରେ ପାଣ୍ଡେ ମହାଶୟ ବହୁତ ଆଗ୍ରହରେ ସମସ୍ତଙ୍କୁ ଅଟକେଇ ଦେଲା । ଜୟା, ମାୟା ତାଙ୍କର ଝିଅମାନଙ୍କ ସହିତ ଖେଳିବୁଲି ପାଠ ପଢ଼ି ବଡ଼ ହେଇଛନ୍ତି, ବହୁତ ସ୍ନେହ କରନ୍ତି ସେମାନେ । କହିବାକୁ ଲାଗିଲେ, ପାହାଡ଼ର ଦୁଇ-ତିନୋଟି ବାହାଘରର ଗହଣା ତିଆରି କରେଇଛି, ତାକୁ ଦେଖେଇବି । ମୁଁ ତୋର ବାପାଙ୍କ ସହିତ ଘରକୁ ଚାଲି ଆସିଲି । ପିଲାମାନେ ରାତିର ଖାଇବା ସେଇଠି ଖାଇପିଇ କରି ଫେରିବେ । ଏଇଥିପାଇଁ ତ ଦୁଧ ମିଶେଇ ଚକଟି ଅଟାର ପରଠା କଲରା ତିଆରି କରି ରଖି ଦେଇଥିଲି । କେମିତି ହେଇଛିରେ କଲରା, ତୁ ତ କିଛି କହିଲୁ ନାହିଁ ।"

"ବା ବଢ଼ିଆ ଜିନିଷ ଖାଇବା ମଝିରେ କିଛି କୁହାଯାଇ ପାରେ ।" କଲୀ ଟାକରା ଫୁଟେଇ ଲେମ୍ବୁର ଆଚାର ମୁହଁରେ ପକେଇ ଦେଲା । "ଖାଇବା ଲୋକ ଚୁପଚାପ୍ ଖାଇ ଚାଲିଯିବ, ତାହେଲେ ବୁଝିନେବ ଅମ୍ମା, ଜିନିଷ ଏମିତି-ସେମିତି ତିଆର ହେଇନାହିଁ । ସେ ଯଦି ଭଲ ତିଆରି ହେଇନାହିଁ ତେବେ ଖାଇଲାବାଲା ତାକୁ ଶ୍ରୁତି ମଧୁର ସ୍ୱାଦରେ ତାକୁ ସ୍ୱାଦିଷ୍ଟ କରିଦଏ ।"

"ବେଶ, କଥା କହିବାତ କେହି ତୋଠାରୁ ଶିଖିବ ।"

"ନା ଅମ୍ମା, କଥା ତିଆରି କରୁନାହିଁ । ସତ୍‌ରେ, ଜଣା ନାହିଁ କ'ଣ ଯାଦୁ ଅଛି ତମର ହାତରେ, ଏମିତି କଲରାର ଜନ୍ମରୁଥିବା ପିତା ଭାବକୁ ଦୂରକରି ଦେଉଛ – ମୋର ମନେ ହେଉଛି ସବୁ କଲରା ହୁଏତ ମୁଁ ହିଁ ଖାଇଗଲି । ଦେଖେ ତମପାଇଁ କିଛି ରହିଛି କି ନାହିଁ ?"

ଉହୁଙ୍କି କରି ପଥର ବାସନ ଭିତରକୁ ଝୁଙ୍କି ପଡୁଥିବା କଲୀକୁ ଅମ୍ମା ସ୍ନେହରେ ଦୂରକୁ ଠେଲିଦେଲା । "ଘୁଞ୍ଚି ଯା, ଦେଖ ଛୁଇଁ ଦେ ନାହିଁ ।"

"କାହିଁକି ଅମ୍ମା", କଲୀର ମୁହଁ ଶୁଖିଗଲା । "ମୁଁ କ'ଣ ଖ୍ରୀଷ୍ଟିଆନ ?"

"ନା ନା ଝିଅ, ତୁ ବା କାହିଁକି ଖ୍ରୀଷ୍ଟିଆନ ହେବୁ । କିନ୍ତୁ ମୁଁ ତ ଜୟା, ମାୟାର ଛୁଆଁ ମଧ ଖାଏ ନାହିଁ । ଏହି କଥାକୁ ନେଇକରି ପ୍ରବୀର ସହିତ ପ୍ରତ୍ୟେକଦିନ ଝଗଡ଼ା

ହୁଏ । ଏବେ ଲକ୍ଷେଥର ମୁଣ୍ଡ ବାଡ଼େଇଲେ ମଧ୍ୟ, ତାକୁ କିଏ କଥାରେ ହରେଇ ପାରିବ । ଚାଲ, ହାତ ଧୋଇକରି ଭିତରକୁ ଚାଲ । ଏଠାରେ ତ ଚୁହ୍ଲି ହେରିକା ଭିଜି ରହିଛି ।"

ଅମ୍ମା ତାକୁ ନେଇ ବଡ଼ ଝିଅର ବଖରାରେ ହିଁ ବସିଗଲା ।

## ଚଉଦ

ଅସ୍ତ-ବ୍ୟସ୍ତ ବଖରାର ଶୋଭା ଦେଖିକରି ହିଁ କଲୀ ବୁଝି ଯାଇଥିଲା ଯେ ଗୃହ-ସ୍ୱାମିନୀ ବଡ଼ ହଡ଼ବଡ଼େଇ କରିହିଁ ବାହାରିକରି ଯାଇଛି । ଗୋଟିଏ ପଲଙ୍କ ଉପରେ ସିନେମାର ପତ୍ରିକାଗୁଡ଼ିକ ଛିନ୍‌ଛତର ହେଇପଡ଼ିଛି, ଦ୍ୱିତୀୟ ପଲଙ୍କରେ ପଲଙ୍କର ବିଛଣା ଚଦର ମୋଡ଼ିମାଡ଼ି ହେଇ ପଡ଼ିଛି ଏକ କୋଣରେ ଉପରକୁ ଉଠି ଯାଇଥିଲା । ତାହାରି ଉପରେ ଓହ୍ଲେଇ କରି ଫିଙ୍ଗି ଦେଇଥିବା ସାଡ଼ି-ବ୍ଲାଉଜ, ଫ୍ରକ୍ ବୁଣି ହେଇଥିଲା ।

"ଏତେ ବଡ଼ ହେଇଯାଇଛି ଜୟା, କିନ୍ତୁ ବ୍ୟବହାର ଟିକିଏ ହେଲେ ଶିଖିପାରି ନାହିଁ । କିଏ କହିବ ସେ ଇଂରେଜୀ ସ୍କୁଲରେ ପଢ଼ିଛି ।" ଅମ୍ମା ଅପରିଷ୍କୃତ ଝିଅର ଅସ୍ତ-ବ୍ୟସ୍ତ ବଖରାସାରା ବିଞ୍ଚିହେଇ ପଡ଼ିଥିବା ଜିନିଷ ପତ୍ରକୁ ଏକାଠି କରି ଲଜ୍ଜିତ ସ୍ୱରରେ ସ୍ୱୟଂ ହିଁ କୈଫିୟତ ଦେବାକୁ ଲାଗିଲା । "କରିବ ମଧ୍ୟ କ'ଣ, ମନ-ଚିତ୍ତ ଠିକ୍‌ଥିଲେ କାମରେ ମନଲାଗେ । ଜୟା କ'ଣ ଏମିତି ଥିଲା ? ଏବେ ତତେ କ'ଣ କହିବି ଝିଅ, ଛୁଇଁଦେଲେ ମଇଳା ହେଇ ଯାଉଥିଲା ବାଳିକା । ପିନ୍ଧାପିନ୍ଧି କରି ବଙ୍ଗାଳିମାନଙ୍କ ସହିତ ବସା-ଉଠା କଲାବେଳେ ସମସ୍ତେ ତାକୁ କାଶ୍ମିରୀ ଭାବୁଥିଲେ ।"

ଅମ୍ମାର ଗଳା ଭାରି ହେଇଗଲା । ବୁଦ୍ଧିମତି କଲୀ କିଛି ପଚାରିଲା ନାହିଁ, କିନ୍ତୁ ସେହିଦିନ କଷ୍ଟରେ ପାଇଥିବା ଏକାନ୍ତରେ କିଛିକ୍ଷଣ ଭିତରେ ଅମ୍ମା ତା ସାମ୍ନାରେ ସବୁ କିଛି କଥା କହିଦେଲା । ଜୟାର ଅବସ୍ଥାର ମୋଡ଼ ନେଲା ବଡ଼ କୁଆଁଇର ନିର୍ଲଜ୍ଜତା-ପୂର୍ଣ୍ଣ ଆଚରଣକୁ ନେଇକରି କେତେଥର ଜଳିଉଠି ଅଗ୍ନିଶିଖା ପଡ଼ି ଗୃହଯୁଦ୍ଧର ଆଗ୍ନିକଣା, କିଛି କଲୀଠାରୁ ଲୁଚି ରହିଲା ନାହିଁ ।

ସେ ସଂକୁଚିତ ହେଇକରି ଅନ୍ୟମନସ୍କ ପରି ହେଇଗଲା । ଏହା ହୁଏତ ଅମ୍ମା ଅନୁମାନ କରିପାରିଲା ।

"ଆରେ ତୁ କ'ଣ ପର ଝିଅ, କେବେଠାରୁ ତୋର ବାଟକୁ ଅନେଇ ବସିଥିଲି ଯେ ତୁ ଆସିଲେ ଦୁଇଘଣ୍ଟା ତତେ କହିକରି ମନକୁ ହାଲୁକା କରିବି । ଦୁହେଁ ମୋର ପେଟର ବୈଧ ସହୋଦର ଝିଅ, କିନ୍ତୁ ଦୁହିଁଙ୍କର ଯେମିତି ମୋଠାରୁ ବିଶ୍ୱାସ ଉଠିଗଲାଣି ।"

"ମାୟା କହୁଛି ଯେ ମୁଁ ଜୟାର ପକ୍ଷ ନେଉଛି ଆଉ ଜୟା କହୁଛି, ମୁଁ ତୁମକୁ ବୋଝ ହେଇ ଗଲିଣି । ଏବେ ତୁହିଁ କହ ଝିଅ, କେବେ ମହିଷର ସିଂଘ ତାକୁ ବୋଝ ହୁଏ ?"

କାନିରେ ଆଖି ପୋଛି ଅମ୍ମା ଝରକା ବନ୍ଦ କରିଦେଲା । ବାହାରେ ବାପା ବସି କିଛି ପଢୁଥିଲେ । ହୁଏତ କିଛି ଶୁଣି ଦେବେ, ଆଉ ଶୁଣି ସାରିଲାପରେ ସେହି ଅଳ୍ପଭାଷୀ ଅନୁଭବୀ ଗୃହସ୍ୱାମୀ କେବେ ହେଲେ ଅମ୍ମାଙ୍କ ଘରର ରହସ୍ୟ ଜଣେ ଅଜଣା ବିଭୀଷଣକୁ କହି ଦେବାପାଇଁ କ୍ଷମା କରିପାରିବେ ନାହିଁ, ଏହା କଲୀ ଭଲ ଭାବରେ ବୁଝିଥିଲା । କିନ୍ତୁ ସେ କ'ଣ ସ୍ୱଇଚ୍ଛାରେ ହିଁ ବିଭୀଷଣ ହେଇଥିଲା ?

"ଜୟାର ମନ ତ ଭାବରେ ଭରି ରହିଛି ଝିଅ," ଅମ୍ମା କହିବାକୁ ଲାଗିଲା, "ଟିକିଏ କେହି ହଲେଇ ଦେଲେ ଘା'ରେ ଯନ୍ତ୍ରଣା ହୁଏ ! ମାୟାକୁ ଲକ୍ଷେଥର ବୁଝେଇଲେ ମଧ୍ୟ ତୁ ହିଁ ଚୁପ ରହି ଯା, ହେଲେ ମାନିଲେ ହେବ ନା ! ମୁଁ ଏଲାହାବାଦ ଗଲି, ଶୁଣିଲି, ମାୟା ତା'ର ଭିଣେଇକୁ କିଁଛି ଏମିତି ହିଁ ତୁଚ୍ଛକଥା କହିଦେଲା ଲଜ୍ୟା ଲାଗୁନାହିଁ ଶ୍ୱଶୁର ଘରେ ପଡ଼ି ପଡ଼ି ରୋଟି ଖାଉଛ । ବେଶ, ଜିନିଷ ପତ୍ର ବନ୍ଧାବନ୍ଧି କରି ଜୟୁଲୀ ବାହାରି ପଡ଼ିଲା । ଷ୍ଟେସନରୁ ବୁଝେଇ ସୁଝେଇ ତୋର ବାପା ଫେରେଇ ଆଣିଲେ । ମୋର ଭାଗ୍ୟହିଁ ଖରାପ ଅଟେ । ଆଉ କ'ଣ, ଛୋଟ ବହୁପାଇଁ ଏତେ କଲି, ସେ ଆମର ମୁହଁରେ କଳା ବୋଳିଦେଇ ଚାଲିଗଲା । ପ୍ରବୀରର ବାହା ନହେବାର ଜିଦ ଭାଙ୍ଗି ଯାଇଥାନ୍ତା, ତାହେଲେ କିଛି ଅଶୁଭ କଟି ଯାଇଥାନ୍ତା । ଏବେ ଏହି ଅଲୀପୁରର ପାଣ୍ଡେ ମହାଶୟ ନିଜର ଚାରି ଝିଅଙ୍କୁ ଏହା ସାମ୍ନାରେ ରଖି ଦେଇଥିଲେ, ଭାଇ ଦେଖ, ଯିଏ ପସନ୍ଦ ହେଉଛି ତାରି ସହିତ ତୋର ବାହାଘର ହେଇଯାଉ । ଏମିତି ସତରେ କେହି କରିପାରେ ?"

ସେହି ଉଦାର ପିତାର ପୂର୍ଣ୍ଣ ପରିଚୟ ପାଇବାକୁ କଲୀର ଭୀଷଣ ଇଚ୍ଛା ହେଲା ।

କ'ଣ ଉଦାର ପାଣ୍ଡେ ମହାଶୟଙ୍କର ଚାରିଟି ଅବିବାହିତ ପରୀ, ଏବେ ମଧ୍ୟ ପୁଅ ସାମ୍ନାରେ ହାତ ବାନ୍ଧି ପେରେଡ଼ କରୁଥିବେ ?

କ'ଣ କରିବି । ତାହାର ମୁଣ୍ଡ କାହିଁକି ବଥଉ ଥିଲା ? କିନ୍ତୁ କିଛିକ୍ଷଣ ଚୁପ ରହିକରି ମଧ୍ୟ ସେ କଣ୍ଠରେ ଅଟକି ଥିବା ପ୍ରଶ୍ନକୁ ଅଟକେଇ ପାରିଲା ନାହିଁ ।

"ତେବେ କ'ଣ ଚାରି ଜଣଙ୍କ ଭିତରୁ କାହାକୁ ପସନ୍ଦ ହେଲା ନାହିଁ ?"

"ଆରେ କ'ଣ ଚାରିଜଣ ଘରେ ରହିଛନ୍ତି ପାଗଳି ।" ଅମ୍ମା କଟା ହେଇଥିବା ଗୁଆର କଟା ଖଣ୍ଡକୁ ନିରର୍ଥକ କାଟିବାକୁ ଲାଗିଲେ ।

"ଚୁନ୍ନୀ, ମୁନ୍ନୀ, ସୁନ୍ନୀ ତ ଜଣକ ପରେ ଜଣେ ଭଲ ଘରକୁ ଚାଲିଗଲେ । ଏମିତି ଗ୍ରହ ଥିଲା, ସୁନା, ତାଙ୍କର ଝିଅମାନଙ୍କର ଯେ ଯେ ଯେଉଁଠିକୁ ଯାଇଛି ସେଠାରେ ଶାସନ କରେ । କାହାର ବୁଧାଦିତ୍ୟ ଯୋଗ, ତ କାହାର କେନ୍ଦ୍ରସ୍ଥ ବୃହସ୍ପତି । ଏବେ ସବୁଠାରୁ ଛୋଟ କୁନ୍ନୀ ରହିଛି । ଏମିତି ସୁନ୍ଦରୀ ଚିତ୍ର ଅଟେ ଯେ ଭୋକ ଉଡ଼ିଯିବ ତାକୁ ଦେଖିକରି । ଏବେ ତ ଦେଖିକରି ଫେରିଛି । ରଙ୍ଗ ନକ୍ସା ସବୁ ଗୋଟାକରୁ ଗୋଟିଏ ଅଧିକ ସୁନ୍ଦର । ବେଶ୍ ଟିକିଏ ମୋଟି । ଅସଲରେ ମୁଁ ଆଜି ବହୁତ କଷ୍ଟରେ ବୁଝେଇ ସୁଝେଇ କରି ତାକୁ

ନେଇ ଯାଇଥିଲି । ପାଣ୍ଡେ ମହାଶୟଙ୍କର ବଡ଼ ଆଗ୍ରହ ଥିଲା ଯେ ଥରେ କୁନ୍ନୀ ଦେଖୁ ।"

"ତେବେ କ'ଣ ଦେଖିଲା ?" କଲୀର ଏବେ ଚତୁର୍ଥ ପାଣ୍ଡେ ସୁତାର ସ୍ୱୟଂବରର ବ୍ୟୁହ ରଚନାରେ ବହୁତ ଆନନ୍ଦ ହେଉଥିଲା ।

"ଦେଖିଲା ନାହିଁ ।" ଅମ୍ମା କାନିକୁ ମଫଲର ପରି କରି ଗଳାରେ ଗୁଡ଼େଇ କରି ବସିଗଲା ।

"ଆମେ ସବୁ ଗୋଟିଏ ବଖରାରେ ବସି ରହିଲୁ । କୁନ୍ନୀ ଯେମିତି ସେମିତି ବଙ୍ଗାଳି ବାଳିକାଙ୍କ ପରି ରବୀନ୍ଦ୍ର ସଂଗୀତ ଗାଇକରି ଶୁଣେଇଲା । ସ୍ୱଞ୍ଜ ରସଗୋଲା ତିଆରି କରି ଆମକୁ ଖୁଏଇଲେ, କିନ୍ତୁ ଇଏ ଏକ କପ ଚା ମଧ ପିଇଲା ନାହିଁ । ଲଜ୍ଜାରେ ମୋର ମୁଣ୍ଡ ନଇଁ ଗଲା । କ'ଣ ଭାବୁଥିବେ ସେହି ଲୋକମାନେ । ଝିଅଟି ପୁରା ଗୀତ ଗାଇ ମଧ ପାରି ନ ଥିଲା ମଝିରୁ ଉଠିକରି ଚାଲିଗଲା ଅଲାଜୁକ । କହିବାକୁ ଲାଗିଲା, 'ମତେ କୌଣସି ବନ୍ଧୁ ସହିତ ଦେଖା କରିବାକୁ ଯିବାକୁ ହେବ ।' ସେତେ ବେଳଠାରୁ ଅନୁପସ୍ଥିତ ।"

କଲୀ ହଠାତ୍ କିଛି ନକହି ଉଠିଗଲା । ଛାତଥିବା ଫାଟକ ପାଖକୁ ଆସୁଥିବା କାରର ପରିଚିତ ହର୍ନ ବୋଧହୁଏ ସେ ଶୁଣି ପାରିଥିଲା । ଜଣାନାହିଁ ତାକୁ ଏକାନ୍ତରେ ଅମ୍ମା ସହିତ ଫୁସୁର-ଫୁସୁର କରୁଥିବା ଦେଖିକରି ଗୃହର ବିପକ୍ଷୀ ସଦସ୍ୟ ତା ବିଷୟରେ କ'ଣ ଭାବିବେ ।

"ମୁଁ ଯାଉଛି ଅମ୍ମା, ସକାଳରୁ ଗୋଟିଏ ଜାଗାରେ ସ୍ଥିର ହେଇକରି ଦୁଇ ଘଣ୍ଟା ବସି ପାରି ନାହିଁ । ଆପଣ ଏମିତି ସ୍ନେହରେ ଡାକିକରି ଖୁଏଇ ନଥିଲେ, ହୁଏତ ଭୋକିଲା ଶୋଇ ପଡ଼ିଥାନ୍ତି ।" ସେ ହସିଲା, କିନ୍ତୁ ତା'ର ଥରୁଥିବା ଓଠର ଦୁଇ ଅସ୍ଥିର କୋଣକୁ ଅମ୍ମା ଦେଖି ନେଇଥିଲା ।

ଆଗେଇ ଯାଇକରି ସେ ତା'ର ଦୁଇଟି ଯାକ ମଣିବନ୍ଧ ଧରିଲେ ।

ବାହାରରୁ ଏମିତି ଆନନ୍ଦ ଦେଖାଯାଉଥିବା ବାଳିକାର ଏତେ ବଡ଼ ସଂସାରରେ କ'ଣ କେଉଁଠି କେହି ଆତ୍ମୀୟ ନଥିବ ?

ଥରେ ବହୁତ ସଂକୋଚରେ ସେ ଅଜଣା କୁଳ ଗୋତ୍ରର ମାତା-ପିତାଙ୍କର ଘର ଠିକଣା ପଚାରିବାର ଚେଷ୍ଟା କରି ମଧ ଥିଲେ, କିନ୍ତୁ ହସିକରି ସେହି ରହସ୍ୟମୟୀ ବାଳିକା ପ୍ରଶ୍ନକୁ ଟାଳି ଦେଇଥିଲା ପୁଣି ସ୍ୱୟଂ ଅମ୍ମାର ସ୍ୱଭାବ ଗୁଡ଼େଇ-ତୁଡ଼େଇ କରି କଥା ପଚାରିବାର ପକ୍ଷରେ ନ ଥିଲା ।

"ଘଣ୍ଟାଏ ଖଣ୍ଡେ ଆଉ ବିଶ୍ରାମ କର । ସେହି ନିରାଶ୍ରୟ ବଖରାରେ ମଧ ଏକେଲା ହିଁ ରହିବୁ ।"

କଲୀ କିଛି କହିବାକୁ ଯାଉଥିଲା ବେଳେ ଜୋତାର ମଚ ମଚ ଶବ୍ଦ ଶୁଣିକରି ସତର୍କ ହେଇଗଲା । ପଲକ ପଡ଼ିବା ମାତ୍ରେ ପ୍ରବୀର ଆସି ଦ୍ୱାର ପାଖରେ ଛିଡ଼ା ହେଇଗଲା ।

ସମସ୍ତ ଚେହେରାରେ ବିଞ୍ଛି ହୋଇଥିବା ଧୂଳି ଭର୍ତ୍ତି ବାଳ ଆଉ ଶୁଖିଲା ମୁହଁ । ଅମ୍ମା ଅବାକ ହୋଇ କଳୀର ହାତ ଛାଡ଼ିଦେଲା । ତା'ର ଏହି କିଛି କହୁନଥିବା ପୁଅକୁ ସେ ବହୁତ ଡରୁଥିଲା । ଯେଉଁ ବାଳିକାକୁ ସେ ଘଣ୍ଟାକ ପୂର୍ବରେ ବାହୁରେ ଧରିକରି ଥରକୁ ଥର କିଛି ସମୟ ପାଇଁ ବିଶ୍ରାମ ନେବାକୁ ଆଗ୍ରହ କରୁଥିଲା, ତାରିଠାରୁ ନିଷ୍କୃତି ପାଇବା ପାଇଁ ସେ ଏବେ ମନ ଭିତରେ ଠାକୁରଙ୍କର ସ୍ମରଣ କରିବାକୁ ଲାଗିଲା । ଇଏ ତା'ର ମୂର୍ଖ ବାଳିକା ଯାହାର ମୁହଁରେ ଅଙ୍କୁଶ ନାହିଁ ପୁଅକୁ କିଛି ଓଲଟା ସିଧା କୌତୁକ କରି ନ ବସୁ ।

କଳୀ କ୍ଷଣକ ପାଇଁ ସେହି ଲୌହ ପୁରୁଷର କଠୋର ମୁଦ୍ରାରେ ଭୟଭୀତ ହୋଇଗଲା, କିନ୍ତୁ ପରକ୍ଷଣରେ ସେ ନିଜ ସ୍ୱଭାବର ବିପରୀତ ପଳେଇ ଯାଉଥିବା ଚିତ୍ତର ଶଙ୍କିତ ଅଶ୍ୱକୁ ଗୋଟିଏ ହିଁ କଡ଼ା ଚାବୁକରେ ଶାସନ କରିଦେଲା ।

ସେ ହସିକରି ଦ୍ୱାରରେ ଛିଡ଼ା ହୋଇଥିବା ସାମାନ୍ୟ ପରିଚିତ ପ୍ରବୀରକୁ ବହୁତ ଅନ୍ତରଙ୍ଗ ଦୃଷ୍ଟିରେ ଦେଖିକରି କହିବାକୁ ଲାଗିଲା, "ଆଜି ଶୁଣିଲି, ଆପଣ ଆମର ଅମ୍ମାକୁ ବହୁତ ଉତ୍କଣ୍ଠିତ କଲେ । ଅସଲରେ କଥା ହେଉଛି ଅମ୍ମା", ସେ ପୁଣି ଅମ୍ମା ଆଡ଼କୁ ବୁଲି ପଡ଼ି ହସିକରି କହିବାକୁ ଲାଗିଲା "ଆପଣଙ୍କ ପୁଅ ବହୁତ ଦିନ ପରେ କଲିକତାକୁ ଫେରିଛନ୍ତି । ଏଇଥିପାଇଁ ସେ ଜାଣନ୍ତି ନାହିଁ ଯେ ଏବେ ଏଠାରେ ମାଗଣାରେ ମିଳୁଥିବା ମିଠେଇ ଏମିତି ଛାଡ଼ି ଯାଆନ୍ତି ନାହିଁ । ଏଠାରେ ତ ଛେନା ଦୁଧର ମିଠେଇକୁ ହିଁ କାନୁନ ନିଷିଦ୍ଧ କରିଦେଇଛି ।" ଆଉ ସେ ସେହି ଅହଙ୍କାରୀ ମୁଦ୍ରାରେ ସୁଡ଼ୌଳ ଗ୍ରୀବାକୁ ଓଟପକ୍ଷୀ ପରି ଉଠେଇ ବାହାରକୁ ଚାଲିଗଲା ।

ଅମ୍ମା ମନକୁ ମନ ଥର ଥର କରି କମ୍ପିବାରେ ଲାଗିଥିଲା । ବାଙ୍କ ଚାହାଣୀରେ ସେ ପ୍ରବୀରର ତମତମ ହଉଥିବା ଚେହେରାକୁ ଦେଖି ନେଇଥିଲା । ଏବେ ହେଉ ନ ହେଉ, ଆଜି ହିଁ ଏହି ଅଭାଗିନୀ ବାଳିକାକୁ ଲୁଗାପଟା-ବିଛଣା ବାନ୍ଧି ବାହାରକୁ କଡାଡ଼ି ଦେଇ ଛାଡ଼ିବ । ଦୋଷ ତ ତାଙ୍କରି ଥିଲା । ଏକାନ୍ତରେ କଳୀକୁ କହିଦେଇ ଥିଲେ ଝିଅ, ମୋର ଏହି ଦୁର୍ବାସା ପୁଅ ସହିତ କେବେ ଭୁଲରେ ମଧ୍ୟ ହସ-ଥଟ୍ଟା କରି ବସିବୁ ନାହିଁ । ଏବେ ତ ଯାହା ହେବାର ଥିଲା, ହୋଇଯିବ ।

ରାଗରେ ପ୍ରବୀର ସତରେ ଥରୁଥିଲା । ଏମିତି ଶସ୍ତା ବାଳିକା ସାମ୍ନାରେ ଅମ୍ମା ଘରର ସମସ୍ତ ଗୋପନ ରହସ୍ୟ ଖୋଲିଦେଲା ।

"ଅମ୍ମା", ସେ ମା'ର ଏକଦମ ପାଖକୁ ଆସିଗଲା, "ମୁଁ ତମକୁ ପ୍ରଥମରୁ କହିଛି, ଏହାକୁ କହ..." ସେ ନିଜର ବାକ୍ୟ ପୁରା ମଧ୍ୟ କରି ପାରି ନ ଥିଲା ଏହି ସମୟରେ ବାପା ବଖରାକୁ ଖବରକାଗଜ ନେଇ ଆସିଲେ ।

"କାହିଁକି ବିଗୁଡ଼ୁଛୁ ପୁଅ", ଶାନ୍ତ ସ୍ୱରରେ ଥଣ୍ଡା ଛିଟା ଉପରକୁଉଠୁଥିବା କ୍ରୋଧକୁ ପୁରାପୁରି ବସେଇ ଦେଲା, "ଏତେ ଦିନରେ ବିଚାରି ଝିଅଟି ଏଠାରେ ରହୁଛି, ଆମକୁ

ଜଣା ମଧ୍ୟ ନାହିଁ ରହିଛି କି କିଏ ରହୁଛି କି ନାହିଁ । ତମେ ଚାକିରି ପାଇଁ ଏତେ ଦୂରରେ ରହୁଛ । ଝିଅମାନେ ପର ଘରର ଅଟନ୍ତି । ଆଜି ଅଛନ୍ତି ତ କାଲି ନାହାନ୍ତି । ତୁମର ଅମ୍ମାର ମଧ୍ୟ ମନ ଖୁସି ରହୁଛି । ସେ ମଧ୍ୟ କ'ଣ କରିବ । ବହୁ-ଝିଅ ଥାଆନ୍ତେ ତ ଅଲଗା କଥା ହେଇଥାନ୍ତା ।"

କେବେ ବଙ୍କା କଥା ନ କହୁଥିବା ପିତାଙ୍କର କଡ଼ା ବ୍ୟଙ୍ଗ ପ୍ରବୀର ବୁଝିପାରିଲା । ଆଜି ବାପା ତା ଉପରେ ଏମିତିହିଁ ରାଗିଥିବେ । ପାଣ୍ଡେ ମହାଶୟ ତାଙ୍କର ଏକମାତ୍ର ମିତ୍ର ଥିଲେ । ପୁଣି ତାଙ୍କର ଅଭାଗିନୀ ଝିଅ ଉପରେ ଲଦା ହେଇଥିବା କଳ୍ପତରୁର ପତ୍ରପରି କେବେ ଝଡୁ ମଧ୍ୟ ନାହିଁ । ଯେବେ ଘରକୁ ଆସୁଥିଲା ତେବେ ଶୁଣୁଥିଲା, ପାଣ୍ଡେ ମହାଶୟଙ୍କର ଗୋଟିଏ ଝିଅର ବିବାହ ହେଇଯାଇଛି । ଏଇଆ ଦେଲେ, ସେଇଆ ଦେଲେ ସେ ଦେଲେ ଆଉ ଭାଗ୍ୟଶାଳୀ ଜୁଆଁଇକୁ ନିଜ ଖରଚରେ ବିଲାତ ମଧ୍ୟ ପଠେଇ ଦେଲେ । ପୁଣି ମଧ୍ୟ ଗୋଟିଏ ନା ଗୋଟିଏ ଅବିବାହିତା ପାଣ୍ଡେ ସୁତାର ଲୋଭନୀୟ ଫଳ ତାହାର ପ୍ରତୀକ୍ଷାରେ କଳ୍ପତରୁରେ ଲାଖି ରହିଥାଏ । ଏଥରର ଛୁଟି ନଷ୍ଟଭ୍ରଷ୍ଟ କରିବା ପାଇଁ ମଧ୍ୟ ଗୋଟିଏ ବାଳିକା ଏବେ ରହିଯାଇଥିଲା । ଏକରେ ସେଇ ସୁଯୋଗ୍ୟ ସୁପାତ୍ରୀର ପ୍ରଶଂସା ଶୁଣି-ଶୁଣି କରି ସେ ବିରକ୍ତ ହେଇ ଯାଇଥିଲା । ଯେବେ ଦେଖ ତୋ ଦୁଇ ଭଉଣୀ, ମା, ଭିଣେଇମାନେ ତାହାରି ପୁରାଣ ଖୋଲିକରି ବସିଯାଆନ୍ତି । ତିନୋଟି ବିଷୟରେ ଏମ୍.ଏ. କରିଛି । ବାପର କୋଟ ପେଣ୍ଟ ମଧ୍ୟ ଘରେ ସିଲେଇ କରେ । ଆକାଶବାଣୀରେ ରବୀନ୍ଦ୍ର-ସଂଗୀତ ଗାଏ । ତା ଉପରେ ପୁରାପୁରି ଅଳ୍ପ ବୟସର ନ ହେଇ ମଧ୍ୟ ଗେଲବସର ମନେ ହୁଏ ।

"ତାକୁ କହ, ଅମ୍ମା, ନିଜ ବାପରହିଁ କୋଟ ପେଣ୍ଟର ସତ୍ୟାନାଶ କରୁ । ଏଠାରେ ମୋର କାର୍ଟୁନ ବନେଇବାକୁ ନ ଆସୁ । ମତେ ଏମିତି ଯୋଗ୍ୟତା ଖୋଜିବାକୁ ହେବ, ତେବେ ଦରଜୀର ଝିଅକୁ ନେଇ ଆସିବି । ବାହା - ବାହା ଘରର ସିଲେଇ କପଡ଼ା ପିନ୍ଧି, ଏମ୍ବିସିରେ ଚାଲିଯାଉଛି ଡିପ୍ଲୋମେଟ । ଏତିକି ମଧ୍ୟ ଜାଣନାହିଁ ଅମ୍ମା ଯେ କୌଣସି ବୁଦ୍ଧିମାନ ମଣିଷ ପତ୍ନୀ ସିଲେଇ କରିଥିବା କପଡ଼ା ପିନ୍ଧେ ନାହିଁ ।"

ଅମ୍ମା ବିଚାରି ଆଖି ପୋଛି ଭିତରକୁ ଚାଲିଗଲା ।

ସେଦିନ ପ୍ରବୀର ଗୀତ ମଝିରେ ଉଠି ଅବଶ୍ୟ ଯାଇଥିଲା, କିନ୍ତୁ ଚାଲୁ-ଚାଲୁ ସେ କୁନ୍ନୀକୁ ଏକ ଝଲକ ଦେଖି ନେଇଥିଲା । ସୁସ୍ଥ, ଗୋରୀ କୁନ୍ନୀର କାନକୁ ଛୁଉଁଥିବା ଆଖିର ସିଦ୍ଧ କଟାକ୍ଷ ବ୍ରହ୍ମଚାରୀର ଅଚଳ ହୃଦୟାସନ କ୍ଷଣକ ପାଇଁ ବିଚଳିତ କରି ଦେଇଥିଲା । ବାଳିକାର କଣ୍ଠ ଅସାଧାରଣ ରୂପରେ ମଧୁର ଥିଲା । ଏତିକି ନୁହଁ, ଅଣ୍ଟାରୁ ତଳକୁ ଝୁଲୁଥିବା ମୋଟା ବେଣି, ନିତମ୍ବିନୀର ଉନ୍ମତ୍ତ ହସ୍ତୀ ପରି ଚାଲିବା ଏବଂ ଚକଚକ କରୁଥିବା ଦନ୍ତପଂକ୍ତି ପିତାର ବୈଭବର ଆଶାବାଡ଼ି ଲଗାଇ ନ ଥିଲେ ମଧ୍ୟ ବଡ଼ ସହଜରେ ଯେ କୌଣସି ପୁରୁଷର ହୃଦୟ ଦ୍ୱାରର କଠିଣ ଅର୍ଗଳକୁ ଖୋଲିକରି ପ୍ରବେଶ କରିପାରି

ଥାନ୍ତା । ପ୍ରସ୍ତାବ ନିଃସନ୍ଦେହରେ ବିଚାର ଯୋଗ୍ୟ ଥିଲା । ପାହାଡ଼ି ସମାଜରେ ଏମିତି ବାଳିକା ସହଜରେ ମିଳନ୍ତି ନାହିଁ । ପାଣ୍ଡେ ମହାଶୟଙ୍କର ସେଠାରେ ତା'ର ପୁରା ପରିବାରକୁ କେଉଁଥିପାଇଁ ନିମନ୍ତ୍ରଣ କରାଯାଇଥିଲା, ସେ ବେଶ୍ ବୁଝି ପାରିଥିଲା । ଦୁଇ-ତିନି ବର୍ଷ ପୂର୍ବରୁ କଥା ହେଇଥିଲେ ସେ ହୁଏତ ରାଗି ଯାଇଥାନ୍ତା କିନ୍ତୁ ବର୍ତ୍ତମାନ ସମ୍ପତ୍ତିଶାଳୀ ଗୃହର ସୂର୍ଯ୍ୟ ଅସ୍ତଗାମୀ ଦିଶା ଆଡ଼କୁ ବୁଡ଼ିଯାଉଥିଲା । ଜୟାର ପତିର ଲଜ୍ୟା ସ୍ୱୟଂ ସେମାନଙ୍କର ସମସ୍ତଙ୍କର ଲଜ୍ୟା ହେଇଯାଇଥିଲା । ପାଣ୍ଡେ ମହଶୟଙ୍କ ସହିତ ସମ୍ବନ୍ଧ ହେଇଯିବା ପରେ ସେ ଦାମୋଦରକୁ ସମୟ ଥାଉ ଥାଉ ବିପତ୍ତିରୁ ରକ୍ଷା କରି ପାରିଥାନ୍ତା । ପାଣ୍ଡେ ମହାଶୟଙ୍କର ପିତାର ପ୍ରଶାସନରେ ବହୁତ ଗଭୀର ପ୍ରଭାବ ଥିଲା ।

"ଏବେ ମଧ୍ୟ ଆସୁଥିବା ଦିନ ପାଇଁ ସେ ପ୍ରଭାବର ଚେକ୍ ଭଙ୍ଗେଇ ପାରନ୍ତି", ପିତା କହିଥିଲେ, "ତାଙ୍କର ଝିଅମାନଙ୍କ ପାଇଁ କେବେ ପୁଅମାନଙ୍କର ଅଭାବ ହୁଏନାହିଁ ।"

ସ୍ପଷ୍ଟ ଥିଲା ଯେ ବାପା ତା'ର କାବୁଲ ଯିବା, ପୂର୍ବରୁ ତାକୁ ନିର୍ବନ୍ଧର ବନ୍ଧନରେ ବାନ୍ଧିବାକୁ ଚାହୁଁ ଥିଲେ । ଏଇଥି ପାଇଁ ଥରକୁ-ଥର ଅମ୍ମାର ବାଳିକାକୁ ଥରେ ଦେଖି ନେବାର ଆଗ୍ରହକୁ ପ୍ରବୀର ଟାଳି ପାରିଲା ନାହିଁ । ଏକ୍‌ରେ ଜୟାର ଦୁର୍ଭାଗ୍ୟକୁ ନେଇକରି ଅମ୍ମା ଦିନରାତି ଚିନ୍ତାରେ ବୁଡ଼ି ଯାଉଥିଲା । ନହେଲେ ଟିକିଏ ମନଖୁସି ହେଇଯିବ । ପୁଣି ଦେଖିବାରେ ବା କ'ଣ ଦୋଷ ଥିଲା ? କେଉଁଠି ଆଖିର ଶକ୍ତି ତ କମ ହେଇଯିବ ନାହିଁ । ଆଜି ପର୍ଯ୍ୟନ୍ତ କ'ଣ ତାକୁ ଗୋଟିଏ ହେଲେ ପାହାଡ଼ି ପରୀ ପସନ୍ଦ ହେଇଥିଲା, ଯେ ଇଏ ପସନ୍ଦ ହେଇଯିବ ? ଥରେ ଦେଖିନେଲା ପରେ ଗୋଟାଏ ନା ଗୋଟାଏ ଦୋଷ ବାହାର କରି ସେ ପ୍ରସ୍ତାବକୁ ଅଳ ଚାରଣି ପରି ପକେଇ ଦେବ । ବେଶ ତାପରେ ଛୁଟି । ତା ପାଣ୍ଡେ ମହାଶୟଙ୍କ କୌଣସି ଝିଅ ପୁଣି ରହିଯିବ, ନା ଜନ୍ମ କରିବାର ବୟସ ଅଛି । ଏହା ଭାବକରି ସେ ମା-ଭାଉଣୀମାନଙ୍କ ସହିତ କୌଣସି ଆପତ୍ତ ନକରି ଚାଲି ଯାଇଥିଲା, ତେଣୁ ଚତୁର ଜୟାର ମୁଣ୍ଡ ଠଣ ଠଣ ହେଲା ।

"ଦେଖିବ ଅମ୍ମା, ଭାଇନା ଆମକୁ ବୁଦ୍ଧୁ ବନେଇବାକୁ ଯାଉଛି । ପ୍ରଥମରୁ ହିଁ ଠିକ୍ କରି ନେଇଥିଲା ଯେ ବାଳିକାକୁ ପସନ୍ଦ କରିବି ନାହିଁ ।"

"ଛାଡ଼ ଦିଦି", ମାୟା ବଡ଼ ଭଉଣୀ ଉପରେ ରାଗି ଯାଇଥିଲା, "ତମକୁ ତ ଭଲ କଥା ଆଜିକଲି ଦେଖାଯାଏ ନାହିଁ । ମୁଁ ମଧ୍ୟ ଦେଖିବି, କୁନ୍ନୀର କ'ଣ ପସନ୍ଦକୁ ଆସୁନାହିଁ । ଘୋଡ଼େଇ ହେବାକୁ ଚାହିଁଲେ ଘୋଡ଼ି ହୁଅନ୍ତୁ, ବିଛଣାରେ ପକେଇବା ଲୋକ ପକଉ, ଏମିତି ଝିଅ କୁନ୍ନୀ ।"

କଥା ମାୟା ଠିକ୍ କହିଥିଲା । ବାଳିକାର କେଉଁଠି କିଛି ଦୋଷ ନଥିଲା । ଭରା ଭରା ଅଙ୍ଗର ସୌଷ୍ଠ ଉଠିବାରେ-ବସିବାରେ ଦରପାଚିଲା ଯୌବନ କିରଣ ଯେମିତି ବାହାରୁଥିଲା । ଗୀତର ସେ ରବୀନ୍ଦ୍ର-ସଂଗୀତହିଁ ଗାଉଛି, କିନ୍ତୁ ଷଠୀଘର ଉତ୍ସବରେ ତା'ର ଅଶ୍ୱାରୋହୀର ଅମୂଲ୍ୟ ଗୀତରେ ଚଉଦିଗ ଗୁଞ୍ଜନ କରି ସେ ନିଜ ସୁସ୍ଥ, ପୁଷ୍ଟ ପାପୁଲିର

ମାଡ଼ରେ ଢୋଲକକୁ ଢୋଲ ପରି ଗୁଞ୍ଜନ କରିଦିଏ, ତେବେ ପାର୍ବତୀୟ ସମାଜର ଅଧିକାଂଶ ପାର୍ଶ୍ୱଗାୟୀକାମାନେ ଧରାଶାୟୀ ହେଇଯାଆନ୍ତି । ତେବେ ବହୁତ ଉଚ୍ଚ ଧ୍ୱନିରେ କୌଣସି ଦକ୍ଷ କବାଲି ଗାୟକ ସହିତ ଉଚ୍ଚସ୍ୱରକୁ ଛୁଇଁ ନେବାର ପ୍ରତିଭା ଚମକିବାକୁ ଲାଗେ । ଏମିତି ମଧୁର କଣ୍ଠର ମଧୁ ମିଶେଇ କରି ବଙ୍ଗବାସିମାନଙ୍କୁ ମଧ୍ୟ ସମ୍ମୋହିତ କରିପାରେ, 'ବନ୍ନୀ କୀ ଦାଦୀ କୋ ଲେ ଗୟା ମୁସଲ୍ଲା, ସୁହଲ୍ଲେ ମେ ଶୋରମଚାରେ' ଗାଇକରି କୌଣସି ସଂସ୍କାର ଉତ୍ସବକୁ ରଙ୍ଗୀନ କରି ଦେଇପାରେ, ଏହା ଦେଖିକରି ମାୟା ଆଶ୍ଚର୍ଯ୍ୟ ହେଇ ଯାଇଥିଲା । ସେ ପ୍ରତିଭାଶାଳିନୀ କୁନ୍ନୀର ଦୁଇଟି ରୂପ ଦେଖିଥିଲା । ରବୀନ୍ଦ୍ର-ସାହିତ୍ୟ ଆସରରେ କେତେ ତାଳି ବାଜିଥିଲା ତା'ର ଗୀତ ଗାଇବା ପରେ । ଯେବେ ଏଠାରେ ରାଜେଶ୍ୱରୀ ଦତ୍ତା, କନିକା ଦେବୀ ଆଉ ସୁଚିତ୍ରା ମିତ୍ରା ପରି ପ୍ରସିଦ୍ଧ ରବୀନ୍ଦ୍ର-ସଙ୍ଗୀତର ସୁଗାୟିକାମାନେ ମଧ୍ୟ ତା ଆଗରୁ ଗୀତ ଗାଇ ସାରିଥିଲେ । ପୁଣି ତିବାରୀ ମହାଶୟଙ୍କ ପୁଅର ଘୋଡ଼ାରେ ଚଢ଼ିବଧୂ ଘରକୁ ଯିବା ସମୟରେ ତାର ଗୀତ ଶୁଣି ଶୁଣି ଯାତ୍ରୀ ରହିବା ସ୍ଥାନରେ ବରଯାତ୍ରୀ ଦଳ ମୁଗ୍ଧ ହେଇ ଯାଇଥିଲେ ଆଉ ଗୋଟିଏ ବରଯାତ୍ରୀ ଟେପରେକର୍ଡ଼ ଖୋଲିକରି ବସି ଯାଇଥିଲା ।

"ରଙ୍ଗ-ରଙ୍ଗ କରି ମରି ଯାଉଛ ନା ଭାଇ, ଦେଖିବ ଟିକିଏ ତା'ର କମ୍ପ୍ଲେକଶନ ? ଆମେ ସବୁ ରୂପବତୀ ନାରୀ ତା ସାମ୍ନାରେ କିଛି ନୁହଁ, ହେଇଥିଲେ ମୋର ନାମ ବଦଳେଇ ଦେବ । କେତେ ହାଇଟ୍ ତା'ର, ପୁରାପୁରି ପାଞ୍ଚଫୁଟ ଚାରି ଇଞ୍ଚ ।"

"ଆଚ୍ଛା-ଆଚ୍ଛା, ଛାଡ଼ି ଦେ", ପ୍ରବୀର ତାକୁ ଗାଳି ଦେଇଥିଲା, କିନ୍ତୁ ତେବେ ମଧ୍ୟ ସେ ଚୁପ୍ ହେଲାନାହିଁ ।

"ହାଇଟ୍ ଥିଲେ ତ କିଛି ହୁଏନାହିଁ । ମାଂସ ମଧ୍ୟ ଠିକ୍ ଠିକ୍ ଦେଇଛନ୍ତି ଭଗବାନ । ନା ଏକ ଇଞ୍ଚ ଏଆଡ଼େ, ନା ଏକ ଇଞ୍ଚ ସେଆଡ଼େ, ପୁରାପୁରି ମାପିଚୁପି । ଆମର ପାହାଡ଼ର ଝିଅମାନଙ୍କ ପରି କାନ୍ଧ ନୁଏଁଇ ଚାଲେ ନାହିଁ ବାଳିକା । ମତେତ ଅମ୍ମା କେବେ ସିଧା ହେଇକରି ଚାଲିବାକୁ ମଧ୍ୟ ଦେଲା ନାହିଁ । ପୁଣି ରହି ଯାଇଥିବା ତ୍ରୁଟି ବିଚ୍ୟୁତି ଶ୍ୱଶୁର ଘରେ ପୁରା ହେଇଗଲା ।"

ପତି ଆଡ଼କୁ ବ୍ୟଙ୍ଗପୂର୍ଣ୍ଣ କଟାକ୍ଷରେ ଦେଖିକରି ସେ ସାଢ଼ି ବଦଳେଇବାକୁ ଚାଲି ଯାଇଥିଲା ।

ପାଣ୍ଡେ ମହାଶୟଙ୍କର ବିରାଟ ଗୃହର ଶୋଭା ଦର୍ଶନୀୟ ଥିଲା । ତାଙ୍କର ପ୍ରାସାଦ ପରି କୋଠା କୌଣସି ରାଜସ୍ଥାନୀ ନରେଶ ବଡ଼ ସଉକରେ ନିଜର ନୂତନ ପତ୍ନୀ ପାଇଁ ତିଆରି କରେଇ ଥିଲେ ।

ପ୍ରଥମ ପ୍ରସବରେ ସୁକୁମାରୀ ରାନୀଙ୍କ ମୃତ୍ୟୁ ହେଇଥିଲା ଆଉ ଅଧା ତିଆରି ହେଇଥିବା କୋଠାକୁ ମାଟି ମୂଲ୍ୟରେ ବିକ୍ରିକରି ନରେଶ ଚାଲି ଯାଇଥିଲେ । କାଳକ୍ରମେ

ଯାମିନୀ ରାୟଙ୍କ ଚରିତ୍ର ଚିତ୍ରର ଚତୁର୍ଭୁଜ ବଡ଼ ବଡ଼ ଆଖିରେ ଗୋଟିଏ ଲମ୍ବା ଧାଡ଼ି ଦୂର ପର୍ଯ୍ୟନ୍ତ ଚାଲି ଯାଇଥିଲା । ଅନ୍ୟଆଡ଼େ ଅତ୍ୟାଧୁନିକ ଚିତ୍ରକାରମାନଙ୍କ ଦ୍ୱାରା ଚିତ୍ରିତ ବିଚିତ୍ର ଶୈଳୀର ତାନ୍ତ୍ରିକ ପ୍ରତିକକୁ ପ୍ରବୀର ଦେଖିଲା ମାତ୍ରେ ଚିହ୍ନିପାରିଲା । ହୁଏତ ଗୃହସ୍ୱାମୀ ସ୍ୱୟଂ ମଧ୍ୟ ସେଗୁଡ଼ିକର କଷ୍ଟସାଧ୍ୟ ରେଖାଙ୍କିତ ବିଷମ ଆକୃତିଗୁଡ଼ିକୁ ବୁଝି ପାରି ନଥିବେ ।

ପାଣ୍ଡେ ମହାଶୟ ସ୍ୱୟଂ ସେମାନଙ୍କର ଆଗମନରେ ନମ୍ରତା ସହକାରେ ପୁଣି ଥରେ ରହି ଯାଇଥିଲେ ।

"ମୁଁ ଏବେ ଏବେ କୁନ୍ନୀର ମା'କୁ ଏହା କହୁଥିଲି ଯେ ଆଜି ଏହା ନିଶ୍ଚୟ ଆମର ପୂର୍ବକୃତ ପୁଣ୍ୟର ଫଳ ଅଟେ, ଯେ ଆପଣ ସପରିବାର ଏଠାକୁ ଆସିଛନ୍ତି ।" ନଇଁପଡ଼ି ସେ ବିଶୁଦ୍ଧ ପାହାଡ଼ି କାଇଦାରେ ଅମ୍ମାର ଚରଣ ଛୁଇଁ କରି ଦୁଇ ହାତ ମୁଣ୍ଡରେ ଲଗେଇଲେ ।

ବାଚାଳ, ମୁଖର, କଥାର ଇନ୍ଦ୍ରଜାଲରେ ଅତିଥିମାନଙ୍କୁ କ୍ଷଣକରେ ବାନ୍ଧି ନେଲାବାଲା, ଚିକ୍କଣ ଚେହେରା ଆଉ ଚମକୁ ଥିବା ମୁଣ୍ଡର ମାଲିକ ହସୁଥିବା ପାଣ୍ଡେ ମହାଶୟ ବହୁତ ପ୍ରେମରେ ପ୍ରବୀରକୁ ନିଜ ସୋଫାରେ ବସେଇ ଦେଲେ ।

ପ୍ରବୀରକୁ ଏହି ପ୍ରକାର ବଳପୂର୍ବକ ଟାଣିଆଣି ନିଜ ପାଖରେ ବସେଇ ନେବାରେ ପାଣ୍ଡେ ମହାଶୟଙ୍କୁ ଟିକିଏ ମଧ୍ୟ ସଂକୋଚ ହେଲାନାହିଁ, କିନ୍ତୁ ପ୍ରବୀରକୁ ଏମିତି ପ୍ରେମ ଦର୍ଶନର ଅଭ୍ୟାସ ନଥିଲା । ସେ ଟିକିଏ ଘୁଞ୍ଚିକରି ବସିବାର ଚେଷ୍ଟା କରୁଥିଲା ବେଳେ ପାଣ୍ଡେ ମହାଶୟ ବହୁତ ସ୍ନେହରେ ତା'ର ପିଠିକୁ ଥାପୁଡ଼େଇ କହିବାକୁ ଲାଗିଲେ, "ଏବେକାର ବିଦେଶ ମନ୍ତ୍ରଣାଳୟ ଉପରେ କ୍ଷମତା ଲଗେଇ କରି ତୁମକୁ ସେଣ୍ଟରକୁ ନେଇ ଆସିବି ।"

ସେହି ବ୍ୟବସାୟ-ପଟୁ କୁଟିଳ ବ୍ୟକ୍ତିର ଚରିତ୍ରର ସମସ୍ତ କୁଟିଳତା ବହୁତ ସ୍ପଷ୍ଟ ଅକ୍ଷରରେ ତାହାର ଚେହେରାରେ ଦେଖି ଆସିଥିଲି । ତାଙ୍କର ଅସ୍ଥିର ଗତିବିଧି ଦେଖିକରି ପ୍ରବୀର ଆଶ୍ଚର୍ଯ୍ୟ ହେଇ ଯାଇଥିଲା । ଯିଏ କ୍ଷଣକ ପାଇଁ ସୋଫାରେ ସ୍ଥିର ହେଇ ବସିପାରେ ନାହିଁ, ସେ ଅଫିସର ଅପ୍ରୀତିକର ବହି ଖାତାରେ ଘଣ୍ଟା ଘଣ୍ଟା ଧରି ବୁଡ଼ି ରହିଥାଏ, ଏକାଗ୍ର ମନରେ କେମିତି ବସି ରହି ପାରୁଥିଲା ? ଯେତେ ସମୟ ପ୍ରବୀର ସେଠାରେ ବସି ରହିଲା, ପାଣ୍ଡେ ମହଶୟଙ୍କୁ ଯେମିତି ଶହ ଶହ ଡାଆଁସ କାମୁଡ଼ିବାରେ ଲାଗିଥିଲେ । କେତେବେଳେ ଡେଇଁକରି ସୋଫାରେ ଚକାମାରି ବସି ଯାଉଥିଲେ ।

ଯେତେବେଳେ ପ୍ରବୀର ରସବତୀ ଗୋଷ୍ଠୀ ମଧ୍ୟରୁ ହଠାତ୍ ଉଠିକରି ଚାଲି ଆସିଲା, ସେତେବେଳେ ଭଉଣୀମାନଙ୍କର ମନ ଖରାପ ହେଇଗଲା । କେବଳ ଅମ୍ମା ବିଶେଷ ନିରାଶ ହେଇ ନଥିଲା । ନିଜର ଗର୍ବୀ ପୁତ୍ରର ରୁଚିକୁ ସେ ଗର୍ଭରେ ରଖିକରି ମଧ୍ୟ କ'ଣ ଜାଣି ନଥିଲେ ? ପାଣ୍ଡେ ମହାଶୟଙ୍କ ଦୁହିତା ଯେତେହିଁ ଗୁଣୀ, ସୁନ୍ଦରୀ, ଶାନ୍ତ ହେଇଥାଉ ନା କାହିଁକି, ଏମିତି କୁଟିଳ ବ୍ୟକ୍ତିର ଜୋଇଁ ହେବା ସେ କେବେ ସ୍ୱୀକାର କରିବ ନାହିଁ ।

କିନ୍ତୁ ବହୁତ ଡେରି ପର୍ଯ୍ୟନ୍ତ ଏଠାରେ-ସେଠାରେ ଗୁରେଇ ତୁରେଇ ସେ ମା'କୁ ତା'ର ସ୍ୱୀକୃତିର ସରପ୍ରାଇଜ୍ ଉପହାର ଦେବାକୁ ଆସିଥିଲା ।

ଘରେ ପହଞ୍ଚିଲା ମାତ୍ରେ ଅମ୍ମା ସହିତ ସେହି ବିଷକନ୍ୟାକୁ ଦେଖିକରି ସେ ରାଜି ହେଲାନାହିଁ । ଏମିତି ନିର୍ଲ୍ଲଜ ଝିଅ ସେ କେବେ ଦେଖିନାହିଁ, ସବୁକିଛି ଜାଣିକରି ମଧ୍ୟ କେମିତି ସରଳ, ନ ଜାଣିଲା ପରି ହେଲା । ଅମ୍ମା ନ ଥିଲେ, ମୁଁ ହୁଏତ ତାକୁ ସେଠାରେ ମଜା ଚଖେଇ ଦେଇଥାନ୍ତି । ଠିକ୍ ଅଛି, ସେ ମଧ୍ୟ ଅମ୍ମା ସମ୍ମୁଖରେ ଗୋଟିଏ ସର୍ତ୍ତ ରଖିବ । ବିବାହର ସ୍ୱୀକୃତି ସହିତ ହିଁ ଅମ୍ମାକୁ ଏହି ଦସ୍ୟୁ-କନ୍ୟାକୁ ଘରୁ ବାହାର କରି ଦେବାକୁ ହେବ । ଯିଏ ଚାଲୁଥିବା ଟ୍ରେନ୍‌ର ପଥରେ ନିରୀହ ଯାତ୍ରୀମାନଙ୍କର ପକେଟ୍ କାଟିପାରେ, ସେ ଘରର ସ୍ଥାୟୀ ସଦସ୍ୟା ହେଇ ସରଳ ଅମ୍ମାକୁ କେବେହେଲେ ଦିନ ଦ୍ୱିପ୍ରହରରେ ଲୁଟ କରିପାରିବ ।

କିନ୍ତୁ ଦ୍ୱିତୀୟ ଦିନ ଉଠିଲା ମାତ୍ରେ ଯାହାକୁ ବାହାର କରିଦେବାର ନିଷ୍ପତ୍ତି କରିଥିଲା, ସେ ସ୍ୱୟଂ ହିଁ ସେ କିଛି କହିବା ପୂର୍ବରୁ କେଉଁଠାକୁ ଚାଲି ଯାଇଥିଲା । ଦ୍ୱାରରେ ଝୁଲୁଥିବା ବନ୍ଦ ତାଲାକୁ ଦେଖିକରି ସେ ଶାନ୍ତିର ନିଶ୍ୱାସ ନେଲା । ଏବେ ସେ ଅମ୍ମାର ବର୍ଷ ବର୍ଷ ଧରି ଝାଉଁଳି ପଡ଼ିଥିବା ମ୍ଳାନ ଚେହେରାରେ ନିଜର ଅପ୍ରତ୍ୟାଶିତ ଘୋଷଣା ପାଇଁ ଆନନ୍ଦର ରେଖା ଟାଣି ଦେଖିବାକୁ ଚାହୁଁଥିଲା । କେତେଦିନ ପରେ ତାକୁ ତା'ର ଗୃହର ନିର୍ଜନତା ମିଳିଥିଲା । ଏବେ ସେ ଯେମିତି ଚାହେଁ ସେମିତି ଗୃହର ନିରଂକୁଶ ସମ୍ରାଟ ହେଇ, ଲୁଙ୍ଗି ପିନ୍ଧି ଏଠାରେ-ସେଠାରେ ବୁଲିପାରିବ । ସାମ୍ନାର କୋଠରି ସେହି ଦୂରନ୍ତ ବାଳିକାକୁ ଦେଇକରି ଅମ୍ମା ଘରର ପ୍ରାଇଭେସି ଶେଷ କରି ଦେଇଥିଲା ।

ଜୟା ଆଉ ଦାମୋଦରର ମନୋମାଳିନ୍ୟ ମଧ୍ୟ ଏଠାରେ ବିପଦପୂର୍ଣ୍ଣ ତୀବ୍ର ଗତିରେ ବଢ଼ିବାରେ ଲାଗିଥିଲା, ଯେମିତି ଭୟାଳୁ ପାଳିତ କୁକୁର ମଧ୍ୟ ମାଲିକର ଗୋପନ ସାହାଯ୍ୟ ପାଇକରି ଯିଏ ତାକୁ ଚିଡ଼ାଉଥିବା ଆଡ଼କୁ ଦାନ୍ତ ଦେଖେଇ ଦେଖେଇ କରି ଆଘାତ ଦେଇ ଗର୍ଜନ କରୁଥାଏ, ତାହାର କୋଠରୀକୁ ଲାଗିକରି ପ୍ରବୀରର କୋଠରୀ ଥିଲା ଆଉ ଏକ ସଙ୍କୀର୍ଣ୍ଣ ଗେଲେରୀର ବ୍ୟବଧାନ୍ ପରେ ପଡୁଥିଲା କଳୀର କୋଠରୀ । ଯେମିତି ସେ ଭଉଣୀ-ଭିଣେଇଙ୍କର କ୍ରୋଧରେ ଉଚ୍ଚକୁ ଉଠୁଥିବା ସ୍ୱରକୁ ଶୁଣି ପାରୁଥିଲା ସେମିତି ନିଶ୍ଚୟ ସେହି ଅପରିଚିତା ମଧ୍ୟ ଶୁଣିଥିବ । ମଧ୍ୟ ରାତ୍ରିର ନିସ୍ତବ୍ଧତାରେ ଗୁଣୁଗୁଣୁ ହେଉଥିବା ଭଉଣୀର ଅମାନୁଷିକ ଆରୋପ ଶୁଣିକରି କେବେ କେବେ ତାହାର ମନେ ହେଉଥିଲା, ସେହି ଦାମୋଦରର ବେକକୁ ଧରିକରି ବାହାର କରି ଦେବାକୁ । କ'ଣ ଏହା ସତରେ ସମ୍ଭବ ଥିଲା ଯେ ସେହି ସୁଦର୍ଶନ ବ୍ୟକ୍ତିର ହୃଦୟ ଏମିତି କଳା ଥିଲା ।

ଆଉ ଏହା ଜୟାର ମଧ୍ୟ କେମିତି ମୂର୍ଖତା ଥିଲା । ଆଠ-ନଅ ବର୍ଷର ଝିଅ ସଙ୍ଗରେ ଶୁଏ । କ'ଣ ମାତା-ପିତାଙ୍କ ପ୍ରତ୍ୟେକ ଦିନର କଳିତକରାଳ ସେ ବୁଝିପାରୁ ନ ଥିବ ? ସେ ବୁଝୁ ବା ନ ବୁଝୁ, ଜଣେ ସକଳ ପ୍ରକାରରେ ପର ଅଜଣା ବାଳିକା ପ୍ରବୀରକୁ

ଏପର୍ଯ୍ୟନ୍ତ ସମ୍ଭ୍ରାନ୍ତ ପ୍ରତିଷ୍ଠିତ କୁଳର କ୍ରମଶଃ ମଳିନ ପଡ଼ି ଯାଇଥିବା ମର୍ଯ୍ୟାଦାକୁ ଦେଖି, ଏହା ସେ ଚାହୁଁ ନଥିଲା । ନିଜର ବିବାହର ସର୍ତ୍ତ ସହିତ ସେ ଏହି କଡ଼ା ସର୍ତ୍ତ ରଖିବ । ତେବେ ଯାଇ ସେହି ବାଳିକାର ପିଛାରୁ ମୁକ୍ତି ମିଳିବ ।

କିନ୍ତୁ ଅମ୍ମାକୁ କହିବ କେମିତି ? ବର୍ଷ ବର୍ଷ ଧରି ବାହାଘର ପାଇଁ ନା-ନା କହୁ କହୁ ଏବେ ହଠାତ୍ ମାତା-ପିତାଙ୍କର ପସନ୍ଦ କରା ଯାଇଥିବା ବାଳିକାକୁ ସ୍ୱୀକୃତି ଦେଲାବେଳକୁ ତାକୁ ଥରକୁ ଥର ଗଭୀର ପରାଜୟର ପଶ୍ଚାତାପ ସଂକୁଚିତ କରିବାରେ ଲାଗିଛି । କ'ଣ କହିବେ ଦୁଇ ଭଉଣୀ । ଜୟା କିଛି କହୁ ନ କହୁ, ମାୟା ନିଶ୍ଚୟ ଏକାନ୍ତରେ ନବୀନକୁ କହିବ, 'ଦେଖିଲତ, କ'ଣ କହିଥିଲି ମୁଁ, କୁନ୍ନୀକୁ ଥରେ ଦେଖିବା ପରେ କେହି କେବେ ନା କହି ପାରିବ ? କିନ୍ତୁ ପୁରା ଘରଟିରେ ମାୟାହିଁ ଏକେଲା ଏମିତି ଥିଲା, ଯାହାଦ୍ୱାରା ସେ ଏହା ଅମ୍ମା ପର୍ଯ୍ୟନ୍ତ ନିଜର ସ୍ୱୀକୃତି ପହଞ୍ଚେଇ ପାରିବ । ପ୍ରଥମେ ସେ ମାୟାକୁ ଏକାନ୍ତରେ ଡାକିକରି ନିଜର ମତାମତ ଶୁଣେଇଲା, ସେତେବେଳେ ତା'ର ଆଖି ବିସ୍ଫାରିତ ହେଇଗଲା, "ସତ କହୁଛ ତ ପୁଣି, ନିଜର କୌଣସି ଅବାଗିଆ ମଜାକୁ ଦୋହରାଉଛ ?"

"ସତ କହୁଛି, ଯା, ଏବେ ଯାଇକରି ଅମ୍ମାକୁ କହିକରି ଆସିବୁ କିନ୍ତୁ ଦେଖ, ଅମ୍ମାକୁ କହିବୁ ଏହା ସହିତ ମୋର ଏକ ସର୍ତ ମଧ୍ୟ ମାନିବାକୁ ପଡ଼ିବ ।"

ମାୟାକୁ ପୁଣି କୌଣସି ସର୍ତ୍ତ ଶୁଣିବାର ଅବକାଶ ବା କେଉଁଠି ଥିଲା । କ୍ଷଣିକ ଭିତରେ ଯେମିତି କେହି ପୁରା ଘରର ଉଦାସ ଭାବ ଉଲ୍ଲାସର ଅଦୃଶ୍ୟ ଯାଦୁର କାଠି ବୁଲେଇ କରି ଦୂରକୁ ଠେଲି ଦେଇଥିଲା । ପାଣ୍ଡେ ମହାଶୟ ଫୋନ୍‌ରେ ଶୁଭ ସମାଚାର ପାଇଲା ମାତ୍ରେ ମିନିଟିକ ଭିତରେ ମୋଟର ଦଉଡ଼ାଇ କେତୋଟି ଟୋକେଇରେ ଫଳ-ମିଠା ଭର୍ତ୍ତିକରି ସ୍ୱୟଂ ଚାଲି ଆସିଥିଲେ ।

"ଏହିସବୁ କାହିଁକି ନେଇ ଆସିଲେ ଆପଣ", ଅମ୍ମା ଲଜ୍ଜିତ ସ୍ୱରରେ କହିଲା, ତେବେ ସେ କୃତ୍ରିମ ସ୍ୱରରେ କ୍ରୋଧରେ ବିରକ୍ତ ହେଇ ଉଠିଲେ, ବା ମହାଶୟା ବା, ଇୟେ ତ ବସ୍ତାଭାବେ ପୁଷ୍ଟଂ ଅଟେ, କେମିତି ଖାଲି ହାତରେ ନିଜର ସମ୍ବନ୍ଧୁଣୀଙ୍କର ଏଠାକୁ ଚାଲି ଆସିଥାନ୍ତି ? ପୁଣି କୁନ୍ନୀର ମା ତରତର ହେଇ ପାଞ୍ଜି ମଧ୍ୟ ଦେଖିନେଲା, କହିଲା, ଭଲ ଦିନ ଅଟେ, ଯୋଡ଼ ହାତରେ ଶୁଭମୁହୂର୍ତ୍ତ ମଧ୍ୟ ନେଇ କରି ଆସ ।"

ଲାଲ ମଖମଲ କନାରେ ସେ ଦୁଇଟି ସୁନାର ଓଜନୀୟା ମୋହର ମଧ୍ୟ ନେଇକରି ଆସିଥିଲେ, ଏକ ସମ୍ବନ୍ଧୀଙ୍କ ପାଇଁ, ଅନ୍ୟଟି ଜୋଇଁ ପାଇଁ । ଘରର ଦୁଇ ଜୋଇଁଙ୍କ ପାପୁଲିକୁ ଅପର୍ଯ୍ୟାପ୍ତ ଧନରାଶି ଦେଇକରି ଗରମ କରି ଚାଲୁ ଚାଲୁ ରବିବାରର ଭୋଜିର ନିମନ୍ତ୍ରଣ ମଧ୍ୟ ଦେଇକରି ଗଲେ ।

"ତିନି ଝିଅକୁ ଟେଲିଗ୍ରାମ କରି ଦେଇଛି । ଭାବୁଛି, ସେଦିନ କିଛି ବନ୍ଧୁବାନ୍ଧବଙ୍କୁ ମଧ୍ୟ ନିମନ୍ତ୍ରଣ କରି ନିର୍ବନ୍ଧର ଏକ ଫର୍ମାଲ ଭୋଜି ଦେଇଦେବି । ଅସଲରେ ଆମର

କୁନ୍ନୀ ସମସ୍ତ ପ୍ରିୟ ମିତ୍ରମାନଙ୍କର ବହୁତ ଗେଲବସର । ଏଇଥିରୁ ସମସ୍ତେ ବଡ଼ ଜାନ ଯେ ଆମର ଭାବି ଜାମାତା ରାଜାଙ୍କୁ ଥରେ ଦେଖିବେ, ଯେ ଆମେ ତାଙ୍କର ଗେହ୍ଲା କୁନ୍ନୀ ପାଇଁ ସୁପାତ୍ର ଠିକ କରି ପାରିଲୁ କି ନାହିଁ । ପୁଣି ସେମାନଙ୍କ ଆଖିକୁ ଝଲସେଇ ଦେବା ପାଇଁ ଆମର ମଧ୍ୟ କିଛି ଇଚ୍ଛା ଅଛି ।"

ବଡ଼ ନିଜର କରି ସେ ସୁଦର୍ଶନ ଜାମାତାର ଚଉଡ଼ା ପିଠିକୁ ଥାପୁଡ଼େଇଥିଲେ ଏବଂ ଥରକୁ ଥର ସପରିବାର ଯିବା ପାଇଁ ମଧୁର ନିମନ୍ତ୍ରଣ ଦେଇକରି ଚାଲିଗଲେ ।

## ପନ୍ଦର

ସାରା ଦିନର ଦଉଡ଼ା ଦଉଡ଼ି ଓ ଆକସ୍ମିକ ଉତ୍ତେଜନାରେ ଅମ୍ମା କ୍ଲାନ୍ତ ହୋଇ ଯାଇଥିଲା । ତା ଉପରେ ମାୟା ଚୁପ୍‌ଚାପ ଆସିକରି ବଡ଼ ଭାଇର ଅପୂର୍ବ ସର୍ତ୍ତ ବିଷୟରେ ମଧ୍ୟ କହି ଯାଇଥିଲା । ସେତେବେଳ ଠା'ରୁ ବିଚାରି ମନକୁ ମନ ଚିନ୍ତାରେ ବୁଡ଼ି ଯାଉଥିଲା । ଜଣାନାହିଁ କେଉଁ ଅଦ୍ଭୁତ ସର୍ତ୍ତ ଛିଡ଼ା କରେଇ ରଖିଦେଲା, ପୁଅ । ଯେମିତି ଇଏ କହି ନ ଦେଉ ଯେ ବାହାଘର ଦୁଇବର୍ଷ ପରେ ହେବ । ଏହି ଫଗୁଣରେ କରିଦେଲେ, ତେବେ ହୁଏତ ପାଣ୍ଡେ ମହାଶୟ ଦାମୋଦରର ସୁବିଧା କରିଦେବେ ।

"ଏବେ ତମେ କିଛି ପଚାର ନାହିଁ ଅମ୍ମା", ଚତୁର ମାୟା ତାକୁ ବାରମ୍ବାର ବୁଝେଇ ଯାଇଥିଲା, "କୁନ୍ନୀକୁ ଥରେ ଦୁଇଥର ଦେଖିଦେଲେ ସବୁ ସର୍ତ୍ତ ଭୁଲିଯିବେ ।"

ବଡ଼ ବଡ଼ ଆଖିଥିବା ବଂଗକନ୍ୟା ପରି ସୁନ୍ଦରୀ କୁନ୍ନୀକୁ ସେ ପୁଣି ବଡ଼ ଲୋଭନୀୟ ଅଧିକାରରେ ଏହି ରବିବାର ଦିନ ଦେଖି ପାରିବ, ଏହି କଳ୍ପନା ପ୍ରୀବରକୁ ସତରେ ଏମିତି ମଧୁର ଲାଗୁଥିଲା ଯେ ତାକୁ କେବେ କେବେ ସ୍ୱୟଂହିଁ ବିରକ୍ତ ହେଇ ଯାଉଥିଲା । ସେ ସେହି ସୁନ୍ଦରୀ ଆକର୍ଷକ ବାଳିକାକୁ ଆହୁରି ନିକଟରୁ ଏକାନ୍ତରେ ଦେଖିବାକୁ ଚାହୁଁଥିଲା । କାହିଁ ଏମିତି ନହେଉ ଯେ ସେହି ଆକର୍ଷଣରେ ପ୍ରକୃତିର ହାତ କମ ଥାଉ, ସ୍ୱୟଂ ମାଲିକିଆଣୀଙ୍କର ଅଧିକ । କେମିତି ଆକର୍ଷକ ଉଚ୍ଚତାର ଅନୁପାତରେ ତାହାର ମସ୍ତିଷ୍କରେ ମଧ୍ୟ ସେମିତି ଉଚ୍ଚତା ପାଇଥିବ ବା ଉଚ୍ଚ ଦୋକାନର ସେହି ସ୍ୱାଦହୀନ ଖାଦ୍ୟଦ୍ରବ୍ୟ କିଛି ନବୁଝି ସୁଝି, ପରୀକ୍ଷା ନ କରି ତରବରିଆରେ କିଣିକରି କପୋଳ କଳ୍ପିତ କଥାରେ ମୁହଁରେ ଘରକୁ ନେବାପରେ ତାକୁ ଜୀବନସାରା ଅନୁତାପ କରିବାକୁ ପଡ଼ିବ ? ସେ ନିଜର ପରିମାର୍ଜିତ ରୁଚି ସାମ୍ନାରେ କାହାକୁ ମଧ୍ୟ କିଛି ବୁଝିପାରୁ ନ ଥିଲା ଏବଂ କେଉଁଠି ଗହମ-କପାମଞ୍ଜିର ଭାଉ ଘୋଷୁଥିବା ପତ୍ନୀ ତାହାର ନିକିତିରେ ପଡ଼ିଯିବ ତେବେ ? ଏହା ଠିକ୍‌ଥିଲା ଯେ ବାଳିକାର କଣ୍ଠର ମାଧୁର୍ଯ୍ୟକୁ ସେ ନିକଟରୁ ବାଢ଼େଇ - ବଜେଇ କରି ପରୀକ୍ଷା କରି ନେଇଥିଲା, କିନ୍ତୁ ଏହି ଚିତ୍ତାକର୍ଷକ କୋଠା ମଧ୍ୟ ପରିପୂର୍ଣ୍ଣ ନା ପୁରାପୁରି ଫମ୍ପା ? ଦିନରାତି ରବୀନ୍ଦ୍ର ସଂଗୀତ ଶୁଣିକରି ହିଁ ତ ସେ ଜ୍ଞାନ-ପିପାସୁ ନିଜର ତୃଷା

ମେଣ୍ଟେଇ ପାରିବ ନାହିଁ । କିନ୍ତୁ ଏବେ ତ ନାକରେ ଦଉଡ଼ି ଲଗେଇବା ପାଇଁ କଣା ହେଇ ଯାଇଥିଲା । ସେ ଆତୁର ହୋଇ ରବିବାରର ପ୍ରତୀକ୍ଷା କରିବାକୁ ଲାଗିଲା ।

ମାସସାରା ନିଜର ଶିବରବରଯାତ୍ରୀ ସମୂହଙ୍କ ସହିତ ଏଠାରେ ସେଠାରେ ବୁଲିବାର ପୋଗ୍ରାମକୁ କଲୀ ପନ୍ଦର ଦିନରେ ସ୍ଥଗିତ ରଖିକରି କଲିକତା ଫେରିବାକୁ ପଡ଼ିଲା । ପାର୍ଟିର ସବୁଠାରୁ ଛୋଟ ସଦସ୍ୟ ଡିକୀ ବୈଲହେମର ବାରାଣସିର ଢାବାରେ କରିଥିବା ସମୟ-ଅସମୟରେ ଭଲରେ ରନ୍ଧା ହେଇ ନଥିବା ଭୋଜନ ପ୍ରାଣାନ୍ତକ ରକ୍ତ ଆମାଶୟ ରୋଗ ରକ୍ତହୀନ କରି ଦେଇଛି । କେତେଥର କଲୀ ନିଜର ଏକ ଜିଦିଆ, ବିଗିଡ଼ି ଯାଇଥିବା ରାଜକୁମାରମାନଙ୍କୁ ବୁଝେଇବାକୁ ବ୍ୟର୍ଥ ଚେଷ୍ଟା କରିଥିଲା - 'ଭାରତୀୟ ଖାଦ୍ୟ ହିଁ ଖାଇବାକୁ ହେବ, ତେବେ ସେ ସେମାନଙ୍କୁ କୌଣସି ସଫା ସୁତୁରା ହୋଟେଲକୁ ନେଇଯିବ ।' କିନ୍ତୁ ନା, ସେମାନଙ୍କୁ ତ କାଶୀର ବିଚିତ୍ର ବସ୍ତୁଗୁଡ଼ିକ ହିଁ ସମ୍ମୋହନର ଜାଲରେ ବାନ୍ଧିବାରେ ଲାଗିଥିଲା । କାନ୍ଧ ପର୍ଯ୍ୟନ୍ତ ବିଞ୍ଚି ହେଇଥିବା ହଳଦିଆ ବାଳର ଅୟେଲ ଝଟକେଇ ତାହାର ବିଦେଶୀ ଅବଧୂତ ଜିଦ୍ ଚଢ଼ିଗଲା ପରେ ଜିଦ୍‌ଖୋରିଆ ତଟୁଘୋଡ଼ାରେ ଦୁଇପାଦ ଉଡ଼େଇ କରି ଛିଡ଼ା ହେଇ ଯାଆନ୍ତି । ବଡ଼-ବଡ଼ ଆଲୁମିନିୟମର ପାତ୍ରରେ ଘଣ୍ଟା ଯାଉଥିବା ସୁସ୍ୱାଦୁ ଭୋଜନର ସୁଗନ୍ଧ ପବନ ଦିନସାରା ରାସ୍ତା ଭୁଲି ଏଣେ-ତେଣେ ଯାଉଥିବା ଭୋକିଲା ଦଳକୁ ଅଟକେଇ ଦେଲା ।

"ଓହୋ, ଡେଲିଶସ", ଦଳର ବିଦେଶୀ ବାଳିକା ଅଭିନେତ୍ରୀ ଫୁର୍ତ୍ତିରେ ନଇଁକରି ସୁଗନ୍ଧିତ ବାଷ୍ପରେ କମ୍ପିତ ଢାଙ୍କୁଣୀକୁ ସୁଙ୍ଘିକରି ଢାବାର ମାଲିକ ବାଙ୍ଗରା ସରଦାରକୁ ନିଜର ଗୋଟିଏ ନୀଳ କଟାକ୍ଷରେ ଚିତ କରିଦେଲା ।

"ସବୁ କିଛି ଏକଦମ ତଟକା ଅଟେ, ମେମ ସାହେବ, ନାନ କରୀ, ତନ୍ଦୁରୀ ଚିକେନ୍", ସରଦାରକୁ ହୁଏତ ଏହା ପୂର୍ବରୁ ମଧ୍ୟ କାଶୀରେ ଦିନରାତି ହିପ୍ପିମାନଙ୍କର ଜଜମାନୀ କରିବାର ଗୁରୁତ୍ୱପୂର୍ଣ୍ଣ ଅଭ୍ୟାସ ଥିଲା ।

"ଟିପିକେଲ ଇଣ୍ଡିୟେନ କରୀ ଏଣ୍ଡ ଟିପିକେଲ ଇଣ୍ଡିଏନ ଚେଫ୍" କହିକରି ହସର ମଣ୍ଡଳୀ ଜମିଗଲା ।

କଲୀ ରାଗରେ ଗରଗର ହେଇ ରହି ଯାଇଥିଲା । ଯେମିତି ଘୃଣ୍ୟ ଦୁର୍ଗନ୍ଧ ସରଦାର ଥିଲା, ସେମିତି ହିଁ ରିକେଟି ହଲୁଥିବା ଟିଣର ଚଉକିଗୁଡ଼ିକ । ମଇଳା ମୋଟା ଗଣ୍ଡାର ଚମଡ଼ାବାଲା କୁକରି ଆଉ ଜଙ୍ଘ କୁଣ୍ଡୋଉ ଥିବା ଘୃଣ୍ୟ ଅନହେଲ୍‌ଦି ଚେହେରାର ବାଳକ ଚାକର । କିନ୍ତୁ ଦଳର ଢୋଲ, ନାଗରା ଆଦି ବାଜା ବାଜିବା ସ୍ଥାନରେ ଗତ ପନ୍ଦର ଦିନରେ ସେ ତାହାର ଆତଙ୍କର ସ୍ୱର କ୍ରମଶଃ ଅସ୍ପଷ୍ଟ ହେଇ ହେଇ ପୁରାପୁରି ବିଲୀନ ହେଇ ଯାଇଥିଲା । ହାରିକରି ସେ ମଧ୍ୟ ଏକ କୋଣର ଚଉକିରେ ବସି ଯାଇଥିଲା । ସରଦାରର ଥରକୁ ଥର ଆଗ୍ରହ କରିଲା ପରେ ମଧ୍ୟ ସେ ଏକ କପ ଚା ପର୍ଯ୍ୟନ୍ତ ପିଇପାରି ନଥିଲା, ଆଉ ଛି-ଛି, ତା ସହିତ ଏହି ବିଦେଶୀ ଗୋଟାକରୁ ଗୋଟିଏ ଲକ୍ଷାଧିପତିମାନଙ୍କର

ସଭ୍ୟ ପୁତ୍ର, ମାନବୀୟ ସଭ୍ୟତାର ସର୍ବୋଚ୍ଚ ଶିଖରରେ ପହଞ୍ଚି କରି ପୁଣି କେଉଁ ଅସଭ୍ୟ ସଭ୍ୟତାର ଆଦିମ ସ୍ରୋତକୁ ଛୁଇଁବାକୁ ସ୍ୱେଚ୍ଛାରେ ଅଜଣା ଘାଟିମାନଙ୍କ ଆଡ଼କୁ ଗଡ଼ି ଗଡ଼ି ଯାଉଥିଲେ ।

ଇଚ୍ଛା କରିଥିଲେ କାଶୀର ଦାମୀ ବ୍ରୋକେଡ଼ ନେଇକରି ନିଜର ଶ୍ୱେତକାୟାକୁ ସଜେଇ ପାରିଥାନ୍ତେ । ସେମାନଙ୍କର ବଟୁଆର ମହିମାକୁ କଲୀ ବହୁତ ନିକଟରୁ ଦେଖି ସାରିଥିଲା, କିନ୍ତୁ ସେମାନଙ୍କର ମୁଣ୍ଡରେ ବନ୍ଧା ହେଇଥିଲା ଟଙ୍କେ ଚାରିଅଣାର ବେନାରସୀ ଗାମୁଛା, ଧୋତି-କୁରୁତା, ଆଉଗୌର ଲଲାଟ ଉପରେ ବୈଷ୍ଣବ ତିନି ଧାଡ଼ିର ରେଖା ତିଳକ । ଚାହିଁଥିଲେ ଶେମ୍ପେନ ବା ଓେଟସିକ୍ସଟି ନାଇନର ବୋତଲଗୁଡ଼ିକ ସୋଡ଼ାଓ୍ୱାଟରର ବୋତଲଗୁଡ଼ିକ ପରି ସେମାନେ ସହଜରେ ଜୁଟେଇ ପାରିଥାନ୍ତେ, କିନ୍ତୁ ଘାଟରେ ଅବଧୂତର ଆଡ୍ଡାରେ ଜମିଥିବା, ଗଞ୍ଜେଇ, ଚରସର ଦମ ଟାଣିକରି କରିବେ ତ୍ରୈଲୋକ୍ୟ ଦର୍ଶନ ଆଉ ବିଚାରୀ କଲୀ ବାଲି ଉପରେ ଦୂରରେ ଛିଡ଼ା ହେଇ ହେଇ ତମାସା ଦେଖୁଥିବ ।

ହୋଟେଲର ଗୋଟିଏ କୋଠରୀରେ ପାଞ୍ଚ ପାଣ୍ଡବ ଆଉ ତାଙ୍କର ଦ୍ରୌପଦୀ ! ପ୍ରଥମ ଦିନ କଲୀକୁ ମଧ୍ୟ ନିଜ କୋଠରୀରେ ଶୁଏଇବାର ଜିଦ୍ ଧରିଥିଲେ କିନ୍ତୁ 'ଡୋଣ୍ଟ ବି ଚାଇଲ୍ଡିସ' କହିଲା ପରେ ହୁଏତ କଲୀର ତମ୍ବାପରି ତେଜ ସେମାନଙ୍କୁ ଭୟଭୀତ କରି ଦେଇଥିଲା । କିନ୍ତୁ ଢାବାରେ ଖାଇବାର ପ୍ରସ୍ତାବକୁ ଅନୁମୋଦନ ନ କଲାପରେ ମଧ୍ୟ କଲୀ ସେମାନଙ୍କୁ ଅଟକେଇ ପାରି ନ ଥିଲା, ସେମାନଙ୍କୁ ହାତରେ ଧରି ଚୋବେଇ-ଚୋବେଇ କରି କୁକୁଡ଼ା ଖାଇବା ଆଉ ନାନର ବଡ଼ ବଡ଼ ଗୁଣ୍ଡା ଜଙ୍ଗଲୀ ଭିକାରୀମାନଙ୍କ ପରି ଗିଳି ଦେଉଥିବା ଦେଖି କଲୀ ଆଶ୍ଚର୍ଯ୍ୟ ହେଇ ଯାଇଥିଲା ।

ପୁଣି ଏହା କ'ଣ ଦିନକର କଥା । ଲୁଗାରେ ପଡ଼ିଥିବା ଗାର କଚ୍ଛାମାରି, ଧୂଆଁରେ ହାଲୁକା ହଳଦିଆ ରଙ୍ଗର ଏବଂ ପରିଷ୍କାର ହେଇ ନ ଥିବା ଓ କସିକରି ବନ୍ଧା ଯାଇଥିବା ସରଦାରଜୀଙ୍କ ଜଟା ଉପରେ କଲୀର ଅତିଥିଦଳର ଭାଗିରଥୀ ଝରଝର ହେଇ ନିରନ୍ତର କେତେଦିନ ପର୍ଯ୍ୟନ୍ତ ବହି ଚାଲିଥିଲା । ତନ୍ଦୁରୀ କୁକୁଡ଼ା, ନାନ ଆଉ କାଶ୍ମିରୀ ମରିଚରେ ସଜ୍ଜିତ ହେଇଥିବା ଲାଲ ବୁଟରେ, ସମୟର କିଛି ଆଗରୁ ନିଜର ପ୍ରତିଶୋଧ ନେଇଗଲା । କାଠମାଣ୍ଡୁର ପ୍ରୋଗ୍ରାମ କେନ୍‌ସେଲ୍ କରି, ମୃତପ୍ରାୟ ବେଲହେମ୍‌କୁ ଏକ ପ୍ରକାର କୋଳରେ ବସେଇ କରି କଲୀ ମି. ଶେଖରନକୁ ସମର୍ପି ଆସିଥିଲା ।

"ଏମିତି ବିଚିତ୍ର ଦଳର ସଞ୍ଚାଳନ ମୋ ଦ୍ୱାରା ହେବ ନାହିଁ ସାର୍, ଆପଣ ଅଫିସର କୌଣସି ପୁରୁଷ କର୍ମଚାରୀକୁ ହିଁ ଏମାନଙ୍କ ଆତିଥ୍ୟ ସମର୍ପି ଦିଅନ୍ତୁ ।"

କିନ୍ତୁ ସେହି ବାଳକମାନେ କ'ଣ ତାକୁ ଏତିକି ସହଜରେ ଛାଡ଼ି ଦିଅନ୍ତେ ?

"ନିଜର ପ୍ରମିସ୍ କ'ଣ ଭୁଲିଗଲ କଲୀ !" ଦଳର ଛଅ ଫାଟ ଥିବା ନୌକାର ଅଝାଳ ତାହାର ଡଉଲ ଡାଉଲ ମଣିବନ୍ଧକୁ ଧରିଦେଲା । କଲିକତାର ଶ୍ମଶାନ ଆମକୁ କଲୀ ହିଁ ଦେଖେଇବ । ଇଏ ପ୍ରମିସ୍ କରିଥିଲା ମି.ଶେଖରନ୍ ।"

ତାହାର ଆକର୍ଷକ ହସ କଲୀକୁ କାହାର ସ୍ମରଣ କରଉଥିଲା ? ହଠାତ୍ କଲୀର ଦୁଇ କାନ ଗରମ ହେଇ ଉଠିଲା ।

"ଠିକ୍ ଅଛି, ମି. ଶେଖରନ୍, ବୈଲହେମର ଠିକ୍ ହେଲାପରେ ମୁଁ ଏମାନଙ୍କୁ ସେଠାରେ ପହଞ୍ଚାଇ ଦେବି ।"

ପୁଣି ନିଜର ବଡ଼ ଦୁଷ୍ଟାମି ହସ ହସି ସେ ଶେଖରନ ଆଡ଼କୁ ଅନେଇ ଚାଲିଗଲା ।

ପନ୍ଦର ଦିନ ମଧ୍ୟରେ ଯେଉଁ ଘରକୁ ଏକ ଦୁର୍ଗମ ଉଦାସ ଅବସ୍ଥାରେ ଛାଡ଼ି ଯାଇଥିଲା ତାହାର ମାନଚିତ୍ର ହିଁ ବଦଳି ଯାଇଛି, ଏହା ସେ ଗୃହ ପ୍ରବେଶ ସମୟରେ ବୁଝିଥିଲା । ତାକୁ ଦେଖିଲା ମାତ୍ରେ ମାୟା ହସି ହସି ତା'ର କୋଠରୀକୁ ଚାଲି ଆସିଲା ।

"ଆରେ ବା, ଆପଣ ତ ପୁରା କୋଠରୀର ଅଶୁଭ ଆବହାୱା ହିଁ ବଦଳେଇ ଦେଇଛନ୍ତି । ଆମେମାନେ ତ ଏହି କୋଠରୀକୁ ଆସିବା ଛାଡ଼ି ଦେଇଥିଲୁ ।"

ବହୁତ ଦିନରୁ ସଫାହେଇ ନଥିବା କୋଠରୀ ମଧ୍ୟ ସ୍ୱଚ୍ଛ-ସଜ୍ଜିତ ମନେ ହେଉଥିଲା ।

"ମନେ ହେଉଥିଲା, ଆପଣ ଖୁବ୍ ଥକି ଯାଇଛନ୍ତି । ବହୁତ ଲମ୍ବା ଯାତ୍ରା ଥିଲା କି ?"

କଲୀ ପ୍ରଥମ ଥର ମାୟାର ଆକର୍ଷକ ଚେହେରା ନିକଟରୁ ଦେଖିଲା ।

ବାଳିକା ପୁରାପୁରି ବଡ଼ଭାଇର ଛୋଟ ସଂସ୍କରଣ ଥିଲା । ସେହି ନାକ, ବୁଦ୍ଧିଦୀପ୍ତ ଆଖି ଆଉ ଚକଚକ କରୁଥିବା ଦାନ୍ତ । ଗଳଗଣ୍ଡରେ ବିକୃତ ହେଇ ଯାଇଥିବା ନିଜ ବଡ଼ ଭଉଣୀ ଠାରୁ ସ୍ୱଭାବ ଓ ରୂପ ଦୁଇଟାରେ ମାୟା ନିଶ୍ଚିତ ଭାବରେ ଭିନ୍ନ ଥିଲା । ଦିନସାରା ଚୁପଚାପ୍ ରହିଲା । କାଲି ଜୟା ରାତିରେ ପ୍ରଗଳ୍ଭା ହେଇ ସୁଦର୍ଶନ ପତିଙ୍କର ମଧୁର ପ୍ରସ୍ତାବରେ କେମିତି ଅଣ୍ଟା ଛୁରୀ ଚଲଉ ଥିଲା, ସେ ସବୁ ବିଛଣାରେ ଶୋଇ ଶୋଇ କଲୀ ଶୁଣୁଥିଲା । ବିଚାରା ଦାମୋଦର... ପତ୍ନୀର, ସେହି ହିମ ଶୀତଳ ବ୍ୟବହାରର କାରଣ କ'ଣ ସେହି କ୍ଷୁଧାତୁର ବ୍ୟକ୍ତି କାଙ୍ଗାଳ ଭିକାରି ପରି ସୁସ୍ୱାଦୁ ବ୍ୟଞ୍ଜନର ସୁଗନ୍ଧ ପାଇଲା ମାତ୍ରେ ଲାଳ ଗଡ଼େଇବାକୁ ଲାଗିଥାଏ ? କୌଣସି ପୁରୁଷର ଉପସ୍ଥିତି କଲୀକୁ କେବେ ଭୟାବହ ମନେ ହେଇନାହିଁ । କିନ୍ତୁ ଗୃହର ସେହି ବ୍ୟକ୍ତିର ସମ୍ମୁଖରେ ଏକାନ୍ତରେ ତା'ର ଦୁସାହସୀ କଲିଜା ମଧ୍ୟ ଥରି ଉଠୁଥିଲା ।

"ଗସ୍ତତ ଆହୁରି ଲମ୍ବା ଥିଲା, କିନ୍ତୁ ଫେରିବାକୁ ପଡ଼ିଲା । ଯାହାକୁ ସାଙ୍ଗରେ ନେଇ ଯାଇଥିଲା, ସେମାନଙ୍କ ଭିତରୁ ଜଣକର ଶରୀର ହଠାତ୍ ଖରାପ ହେଇ ଯାଇଥିଲା । ଅମ୍ମା ଠିକ୍ ଅଛନ୍ତି ନା ? ଗାଧେଇ-ପାଧେଇ କରି ତେବେ ତାଙ୍କ ସହିତ ଦେଖା କରିବାକୁ ଯିବି", କଲୀ ହସିକରି ମାୟା ପାଖରେ ଚଉକି ଟାଣିକରି ବସିଗଲା ।

ସେ ଯେମିତି ଜାଣିଶୁଣି କରି କ୍ଷଣକ ପାଇଁ ସେହି ଅତିଥିକୁ ଡେରି ପର୍ଯ୍ୟନ୍ତ ବସେଇବା ଚାହୁଁଥିଲା । ସତରେ ଦୁଇ ଭାଇଭଉଣୀଙ୍କ ଚେହେରାରେ ଅଦ୍ଭୁତ ସାମ୍ୟ ଥିଲା ।

"ଆପଣଙ୍କୁ ଦେଖିକରି ତ ସବୁବେଳେ ଏମିତି ଲାଗୁଛି ଯେ, ଗାଧେଇ-ପାଧେଇ

କରି ଚାଲି ଆସିଛନ୍ତି ମାୟା ପ୍ରଶଂସାପୂର୍ଣ୍ଣ ଦୃଷ୍ଟିରେ ତାକୁ ମୁଣ୍ଡରୁ ଗୋଡ଼ ପର୍ଯ୍ୟନ୍ତ ଦେଖିକରି କହିଲା ।"

"ଓହୋ, ଧନ୍ୟବାଦ, କିନ୍ତୁ ଦେଖନ୍ତୁ", ସେ ଘନ କେଶଗୁଚ୍ଛର ଏକ ଗୋଛା ଘୁଞ୍ଚେଇ ଦେଇ ନିଜର ହୀରାର କର୍ଣ୍ଣଫୁଲରେ ଚକ୍‌ଚକ୍ କରୁଥିବା ଛୋଟ କାନ ଦେଖେଇ ଦେଲା, "ଦେଖୁଛ ନା ? ମନେ ହେଉଛି, ଇଞ୍ଜିନ୍ ନିଜର ସମସ୍ତ କୋଇଲାର ଧୁଆଁର ଟାର୍ଗେଟ ମୋର କାନକୁ ହିଁ କରେଇ ଦେଇଛି ?"

"ଆପଣ ଗାଧେଇ-ପାଧେଇ କରି ଶୀଘ୍ର ଆସନ୍ତୁ, ଆଚ୍ଛା ? ଗୋଟିଏ ଜବରଦସ୍ତ ସରପ୍ରାଇଜ୍ ଅଛି ଆପଣଙ୍କ ପାଇଁ", ଏକଦମ୍ ଛୁଆ ପରି ପରିଷ୍କାର ହସରେ କଳୀକୁ ସମ୍ପୂର୍ଣ୍ଣ ବୋର କରି ସେ ଚାଲିଗଲା ।

କ'ଣ ସରପ୍ରାଇଜ୍ ବା ହେଇପାରିବ । ଜଣାନାହିଁ କିଛି ଅଲୌକିକ ଘଟଣା ହୁଏତ ଏହା ଭିତରେ ଘଟି ଯାଇଥିବ ।

ନିଜର ରହସ୍ୟମୟ ପିଲାବେଳକୁ ଅନ୍ଧକାର ପୂର୍ଣ୍ଣ କକ୍ଷରେ ଅନ୍ଧ ହେଇ ସେ ଘଣ୍ଟାଏ ପର୍ଯ୍ୟନ୍ତ ନିଜର ସ୍ନେହପ୍ରବଣ ଦେଖି ନ ଥିବା ଅଜଣା ପିତାଙ୍କର ମମତାମୟୀ ଆକୃତିକୁ ଅଣ୍ଡାଳିବାକୁ ଲାଗିଥାଏ । ସୁଦର୍ଶନ ପିତା, ଯିଏ ସ୍କୁଲର ନୀରସ ଷଡ଼ିରେ ଡେସ୍କରେ ଝୁଙ୍କି, ଦିବା ସ୍ୱପ୍ନରେ ବୁଡ଼ିଥିବା ବିଦ୍ରୋହିଣୀ ଶିଶୁ କନ୍ୟାକୁ ଅଚାନକ ଆସିକରି ତାକୁ କଳ୍ପନା ଲୋକରେ ଛାତିରେ ଲଗେଇ ନେଉଥିଲେ, ଏବେ କେଉଁଠି ହଜି ଯାଇଥିଲା ।

ଆଜି ସେହି କଳ୍ପନାଲୋକ ବର୍ଷ ବର୍ଷ ଧରି ବନ୍ଦ କଳଙ୍କି ଲାଗିଥିବା ତାଲା ଯେମିତି ସ୍ୱୟଂ ହିଁ ଫଟ୍ କରି ଖୋଲିଗଲା । ଅସ୍ପଷ୍ଟ ଅନ୍ଧକାରରେ ରାସ୍ତାଭୁଲି ଏଣେତେଣେ ଯିବା ମାନେ ସେ ଶୂନ୍ୟରେ ବାହୁ ମେଲେଇ ପୁଣି କାହାକୁ ଖୋଜିବାକୁ ଲାଗିଥିଲା ? ଜଣାନାହିଁ ତାହାର ଅନୁପସ୍ଥିତିରେ ସେହି ଗର୍ବୀ ବ୍ୟକ୍ତି ତାହାର ସୌନ୍ଦର୍ଯ୍ୟର କଠୋରତା ମାନି ଯାଇଥିବ । ତାକୁ ପାଇବା ପାଇଁ ହୁଏତ ସେମିତି ହିଁ ବ୍ୟାକୁଳ ହେଇ ଉଠିଥିଲା, ଯେମିତି ଆଜି ପର୍ଯ୍ୟନ୍ତ ଅସଂଖ୍ୟ ପୁରୁଷ ନତଜାନୁ ହେଇକରି ତା'ର ସମ୍ମୁଖରେ ବ୍ୟାକୁଳ ହେଇ ବିଚଳିତ ହେଇ ବସି ଯାଇଛନ୍ତି । ଜଣାନାହିଁ ଚଞ୍ଚଳ ମାୟା ତାକୁ ଏହି ସରପ୍ରାଇଜ୍ ଦେବାକୁ ଡାକିଯାଇଛି । ପରକ୍ଷଣରେ ତାହାର ପାଦତଳେ ସେ ଦୃଢ଼ ଧରାତଳକୁ ତା'ର କୁଶାଗ୍ର ବିବେକ ଚେତନା ସ୍ୱୟଂ ହିଁ ଟାଣି ନେଲା । କେମିତି ଶିଶୁକାଳ ତା'ର ଥିଲା । ଯେଉଁ ମାୟାକୁ ସେ ପ୍ରଥମ ଥର ଏମିତି ଘନିଷ୍ଠତାରେ କହି ପାରିଥିଲା, ସେ କ'ଣ ତାକୁ ଏମିତି ସରପ୍ରାଇଜ୍ ଦେବାକୁ ଡାକି ପାରିଥାନ୍ତା ? ଆଉ ପୁଣି ଯେଉଁ ବ୍ୟକ୍ତିକୁ ନେଇକରି ସେ ନିରର୍ଥକ ରସଯୁକ୍ତ ତନ୍ତର ଲମ୍ବ ଓ ଆଡ଼ସୂତା ବୁଣିବାରେ ଲାଗିଥିଲା, ସେ ତାହାର ଜୀବନ-ପୁସ୍ତକର ଏକ-ଏକ ବର୍ଜିତ ପରିଚ୍ଛେଦ ପଢ଼ି ତାକୁ ଦୂରକୁ କଚାଡ଼ି ଦେଇ ନାହିଁ ?

କୋଠରୀ ଖୋଲା ରଖିଦେଇ ସେ ଅମ୍ମାକୁ ଦେଖା କରିବାକୁ ଚାଲିଗଲା ।

ମୋଟା ପରଦାର ବ୍ୟବଧାନରେ ତୀର ଗତିରେ ଆସୁଛି ଯେଉଁ ବ୍ୟକ୍ତି ସେ ପୁରା

ବେଗରେ ଧକ୍କା ଖାଇଲା, ସେ 'ଆରେ-ଆରେ', ସମ୍ଭାଳି କରି କହି, ତାକୁ ବହୁ ଯତ୍ନରେ ବାହୁରେ ଏମିତି ଜାବୁଡ଼ି ଧରିଲା, ଯେମିତିକି ଚକଟି କରି ଛୋଟ ଛୋଟ ମାଂସ ଖଣ୍ଡ କରିଦେବ । ତୀବ୍ର ଧକ୍କାରେ ଟେବୁଲ ଉପରେ ଥିବା ଗୋଟିଏ ଫୁଲଦାନୀ ତଳେ ପଡ଼ିଯାଇ ଦୂର ପର୍ଯ୍ୟନ୍ତ ଗଡ଼ି ଗଡ଼ି ଚାଲିଗଲା ଆଉ ହୁଏତ ସେହି ଆକସ୍ମିକ ଦୁର୍ଘଟଣାର ଶବ୍ଦର ଆହ୍ୱାନରେ ଜୟାକୁ ସେଠାକୁ ଟାଣି ଆଣିଲା । ସୁନ୍ଦରୀ କଲୀର ସଦ୍ୟ ସ୍ନାତା ସୌନ୍ଦର୍ଯ୍ୟ ପତିର ବାହୁପାଶରେ ବନ୍ଦି ଦେଖିକରି ସେ ଓଲଟି ପଡ଼ି ଫେରିଗଲା । କଲୀ ଏକ ଝଟକାରେ ଦାମୋଦରର ବାହୁପାଶରୁ ନିଜକୁ ମୁକୁଳେଇ ନେବାରୁ ସେହି ନିର୍ଲ୍ଲଜ ଅତି ନିର୍ଲ୍ଲଜତା ସହ ହସିବାକୁ ଲାଗିଲା । "ବା-ବା, କେଉଁ ସୁଗନ୍ଧ ଲଗଉଛନ୍ତି ଆପଣ । କ୍ଷଣକ ପାଇଁ ଏମିତି ଲାଗିଲା ଯେମିତିକି କୌଣସି ଇମ୍ପୋଟେଡ୍ ସେଣ୍ଟର ଶିଶି ହିଁ ଶାଳୀ ହାତରେ କଣାହେଇ ଯାଇଛି ।" ପୁଣି ସେ ଦୁଇଟି ରିକ୍ତ ହାତ ପାପୁଲିକୁ ମୁଠାକରି ସୁଙ୍ଘିବାକୁ ଲାଗିଲା ।

ଛଟପଟ ହେଇ କଲୀ ଭିତରକୁ ଚାଲିଗଲା । କ'ଣ ଭାବିଥିବ ଜୟା ! କୌଣସି ଅଦେଖା ଧକ୍କା ତାକୁ କାହାରି ବାହୁରେ ବାନ୍ଧିଦେବ, ତେବେ ଦୋଷ କ'ଣ ତା'ର ଥିଲା ? କିନ୍ତୁ ଏହି ଦାମୋଦର ବଦମାସ୍‌କୁ କଡ଼ା ଶିକ୍ଷା ଦେବାକୁ ପଡ଼ିବ ।

ମାଯାର କୋଠାରୀରେ ହିଁ ଗୋଟିଏ ମସିଣା ପକେଇ କରି ଅମ୍ମା ମାୟାକୁ କେତୋଟି ପୋଷ୍ଟକାର୍ଡ଼ ଲେଖଉ ଥିଲା । ତାକୁ ଦେଖିଲା ମାତ୍ରେ ଅମ୍ମା ଥରକୁ ତର ନାକରୁ ଖସି ଯାଉଥିବା ଚଷମା ହାତରେ ଧରିଲା ।

"ଯା ମାୟା, ପ୍ରଥମେ ଏହାର ମୁହଁ ମିଠା କରେଇ ଦେ", ସେ ହସିକରି ତାହାକୁ ହାତରେ ଟାଣିନେଇ ନିଜ ପାଖରେ ବସେଇ ଦେଲା ।

"କ'ଣ କଥା ଅମ୍ମା, କାହିଁକି ମୁହଁ ମିଠା କରଉଛ ?" କଲୀ ଏବେ ମଧ ଜଙ୍ଗଲୀ ଦାମୋଦରର କଣ୍ଟା ଫୁଟୁଥିବା ସ୍ପର୍ଶରେ ଶିହରିତ ହେଇ ଯାଉଥିଲା ।

"ନେ ପ୍ରଥମେ ପେଡ଼ା ଖା", ଅମ୍ମା ନିଜ ହାତରେ ପେଡ଼ାର ଅଧାଖଣ୍ଡ କଲୀର ମୁହଁରେ ଭର୍ତ୍ତି କରିଦେଲା ।

"ଏବେ ଶୁଣ, ଆମର ପୁଅ ବାହାଘର ପାଇଁ ରାଜି ହେଇଯାଇଛି ।"

ଗଳାର ପେଡ଼ା ଗଳାରେ ହିଁ ଅଟକି ଗଲା । ଜ୍ଞାନଶୂନ୍ୟ ହେଇ ମେଲେଇ ଥିବା ବାହୁ ପୁଣି ଥରେ କୌଣସ ଅନାଡ଼ି ସନ୍ତରଣକାରୀ ପରି ଅଥଳ ଜଳରାଶିରେ କୌଣସି କୁଟାର ଅଦୃଶ୍ୟ ଆଶ୍ରୟ ଅଣ୍ଡାଳିବାକୁ ଲାଗିଲା ।

"ଏବେ ପଚାର ଝିଅ କିଏ ?"

ଗୋଟିଏ ବୁଡ଼ ସହିତ ଯେମିତି ବହୁତ ପାଣି ଅନାଡ଼ି ସନ୍ତରଣକାରୀର ଆଖି, ନାକ, କାନରେ ପଶିକରି ତାକୁ ମୃତ ପ୍ରାୟ କରି ଦେଲା । କଲୀର ମନେ ହେଲା ସେ ପଡ଼ିଯିବ । ଏମିତି ପ୍ରଥମେ କ'ଣ ଅମ୍ମା କେବେ ବୁଝେଇ ଥିଲା ।

"ଆରେ, ପାଗଳି, ଏବେ ମଧ୍ୟ ବୁଝି ପାରିଲୁ ନାହିଁ ? ନିଜର ପାଣ୍ଡେ ମହାଶୟଙ୍କ କୁନ୍ନୀ । ଜବରଦସ୍ତି ନେଇ ଯାଇଥିଲି ନା ସେ ଦିନ ? ପୁଣି ଏମିତି ସୁନ୍ଦର ଚେହେରା ବା କାହାକୁ ପସନ୍ଦ ହେବ ନାହିଁ । ଆରେ ଛୋଟ ଥିଲା ଏହି କୁନ୍ନୀ ଯେତେବେଳେ ଏକଦମ ଦୁର୍ବଳ, ଲିଭରର ଚିକିତ୍ସା କରେଇବା ପାଇଁ ପାଣ୍ଡେ ମହାଶୟ ମାଡ୍ରାସ୍ ନେଇ ଯାଇଥିଲେ । ଏବେ ତ ତା'ର ନକ୍ସାହିଁ ବଦଳି ଯାଇଛି । କ'ଣ, ନୁହେଁ କିରେ ମାୟା ?"

ସମଗ୍ର ବ୍ରହ୍ମାଣ୍ଡ କଲୀ ପାଇଁ ଗୋଲ ଗୋଲ ହେଇ ବୁଲୁଥିଲା ।

"ଏହି ରବିବାରକୁ ଆମକୁ ସମୁଦିଙ୍କ ନିମନ୍ତ୍ରଣରେ ଯିବାକୁ ହେବ । ତୁ ମଧ୍ୟ ଯିବୁ ଝିଅ ? ତୁ କ'ଣ ମୋର ଜୟା, ମାୟା ଠାରୁ ପର ?"

"ଆଉ କ'ଣ, ଆପଣଙ୍କୁ ତ ଯିବାକୁ ହିଁ ପଡ଼ିବ, ତା ସହିତ ଗୋଟିଏ କାମ ମଧ୍ୟ ଆପଣଙ୍କୁ ହିଁ କରିବାକୁ ହେବ", ମାୟା ତାର କାନ୍ଧ ପାଖକୁ ନଇଁ ପଡ଼ିଲା ।

"ସେହିଦିନ ପାଣ୍ଡେ ମହାଶୟ ଟୀକା ମଧ୍ୟ ଚଢ଼ାଇବେ । ଆମର ଅମ୍ମା ମଧ୍ୟ ପୁନରାବୃତ୍ତି କରିବ । ପାହାଡ଼ର ଏହି ନିୟମ । ଏକ ଖୁବ୍ ସୁନ୍ଦର ସାଢ଼ି ଆପଣଙ୍କୁ ହିଁ କିଣି କରି ଆଣିଦେବାକୁ ହେବ ।"

"ମତେ ?" କଲୀର ଶୁଖିଲା ଓଠରେ ପ୍ରଶ୍ନ ସ୍ୱୟଂ ହିଁ ଖସିଗଲା ।

"କାହିଁକି ? ଦିନ-ରାତି ଆପଣ ମଡ଼େଲ ହେଉଛନ୍ତି । ଆପଣଙ୍କର ଖୁବ୍ ଭଲ ଚଏସ୍ ଠାରୁ ଆଉ କାହାର ହେବ ? ସେହିଦିନ କୁନ୍ନୀ ମଧ୍ୟ ହୁଏତ ଆପଣଙ୍କର କୌଣସି ଫେସନ ପେରେଡ଼ ଦେଖି ଆସିଥିଲା । କହୁଥିଲା, 'ତମର ମିସ ମଜୁମଦାର ତ ଡି.ସି.ଏମ୍.ର ଶସ୍ତା ଛିଟର ଥାନ ମଧ୍ୟ କାନ୍ଧରେ ପକେଇ କରି ବାହାରି ଆସିଲେ, ବ୍ରୋକେଡ଼ ପରି ମନେହୁଏ । କେବଳ ନାହିଁ । କ'ଣ ଠିକ କହିଛି ନା ଅମ୍ମା ?"

"ଆରେ ଚକଚକ ଲାଲ ଆଣ, ବେସ୍ । ବହୁତ ଉଜ୍ଜ୍ୱଳ ଗୋରା ଆସୁଛି ।" ନିଜର ଗର୍ବୋକ୍ତି ମୁହଁରୁ ବାହାରିଗଲା ମାତ୍ରେ ଅମ୍ମା ଲଜ୍ଜିତ ହେଲା । ଶ୍ୟାମଳୀ କଲୀ ସମ୍ମୁଖରେ ଥରକୁ ଥର ଗୌରବର୍ଣ୍ଣ ଭାବି ପୁତ୍ରବଧୂର ଉଜ୍ଜ୍ୱଳ ରଙ୍ଗର ବର୍ଣ୍ଣନାହିଁ ହୁଏତ କଲୀକୁ ଅନ୍ୟ ମନସ୍କ କରି ଦେଇଥିଲା ।

ସରଳ ଅମ୍ମା ଚଟ୍‌କରି ତା ଉପରେ ରଖିଥିବା ଛୁଆପରି ଫୁସୁଲାଇବାକୁ କଥା ବଦଳେଇ ଦେଲା, "ଆରେ ଏବେ ଗୋରା ରଙ୍ଗରେ ଖାଲି ସବୁକିଛି ହୁଏ ନା କ'ଣ । ଆମର ଏହି କଲୀକୁ ହିଁ ଦେଖ, ଲାଲ, ନୀଳ ହଳଦିଆ ଯାହା ପିନ୍ଧୁ ସେ ସେଥିରେ ସେ ଫୁଟି ଉଠେ । କିନ୍ତୁ ଆମର ପାହାଡ଼ି ବାହାଘର - ବରାତରେ ରାତିରେ ହଳଦିଆ ଓଢ଼ଣୀ ହିଁ ଚଢ଼ାଯାଏ ଝିଅ ।"

"ଠିକ୍ ଅଛି ଅମ୍ମା, ମୁଁ ନେଇ ଆସିବି ।" କଲୀ ଉଠିଗଲା ।

"ଆରେ ଟଙ୍କାତ ନେଇକରି ଯା," ଅମ୍ମା ପାଖରେ ଥିବା କଲମ ରଖିବା ଡବା ଖୋଲିକରି ଶହ-ଶହର ଚାରିଟି ନୋଟ୍ ବାହାର କରିଦେଲେ ।

"ଏତେଗୁଡ଼ିଏ ନୋଟ୍ ନେଇକରି କ'ଣ କରିବି ଅମ୍ମା ?" କଲୀ ସାଢ଼ୀର ଦରଦାମ କରିବାର ମୁଡ୍‌ରେ ନଥିଲା ।

"ଆରେ, ଶହେ ଟଙ୍କାରେ ତ ଆଜିକାଲି ପାଞ୍ଚ ହାତର କନା ମଧ୍ୟ ମିଳେ ନାହିଁ । ଖୁବ୍ ଭଲ ଆଣିଦେବୁ ଝିଅ । ବଡ଼ ଘରର ଝିଅ ଆସୁଛି । ସବୁବେଳେ ଭଲ ଜିନିଷ ଖାଇଛି-ପିନ୍ଧିଛି, ଘୋଡ଼େଇ ହେଇଥିବ ।"

ଚାରୋଟି ନୋଟ୍ ହାତରେ ଚାପି ଧରି କଲୀ ଫେରିଲା, ମାୟା ମଧ୍ୟ ତା ସହିତ ଚାଲିବାକୁ ଲାଗିଲା । ଝରକା ପାଖରେ ମୁଣ୍ଡ ନୁଆଁଇ ଜୟାର ଲାଲ ଫୁଲିଥିବା ଆଖିକୁ ଦୁହେଁ ଏକା ସାଙ୍ଗରେ ଦେଖିକରି ଦୃଷ୍ଟି ଫିରେଇ ନେଲେ ।

ମାୟା ଅପଦସ୍ତ ହେଇଗଲା । କ୍ଷଣକ ପୂର୍ବର ସମଗ୍ର ଉଲ୍ଲାସ ଜଣାନାହିଁ କେଉଁଠିକୁ ଉଡ଼ିଗଲା । ଧିର ସ୍ୱରରେ ସେ ସ୍ୱୟଂହିଁ କହିବାକୁ ଲାଗିଲା, "ଜଣା ନାହିଁ କ'ଣ ହେଇ ଯାଇଛି ଅପାର, ଦିନ-ରାତି ସେ ହିଁ କାନ୍ଦେ ନାହିଁ, ଘରର ସମସ୍ତଙ୍କୁ କନ୍ଦାଏ । ଏତେ ଅଶୁଭ ପରେ ଏମିତି ଶୁଭଦିନ ଆସିଛି ଆଉ ଏହାଙ୍କର ମୁହଁ ଶୁଖିଲା ହିଁ ରହୁଛି ।"

ବଡ଼ ଭଉଣୀ ପ୍ରତି ତାହାର ଆକ୍ରୋଶକୁ ଶୁଣିଲା ମାତ୍ରେ ତାକୁ ନିଜ କୋଠରୀକୁ ଟାଣିନେଲା, "ମାୟା, ତମକୁ କିଛି କହିବାର ଅଛି", ଆଉ ତାକୁ ନିଜ ପଲଙ୍କ ଉପରେ ବସେଇ ସେ ଏକା ନିଶ୍ୱାସରେ ନିଜର ଆକସ୍ମିକ ଲଢ଼େଇର ବିବରଣୀ ପ୍ରକଟ କରିଦେଲା ।

"ଜଣାନାହିଁ ତମର ଅପା କ'ଣ ଭାବୁଥିବ । ମୁଁ ତମର ଭିଣେଇକୁ ବାହୁ ବନ୍ଧନରୁ ଛଡ଼େଇବା ପୂର୍ବରୁ ତମର ଅପା ବୁଲିପଡ଼ି ଚାଲିଗଲା । ତମେ ତାକୁ ବୁଝେଇ କରି ଏବେ କହିଦିଅ ମାୟା, ପ୍ଲିଜ୍ ।"

କଲୀର ବହୁତ ବଡ଼ ଆଖିର ଗୋଲା ଦେଖିକରି ମାୟା ମୁଗ୍ଧ ହେଇଗଲା । ଠିକ୍ ଯେମିତି କୌଣସି ଚଳଚ୍ଚିତ୍ରର ଚତୁର କେମେରା ମେନ ସୁନ୍ଦର ନାୟିକାର ଲୁହଭିଜା ବଡ଼ ଆଖି ଉପରେ ଫୋକସ୍ ପକେଇ ତାଙ୍କୁ ଆହୁରି ସୁନ୍ଦର ବନେଇ ଦେଇଥିଲା ।

"ତମେ କ'ଣ ଭାବୁଛ, ଅପା ଭିଣେଇକୁ ଜାଣିନାହିଁ ?" ଗୋଟିଏ ଦୀର୍ଘ ନିଶ୍ୱାସ ଟାଣିକରି ମାୟା କ୍ଷଣକ ପାଇଁ ଚୁପ୍ ହେଇଗଲା । ପୁଣି ଉଠିକରି ସେ ଦରଜା ବନ୍ଦ କରିଦେଲା । ଜଣା ନାହିଁ କାନ୍ଥରେ କାନ ଲଗେଇ କୁଟିଳ ଦାମୋଦର ଏଇଠି କେଉଁଠି ଲୁଚି ଦୁଇଜଣଙ୍କ କଥା ଶୁଣୁଛି । "ତମେତ ପରର । ମୁଁ ଅପାର ସହୋଦର ଭଉଣୀ ଅଟେ । ମତେ ମଧ୍ୟ ଦିନେ ଏମିତି ଜାବୁଡ଼ି ଧରିଥିଲା । ମୁଁ ତ କଷିକରି ଏକ ଚାପୁଡ଼ା ମାରିଥିଲି । ଏବେ ତମେ ଭାବ, କ'ଣ ଏମିତି କଥାରେ ଅମ୍ମା, ଅପା ବା ନିଜ ପତିକୁ କହି ପାରିବ ? ମୁଁ ତ ସ୍ୱୟଂ ହିଁ ଭାବୁଥିଲି କଲୀ, ତମକୁ ସତର୍କ କରିଦିଏ । ହୁଏତ ଏହି ଆଶଙ୍କାରେ ବଡ଼ଭାଇ ମଧ୍ୟ ବିଚଳିତ ହେଇଯାଇଥିଲେ । ତମକୁ ବାହାର କରିବା ପାଇଁ ଅମ୍ମାକୁ ଦୁଇ-ତିନିଥର କହି ସାରିଥିଲେ ।"

"ଆଚ୍ଛା ?" କଲୀର କଳିଜା ବୁଡ଼ିଗଲା । ତାହେଲେ ସେ ମତେ ଏଠାରୁ ତଡ଼ିବାକୁ

ଚାହୁଁଛି । କିନ୍ତୁ ମନର ଭାବକୁ ସେ ଚେହେରାରେ ପ୍ରସ୍ଫୁଟିତ ହେବାକୁ ଦେଲା ନାହିଁ ।

"ତମର ବଡ଼ଭାଇକୁ ମୋର ଚିନ୍ତା କରିବାକୁ ପଡ଼ିବ ନାହିଁ ମାୟା", ସେ ହସିକରି କହିବାକୁ ଲାଗିଲା, ମୁଁ ନିଜେ କଲିକତାରୁ ବାହାରକୁ ଚାଲି ଯାଉଛି ।"

"ବା, ଇଏ କେମିତି ହେଇପାରିବ, ବଡ଼ ଭାଇର ବାହାଘର ପୂର୍ବରୁ ଆପଣଙ୍କୁ ଯିବାକୁ କିଏ ଦେବ ?"

କିଛି ଘଣ୍ଟାର ପରିଚିତା ମାୟା ତାକୁ କିଛି ବର୍ଷର ପୂର୍ବ ପରିଚିତା ବାନ୍ଧବୀର ଅନ୍ତରଙ୍ଗତାରେ ଜାବୁଡ଼ି ଧରିଲା ।

"କେଉଁଠିକୁ ଯାଉଛ, ଟିକେ ଶୁଣେ ତ ।"

"ଗତ ମାସ ଏମିତିହିଁ ଖେଳ-ଖେଳରେ ଗୋଟିଏ ବଡ଼ ଭଲ ଚାକିରି ପାଇଁ ଦରଖାସ୍ତ ପକେଇଥିଲି । ସେଥିରେ ଶୁଣିଛି ସୁପାରିଶ ଦରକାର ହୁଏ । ସିଲୋନ ଟି ବୋର୍ଡ଼ର ସେକ୍ରେଟେରିର ପଦ କେବଳ ଯୋଗ୍ୟତାର ସଫେଇ ମାଗୁ ନ ଥିଲା । ୟୁ ମଷ୍ଟ ହେଭ ଲୁକ୍ସ, ବର୍ଥ ଏଣ୍ଡ ବ୍ରେନ । ପୁଣି ଇଣ୍ଟରଭ୍ୟୁ ଦେଇକରି ଫେରିଲା ପରେ ଆଶାହିଁ ଛାଡ଼ି ଦେଇଥିଲି ।"

"କାହିଁକି ?"

"ଏକରୁ ଏକ ସୁନ୍ଦରୀ ଅପ୍ସରାମାନଙ୍କର ମେଳା ବସିଥିଲା ।"

"ତୁମଠାରୁ ମଧ୍ୟ ସୁନ୍ଦର ?" ମାୟାର ବିସ୍ଫାରିତ ଦୃଷ୍ଟିରେ ମିଥ୍ୟା ଖୋସାମତିଆର ଚିହ୍ନ ମଧ୍ୟ ନ ଥିଲା ।

"ଆଉ କ'ଣ, ଦେଖିଥିଲେ ବେଶ୍ ଦେଖିବାକୁ ରହିଯିବ । ମିନୀ ସାଢ଼ି ମିନୀ ସ୍କଟ । ଫଲ୍ସ ଆଇଲୈଶେସ, ଫିଲ୍ସ ବୈଷ୍ଟ-ପେଡ୍ସ ଆଉ ଏଠାରେ ନିଜର କିଛି ମଧ୍ୟ ଫଲ୍ସ ନ ଥିଲା ! ଯାହା ଥିଲା ସବୁ ଏକଦମ ବିଧାତା ଦେଇଥିବାର ମେଟେରିଏଲ କଲୀ ହସିବାକୁ ଲାଗିଲା । "କିନ୍ତୁ ତେବେ ମଧ୍ୟ ଧନ୍ୟ ସେମାନଙ୍କ ରୁଚିକୁ, ଜଣାନାହିଁ କେମିତି ମତେ ହିଁ ବାଛିଛନ୍ତି । ଦେଖ । !" ବଟୁଆରୁ ନିଜର ଏପୟେଣ୍ଟମେଣ୍ଟ ଲେଟର ବାହାର କରି ସେ ମାୟାକୁ ଧରେଇ ଦେଲା ।

"ହାୟ ରାମ, ମୁଁ ମରିଗଲି । ଏତେ ଦୂର ଯାଉଛ, ଏକଦମ ରାବଣର ଦେଶକୁ । ଦେଖିବ ପରଦିନ ଦଉଡ଼ି କରି ଚାଲିଆସିବ । କଲିକତାର ମାୟା କ'ଣ ସହଜରେ ଛାଡ଼ି ହୁଏ ।"

"ହୁଏତ । ଦାର୍ଶନିକ ପରି ମୁଦ୍ରାରେ କଲୀ ହସିକରି ଚିଠିକୁ ବଡ଼ ଯତ୍ନରେ ଯୋଡ଼ିକରି ବଟୁଆରେ ରଖିଦେଲା ଆଉ କହୁଣିକୁ ତକିଆର ଆଶ୍ରୟ କରି ପଲଙ୍କ ଉପରେହିଁ ଗଡ଼ିପଡ଼ିଲା ।"

"ଏକରେ ଏହି ଚାକିରିରେ ବାହାରକୁ ଯିବାର ସୁଅବସର ମିଳୁଥିବ । ପୁଣି ସତ କହିବାକୁ ଗଲେ ମୁଁ ସ୍ୱଦେଶର କେଉଁଠିକୁ ଦୂରକୁ ଯିବାକୁ ଚାହୁଁଥିଲି ମାୟା ଏବେ କୁହତ

ବାହାଘର କେବେ ହେବ ?"

"ଏହାତ ଚିନ୍ତାର ଘୁଣ ଅମ୍ମାଙ୍କୁ ପଅରଦିନରୁ ଖାଇ ଯାଉଛି", ମାୟା କଲୀକୁ ଖୋଲି ଯାଇଥିବା ଘଡ଼ିର୍ ବେଷ୍ଟକୁ ବାନ୍ଧୁ ବାନ୍ଧୁ କହିବାକୁ ଲାଗିଲା ।

"ବଡ଼ ଭାଇ ଏକ ସର୍ତ୍ତ ମଧ୍ୟ ରଖିଛି ଏବେ ଜଣାନାହିଁ କେଉଁ ଅପୂର୍ବ ସର୍ତ୍ତ ଅଟେ । କେଉଁଠି ଏବେ ସେ ବାଧା ନଦେଉ ଯେ ଏକ-ଦୁଇ ବର୍ଷ ପର୍ଯ୍ୟନ୍ତ ବାହାହିଁ ହେବେ ନାହିଁ । କିନ୍ତୁ କୁନ୍ନୀକୁ ଠିକ୍ ଭାବରେ ଦେଖିନେବା ପରେ ପୁଣି ସର୍ତ୍ତ-ଫର୍ତ୍ତ ଭୁଲିଯିବ ।"

"ଆଚ୍ଛା ? ଏତେ ସୁନ୍ଦର ଅଟେ ନା କ'ଣ ?" କଲୀ ପଚାରିଲା ଆଉ ସ୍ୱୟଂ ହିଁ ଲଜ୍ଜିତ ହେଲା । ଅମ୍ମାର କଥା ଅଲଗା ଥିଲା । ତାଙ୍କୁ ତ ସେ କିଛି ଓଲଟା-ସିଧା କଥା ପଚାରିପାରେ, କିନ୍ତୁ ମାୟା କେଉଁଠି କିଛି ଚିନ୍ତା କରି ନ ବସୁ । ତା'ର ବା କ'ଣ ଯାଏ ଆସେ । ହେଇଥାଉ ସୁନ୍ଦର ।

"ଏବେ କେମିତି କହିବି, ତମକୁ, ମାୟା କହିଲା", "ହୁଏତ ତମକୁ ପସନ୍ଦ ନହେଇ ପାରେ । ୟୁ ନୋ ଦେଟ୍ ସମଥିଂ ସମଥିଂ", ଦୁଇ ହାତର ତାଳିରେ ବଜେଇ ସେ ନିଜ ଫାନ୍ଦରେ କିଛିକ୍ଷଣ ପର୍ଯ୍ୟନ୍ତ ଅଡୁଆରେ ପଡ଼ିଗଲା, ଶରୀର ଟିକିଏ ମୋଟା, ବରଂ ଏମିତିତ କହିହେବ, 'ଆହା, ସାଉଥ୍ ଇଣ୍ଡିଏନ୍ ଏକ୍ଟ୍ରେସ୍ ପରି ପୁରାପୁରି ଲାଗୁଛି ।' ମୁଁ ଧମକ ମଧ୍ୟ ଦେଇଛି, କେଉଁଠି ବଡ଼ ଭାଇ ସାମ୍ନାରେ ଏହା କହିଦେବ ନାହିଁ । କିନ୍ତୁ ଆମ ସମାଜରେଏବେ ଭଲ ଝିଅଙ୍କର ଅଭାବ ଅଛି । ଆଉ ପୁଣି ବଡ଼ଭାଇ ଆମର 'ହାଇ ବ୍ରୋଡ୍' ଅଟନ୍ତି । ଇୟେ ପସନ୍ଦତ ହେଲା । ଏବେ ମଧ୍ୟ ବିଶ୍ୱାସ ହେଉ ନାହିଁ ।"

ହଠାତ୍ କାରର ଶବ୍ଦ ଶୁଣିକି ସେ ଅବାକ୍ ହେଇ ଛିଡ଼ା ହେଇଗଲା, "ମନେ ହେଉଛି ସେ ଆସିଗଲେ, ଆଜି ଏହାଙ୍କୁ ନେଇକରି ବଡ଼ ଭାଇ ଜଳଖିଆ ନ ଖାଇ ରାମନବମୀ ଝଲେଇ କରିବାକୁ ବାହାରି ଯାଇଥିଲେ ।"

"ରାମନବମୀ ?" ଏହା ତ କୌଣସି ବ୍ରତ ନା ? କଲୀ ମଧ୍ୟ ଉଠିକରି ବସିଗଲା ।

"ହାୟ ରାମ, ମୁଁ କେଉଁଠିକି ଯିବି", ମାୟା ଫିକକରି ହସି ଦେଲା । "ଏତିକି ମଧ୍ୟ ଜାଣନାହିଁ, ତିନି ଧାଡ଼ିର ଅମ୍ମାର ରାମନବମୀ ଝଲେଇବକୁ ନେଇ ଯାଇଥିଲେ, ସୁନାର ହାର ।. ସେହି ଅଣତିରିଶ ଭରିର ରାମନବମୀ ପାଇଁ ମୁଁ ଓ ଅପା ଟାଣିବାକୁ ଲାଗିଲୁ, କିନ୍ତୁ ଆମକୁ ମିଳିଲା ନାହିଁ । ମିଳୁଛି କୁନ୍ନୀକୁ । "ଲକୀ ବଗ, ଇଟ ଇଜ ଟେରିଫିକ୍ ।" ଏତେ ବଡ଼ ବଡ଼ ଦାନା – ଅକେଜନାଲ ଉୟେର ପାଇଁ 'ଜଷ୍ଟ ଦି ଥିଂଗ ।' ତୁମକୁ ଏଥିରେତ ଜରିବାଲା ସାଢ଼ୀ ଆଣିବାକୁ କୁହାଯାଇଛି । ଟୀକାରେ ଏହି ଦୁଇଟି ଜିନିଷ ଚର୍ଚ୍ଚା ହେବ । ଝଲେଇ କି ନେଇ ଆସିଥିବେ, ତେବେ ତମକୁ ଏବେ ଦେଖେଇ ଯିବି ।'

କିନ୍ତ ମାୟା ଯିବାପରେ ହିଁ କଲୀ ଡେଇଁପଡ଼ି ବାହାରକୁ ଚାଲିଗଲା । ନା ସେ ରୁକ୍ଷ ବିକ୍ଷିପ୍ତ ବାଳ ଉପରେ ପାନିଆଁ ଚଲେଇଲା ନା ଦର୍ପଣ ଆଡ଼କୁ ଅନେଇଲା । ସକାଳରୁ

ଭୋକିଲା ଥିଲା, ଶୋଷରେ ଗଳା ଶୁଖି, ଶୁଖି ଯାଉଥିଲା । କେଉଁଠି ଗୋଟିଏ କପ୍ ଚା' ମଧ ମିଳିଥିଲେ, ହୁଏତ କାନ ଓ ଆଖିର ମଝି ସ୍ଥାନରେ ଚାଲିଥିବା ହାତୁଡ଼ି ବନ୍ଦ ହୋଇ ଯାଇଥାନ୍ତା । କିନ୍ତୁ କବାଟରେ ତାଲା ଲଗେଇ କରି ସେ ନିରୁଦ୍ଦେଶ୍ୟ ଭାବରେ ଅକାରଣରେ ବୁଲିବାକୁ ଚାଲିଗଲା । ଆଜି ତାହାର ହାଫ୍‌ଡ଼େ ଥିଲା, କିନ୍ତୁ ଦିନରାତି ଉପଦ୍ରବ ଚାଲୁକରି, ତ୍ରୈଲୋକ୍ୟ ଦର୍ଶନର ଏକ ଏକ ଗୋଲି ମୁହଁରେ ରଖି ଅଳ୍ପକାଳୀନ ମୃତ୍ୟୁର ଚେଷ୍ଟା ନ କରି କଡ଼ ଲେଉଟାଇବାରେ ମଧ ଶୋଇ ଯାଉଥିବା ନିଜ ଭୂତ-ପିଶାଚର ଦଳରେ ସ୍ୱୟଂ ଡାକିନୀ ହୋଇ ସମ୍ମିଳିତ ହୋଇ ସେ ହଠାତ୍ ଅସମୟରେ ହିଁ ସେମାନଙ୍କ ହୋଟେଲରେ ପହଞ୍ଚିଗଲା । ପଲ ଏକ ଚିତ୍କାର କରି ତାକୁ ବାହୁରେ ଉଠେଇ ନେଲା, "ହେ କଲୀ, ତମେ ନିଜର ଠିକଣା ଦେଇଥିଲେ ଆମେ ତମକୁ କେବେଠୁ କିଡ଼ନାପ କରି ନେଇ ଆସିଥାନ୍ତୁ । ବେଲହେମ ଆଜି ଏକଦମ ଠିକ୍‌ଅଛି । କାଲି ଡିସ୍‌ଚାର୍ଜ ହେଇଯିବ । କୃଷ୍ଣ ପକ୍ଷର ଚତୁର୍ଦ୍ଦଶୀକୁ ଶ୍ମଶାନଦର୍ଶରେ ଆଦେଶ ଗୁରୁଜୀ ଦେଇଥିଲେ । ବେସ୍ ରବିବାର ଦିନ ଶ୍ମଶାନରେ ଦିନସାରା ପିକନିକ୍ ଆଉ ରାତିକୁ ସଧନା-ପ୍ୟୁନି-ପ୍ୟୁନି ମାଇଲଭ ।"

ସେ ଅସଜଡ଼ା ହୋଇ ବୁଣି ହୋଇଥିବା ଦୁଇ-ତିନୋଟି ସେପ୍‌ଲେସ୍ କୁରୁତା ଉପରେ ତୋଫାନ ହୋଇ ଶବ ପରି ପଡ଼ିଥିଲା । କଲୀକୁ ଏହି ବିଦେଶୀ ଝିଅ ବହୁତ ଆଗରୁ ମୁକ୍ତେଶ୍ୱର ଲୈବରେ ଦେଖିଥିଲା, କ୍ଷୟ-ରୋଗର କିଟାଣୁ ଦ୍ୱାରା ବଳପୂର୍ବକ ରୋଗିଣୀ କରା ହୋଇଥିବା ଧଳା ଛୋଟ ମୂଷା ପରି ଲାଗୁଥିଲା । ଦିନସାରା ସେ ଝାଉଁଳି ରସ ବହାର କରି ଦେଇଥିବା ଆଖୁ ପରି ରହିଥାଏ, କିନ୍ତୁ ସନ୍ଧ୍ୟା ଆସିବା ସଙ୍ଗେ-ସଙ୍ଗେ ନିଜର ଗୋଲି ମୁହଁରେ ରଖିଲା ମାତ୍ରେ ସେ ବୁଲବୁଲ ପରି ମଧୁର ଶବ୍ଦ କରିବାକୁ ଲାଗେ ।

"ଚଉଦ ବର୍ଷ ବୟସରୁ ସେ ଏଡ଼ିକ୍ଟ ହେଇଯାଇଛି", ବେଲହେମ କଲୀକୁ କହିଥିଲା ।

କୋଟିପତି ପିତାର ଏକମାତ୍ର କନ୍ୟା ପ୍ୟୁନୀର ନେତୃତ୍ୱରେ ହିଁ ଏହି ଦଳ ଭାରତ ଆସିଥିଲା । ଯେଉଁ ପ୍ରବାସୀ ଯୋଗୀରାଜ ତାକୁ ଶିକ୍ଷା ଦେଇଥିଲେ, ତାଙ୍କରି ପ୍ରଭାବଶାଳୀ ସୁପାରିଶ ପତ୍ରର କାଗଜ ବିଡ଼ା ଥରକୁ-ଥର କଷ୍ଟମର କଷ୍ଟସାଧ ଚକ୍ରବ୍ୟୂହରୁ ରକ୍ଷା କରି ସକୁଶଳ ବାହାର କରି ଆଣୁଥିଲା । ଦଳର ପଞ୍ଚ ପାଣ୍ଡବ ତାହାର ମୁଠିରେ ବନ୍ଦ ଥିଲେ, ଯାହାକୁ ସମୟ-ସମୟରେ ସେ ଢିଲା ଦେଇ ଏଠାକୁ ସେଠାକୁ ବୁଲିବାକୁ ଛାଡ଼ି ଦେଉଥିଲା । କିନ୍ତୁ ଏପୋଲେ ପରି ସୁନ୍ଦର ନୀଳ ଆଖିବାଲା ପାଲ ସବୁବେଳେ ତାର ମୁଠାରେ ବନ୍ଦ ରହିଥାଏ ।

କଲୀ ପ୍ରତି ନିଜର ସେହି ସର୍ବାଧିକାର ସୁରକ୍ଷିତ ପ୍ରେମୀର ଆକସ୍ମିକ ପସନ୍ଦ ହୁଏତ ଏଠାରେ ସେ ଦେଖି ନେଇଥିଲା । ଶ୍ମଶାନ ଯାତ୍ରାର ପ୍ରସ୍ତାବକୁ ସେ ଜାଣିଶୁଣି କରି ପଦାଘାତ କଲା, "ତୁମେମାନେ ଯାଅ, ମୋର ଦେହ ଭଲ ନାହିଁ," ସେ ପଛକରି ଶୋଇ ରହିଲା ।

ତେବେ ମଧ ପାଲ ବହୁତ ଦୁଃସାହସରେ କଲୀର କାନ ପାଖରେ ନଇଁ ପଡ଼ିଲା

ଆଉ ଫୁସ୍-ଫୁସ୍ କରି କହିବାକୁ ଲାଗିଲା, "ତମେ ଶନିବାରକୁ ହିଁ ଏଠାକୁ ଚାଲିଆସିବ । ପୁଣି ଭୋର୍‌ରୁ ଉଠିକରି ଚାଲିଯିବା ।"

ଫୁସ୍‌ଫୁସ୍ କରିବା ସହିତ ହିଁ କ୍ଷୁଧାତୁର ଅଧରର ସ୍ପର୍ଶରେ କଳୀର କାନ ଶିହରି ଉଠିଲା । ସେ ଡେଇଁପଡ଼ି ଉଠିଗଲା, "ନା, ମୁଁ ରବିବାରକୁ ହିଁ ଆସିକରି ତମକୁ ସେଠାକୁ ନେଇଯିବି, ସିନସ୍ ଇଟ ଓ୍ୱାଜ୍ ଏ ପ୍ରମିସ୍ । ହେଲେ ଆମର ଏଠାରେ ସ୍ତ୍ରୀଲୋକମାନେ ଶ୍ମଶାନକୁ ଯାଆନ୍ତି ନାହିଁ ।"

"ଓ ମାଇ ସୁଇଟ", ପାଲ୍ ଶୂଳୀରେ ବସିଥିବା ଇସୁକୁ ନିର୍ଦ୍ଦୋଷ ମୁଦ୍ରାରେ ରୁଷି ଥିବା କଳୀକୁ ମନେଇବାର ଚେଷ୍ଟା କଲା ।

"ତମକୁ କହିଛି ନା ମୁଁ, ଆମର ଦଳରେ ସେକ୍ସ ଇଜ୍ ନୋ ବାର । ନା ଆମ ଭିତରେ କେହି ସ୍ତ୍ରୀ ଅଟେ, ନା ପରୁଷ । ଟିକିଏ ବସ ନା ।"

"ନା ପାଲ, ମୋର କିଛି ସପିଂ କରିବାକୁ ହେବ ।"

ହୋଟେଲ୍‌ରୁ ବାହାରି କରି ସେ ମହାତୃପ୍ତିର ନିଶ୍ୱାସ ନେଇ କପାଳର ଝାଳ ପୋଛିଲା ।

## ଷୋହଳ

ସେହି ବିଦେଶୀ ଦଳର କ୍ଷଣିକ ସାନ୍ନିଧ ମଧ ତାହାକୁ ଈଶ୍ୱରଙ୍କର ନିଶା ସୁଘେଇ କରି ଦୋହଲାଇ ଦେଉଥିଲା । ପୁଣି କାହିଁକି ଯାଇଥିଲା ସେଠାକୁ, ସେ ମନକୁ ମନ ଭାବି ଭାବି ଉତ୍ତର ପଡ଼ାର ବସ୍‌ରେ ଚଢ଼ି ବସିଗଲା । କ'ଣ କରିବ ଉତ୍ତର ପଡ଼ା ଯାଇକରି । କିଏ ଥିଲା ସେଠାରେ ? କେହି ନାହିଁ.... ପୁଣି କ'ଣ କରିବ ସେଠାକୁ ଯାଇକରି.... କାହିଁକି... ସେହି ବସଷ୍ଟପ୍‌ରୁ ଅଲିପୁର ଫେରି ଆସିବ.... ପାଗଳି ଡେଁଠିକାର, ଏହାଠାରୁ ତ ଆଉ କେଉଁଠିକୁ ଚାଲି ଯାଇଥାନ୍ତା.... କେଉଁଠିକୁ ? ...ସେଠାକୁ ? ଯେଉଁଠାରେ ଝଲେଇ କରି ନୂଆ ତିଆରି କରା ହୋଇଥିବା ରାମନବମୀର ପ୍ରଦର୍ଶନୀ ଚାଲିଥିଲା, ବା କ୍ଲୌରୀନ ଆଣ୍ଟିର ସେଠାକୁ.... କେଉଁଠିକୁ ଯାଇ ପାରିବ ସେ... ଏତେ ବଡ଼ ସହରରେ କ'ଣ କେଉଁଠାରେ ହେଲେ ଏମିତି ଦୁଇଟି ଆଖିଥିଲା, ଯିଏ ତାହାକୁ ଦେଖିକରି ପ୍ରସନ୍ନତାରେ ଚମକି ଉଠିବ ? ....କ'ଣ ବିଧାତା ତକୁ ଏଇଥି ପାଇଁ ତିଆରି କରିଛନ୍ତି ଯେ ନିର୍ଦ୍ଦୟୀ ସଂସାରୀ ତାକୁନିଜର ସ୍ୱାର୍ଥ ପାଇଁ ନିର୍ଜୀବ ସଟଲକର୍କ ପରି ଏଇଠି-ସେଇଠିକୁ ପକେଇବାକୁ ଲାଗିବେ ? କ'ଣ ସେ ଜବନ ସାରା ଅନ୍ୟମାନଙ୍କ ପାଇଁ ବିବାହର ସାଢ଼ି କିଣୁଥିବ ? ....ଯେଉଁ ରବିବାରକୁ ପୁରା ଗୃହ ଆମୋଦ-ପ୍ରମୋଦର ମାଙ୍ଗଳିକ ଉତ୍ସବରେ ଆକଣ୍ଠ ବୁଡ଼ି ରହିବ, ସେ ଶ୍ମଶାନରେ ପିକ୍‌ନିକ୍ କରୁଥିବ ।

ଚାଲିଥିବା ବସରେ ସେ ସ୍ୱୟଂ ହିଁ ହସିବାକୁ ଲାଗିଲା । ପାଖରେ ବସିଥିବା ବୃଦ୍ଧା

ପାରସୀ ମହିଳା ତାକୁ ଏକ ଲୟରେ ଦେଖିବାକୁ ଲାଗିଲା । ସେ ରୋଗୀ ପରି ହଳଦିଆ ସୁନ୍ଦରୀ ବାଳିକା ତାକୁ କିଛି ଏବନର୍ମାଲ ପରି ମନେହେଲା । କେମିତି ହସିବାରେ ଲାଗିଥିଲା । ଜଣାନାହିଁ କୌଣସି ପାଗଳଖାନାରୁ ଦୌଡ଼ିକରି ଚାଲି ଆସିଥିବ । ପାରସୀ ମହିଳା ଭୟରେ ପିଠି ବୁଲେଇ ଦେଲା ।

ଗୋଟାକ ପରେ ଗୋଟିଏ ବସ ବଦଳ କରି କଲୀ ଘରେ ପହଞ୍ଚିଲା, ରାତି ହେଇ ଯାଇଥିଲା । କାଖରେ ଥିବା ପେକେଟ୍ ଏବେ ଯାଇ କରି ଅମ୍ମାକୁ ଦେଇ ଆସିବ । ଗୋଟିଏ ଅଜଣା ଛୋଟ ଦୋକାନରୁ ହିଁ ଏତେ ସୁନ୍ଦର ସାଢ଼ି ମିଳିଯିବ, ତା'ର ଆଶା ମଧ୍ୟ ନଥିଲା । ପୁରାପୁରି ଫ୍ଲେମ୍‌ରେଡ଼ । ତା ଉପରେ ଚଉଡ଼ା ଜରିବାଲା ଆଁଚଲ, ନା ବେଲ ନା ବୁଟି । କାଉଣ୍ଟର୍‌ରେ ଏକ ପ୍ରକାର ଦୁଇଟି ସାଢ଼ି ଧରିଥିଲା - ଠିକ୍ ଯେମିତି ଯାଆଁଳା ଭଉଣୀ ଅଟନ୍ତି । କଲୀକୁ ଜଣାନାହିଁ କ'ଣ ପାଗଳାମି ଚାପିଲା ଯେ ଦୁଇଖଣ୍ଡ ଯାକ କିଣିଲା ।

ସେ ସାବନା ହେଲେ କ'ଣ ହେଲା । ଲାଲ ରଙ୍ଗ ଯେତିକି ସାବନା ଦେହରେ ସୁନ୍ଦର ଦେଖାଯାଏ, ସେତିକି କ'ଣ ଗୋରା ଉପରେ ଫୁଟି ପାରେ ? ସାନ୍ତାଳ ସୁନ୍ଦରୀ ମାନଙ୍କର କଳା କୋବରା ପରି ଚିକ୍କଣ କଳା ପିଠି ଉପରେ ଢିଲା ଜୁଡ଼ାରେ ଲଗା ହେଇଥିବା ରକ୍ତ ମନ୍ଦାର ପୁଷ୍ପ କେତେ ସୁନ୍ଦର ଲାଗେ । ପିକ୍‌ନିକ୍ ଦିନରେ ଏହି ସାଢ଼ି ପିନ୍ଧିବ ଆଉ ଚାଲୁ ଚାଲୁ ତାକୁ ମଧ୍ୟ ଦେଖେଇ ଦେବ 'ଏ ମିଷ୍ଟର, ଏକେଲା ତମ କୁନ୍ନୀ ପିନ୍ଧିପାରେ ନାହିଁ, ଏମିତି ସାଢ଼ୀ । ଦେଖି ନିଅ, କିଏ ଅଧିକ ସନ୍ଦରୀ ଲାଗୁଛି, ଗୋରୀ ନା କାଳୀ ?'

ସେ ମନକୁ ମନ ହସି ନିଜର ସାଢ଼ୀ କୋଠରୀକୁ ନେଇ ଆସିଲା, ପୁଣି ହାତର ଅନ୍ୟ ପେକେଟ ନଚେଇ, ହସି ଗୋଲ କୋଠରୀରେ ପହଞ୍ଚି ଗଲା । ପୁରା ପରିବାରର ଗୋଷ୍ଠି ଚାଲିଥିଲା । ପ୍ରବୀର ଜଣାନାହିଁ କେଉଁ କଥାରେ ଅଟ୍ଟହାସ୍ୟ କରୁଥିଲା । ତାକୁ ଏମିତି ହସିବା ଦେଖିକରି କଲୀ ଆଶ୍ଚର୍ଯ୍ୟ ହେଇ ଅଟକି ରହିଗଲା । ଆଚ୍ଛା, ଏହି କ୍ରୁର ବ୍ୟକ୍ତି ଏମିତି ମଧ୍ୟ ହସିପାରେ ।

କିନ୍ତୁ ହଠାତ୍ କଲୀକୁ କୋଠରୀରେ ଆବିର୍ଭୂତା ଦେଖିକରି ତା'ର ହସ ଆରୋହରେ ହିଁ ହେଇ ରହିଗଲା । ସେ ପଣି ଗମ୍ଭୀର ହେଇଗଲା । ଚେହେରାରେ ବାହାରିଥିବା ଚିଢ଼ିବାର ରେଖାଗୁଡ଼ିକୁ ଦେଖିକରି କଲୀ ହସିକରି ଆଗେଇ ଗଲା ।

"ନିଅନ୍ତୁ ଅମ୍ମା", ସେ ସାଢ଼ୀର ପେକେଟ ଅମ୍ମାର କୋଳରେ ରଖି ଦେଲା ।

"ଦେଖ, ପସନ୍ଦ ହେଉଛି କି ନାହିଁ ?"

"ଆ ଆଁ ଝିଅ, ଅମ୍ମା ଚଷମା ପିନ୍ଧି ଦେଲା ଆଉ ପେକେଟ ଖୋଲିବାକୁ ଲାଗିଲା", "ମୁଁ ଜାଣିଥିଲି ଯେ ତୁ ନିଶ୍ଚୟ ନେଇ ଆସିବୁ । ବା, ଏକେଦମ୍ ଏମିତି ରଙ୍ଗ ଚାହୁଁଥିଲି ମୁଁ, କ'ଣ ଏମିତି ନା ଜୟା ?" କିନ୍ତୁ କଲୀକୁ ଦେଖିଲା ମାତ୍ରେ ଜୟା ପୁଣି ଏଟେନସନ୍‌ରେ ଟାଣିହେଇ କାଠର ସିପାହୀ ହେଇ ଯାଇଥିଲା ।

"ହୁଁ" କହିକରି ସେ ଚୁପ୍ ରହିଗଲା । ନିର୍ଲଜ୍ଜ ଦାମୋଦର ସେହି କ୍ଷଣ-କ୍ଷଣକରେ ନୂଆ ରୂପ ଧରିଲା ବାଲା ଅଷ୍ଟଭୂଜା ପରି ତେଜୋମୟୀ ସୁନ୍ଦରୀକୁ ଏକ ଲୟରେ ଚାହିଁ ରହିଥିଲା ।

"ଯିବୁ ନା ରବିବାର ଦିନ ?" ଅମ୍ମା ପଚାରିଲା ।

"ନା ଅମ୍ମା", କଲୀ ଜାଣିଶୁଣି କରି ମାୟାକୁ ଲାଗିକରି ବସି ଗଲା । ଏମିତିରେ ଅମ୍ମା ପାଖରେ ମଧ ବହୁତ ଜାଗା ଖାଲିଥିଲା, କିନ୍ତୁ ମାୟାକୁ ଲାଗିକରି ତା'ର ସୁଦର୍ଶନ ଭାଇ ଯେ ବସିଥିଲା । କଲୀର ଆଁଚଲ କ୍ଷଣକ ପାଇଁ ହାୱାରେ ଉଡ଼ିକରି ମାୟାର ପିଠି ହେଇକରି ପ୍ରବୀରର କାନ୍ଧକୁ ଛୁଇଁ ଗଲା । କଲୀ ଆଡ଼ ଆଖିରେ ନିଜର ବଡ଼ ଯତ୍ନ ସହକାରେ ଉଡ଼େଇ ଥିବା ଆଁଚଲର ପ୍ରଗତି ଦେଖିଲା ଆଉ ହସିବାକୁ ଲାଗିଲା ।

"ବହୁତ ଶସ୍ତାରେ ମିଳିଗଲା ଅମ୍ମା, ତିନିଶହ ପଞ୍ଚସ୍ତରୀର ଅଟେ ପ୍ରକୃତରେ ଏବେ ବନାରସୀ ସାଢ଼ିର ଖୁବ୍ ସ୍ମଗଲିଂ ଚାଲିଛି, ଏଇଥିପାଇଁ କିଛି ଶସ୍ତାରେ ମିଳିଯାଇଛି ।"

ତିନିଶହ ପଞ୍ଚସ୍ତରୀକୁ ଆପଣ ଶସ୍ତା କହୁଛନ୍ତି, ନବୀନର ଆଖି ବିସ୍ଫାରିତ ହୋବାକୁ ଲାଗିଲା, "ଏତିକିରେ ତ ଆମେ ସାରା ବର୍ଷର କପଡ଼ା ତିଆରି କରେଇ ନେଉ । ମୁଁ ତ ଆଜି ହିଁ ଜାଣି ପାରିଲି ଯେ ସାମାନ୍ୟ ସାଢ଼ି ଏତେ ମହଙ୍ଗା ହୁଏ ।"

"ବା", କଲୀ ହସିକରି କହିବାକୁ ଲାଗିଲା, "ଗତ ଥର କାନାଡ଼ା ମୁଁ ଅଢ଼େଇ ହଜାରର ଏକ ସାଢ଼ିରେ ହିଁ ମଢ଼େଇ ହେଇଥିଲି । କୁହତ ଅମ୍ମା, ଆପଣଙ୍କ ବୋହୂ ପାଇଁ ସେହି ସାଢ଼ୀ ଆଣିଦେବି" ସେ ମଜା କଲା ।

"ନା ମହାଶୟା ! ମାଫ୍ କରନ୍ତୁ", ଦାମୋଦର ମଝିରେ ହିଁ କହି ପକେଇଲା, "ଆମର ଅମ୍ମା ଏମିତି ଅନାବଶ୍ୟକ ଖର୍ଚ୍ଚରେ ବିଶ୍ୱାସ କରନ୍ତି ନାହିଁ । ତାଙ୍କର ସାମର୍ଥ୍ୟ ଥିଲେ, ଅଢ଼େଇ ହଜାରରେ ସାଢ଼ୀ ସହିତ ମଢ଼େଲ ମଧ କିଣି ଆଣିବ ।"

କ୍ଷଣକ ପାଇଁ କଲୀର ଚେହେରା ଲାଲ ପଡ଼ିଗଲା । ଏହି ବ୍ୟକ୍ତିକୁ ଦେଖିଲା ମାତ୍ରେ ତାହାର ଶରୀରରେ ବିଚିତ୍ର ସଲସଲ ହବାକୁ ଲାଗେ ।

"ଏବେ ମୁଁ ଯାଏ," ସେ ଉଠିଗଲା, "ଇଏ ନିଅନ୍ତୁ କେସ୍‌ମେମୋ ଆଉ ଟଙ୍କା", ସେ ବଟୁଆ ଖୋଲିକରି କିଛି ନୋଟ୍ ଅମ୍ମାକୁ ଦେଇଦେଲା ।

ସେଠାରୁ ଉଠିକରି ଯିବାର ତା'ର ଟିକିଏ ହେଲେ ଇଚ୍ଛା ନଥିଲା, ଇଚ୍ଛା ହେଉଥିଲା, ଡେରି ପର୍ଯ୍ୟନ୍ତ ସେଠାରେ ବସି ବସି ଗଳ୍ପ କରିବା ପାଇଁ । କିନ୍ତୁ ସେ ଚାଲିବାକୁ ଲାଗିଲା, ତେବେ କେହିହେଲେ ତାକୁ ଥରେ ବସିବାକୁ କହିଲା ନାହିଁ । ମନେ ହେଉଥିଲା, ତା'ର ସହସା ଆସିଯିବାରୁ ସେହି ପାରିବାରିକ ଗୋଷ୍ଠୀର ସମସ୍ତେ ଚୁପ୍‌ହେଇ ଯାଇଥିଲେ । ହସିଲାବାଲା ହସିବା ବନ୍ଦକରି ଦେଇଥିଲା ଆଉ ତା'ର ଆସିବା ଆଗରୁ ବକ-ବକ କରିଲାବାଲୀ ଜୟା ମୁହଁ ଶୁଖେଇ କୋଣରେ ବସି ଯାଇଥିଲା । ଅମ୍ମା ମଧ ଥରେ ହେଲେ ବସେଇବାର ଆଗ୍ରହ କଲାନାହିଁ । ସେ ଚୁପ୍‌ଚାପ୍ ଉଠିକରି ନିଜ କୋଠରୀକୁ ଚାଲି

ଆସିଲା ।

ବହୁତ ଡେରି ପର୍ଯ୍ୟନ୍ତ ସେ ଝରକାର ଥଣ୍ଡା ଛଡ଼କୁ ଧରିକରି ଶୂନ୍ୟ ସଡ଼କକୁ ଦେଖିବାକୁ ଲାଗିଲା । ପ୍ରଥମେ ଏକ ଛୋଟ ଦୁର୍ଘଟଣା ହେଲା - କୌଣସି ସ୍କୁଟରର ଗୋଟିଏ ଟେକ୍ସି ସହିତ ଧକ୍କା, ପୁଣି ଗାଳି-ଗୁଲଜ, ପୋଲିସ୍‌ର ଭିଡ଼ ହେଲା ଆଉ ପୁଣି ସବୁ ଶାନ୍ତ । ଅଳ୍ପ ସମୟ ପରେ "ବୋଲ ହରି ବୋଲ"ର ଆହ୍ୱାନରେ ଦିଗମାନ ଗୁଞ୍ଜନ ବାହାରିଲେ ଗୋଟିଏ ଶବ ଗଲା, ଦୁଇ-ତିନୋଟି ସରାବୀ, ଗାଇ ହସି ହସି ବହାରିଲେ, ପୁଣି ସଡ଼କ କିଛିକ୍ଷଣ ପାଇଁ ଜନହୀନ ହେଇଗଲା ।

ଦିନ ସାରାର କ୍ଳାନ୍ତିରେ କଲୀର ପ୍ରତ୍ୟେକ ଅଙ୍ଗରେ କଷ୍ଟ ହେଉଥିଲା, କିନ୍ତୁ ଆଖିରେ ନିଦ ନଥିଲା । ଆଜି ଏତେ ବର୍ଷପରେ ତାକୁ ନିଜ ଅମ୍ମାର୍ଙ ସ୍ମୃତି କାହିଁକି ଆସୁ ନଥିଲା ? ଗୋଲାପି ସାଢ଼ୀ, ଗୋରା ରଙ୍ଗ, ଉଦାସ ଆଖି ଆଉ ସେହି ଆଖିଗୁଡ଼ିକରେ କଲୀ ପ୍ରତି କେମିତି ବିଚିତ୍ର ଭାବ । କ'ଣ ସେ ପ୍ରକୃତ ବାତ୍ସଲ୍ୟ ଥିଲା ନା କରୁଣା ଥିଲା ? କେବେ-କେବେ ଅନେକ ଅସ୍ପଷ୍ଟ ଆକୃତିଗୁଡ଼ିକ, ପ୍ରେତ ଛାୟାମାନଙ୍କ ପରି ତାକୁ ଅନିଦ୍ରାବସ୍ଥାରେ ମଧ ଘେରିକରି ନାଚୁଛନ୍ତି ମନେ ହେଉଥିଲା । ଲମ୍ୱା, ଗେଡ଼ା, ଗୋରା ସାବନ ଅସଂଖ୍ୟ ଗେଲବସର ଭରା ଦେଶୀ-ବିଦେଶୀ ମାଉସୀମାନେ, ରେଶମୀ କପଡ଼ାରେ ଝଲମଲ କରୁଥିବା ଦାସୀମାନେ, ଗୋଟାଏ- ଅନ୍ୟଟିର ସହିତ ବାଜୁଥିବା ଝାଡ଼-ଫାନୁସ, ଦୁଧ ପରି ଧୋଇ ହେଇଥିବା ଚାନ୍ଦିନୀ ତାହା ଉପରେ ଲମ୍ୱା ଆଉ ଗୋଲ ତକିଆ ଲଗା ହେଇଥିବା, କେତେଗୁଡ଼ିଏ ସାଜ-ସଜ୍ଜା କରିଥିବା ପୁରୁଷ, ଆଉ ଗହଣାରେ ଝଲମଲ କରୁଥିବା ମଝିରେ କାନ ଉପରେ ହାତ ରଖି ଗାଉଥିବା ଅମ୍ମା -

ଜୌବନର ସବୁ ରସ
ନେଇଗଲାରେ ଭଅଁର
ଗୁଞ୍ଜନ କରିରେ ଗୁଞ୍ଜନ କରି

ଚମକି ପଡ଼ି କଲୀ ଉଠି ବସୁଥିଲା ।

କ'ଣ ସେ ପ୍ରେତ ଦରକାର ଥିଲା । ଯଦି କେବେ ସେ ଦେଖି ନାହିଁ ତ ଏହି ଗୀତ କେମିତି ତାର ମନେ ରହିଯାଇଛି ? ଥରେ ହସ ହସରେ ସେ ଅମ୍ମାଙ୍କୁ ପଚାରି ମଧ ନେଇଥଲା, 'କଣ ଅମ୍ମା, ତମେ କେବେ ଏହି ଗୀତ ଗାଉଥିଲ ନା ?'

ଅମ୍ମାର ଚେହେରା ଧଳା ଫିକା ପଡ଼ି ଯାଇଥିଲା । 'ନା, ଜଣା ନାହିଁ କେଉଁଠାରୁ ଶୁଣି ଆସିଛୁ', ସେ କହିଥିଲା ।

କିନ୍ତୁ ଦିନେ ସ୍କୁଲରୁ ହଠାତ୍ ହୋମ ଲିଭ ମିଳିଗଲା ଆଉ ସେ ମା'କୁ ରଗେଇବା ପାଇଁ, ଆସ୍ତେ ଆସ୍ତେ ଖାଲି ପାଦରେ ଆସି ଝରକାରେ ଉହୁଙ୍କି ମାରି ଦେଖିବାକୁ ଲାଗିଲା । ପଲଙ୍କ ଉପରେ ବସି ମା ଆଖି ବନ୍ଦକରି କାନରେ ହାତଦେଇ ସେମିତି ହିଁ ମଧୁର ସ୍ୱରରେ ଗାଉଥିଲା, ସେହି ଗୀତ -

ଜୌବନର ସବୁ ରସ
ନେଇ ଗଲାରେ ଭଅଁର
ଗୁଞ୍ଜନ କରିରେ ଗୁଞ୍ଜନ କରି

ଆଖିରୁ ବହୁଥିବା ଅବିରତ ଅଶ୍ରୁଧାରା ଦେଖିକରି ମା'କୁ ଚିଡ଼େଇ-ଚିଡ଼େଇ ଜଳଉଥିବା ଅବାଧ କଲୀ ମଧ ଭୟଭୀତ ହେଇ ରହି ଯାଇଥିଲା ।

ଆଜି ମା'ର ସେହି ଗୀତ ସେ ସ୍ୱୟଂ ଗୁଣୁଗୁଣୁ ହେବାକୁ ଲାଗିଲା କେତେ ସୁନ୍ଦର ମଧୁର ସ୍ୱର ମା'ର ଥିଲା । ତତେ ଇଂରାଜୀ ସ୍କୁଲକ ପଠେଇ ନ ଥିଲେ, ଆଜି ତୁ ମଧ ଟପ୍ପା-ଠୁମରୀ ଗାଇ ପାରିଥାନ୍ତୁ - କେତେ ସୁନ୍ଦର ସ୍ୱର ତୋର, କିନ୍ତୁ ଏବେ କ'ଣ ଆଉ ଶିଖିବୁ । ସତରେ ନିଜର ମଧୁର ସ୍ୱରର ମହକର ଗୁଞ୍ଜନରେ ସ୍ୱୟଂ କଲୀ ମୁଗ୍ଧ ହେଇ ଗଲା ।

ସେହି ସ୍ୱର ସହିତ ହଠାତ୍ ବଡ଼-ବଡ଼ ଆଖିଥିବା ହସୁଥିବା ଆଉ ଏକ ପ୍ରେତ ଛାୟା ତାର ତପ୍ତ କପାଳରେ ହାତ ରଖିଲା- ତାନୀ ମାଉସୀ - କେତେଥର କଲୀ ସେହି କିଛି କିଛି ପରିଚିତ ସ୍ନେହି ଆକୃତିର ପୁରା ଚେହେରା ମନେ ପକେଇବାର ଚେଷ୍ଟା କରୁଥିଲା, କିନ୍ତୁ କେବେ, ଦୁଇଟି ହସୁଥିବା ଆଖି ନଜରରେ ପଡ଼େ, କେବେ ଛୋଟ ରସଯୁକ୍ତ, ହସ ଖୁସି ହେଉଥିବା ଅଧର । ଖରାପ ଭାବରେ ସମସ୍ୟାରେ କଟିଥିବା ପିଲାବେଳର ତନ୍ତରେ ଲମ୍ବା-ଚଉଡ଼ାରେ ଲାଖିକରି ସେ ପୁଣି ଶୋଇ ଯାଏ ।

ସେଦିନ ମଧ ସେଇୟା ହେଲା । ସକାଳେ ଉଠିଲା ବେଳକୁ ଦିନ ବଢ଼ି ଆସିଥିଲା । ଥରେ ବେଲହେମକୁ ନେବାକୁ ଡାକ୍ତରଖାନାକୁ ଯିବାକୁ ହେବ, ପୁଣି ଅଫିସ୍ । ହୋଟେଲ୍‌କୁ ଯିବାପରେ ପଣି ଅଭାଗା ପାଲ ଆସିବାକୁ ଦେବ ନାହିଁ, ସେଇଥି ପାଇଁ ବେଲହେମକୁ ଟେକ୍ସିରେ ପଠେଇ ଦେଇ ସେ ଅଫିସ୍‌ରୁ ସିଧା ଘରକୁ ଫେରି ଆସିବ । ପ୍ରଥମେ ଅଫିସ୍ ଯିବାକୁ ହେଇଥାନ୍ତା, ତେବେ ଅମ୍ମାକୁ ନ କହି ସେ ପାଦ ମଧ ବାହାରେ ରଖୁ ନ ଥିଲା, କିନ୍ତୁ ଏବେ ପ୍ରତ୍ୟେକ ପରଦା ଉଠେଇବା ପୂର୍ବରୁ ଏମିତି ସଂକୋଚ-ଭୟଭୀତ ହେଇ ଭିତରକୁ ଉଙ୍କିମାରୁଥିଲା, ଯେମିତିକି କେହି ବିଷାକ୍ତ ବିଛା ପରଦାର ପରସ୍ତରେ ଲୁଚି ବସିଛି ।

କୋଠରୀରେ ତାଲା ଲଗେଇକି ସେ ପାଦ ଚାପି ଚାପି ବାହାରିଗଲା । ଏମିତି ଇଛା କଲେ ସେ ଶନିବାର ଦିନ ଅଧା ଛୁଟି ଘରରେ କଟେଇ ପାରିଥାନ୍ତା, କିନ୍ତୁ ଜାଣିଶୁଣି କରି ସେ ଏଠାରେ ସେଠାରେ ବୁଲିବାକୁ ଲାଗିଲା । ଯେଉଁ ଘରରେ ଅମ୍ମା ପାଖରେ ପାଦ ମେଲେଇ ଛୁଟି ଦିନରେ ଗପ କରିବାକୁ ତାକୁ ମହା ଆନନ୍ଦ ମିଳୁଥିଲା, ସେହି ଘର ଏବେ ତାକୁ କାଟି ଖାଇବାକୁ ଦଉଡ଼େ । ମନେହୁଏ, ସମସ୍ତେ ତାକୁ ସନ୍ଦିଗ୍ଧ ଦୃଷ୍ଟିରେ ନିରିକ୍ଷଣ କରୁଛନ୍ତି । କେଉଁଠି ସରଳ ଅମ୍ମାକୁ ମଧ ତାଙ୍କର ପୁଅ ରଗେଇ ଦେଇ ନାହିଁ ? ମନରେ ବ୍ୟର୍ଥ ଆଶଙ୍କାରେ ତ୍ରସ୍ତ କଲୀ ଦିନ ସରିଲା ପରେ ଘରକୁ ଫେରିଲା, ତେବେ ଦ୍ୱାରରେ ହିଁ

କେତେକ ଠୁଙ୍ଗା ଲଦିହେଇ ମାୟା ମିଳିଗଲା ।

"ବାପରେ ବାପ, କ'ଣ କ'ଣ କିଣିକରି ଆଣିଛ ?" ହସିକରି କଳୀ ପଚାରିଲା ।

"କ'ଣ ଆଣି ନାହିଁ, ତାହା ପଚାର । ଶୁଖିଲା ଫଳ, ମିଷ୍ଟାନ୍ନ, କସ୍‌ମେଟିକ୍ସ, ରୁମାଲ ଆଉ ଫଳ । ହାତ ଭାଙ୍ଗି ଯାଉଛି । ତା ଉପରେ ନଡ଼ିଆ ଆଣିବାକୁ ଭୁଲିଗଲି । କାଲି ବଡ଼ଭାଇର ଟୀକା ଚଢ଼ିବ ନା, ଯିବ ନା କଳୀ ?"

କାଲିର ନାମ ଶୁଣିଲା ମାତ୍ରେ କଳୀର ଉତ୍‌ଫୁଲର ଚେହେରା ଝାଉଁଳି ଗଲା । "ନା ମାୟା ତୁମକୁ କହି ଥିଲି ନା, କାଲି ଏକ ବିଶେଷ ଦରକାରୀ କାମରେ ଦିନସାରା ବାହାରେ ରହିବାକୁ ପଡ଼ିବ ଆଉ ପୁଣି ବଡ଼ ଏମ୍ବାରାସିଂ ଲାଗିବ ମାୟା । । ସେମାନେ ମତେ ଜାଣନ୍ତି, ନା ମୁଁ ତାଙ୍କୁ । ଅଯଥା ଡାଲି-ଭାତରେ ନିଷ୍କର୍ମା ହେଇକରି କ'ଣ କରିବି ? ପଅରଦିନ ଫେରିକି ତମଠୁ ସବୁ ଶୁଣିବି । କାଲି ସକାଳେ ଶୀଘ୍ର ଉଠିକରି ଯିବାକୁ ହେବ, ଏଇଥି ପାଇଁ ବର୍ତ୍ତମାନ ଯାଇକରି ଲମ୍ବା ଶୋଇ ପଡ଼ିବି ।"

ସେ ହସିକରି କୋଠରୀର ତାଲା ଖୋଲିକରି ଭିତରକୁ ଚାଲିଗଲା । ଏମିତିରେ ରବିବାର ଦିନ କଳୀ ଦଶଟା ପର୍ଯ୍ୟନ୍ତ ଶୋଇ ରହୁଥିଲା । କେବେ କେବେ ତ ଅମ୍ମା ଆସିକରି ତାକୁ ଉଠେଇ ଯାଏ, କିନ୍ତୁ ସେଦିନ ସେ ଚାରିଟା ବେଳର ଆଲାର୍ମଲଗେଇ ଦେଇଥିଲା ।

ଗାଧେଇ-ପାଧେଇ କରି ସେ ସେଦିନ ନିଜର ପ୍ରମାଣ ପତ୍ରର ପ୍ରତ୍ୟେକ ଦିନର ମୁଖୋସ ଓହ୍ଲେଇ କରି ଦୂର କରିଦେଲା । ସେହି ଯାଆଁଳା ଲାଲ ସାଢ଼ୀ ପିନ୍ଧିକରି ଦର୍ପଣର ସମ୍ମୁଖରେ ଛିଡ଼ା ହେଲା, ତ ଆତ୍ମପ୍ରଶଂସାର ଝଲକ ବଡ଼-ବଡ଼ ଆଖିରେ ଓହ୍ଲେଇ ଆସିଲା । ବା-ବା, ଏହି ସାଢ଼ୀ ଦେଖିବାକୁ ଯେତେ ସୁନ୍ଦର ଲାଗୁଥିଲା, ପିନ୍ଧିକରି ଆହୁରି ମଧ୍ୟ ସୁନ୍ଦର ଲାଗୁଥିଲା । ଉଦୟ ହେଉଥିବା ସୂର୍ଯ୍ୟର ଅରୁଣ ରଶ୍ମୀର ଜାଇ ସ୍ୱୟଂହି ଝରକାର ଛଡ଼ରେ ଓହ୍ଲାଇ କରି ତାହାରି ଚଉଡ଼ା ଆଁଚଲ ଉପରେ ବିଞ୍ଚି ହେଇଗଲା । ଏମିତି ସେ ନା ବନାରସୀ ସାଢ଼ୀ ଦେଖି ପାରିଥିଲା, ନା କୌଣସି ବନାରସୀ ସାଢ଼ୀ ପିନ୍ଧିଥିବା ବାଳିକାକୁ । ତାକୁ ଏମିତି ଚକଚକିଆ ସାଢ଼ୀ ଦେଖିକରି ସବୁବେଳେ କେଲେଣ୍ଡରରେ ତିଆରି ହେଇଥିବା ଶସ୍ତା ଚିତ୍ରର ମଧ୍ୟ ସ୍ମରଣ ହେଉଥିଲା, ବା ପୁଣି ନିଜର ବିଚିତ୍ର ଦିବାସ୍ୱପ୍ନର ଧୂଆଁଳିଆ ପ୍ରେତ ଦରବାରର । ଝାଡ଼-ଫାନୁସର ତଳେ ଚକ୍ ଚକ୍ କରୁଥିବା କେତେ ବେନାରସୀ ଆଁଚଲ ତାହାର ସ୍ମୃତିର-ଭଗ୍ନାବଶେଷରେ କେତୁଧ୍ୱଜ ସହିତ ଉଡ଼ିବାରେ ଲାଗିଥିଲେ ।

ଥରେ ପନ୍ନା ବକ୍ସ ତଳରେ ନେପଥିଲିନ୍ ସୁବାସିତ କେତେ ଯେ ରଙ୍ଗ ବେରଙ୍ଗର ସାଢ଼ୀ ବହାର କରିଥିଲା - ଗୋଟାକରୁ - ଗୋଟିଏ ଓଜନିଆଁ ବନାରସୀ ସାଢ଼ି ।

"ଏବେ ତୁ ପିନ୍ଧିବୁ ଏଗୁଡ଼ିକୁ, ଏବେ ଏଇ ସିଲ୍କ ବା କେଉଁଠି ମିଳିବ ଆଉ ପୁଣି ଏମିତି ଜରୀ", ସେ ବହୁତ ଗେଲ କରି କହିଥିଲା ।

କିନ୍ତୁ ସେ ପର୍ଯ୍ୟନ୍ତ କଳୀ ସେହି ଚକଚକିଆ ସାଢ଼ୀର ସଭ୍ୟତାର ଇତିହାସ ନିଜର

ଅଦ୍ଭୁତ ଘ୍ରାଣ ଶକ୍ତିର ବହୁତ କିଛି ସୁଙ୍ଘି ନେଇଥିଲା । ଏହି ସାଢ଼ୀଗୁଡ଼ିକୁ ପିନ୍ଧିକରି ଅମ୍ମା ଜଣାନାହିଁ କେତେ ପୁରୁଷଙ୍କୁ ମୁଗ୍ଧ କରିଥିଲା । ଛଟପଟ କରେଇ ଥିବ । ମାଗଣାରେ ମିଳିଥିବା ସେହି ଦାମୀ ଗଣ୍ଠିଲିକୁ କଲୀ ଘୃଣାରେ ନାକକୁ ସଂକୁଚିତ କରି ଫେରେଇ ମା'ର କୋଳରେ ପକେଇ ଦେଇଥିଲା "ଥେଁକ୍ସ ଅମ୍ମା, କିନ୍ତୁ ଏହି ସଢ଼ି ଯାଇଥିବା ବନାରସୀ ସାଢ଼ୀ ମୁଁ କେବେ ପିନ୍ଧିବି ନାହିଁ ।"

ପନ୍ନାର ଆଖିରେ ଲୁହ ଉଛୁଳି ପଡ଼ିଥିଲା । ଯେବେ ଯେବେ ସେ ଏହି ଏକ ଜିଦିଆ ବାଳିକାକୁ ଛାତିରେ ଲଗେଇବାକୁ ଆଗଉ ଥିଲା, ତେବେ-ତେବେ ସେ ତାହାକୁ ପ୍ରାଣାନ୍ତକ ଘୁସି ମାରିକରି ଠେଲି ଦେଉଥିଲା ।

"ଠିକ ଅଛି ଝିଅ", ସେ ଶାନ୍ତ ସ୍ୱରରେ କହିଥିଲା, "ଆଜି ତମେ ଏହି ସାଢ଼ୀଗୁଡ଼ିକୁ ଠେଲି ଦେଇଛ, କିନ୍ତୁ ଦିନେ-ନା-ଦିନେ ବାଳିକାର ଜୀବନରେ ଏମିତି ଦିନ ଆସେ, ଯେବେ ସେ ବନାରସୀ ସାଢ଼ୀ ପିନ୍ଧିକରି ହିଁ ସଜ-ବାଜ ହେବା ପାଇଁ ସ୍ୱୟଂ ବ୍ୟାକୁଳ ହେଇଥାଏ ।"

ହୁଏତ ଆଜି କଲୀର ଜୀବନର ସେହି ଦିନ ଆସି ଯାଇଥିଲା, ଯେବେ ନିଜର ଅବାଞ୍ଛିତ କୌମାର୍ଯ୍ୟର କାଞ୍ଚନିକ ମୁକ୍ତି ଦ୍ୱାର ଉପରେ ଲାଲ ବନାରସୀ ସାଢ଼ୀର ନବବଧୂ ହେଇ ସ୍ୱୟଂ ହିଁ ନିଜର ପ୍ରତିବିମ୍ବରେ ଉତ୍ସର୍ଗ ହେଇ ଯାଉଥିଲା । ବହୁତ ଆଗରୁ ନୈନିତାଲର ଲଣ୍ଡନ ହାଉସର ସିଢ଼ି ଉପରେ ବିସ୍ତାରିତ ହେଇଥିବା ଏକ ତିବ୍ବତୀ ଲାମାଠାରୁ ସେ ତା'ର କାନରେ ପିନ୍ଧିଥିବା ଲାଲ ପ୍ରବାଳର ଜୋଡ଼ା କିଣିଥିଲା, ଆଉ କାଠମାଣ୍ଡୁରୁ ତା'ର ଏକ ବିଦେଶୀ ମିତ୍ର ତାକୁ ଦୁଇଟି ପ୍ରବାଳ ମଝିରେ ଗୁନ୍ଥା ଏକ ଚତୁର୍ଭୁଜ ତମ୍ବାର ଡେଉଁରିଆ ଆଣି ଦେଇଥିଲା । କଳା ମୋଟା ଡୋରରେ ଗୁନ୍ଥା ସେହି ଡେଉଁରିଆ ସେ କଣ୍ଠରେ ଲଗାଇ ଦେଲା । କାନର ପ୍ରବାଳ ସାଢ଼ୀର ଲାଲ ରଙ୍ଗ ସହିତ ଚମତ୍କାର ଲାଗୁଥିଲା । ଆଉ ଏହି ରକ୍ତିମ ଆଭା ତମ୍ବାର ଆଠଣି ଡେଉଁରିଆ ଉପରେ ସୁନ୍ଦର ଦିଶୁଥିଲା । ବାସ୍ତବରେ ତା'ର କଳାତ୍ମକ ରୁଚି ଅନୁପମ ଥିଲା । ମଝିରେ ସିନ୍ଥି ବାହାର କରି ସେ କଟା ହେଇଥିବା ବାଳକୁ କନର ପଛକୁ ନେଇଯାଇ ଗୋଟିଏ ହାଡ଼ର କ୍ଲିପ୍‌ରେ ବାନ୍ଧିକରି ଛାଡ଼ି ଦେଲା । ବାଳର ଗଭୀର ଫାଶରେ ଉନ୍ମୁକ୍ତ କର୍ଣ୍ଣ ଦ୍ୱୟ ଲାଲ-ଲାଲ ପ୍ରବାଳର ଭାରରେ ସ୍ୱୟଂ ହିଁ ରକ୍ତିମ ହେଇ ଉଠିଥିଲା । ଥରେ କଲୀ ନିଜର ସେହି ଅଗ୍ନିଗର୍ଭା ରୂପ ତାକୁ ଦେଖେଇବାକୁ ଚାହୁଁଥିଲା - 'ଦେଖ, ସାଢ଼ୀ ଏମିତି ପିନ୍ଧାଯାଏ । ତମର କୁନ୍ନୀର କଣ୍ଠରେ ପଡ଼ିଥିବା ଉଣତିରିଶ ତୋଳାର ଅସଲି ସୁନାର ରାମନବମୀ କ'ଣ ମୋର ଏହି ଆଠଣି ତମ୍ବାର ଡେଉଁରିଆର ତାମ୍ରତେଜର ସମ୍ମୁଖରେ ଦୀର୍ଘସ୍ଥାୟୀ ହେଇପାରିବ ?'

କିନ୍ତୁ ଏବେ ତ ସେ ହୁଏତ ଶୋଇଥିବ । ଏମିତି ଚାହିଁଲେ ସେ ବହୁତ ଧୃଷ୍ଟତାରେ ଯାଇକରି ତାକୁ କୋଠରୀରେ ହିଁ ବାନ୍ଧିପାରିବ । ତାହାର ଦ୍ୱାର ଖୋଲା ରହେ, ଏହା ସେ କେତେଥର ଦେଖି ସାରିଛି । କିନ୍ତୁ ମଝିରେ ହିଁ ଯଦି ରାକ୍ଷସ ଦାମୋଦର ସହିତ ସାକ୍ଷାତ

ହୋଇଗଲେ ତେବେ ?

ମରା ମନରେ କୋଠରୀରେ ତାଲା ଲଗେଇ କରି ସେ ଚାବି ବଟୁଆରେ ରଖୁଥିଲା ବେଳେ କାହାରି ଡାକ ଶୁଣି ଚମକି ପଡ଼ିଲା । ହାତର ସିଗାରେଟ୍ ବାହାରେ ପକେଇବାକୁ ସେ ସ୍ୱୟଂ ହିଁ ବାରଣ୍ଡାକୁ ଚାଲି ଆସିଥିଲା, ବା କଳୀର ଇଚ୍ଛାଶକ୍ତି ହିଁ ତାକୁ ବାହାରକୁ ଟାଣି ଆଣିଥିଲା ।

କଳୀ କ୍ଷଣକ ପାଇଁ ମଧ୍ୟ ଡେରି କଲା ନାହିଁ ।

"ଏ କାବୁଲୀ ବାଲା", ସେ ହସିକରି ତାକୁ ଲାଖି କରି ଛିଡ଼ା ହେଇଗଲା, "ଗୋଇଙ୍ଗ ଟୁ ଫାଦର-ଇନ୍-ଲଜ୍ ହାଉସ ?"

ପ୍ରଥମେ ପ୍ରବୀର ହତୋତ୍ସାହ ହେଇ ରହିଗଲା, ପୁଣି ପର କ୍ଷଣରେ ତାହାର ଚେହେରା କ୍ରୋଧରେ ତମତମ ହେଇ ଉଠିଲା । କେମିତି ଦୁସ୍ସାହସ ବାଳିକାର ଅଟେ । କୁନ୍ନୀର ସାଢ଼ୀକୁ ହାତରେ ଦେଇ ଦେଲା ଆଉ ପୁଣି ପିନ୍ଧିକରି ତାକୁ ହିଁ ଦେଖେଇବାକୁ ଆସିଛି । ତାହାର ଏମିତି ଚୋରି ଆଉ ଗୁଣ୍ଡାମି ଦେଖିକରି ସେ ସ୍ତବ୍ଧ ହେଇଗଲା ।

ହୁଏତ ତାହାର ଚେହେରାର ବିଭକ୍ତିକୁ କଳୀ ଦେଖିଲା ମାତ୍ରେ ବୁଝିଗଲା । ସେ କୌଣସି ଅତ୍ୟାଚାରୀ ପିଲା ପରି ଖିଲିଖିଲି ହେଇ ହସି ଉଠିଲା, "ଇଏ ତମର କୁନ୍ନୀର ସାଢ଼ୀ ନୁହେଁ ମହାଶୟ ! ଖଣ୍ଡିଏ ମୁଁ ମଧ୍ୟ ନିଜ ପାଇଁ ନେଇ ଆସିଛି । କେଉଁଠି କପିରାଇଟ୍, ଅଛି ନ କ'ଣ ? ମୁହଁ କାହିଁକି ଫୁଲେଇଛ କିନ୍ତୁ 'ରେଟ ସୁଟ୍‌ସ ମି' କ'ଣ ସତ ନୁହେଁ ?"

ଆଉ ପୁଣି ସେ ହସି-ହସି ମୁଣ୍ଡରେ କୌଣସି ବିଦେଶୀ ବଳଦ ପରି ପବନରେ ପହଁରି ବାହାରକୁ ଚାଲିଗଲା ।

ବିଜୁଳିର ଚମକ ଦେଖେଇକି ସେ କ୍ଷଣକ ପ୍ରଭାରେ ପ୍ରବୀରର ସତରେ ଆଖି ଝଲସେଇ ଦେଇଥିଲା ।

ବାଳିକାର ସୌନ୍ଦର୍ଯ୍ୟ ନିଜର ସମସ୍ତ ଖରାପ ଗୁଣ ସତ୍ତ୍ୱେ ଦିବ୍ୟ ଥିଲା, ଏଥିରେ କୌଣସି ସନ୍ଦେହ ନାହିଁ । ତ'ର ଧୂର୍ତ୍ତତା, ବଙ୍କା କାନ୍ଧର ଗଢ଼ଣ, ସାଦାସିଧା ଢଙ୍ଗରେ ସଜ୍ଜିତ ହେଇଥିବା କଳା କେଶଗୁଚ୍ଛ, ସାଢ଼ୀ ପିନ୍ଧିବାର ଉତ୍ତମ ଢଙ୍ଗ ଆଉ ତା ଠାରୁ ମଧ୍ୟ ଅଧିକ ଲମ୍ବା ଆଁଚଲକୁ ଲହରେଇ-ଲହରେଇ କେମିତି ମାପିଚୁପି ପାଦ ପକଉଥିଲା, ଯେମିତିକି କେହି ବିଦେଶୀ ରାଜମହିଷୀ ନିଜର କୋରୋନେସନ ପାଇଁ ଚାଲିଯାଉଛି, ଆଉ ପଛରେ ଲାଖିଥିବା ଲମ୍ବା ଆଁଚଲ ଧରି ଚାଲୁଛନ୍ତି ଦୁଇଟି ଅଦୃଶ୍ୟ ପେଜ-ବଏଜ !

ଚାହୁଁ ନଥିଲେ ମଧ୍ୟ ବହୁତ ଦିନ ପୂର୍ବରେ ପଢ଼ିଥିବା ଏକ ଶ୍ଲୋକର ପଂକ୍ତି ତା'ର କାନରେ ବାଜିବାକୁ ଲାଗିଲା –

'ତନ୍ୱଙ୍ଗୀ ଗଜଗାମିନୀ ଚପଳଦୃକ୍ ସଙ୍ଗୀତଶିକ୍ଷାନ୍ୱିତା
ନୋ ହ୍ରସ୍ୱା ନ ବୃହତ୍ତରାଽଥ ସୁକୃଶା ମଧ୍ୟେ ମୟୂରସ୍ୱରା ।
ପୀନଶ୍ରୋଣି ପୟୋଧରା ସୁଲଳିତେ ଜଙ୍ଘେ ବହନ୍ତି କୃଶେ'

ହଠାତ୍ ତା'ର ଦୁଇ କାନ ଲାଲ ହେଇକରି ଦାଉ ଦାଉ ହେଇ ଜଳିବାକୁ ଲାଗିଲା । ଏହା ତାହାର କେମିତି ଦୁର୍ବଳତା ଥିଲା । ଏମିତି ଶସ୍ତା ଝିଅ ଯାହାର ସ୍ପର୍ଶ ହେଲା ମାତ୍ରେ ହୁଏତ ତାକୁ ଗାଧେଇବାକୁ ପଡ଼ିଥାନ୍ତା, ତାହାରି ପାଇଁ ଏହି ଶ୍ଳୋକର ଆବୃତ୍ତି ।

କିନ୍ତୁ ତେବେ ମଧ୍ୟ କୋଠରିକୁ ଯାଇକରି ସେ ସେହି ଭୁଲିଯାଇଥିବା ଅସମାପ୍ତ ପଂକ୍ତିଗୁଡ଼ିକର ଭାଗକୁ ମନେ ପକେଇବାକୁ ଲାଗିଲା ।

ଭୃଙ୍ଗଶ୍ୟାମଳ-କୁନ୍ତଳା ଚ ଜଳଜଗ୍ରୀବୋଽପ...

ସେ ପୁଣି ପାଗଳ ପରି ଗୋଟାକ ପରେ ଗୋଟିଏ କେତେ ସିଗାରେଟ୍ ଫୁଙ୍କିବାରେ ଲାଗିଲା ।

ପାଣ୍ଡେ ମହାଶୟ ସେଦିନ ବଡ଼ ଉତ୍ସାହରେ ହୁଏତ ଅଧା କଲିକତାକୁ ନିମନ୍ତ୍ରଣ କରିଥିଲେ ।

"ହାଏ, ମୁଁ ଏମିତି ଜାଣିଥିଲେ ଆହୁରି ବଢ଼ିଆ ସାଢ଼ି ପିନ୍ଧିକରି ଆସିଥାନ୍ତି ଅମ୍ମା", ମାୟା ନିଜର ସାଧାରଣ ରେଶମି ସାଢ଼ୀ ଦେଖିକରି ସ୍ୱୟଂ ହିଁ କହି ଯାଉଥିଲା । ସେଠାରେ ତ ଏକରୁ ଏକ ଅପ୍ସରାମାନେ ସାଜ-ସଜ୍ଜା କରି ଆସିଥିଲେ । କୁନ୍ନୀ ତ ସେଦିନ ଚିହ୍ନି ହେଉ ନ ଥିଲା । ମନେହେଉଥିଲା କୌଣସି ପେଶାଦାର ହେୟାର ଡ୍ରେସର ଦ୍ୱାରା ନିଜର ଲୋପାମୁଦ୍ରା ପରି ଜୁଡ଼ା କରେଇ ଥିଲା । ବଡ଼ ଆଖିକୁ କଜ୍ଜ୍ୱଳ ଲଗେଇ କରି ଆହୁରି ବଡ଼ କରିବାର କ'ଣ ପ୍ରୟୋଜନ ଥିଲା, ପ୍ରବୀର ବୁଝି ପାରିଲା ନାହିଁ । ଏକଦମ କଳାକେନ୍ଦ୍ରମ ରାମାୟଣର ସୀତା ହେଇ ନାଟକୀୟ ମୁଦ୍ରାରେ ସେ ଡାହାଣ-ବାଁକୁ ଲଜ୍ଜାରେ ଢଳି ପଡୁଥିଲା ।

ଜୟା-ମାୟା ସାଙ୍ଗରେ ଆଣିଥିବା ସାଢ଼ି ପିନ୍ଧେଇ କରି ଆଁଚଲ ଶୃଙ୍ଖିଲା ଫଳରେ ଭର୍ତ୍ତି କରିଦେଲା । ଅମ୍ମା ବଡ଼ ଗର୍ବରେ ପୁତ୍ରକୁ ଶୁଣେଇ କରି ପତିଙ୍କୁ କହିଲା, "ଏକଦମ ମହାଲକ୍ଷ୍ମୀ ମନେ ହେଉଛି ?"

କିନ୍ତୁ ସେହି ଲାଲ ସାଢ଼ିକୁ ଦେଖିଲା ମାତ୍ରେ ଏକ ଅଦୃଶ୍ୟ ଲମ୍ବା ହଳଦିଆ ଚେହେରାର କିଶୋରୀ ଥରକୁ-ଥର କୁନ୍ନୀକୁ ଧକ୍କା ଦେଇକରି ପ୍ରବୀର ସମ୍ମୁଖରେ ହସି ଛିଡ଼ା ହେଇ ଯାଉଥିଲା ।

'ତନ୍ୱଙ୍ଗୀ ଗଜଗାମିନୀ ଚପଳଦୃକ୍ ସଙ୍ଗୀତ ଶିକ୍ଷାନ୍ୱିତା'

'କବୁଲୀବାଲା, ଗୋଇଙ୍ଗ ଟୁ ଫାଦର-ଇନ୍-ଲଜ ହାଉସ ?'

ଭୟରେ ସଚକିତ ହେଇକରି ପ୍ରବୀର ସତରେ ଏଠାକୁ-ସେଠାକୁ ଦେଖିବାକୁ ଲାଗିଲା । କ'ଣ ଜଣା ଏଠାରେ ଧମକ ପଡ଼ି ନ ଯାଏ । ସେହି ଝଡ଼-ତୋଫାନ ପରି ବେଗବତୀ ଦୁସ୍ସାହସୀ ବାଳିକା ପାଇଁ ସବୁ କିଛି କରିବା ସମ୍ଭବ ଥିଲା ।

ପାଣ୍ଡେ ମହାଶୟ ସତ୍ୟଜିତ ରାୟଙ୍କର ଫଟୋ ଇଉନିଟ୍ ନେଇକରି ଫ୍ଲାସ୍ ବଲ୍‌ବ ଜଳେଇ କରି ସମସ୍ତଙ୍କୁ ଚମକେଇ ଦେଉଥିଲେ । କେବେ ମୁଭି କ୍ୟାମେରା ନେଇକରି ଦୁଇଟି ମୋଟା ମୋଟା ସ୍ତମ୍ଭପରି ପାଦ ଚଉଡ଼ା ଭାବରେ ବିସ୍ତାର କରି କଥାକଲି ନର୍ତ୍ତକ

ପରି ଆଗକୁ ଯାଉଥିଲେ, କେବେ ସେମିତି ତାଳରେ ତାଳ ମିଳେଇ ସିଧା ପାଦ ରଖିବାକୁ ଦୂର ପର୍ଯ୍ୟନ୍ତ ପଛକୁ ଚାଲି ଯାଉଥିଲେ ।

"କୁନ୍ନୀ ଝିଅ, ଟିକିଏ ଡାହାଣକୁ, ପ୍ରବୀର ତମେ ଟିକିଏ ଆଗକୁ, ନା-ନା କିଛି ପଛକୁ, 'ଟୁ ଦି ଲେଫ୍ଟ, ଦେଟ୍‌ସ ରାଇଟ,'' ଆଉ ପୁଣି ଫ୍ଲାସ ବଲ୍‌ବ ଛଟକ-ଛଟକ କରି ଫୁଟକି ବାଜିବାରେ ଲାଗେ ।

ଜଣା ନାହିଁ କେତେ ଫଟୋ ଉଠାହେଲା, କେତେ କୃତ୍ରିମ ହସ ହେଲା ଆଉ ବିଗିଡ଼ିଲା, କୁନ୍ନୀ ଗୋଟାକ ପରେ ଗୋଟିଏ ଏତେ ଗୀତ ଗାଇଲା ଯେ ଶେଷରେ ଗୀତରେ ସ୍ୱର ଖରାପ ହେଇ ରହିଗଲା ।

ଠିକ୍ ଫେରିବାର ସମୟ ହେଲା, ତେବେ ପାଣ୍ଡେ ମହାଶୟ ହ୍ୱାଇଁକୁ ଆଗ୍ରହ ସହକାରେ ଅଟକେଇ ଦେଲେ ।

"ଏବେ ମୋର ପରମ ପ୍ରିୟ ମିତ୍ର ଗଜେନ୍ଦ୍ର ତ ଆସି ନାହିଁ, ରାଜା ଗଜେନ୍ଦ୍ର କିଶୋର ବର୍ମନ । ବର୍ତ୍ତମାନ ତାଙ୍କର ଅଗରତଲାରୁ ଫୋନ୍ ଆସିଲା, ରାତିକୁ ପହଞ୍ଚିବେ । ଆସୁଛନ୍ତି ପ୍ରବୀରକୁ ଦେଖିବା ପାଇଁ । ଏହାଙ୍କୁ ଆମେ ରାତିର ଭୋଜନ କରିବା ପରେ ହିଁ ଛାଡ଼ି ପାରିବୁ । ଆପଣ ଗାଡ଼ିର ଚିନ୍ତା କରନ୍ତୁ ନାହିଁ । ଦୁଇ-ଦୁଇଟି ଗାଡ଼ି ରହିଛି, ଡ୍ରାଇଭର ଛାଡ଼ି ଆସିବ ।"

ଦୁଇ-ଦୁଇଟି ଗାଡ଼ିର ବ୍ୟର୍ଥ ପ୍ରସଙ୍ଗ କହିକରି ସରଳ ବାପାଙ୍କୁ ପ୍ରଭାବିତ କରିବାର ଭାବି ଶ୍ୱଶୁରଙ୍କର କୁଚେଷ୍ଟା ଦେଖିକରି ପ୍ରବୀର ରାଗିଗଲା । ଥରେ ମନେହେଲା ତାଙ୍କର ଅଭଦ୍ର ପ୍ରସ୍ତାବକୁ ଅଗ୍ରାହ୍ୟ କରି ରୁକ୍ଷ ହେଇ ଚାଲିଯିବ । କିନ୍ତୁ ପରକ୍ଷଣରେ ସେ କୁନ୍ନୀର ବିନତୀ ପୂର୍ବକ ଅନୁରୋଧ ଆଖିରେ ନବୀନ ପ୍ରେମର ଝଲକକୁ ଦେଖି ନେଲା ।

ବିଚିତ୍ର ବ୍ୟକ୍ତି ଥିଲେ ପାଣ୍ଡେ ମହାଶୟ । କେବେ ଏକଦମ ବାଳକ ପରି ନିଷ୍କପଟ ବ୍ୟବହାର ଆଉ କେବେ କପଟୀ କୁଆ ପରି ମୁଦ୍ରା । ନିଶ୍ଚୟ ସେହି ବ୍ୟକ୍ତି କେବେ ନିଜର ପରିବାରର ସୀମିତ ପରିଧି ଡେଇଁକରି ବାହାରକୁ ଯାଇ ପାରିବ ନାହିଁ । ଏବେ ପ୍ରବୀର ମଧ୍ୟ ସେହି ପରିବାରର ନବୀନ ସଦସ୍ୟ ଅଟେ, ଏଇଥିପାଇଁ ପଣ୍ଡେ ମହାଶୟ ଥରକୁ ଥର ତାକୁ ଆଖି ଆଖିରେ ଏମିତି ପିଇ ଯାଉଥିଲେ ଯେ ସ୍ୱୟଂ ପ୍ରବୀରକୁ ଅମ୍ମା-ବାପାଙ୍କ ସାମ୍ନାରେ ବିଚିତ୍ର ଭାବରେ ଲଜ୍ଜିତ ହେବାକୁ ପଡ଼ିଥିଲା ।

ପିତା-ମାତା, ଭଉଣୀ-ଭିଣେଇମାନଙ୍କ ଉପସ୍ଥିତିରେ ପ୍ରବୀର କୁନ୍ନୀ ସହିତ ଅଧା କଥା ମଧ୍ୟ ହେଇ ପାରି ନଥିଲା, ଏହା ହୁଏତ ପାଣ୍ଡେ ମହାଶୟ ଦେଖିଥିଲେ । ଏମିତିରେ ମଧ୍ୟ ନିଜର ସ୍ୱାର୍ଥସିଦ୍ଧି ସହିତ ଅବାଞ୍ଛିତ ଅତିଥିମାନଙ୍କୁ ତଡ଼ିବାରେ ପାଣ୍ଡେ ମହାଶୟଙ୍କର ଅଦ୍ଭୁତ ଦକ୍ଷତା ଥିଲା ।

"ମୁଁ ତ ଆପଣମାନଙ୍କୁ ସମସ୍ତଙ୍କୁ ରାତିର ଖାଇବା ଖାଇବାକୁ ଅନୁରୋଧ କରିଥାନ୍ତି, କିନ୍ତୁ ବହୁତ ରାତି ହୋଇଯିବ । ଗଜେନ୍ଦ୍ର ଟିକିଏ ଡେରିରେ ଖାଇବାକୁ ପସନ୍ଦ କରେ,

ଆଉ ଟିକିଏ ଅସୁନ୍ଦର ଲାଗିବ ପ୍ରଥମେ ଆପଣମାନଙ୍କୁ ଖୁଏଇ ଦେଲେ ।"

ସେ ବହୁତ ଚତୁରତା ସହିତ ଭୂମିକା କରି କରି ଅତିଥିମାନଙ୍କୁ ବିଦାୟ କରି ଦେଲେ ।

ଅସଲରେ ଗଜେନ୍ଦ୍ରର ବାହାନା ଥିଲା । ସେ ଅବଶ୍ୟ ଆସୁଥିଲା, କିନ୍ତୁ ଯଦି ତାହାର ସ୍ୱୟଂ ନିଜର ନୂତନ ଜ୍ୱାଇଁ ହୋଇଥାନ୍ତା, ତେବେ ମଧ୍ୟ ହୁଏତ ସେ ତାକୁ ଦେଖିବାର ଉତ୍ସୁକତା ଦେଖେଇ ନଥାନ୍ତା । ସେ ତ ମିତ୍ର ସହିତ ତା'ର ବଙ୍ଗଳାରେ ଆନନ୍ଦୋତ୍ସବ କରିବାକୁ ଆସୁଥିଲା । ତାହାର ଖାଇବା ପିଇବାର ବ୍ୟବସ୍ଥା ପାଣ୍ଡେ ମହାଶୟ ଛୋଟ ବଙ୍ଗଳାରେ କରି ଦେଇ ଆସିଥିଲେ । ସେହି ବଙ୍ଗଳା ତାଙ୍କର କୋଠାରୁ ଦୂର ଏହି ପ୍ରୟୋଜନ ପାଇଁ ତିଆରି କରାଯାଇଥିଲା । ପାଣ୍ଡେ ମହାଶୟଙ୍କର ଗୋଟାକରୁ ଗୋଟିଏ ମୋଟା ଅସମୀୟାର ଅତିଥିଗୃହ ତାଙ୍କର ସବୁଠାରୁ ବଡ଼ ଆକର୍ଷଣ ଥିଲା । ରାଜାନୀତିଜ୍ଞ, ସାମ୍ବାଦିକ, ବ୍ୟବସାୟୀ ନିଜର ବାନପ୍ରସ୍ଥର ବ୍ୟବସ୍ଥାକୁ ଅବଲୋକନ କରି ଏଠାରେ ମନଇଚ୍ଛା ଆମୋଦ ପ୍ରମୋଦ କରି ପାରୁଥିଲେ । ସେହି ଛୋଟ କୋଠରିରେ ସୁରା-ସୁନ୍ଦରୀ ଆଉ ବିଳାସପୂର୍ଣ୍ଣ ଛପନ ପ୍ରକାରର ତାମସୀ ଭୋଜ୍ୟ ପଦାର୍ଥର ଅପୂର୍ବ ଉପହାର ଭେଟ କରି କୁଟିଳ ପାଣ୍ଡେ ମହାଶୟ ଲକ୍ଷ ଲକ୍ଷ ଟଙ୍କାର ନିଷ୍ପତ୍ତି କରୁଥିଲେ । ଜଣା ନାହିଁ କେତେ ପରଫ୍ୟୁମ୍ ତାଙ୍କର ମୁଠାରେ ବନ୍ଦ ରହୁଥିଲା, ଯେଉଁଥିରେ ଯେତେବେଳେ ଯେଉଁଠି ପାଣି ଭର୍ତ୍ତି କରଉଥିଲେ । ଯେତେଦିନ ପର୍ଯ୍ୟନ୍ତ କଲିକତାରେ ଲୌରାନ୍ ଥିଲା, ସେତେଦିନ ପର୍ଯ୍ୟନ୍ତ ତାଙ୍କୁ ତାଙ୍କ ବ୍ୟବସାୟର କୌଣସି ଚିନ୍ତା ନ ଥିଲା । ପଇସା ତାଙ୍କର ହାତର ମଳି ଥିଲା । ପୁଣି ସବୁଠାରୁ ଛୋଟ ଝିଅର ବିବାହରେ କୌଣସି ତ୍ରୁଟି ବାକି ନ ରହିଯାଏ । ଏହା ତାଙ୍କର ଉତ୍କଟ ଅଭିଳାଷା ଥିଲା । ଏମିତି ଅପୂର୍ବ ଜ୍ୱାଇଁ କ'ଣ ସହଜରେ ଜୁଟିପାରିଥାନ୍ତା ।

ଜାଣିଶୁଣି କରି ହିଁ ପ୍ରବୀରକୁ କୁନ୍ନୀ ସହିତ ଏକାନ୍ତରେ ଛାଡ଼ି ପାଣ୍ଡେ ମହାଶୟ ପତ୍ନୀକୁ ନେଇକରି ବାହାରକୁ ବୁଲିବାକୁ ଚାଲିଗଲେ । ଏତେଗୁଡ଼ିଏ ଅତିଥିମାନଙ୍କର ଭରା ଗୋଲ କୋଠରି ଖାଲି ହେଇଗଲା, ତେବେ ସଂକୋଚ ସ୍ୱଭାବର ନ ହେଇଥିଲେ ମଧ୍ୟ ପ୍ରବୀର ସୋଫାର କୋଣରେ ଲଜ୍ଜିତ ହେଇ ବସିଗଲା ।

କୁନ୍ନୀ ବଡ଼ ସ୍ୱାଭାବିକ ଭାବରେ ହସିକରି ଛିଡ଼ା ହେଇଗଲା ।

"ଆପଣ ଗୋଟିଏ ସେକେଣ୍ଡ ବସନ୍ତୁ, ମୁଁ ଏହି ସାଢ଼ି ବଦଳେଇ ଆସୁଛି । ଏତେ ଓଜନିଆ ହେଇଛି ଯେ ସମ୍ଭାଳି ହେଉନାହିଁ । ପୁଣି ଆପଣଙ୍କୁ ନିଜର ନୂଆ ସୁଇମିଂ ପୁଲ ଦେଖେଇବାକୁ ନେଇଯିବି । 'ଇଟ ଇଜ ଏ ବ୍ୟୁଟୀ !' କାଲିହିଁ ଡାଡ଼ି ସେଥିରେ ପାଣି ଭର୍ତ୍ତି କରେଇଛନ୍ତି ।"

ସେ ଚାଲିଗଲା, ତେଣୁ ପ୍ରବୀର ଗୋଡ଼କୁ ମେଲେଇ ଦେଇ ସିଗାରେଟ ଜଳେଇ ଦେଲା । ହୁଏତ ସାଢ଼ି ବଦଳେଇ କରି ଆସିବା ପରେ ସେ ନିଜର ମୌଳିକ ବ୍ୟକ୍ତିତ୍ୱକୁ

ଫେରି ଆସିବ ।

ଏକ ହାଲୁକା ସବୁଜ ରଙ୍ଗର ସୂତା ଶାଢ଼ିରେ ସେ ସତରେ ଯେମିତି ଶରୀର ବଦଳ କରି ଆସିଥିଲା । ତା'ର ଗୌରବର୍ଣ୍ଣ ଉପରେ ହାଲୁକା ସବୁଜ ରଙ୍ଗ ଖୁବ୍ ସୁନ୍ଦର ଫୁଟି ଉଠିଥିଲା ।

"ବା ! ଖୁବ୍ ସୁନ୍ଦର ରଙ୍ଗ ଅଟେ, ଆଉ ଆପଣଙ୍କୁ ସୁଟ ମଧ୍ୟ କରୁଛି", ପ୍ରବୀର ମନରେ ଆବେଗ ଅନୁଭବ କଲା, ଲାଲ ଶାଢ଼ିର ଅଁଚଲ ଉଡ଼େଇ ଦୁଃସାହସୀ କିଶୋରୀର ମୂର୍ତ୍ତିକୁ ପଢ଼ିବା ପାଇଁ ହୁଏତ ସମ୍ମୁଖରେ ବସିଥିବା କୁନ୍ନୀର ପ୍ରଶଂସାର ପତ୍ର ପୁଷ୍ପ ନିବେଦନ କଲା ।

"ଜାଣିଛନ୍ତି ବଙ୍ଗଳାରେ ଏହାକୁ କ'ଣ କହନ୍ତି ? 'କଚି କଲା ପାତାର ରଙ୍ଗ'- କଦଳିର କଅଁଳିଆ ପତ୍ରର ରଙ୍ଗ । ମତେତ ଏହି ବେଙ୍ଗଲର ଧନେଖାଲୀ ଡୋରିଆ ଶାଢ଼ିର ସାମ୍ନାରେ ବନାରସୀ ଶାଢ଼ିଗୁଡ଼ିକ ମଧ୍ୟ ଫିକା ଲାଗେ", ସେ ହସିକରି ଉଠି ଛିଡ଼ା ହେଲା, "ଚାଲ ନା ସୁଇମିଂ ପୁଲ୍ ଦେଖି ଆସିବା ।"

ପାନ ପତ୍ରର ଆକାରରେ ବନ୍ଧା ହେଇଥିବା ଜଳରାଶି ନିୟୋନ ଆଲୁଅର ନୀଳ ପ୍ରକାଶରେ ଝଲମଲ କରୁଥିବା ମାର୍ବଲର ବେଞ୍ଚ ଉପରେ କୁନ୍ନୀ ଗର୍ବରେ ବସିଗଲା ।

"ଆସନ୍ତୁ ନା, ବସିଯାଆନ୍ତୁ, କେତେବେଳ ପର୍ଯ୍ୟନ୍ତ ଛିଡ଼ା ହେଇ ରହିବେ !"

ପ୍ରବୀର ତାହାରି ପାଖରେ ହିଁ ବସିଗଲା । ତାହାର ଗୋରା ପୁଷ୍ଟ ମଣିବନ୍ଧରେ ପଡ଼ିଥିବା ମଗରମୁଖୀ କଂକଣ ଝଲମଲ ହେଉଥିଲା । ହାଲୁକା ସବୁଜ ଶାଢ଼ିର ତେରଛା-ବଙ୍କା ରେଖାଗୁଡ଼ିକ ତିଆରି ହେଇ ଲିଭି ଯାଉଥିଲା, ଶଙ୍ଖ ଗ୍ରୀବାରେ ପଡ଼ିଥିବା ଅସଲୀ ସୁନାର ଚେନ ଖୋଲି ଗଳାର ହାଲୁକା ସବୁଜ ରଙ୍ଗ ବ୍ଲାଉଜ ଉପରେ ସୁନାର ବାଳପରି ଚମକୁ ଥିଲା । ଉଚା ବନ୍ଧା ଯାଇଥିବା ଜୁଡ଼ା ହୁଏ ତ ଏଠାକୁ-ସେଠାକୁ ଚଲାବୁଲା କରିବା ଦ୍ୱାରା କିଛି ଢିଲା ହେଇକରି କାନ୍ଧ ଉପରକୁ ଓହ୍ଲାଇ ଆସିଥିଲା, ଆଉ ଏହାଦ୍ୱାରା ଚେହେରାର ତିଆରି ହେଇଥିବା କୃତ୍ରିମ ମୁଖା ଯେମିତିକି କାନର ସ୍ପ୍ରିଂ ଠାରୁ କିଛି ତଳେ ଖସି ଆସିଥିଲା ।

ପ୍ରବୀରର ସୂକ୍ଷ୍ମ ଦୃଷ୍ଟିରେ ମୁଖାର ଭିତରକୁ ଉଙ୍କି ମାରୁଥିବା ବାସ୍ତବିକତାର ଆଖିର ନମୁନା ଦେଖିନେଲା । ଲେପନ ସାମଗ୍ରୀରୁ ମୁକ୍ତ ହେଲାପରେ ଚେହେରା ନିର୍ଦ୍ଦୋଷ ଲାଗିବ, ବଡ଼ ଆଖିରେ ବୁଦ୍ଧିର ଦୀପ୍ତି ହୁଏତ ନଥାଇ ପାରେ, ଜନନୀର ବାତ୍ସଲ୍ୟ ଅବଶ୍ୟ ଥିଲା । ଆଉ ଯା ହେଉ, ଏହି ସୁସ୍ଥ ଶରୀର ତାକୁ ସୁସ୍ଥ ସନ୍ତାନର ପିତା କରିବ, ଏଥିରେ କୌଣସି ସନ୍ଦେହ ନଥିଲା । ରିକେଟୀ, ଦୁର୍ବଳ ପତଳା କାନ୍ଦୁରା ପିଲାକୁ ସେ ଦେଖିପାରୁ ନଥିଲା । ଏହି ଦୀର୍ଘାଙ୍ଗୀ ଦୁର୍ବଳ ଶିଶୁର ଜନନୀ କେବେ ହେଇ ପାରିବନାହିଁ । ହେଇପାରେ ଅଳସୁଆ ଗୃହିଣୀ ହେଇଯିବ । ତାହାର ମୋଟା ବିଳାସପ୍ରିୟ ଅଧର, ଶରୀରର କିଛି କିଛି ପୃଥୁଳ ହେବାର ଏବେଠାରୁ ପସନ୍ଦ, ତାକୁ କିଛି ବର୍ଷର ଅବହେଳାରୁ ହିଁ ଆକର୍ଷିକ ହୀନ ମୋଟା ସୋଟା ଗୃହିଣୀ କରି ପାରିଥାନ୍ତେ । ସେ ନିଶ୍ଚୟ ହିଁ ସେହି କୁମାରୀମାନଙ୍କ ଦଳରେ ଥିଲା,

ଯାହାକୁ ପିତାର ବୈଭବ-ସମ୍ପନ୍ନ ଗୃହ ସମୟ ପୂର୍ବରୁ ହିଁ ଯୌବନର ଦ୍ୱାରରେ ଛିଡ଼ା କରେଇ ଦିଏ । ସମସ୍ତ ବ୍ୟଞ୍ଜନ ହାତ ପାଖରେ ଥିଲେ ମଧ୍ୟ, ଯାହାକୁ ଚାଖି ସଫାକରି ଜିହ୍ୱାକୁ ସଂଯମର ଅଙ୍କୁଶରେ ଶାସନ କରି ଲହୁଣୀ ଲଗାହେଇଥିବା ରୋଟି ଖାଇକରି ସନ୍ତୋଷ କରିବାକୁ ପଡ଼େ । କିନ୍ତୁ ଯେଉଁଠି ବିବାହ ହେଲା, ଗୃହସ୍ଥୀର ବ୍ୟାୟାମ ପରି ଖେଳ ତାକୁ ଅମାନୁଷିକ ଧୈର୍ଯ୍ୟ ସହକାରେ ଭୂମି ଉପରେ ପାଦ ପୋତି ଡାଇଟିଂର ମୋଟା ଦଉଡ଼ିରେ ବାନ୍ଧି, ଟାଣି ଖେଳାଡ଼ିମାନଙ୍କ ପରି ନିଜ ଦଳ ଆଡ଼କୁ ଟାଣିନେଇ ଯାଏ । ଫୁଟବଲର ଚେପା ହେଇଥିବା ବ୍ଲାଡ଼ର ପରି ହାୱା ପାଇଲା ମାତ୍ରେ ଏହା ମଧ୍ୟ ଏକଦିନ ଫୁଲି ଉଠିବ, ଏହା ପ୍ରବୀର ବୁଝି ପାରିଥିଲା । କପାଗଛର ଫୁଲ ପରି ହାଲୁକା ଅନ୍ୟ ପତଳା ଶରୀର ଧାରଣ କାରିଣୀ ତାକୁ ପୁଣି କଳ୍ପନାଲୋକକୁ ଟାଣିକରି ଆଙ୍ଗୁଠି ଦେଖେଇବାକୁ ଲାଗିଲା । ସେ ବିରକ୍ତ ହେଇ ଉଠିଗଲା ।

## ସତର

"ଚାଲନ୍ତୁ, ହୁଏତ ଏବେ ଆପଣଙ୍କ ଡାଡ଼ିଙ୍କ ମିତ୍ର ଆସି ଯାଇଥିବେ", ପ୍ରବୀର କହିଲା ।

"ଓ ଡାଡ଼ିଙ୍କର ମିତ୍ର !" କୁନ୍ନୀ ଜୋରରେ ହସିଲା । "ୟୁ ଡୋଣ୍ଟ ନୋ ହିମ୍, ଆପଣ କଣ ଭାବୁଛନ୍ତି, ଡାଡ଼ି ଆପଣଙ୍କୁ ତାଙ୍କ ସହିତ ପରିଚୟ କରେଇବା ପାଇଁ ଅଟକେଇ ଦେଇଥିଲେ ? ସେ ତ ମତେ ଆଉ ଆପଣଙ୍କୁ ଏକାନ୍ତରେ ରହିବାକୁ ଚାହୁଁଥିଲେ ।"

ସେ ଉଠିକରି ପ୍ରବୀର ସହିତ ସଂଲଗ୍ନ ହେଇ ଏମିତି ଛିଡ଼ା ହେଇଗଲା, ଯେମିତି କହୁଛି, 'ମୂର୍ଖ ! ଏତିକି ମଧ୍ୟ ବୁଝି ପାରିଲ ନାହିଁ ? ଏହି ଏକାନ୍ତରେ ମୁଁ ତୁମକୁ ଆଣିଛି କେଉଁଥି ପାଇଁ ।'

ତା'ର ଶରୀରରୁ ଆସୁଥିବା ତୀବ୍ର ସୁଗନ୍ଧର ଭୁରୁ ଭୁରୁ ଗନ୍ଧ ପ୍ରବୀରକୁ ସହସା ଉନ୍ମତ୍ତ କରି ଦେଲା । କଳୀ ମଧ୍ୟ ଦୁଇ-ତିନି ଥର ପର ଏକଦମ୍ ପାଖରେ ଏମିତିହିଁ ସଂଲଗ୍ନ ହେଇ ନିଜର ସୁଗନ୍ଧ ଛାଡ଼ି ଯାଇଥିଲା, କିନ୍ତୁ କେତେ ପ୍ରଭେଦ ଥିଲା ଦୁଇଟି ସୁଗନ୍ଧି ମଧ୍ୟରେ । ଗୋଟିଏ ଥିଲା ମାଳ କସ୍ତୁରୀ ପରି ମହକ ଆଉ ଅନ୍ୟଟି ବାଙ୍ଗାଲୋରରେ ତିଆରି ହେଉଥିବା ଅଗରବତୀର ତୀବ୍ର ଗନ୍ଧରେ ଦମ ବନ୍ଦ ହେବାପରି ଲାଗେ ।

କୁନ୍ନୀ ଆହୁରି ନିକଟରେ ସଂଲଗ୍ନ ହେଇ ଚାଲିବାକୁ ଲାଗିଲା, ମନେ ହେଉଥିଲା ଏବେ ସେ ସ୍ୱୟଂ ହିଁ ପ୍ରବୀରର ହାତ ଧରିକରି ନିଜ କାନ୍ଧ ଉପରେ ରଖିଦେବ । ହଡ଼ବଡ଼େଇ କରି ପ୍ରବୀର ଚାଲିବାର ଗତି ବଢ଼େଇ କରି ତାକୁ ପଛରେ ପକେଇ ଦେଲା । ଗେଟର ଆଲୋକ ଦେଖିକରି ସେ ଆଶ୍ୱସ୍ତ ହେଲା ।

ଆଜି ପର୍ଯ୍ୟନ୍ତ ସେ ପ୍ରଗତିବାଦୀ ସମାଜର ଏମିତି ଉଚ୍ଚ ସ୍ତରରେ ରହିକରି ଚାକିରି କରୁଥିଲା, ଯେଉଁଠାରେ ନିର୍ଜନତାର ସାମାନ୍ୟ ଆଦେଶରେ ହିଁ ଏକରୁ ଏକ ସୁନ୍ଦରୀ ସେକ୍ରେଟେରୀକୁ ପାଦତଳେ ବସେଇ ପାରିଥାନ୍ତା । କାବୁଲର ପ୍ରସିଦ୍ଧ 'ସ୍ପୈବର' ହୋଟେଲରେ ଏମିତି ହିଁ ଏକ ସୁନ୍ଦରୀ ଆରବ କିଶୋରୀ ତାର ପଛରେ ହାତ ଧୋଇକରି ପଡ଼ି ଯାଇଥିଲା । କୁୱେତରେ ତାର ପିତାର ତେଲର କୁଅଁ ଦିନ-ରାତି ସୁନା ବାହାର କରୁଥିଲା, କାବୁଲରେ ସେ ନିଜ ମାମୁଁ ପାଖକୁ ଛୁଟି କଟେଇବାକୁ ଆସିଥିଲା । ବଡ଼-ବଡ଼ ପାଉଁଶିଆ ଆଖି ଆଉ ସୁନେଲୀ ବାଳର ସେହି ସୌନ୍ଦର୍ଯ୍ୟ-ସମ୍ରାଜ୍ଞୀ, ତାରି ସହିତ ଏମ୍ବେସୀର ଏକ ଏକତ୍ର ଭୋଜିରେ ଦେଖା ହେଇଥିଲା । ତାହାର ବିପଦପୂର୍ଣ୍ଣ ଛଳକପଟ ଯୁଦ୍ଧ ପାଇଁ କ୍ଷେତ୍ର ପ୍ରସ୍ତୁତିକୁ ମଧ୍ୟ ନିଜ ଯୌବନକୁ ଦାନ୍ତ ମଝିରେ ଜିଭ ପରି ମାଗଣାରେ ବାହାର କରି ନେଇଥିଲା । ଯେତେ ପର୍ଯ୍ୟନ୍ତ ବାଳିକାମାନଙ୍କର ପ୍ରଶ୍ନ ଥିଲା, ସେ ନିଶ୍ଚୟ ଏ ପର୍ଯ୍ୟନ୍ତ ନିରାମିଷ ଭୋଜୀ ଥିଲା । ସେହି କଠୋର ସଂଯମ ପଛରେ ଭାବୀ ପତ୍ନୀର ଆକର୍ଷକ୍ ସାନ୍ନିଧ୍ୟ ତାକୁ ଥରକୁ ଥର ପ୍ରଲୋଭିତ କରିବାକୁ ଲାଗିଲା, କିନ୍ତୁ ଝଗଡ଼ାରେ ଟାଣି ହେଇ ଯାଉଥିବା ଶିରାଗୁଡ଼ିକୁ ସେ କସିକରି ଚାବୁକ ମାରିଦେଲା ଲମ୍ବା-ଲମ୍ବା ପାହୁଣ୍ଡ ପକେଇଁ କରି ସେ ବଡ଼ ଅଭଦ୍ରତା ସହିତ ଚାଲୁଥିବା ସଙ୍ଗିନୀକୁ ପଛରେ ଛାଡ଼ି ଦେଇ ଗଲା ।

କୁନ୍ନୀର ଡାଡ଼ି ଏବେ ମଧ୍ୟ ଫେରିକରି ଆସି ନଥିଲେ । ଗୋଲ କୋଠରୀକୁ ଯାଇକରି ପ୍ରବୀର ବସିଥିଲା କୁନ୍ନୀ ଆସିଗଲା ।

"ବାପରେ ବାପ, ଆପଣତ ଏମିତି ଦଉଡ଼ିଲେ ଯେମିତି ପଛରେ ପାଗଳ କୁକୁର ଆସୁଛି ।"

"ବହୁତ ଡେରି ହେଇଗଲା, ଦେଖନ୍ତୁ ନା ଆଠଟା ବାଜିଗଲା । ଶୁଣନ୍ତୁ, ଗୋଟିଏ କପ ଚା ବା କଫି ମିଳି ପାରିବ କି ?" ସେ ସହଜରେ କହି ଦେଲା ।

"କାହିଁକି ମିଳି ପାରିବ ନାହିଁ । କ'ଣ ଏମିତି ଜିନିଷ ଯାହା ଆପଣଙ୍କୁ ମିଳିପାରିବ ନାହିଁ,"– ସେ ଅର୍ଥପୂର୍ଣ୍ଣ ହସ ହସି ଭିତରକୁ ଚାଲିଗଲା ।

ଟିକିଏ ପରେ ୱର୍ଦି ପିନ୍ଧିଥିବା ବେହେରା ଓଜନିଆ – ଓଜନିଆ ରୂପାର ବାସନରେ ଚା ନେଇକରି ଆସିଗଲା ।

ଏହି ରୂପାର ଟି-ସେଟ୍ ମଧ୍ୟ କ'ଣ ମତେ 'ଇମ୍ପ୍ରେସ୍' କରିବା ପାଇଁ ମଗା ଯାଇଥିଲା ? ମନକୁ ମନ ଚିନ୍ତାକରି ପ୍ରବୀର ହସିବାକୁ ଲାଗିଲା ।

"କାହିଁକି, ହସ କାହିଁକି ମାଡୁଛି ଆପଣଙ୍କୁ ? କ'ଣ ଚା ଭଲ ତିଆରି ହେଇନାହିଁ ? ଭଲ ତିଆରିତ ହେବାର କଥା, କାଲି ହିଁ ଡାଡ଼ିଙ୍କର ଚା ବଗିଚାର ଏକ ମିତ୍ର ଦେଇ ଯାଇଛନ୍ତି ।"

"ଆଚ୍ଛା ?" ପ୍ରବୀରକୁ ନିଜର ସେହି କେବେ ପରମ ମୂର୍ଖ ଆଉ କେବେ ଚତୁରା

ଭାବୀ ପତ୍ନୀକୁ ଚିଡ଼େଇବାରେ ଆନନ୍ଦ ଲାଗୁଥିଲା, "କାହିଁକି ଆପଣଙ୍କ ପିତାଙ୍କର କୌଣସି "ବୁଣିବା"ରେ ମଧ୍ୟ ମିତ୍ର ଅଛନ୍ତି କି ?" ସେ ହସ ଚାପିକରି ଫୁଟକି ମାରିଲା । ଏହି ଚାପିଲା ହସ ତା'ର ସବୁଠାରୁ ବଡ଼ ଆକର୍ଷଣ ଥିଲା । ଆରବ-ସୁନ୍ଦରୀ ତାହିରା ତାର ଏହି ହସର ଶହ-ଶହ ଫଟୋ ଉଠେଇକରି ସାଙ୍ଗରେ ନେଇ ଯାଇଥିଲା ।

"ଆର ୟୁ ଇଣ୍ଟେରେଷ୍ଟେଡ଼ ? ବା, ଆଚ୍ଛା ମଣିଷ ଆପଣ । ଗାଆଁ ଗାଆଁର ଲୋକ ଖାଇଗଲେ ଘର ଲୋକ୍ ଭିକ ମାଗୁଛି । ଆଜିର ଭୋଜିରେ ଜଣା ପଡ଼ିଲା ନାହିଁ ଡାଡ଼ିଙ୍କର କେତେ ସେମ୍ପେନ ଅଯୋଗ୍ୟ କଣ୍ଠର ତଳକୁ ଓହ୍ଲାଇ ଗଲା, ଆଉ ମୁଁ ତ ଡରରେ ଆପଣଙ୍କୁ ପଚାରିଲି ନାହିଁ । ଆପଣମାନେ ହେଲେ କୁମାଉଁର କଠୋର ନିୟମନିଷ୍ଠ ପଣ୍ଡିତ, ଡାଡ଼ି ସବୁକିଛି ଲୁଚେଇ ଦେଇଥିଲେ । କହନ୍ତୁ କ'ଣ ନେବେ ?"

ସେ କୌଣସି ସୁପ୍ରସିଦ୍ଧ ବାରର ସୁନ୍ଦରୀ ସାକୀ ହେଇ ତା ଉପରକୁ ଢଳିଗଲା ।

ମୁଁ ତ ମଜା କରୁଥିଲି । ମୋର ଏମିତି ଅଭ୍ୟାସ ନାହିଁ ।

"ତାହା ମୁଁ ବୁଝି ଯାଇଥିଲି । ଅଭ୍ୟାସ ହେଇଥିଲେ ତ...." ସେ ହସିକରି ନିଜର ବାକ୍ୟ ଅଧାରେ ହିଁ ଛାଡ଼ିଦେଲା ।

"ତା ହେଲେ ମୁଁ ଚା ମାଗି ନଥାନ୍ତି, କ'ଣ ?"

"ନା", ତାହାର ଚେହେରା ମ୍ଳାନ ହେଇଗଲା, "ତାହେଲେ ହୁଏତ ଆପଣ ଏତେ ରୁକ୍ଷ ହେଇ ନଥାନ୍ତେ । ହୁଏତ ଡ଼ାଡ଼ି ଆସିଗଲେ"; ସେ ଦୁଆର ଆଡ଼କୁ ଆଗେଇ ଗଲା ।

ପାଣ୍ଡେ ମହାଶୟ ତାଙ୍କ ମିତ୍ରକୁ ସାଙ୍ଗରେ ନେଇକରି ପତ୍ନୀକୁ ହୁଏତ କେଉଁଠି ଛାଡ଼ି ଆସିଥିଲେ ।

"ଏଇ-ଯେ ଗୌଜେନ, ଦେଖୋ କେମନ ରାଜା ଜମାଇ ପେୟେଛି", (ଇୟେ ଦେଖ ଗଜେନ୍ଦ୍ର, ମତେ କେମିତି ରାଜା ଜ୍ୱାଇଁ ମିଳିଛି ।)

ପ୍ରବୀର ଉଠିକରି ବଡ଼ ନମ୍ରତା ସହକାରେ ନମସ୍କାର କଲା ଆଉ ବଣୁଆ ବୁନ୍ଦେଲଖଣ୍ଡୀ ଏକା (ବାରହା) - ପରି ହିଁ ହିଂସ୍ର ଅସୁନ୍ଦର ସେହି ଚତୁର୍ଭୁଜ ବ୍ୟକ୍ତି ତା ଉପରେ ଭାଙ୍ଗି ପଡ଼ିଲା ।

ପ୍ରଥମେ ସେ ପ୍ରବୀରର ପ୍ରଶସ୍ତ ଲଲାଟକୁ ଚୁମ୍ବନ କଲା, ପୁଣି ଦୁଇହାତ ଧରିକରି ନିଜର ଛାତି ଉପରେ ରଖିଦେଲା ।

"ଆହା ବୁକ ଜୁଡ଼ିଏ ଗୈଲୀ ମାଁ ଲୋକ୍‌ଖୀ" - (ଆହା ଛାତି ପୂର୍ଣ୍ଣ ହେଇଗଲା ମା ଲକ୍ଷ୍ମୀ) ସେ ସଂକୋଚ କରି କୁନ୍ନୀ ଆଡ଼କୁ ଦେଖିକରି କହିଲା ।

ସେହି ବ୍ୟକ୍ତିକୁ ଦେଖିଲା ମାତ୍ରେ ପ୍ରବୀରର ମନେ ହେଲା ଯେ ଏହି ବ୍ୟକ୍ତି ଶରୀରର ହିଁ ନୁହଁ, ମନରେ ମଧ୍ୟ କଳା ଅଟେ । ବେଙ୍ଗଲର ପ୍ରାଚୀନ ନାଟକମଣ୍ଡଳୀର 'ଯାତ୍ରାଦଳ'ରେ ଦୁର୍ଯ୍ୟୋଧନ ହେଇ ଏକ ପାତ୍ର ପିଲାଦିନରେ ତା'ର କେତେ ରାତିର

ସ୍ୱପ୍ନର ପିଛାକରି ତାକୁ ଭୟଭୀତ କରୁଥିଲା, ଆଜି ସେହି ଦୁର୍ଯ୍ୟୋଧନ ଯେମିତି ପିଲାଦିନର ସପନରୁ ବାହାରି କରି ପୁଣି ସାମ୍ନାରେ ବସି ଯାଉଥିଲା । ଅଙ୍ଗୁଳିଗୁଡ଼ିକରେ ରଙ୍ଗ-ବିରଙ୍ଗର ମାଣିକ-ମୋତିର ମୁଦି, ସୂର୍ଯ୍ୟମୁଖୀ ଫୁଲ ପରି ଚଉଡ଼ା ଘଡ଼ି, ପତଳା ଜରୀଦାର କୁନ୍ନୀର ଧୋତି, ବାଛିଥିବା କୁର୍ତ୍ତା ଆଉ ଭୟାବହ ଭାଲୁପରି ଲୋମ ଥିବା ଶରୀର ! କୁନ୍ନୀକୁ ମା-ମା ଡାକୁଥିବା ସେହି କ୍ରୁର ବ୍ୟାଘ୍ରପରି ଯେଉଁ ଦୃଷ୍ଟିରେ ତାକୁ ଦେଖୁଥିଲା, ତାହା ନିଶ୍ଚୟ ସ୍ନେହୀ ପୁତ୍ରର ନଥିଲା । କେବେ ସେ କ୍ଷୁଧାତୁର ଦୃଷ୍ଟି ତାହର ତଳ ପର୍ଯ୍ୟନ୍ତ ଖୋଲା ଗଳା ଉପରେ ମନୋଯୋଗ ହେଉଥିଲା, କେବେ ଆକର୍ଷକ ନିତମ୍ବ ଉପରେ ଝୁଲୁଥିବା ଅଣ୍ଟା ସୂତା ଉପରେ ।

ସେ ପୁରାପୁରି ବଙ୍ଗଳା ହିଁ କହି ଯାଉଥିଲା - "କୀ ହେ ଜାମାଇ ବାବୁ - ବାଁଙ୍ଗ୍ଲା ଶୀଖତେ ପାରଲେ ନା ? (କ'ଣ ହେ ଜ୍ୱାଇଁବାବୁ ବଙ୍ଗଳା ଶିଖି ପାରିଲ ନାହିଁ କି ?) ଏହି ଘରରେ ବଙ୍ଗଳା ହିଁ ଚାଲେ ପ୍ୟାରେ । ଚଟପଟ ଶିଖି ପକାଅ । ଆମର କୁନ୍ନୀର ରବୀନ୍ଦ୍ର ସଂଗୀତ ଶୁଣିଛ ନା ନାହିଁ ?"

ଖାଇବାର ଟେବୁଲ ଉପରେ ତ ରାଜା ଗଜେନ୍ଦ୍ର କିଶୋର ନିଜର ମୁଖାହିଁ ଓହ୍ଲାଇ ଦୂରକୁ ପକେଇ ଦେଲା । କେବେ ଜଙ୍ଗଲୀ ଆଦିବାସିମାନଙ୍କ ପରି କୁକୁଡ଼ାର ବଡ଼ ଖଣ୍ଡ ଚୋବେଇ-ଚୋବେଇ କରି ଖାଇବାକୁ ଲାଗିଥିଲା, ଗଳାରେ କୌଣସି ଅବୋଧ ବାଳକର ଛାତିରେ ବନ୍ଧା ଚଉଡ଼ା ନାପକିନ୍‌ରେ ହିଁ ନାକ ଆଖିର ପାଣି ପୋଛୁଥିଲେ, ବଡ଼-ବଡ଼ ଚାମଚରେ ଭର୍ତ୍ତିକରି କୁକୁଡ଼ାର ଗ୍ରେଭି ପିଇ ପ୍ରଶଂସାର ପୋଲ ବାନ୍ଧିବାରେ ଲାଗିଥିଲେ- "ବା, କେମିତି ଅନୁପମ କୁକୁଡ଼ା ତିଆରି କରୁଛି ତମର ଖାନସାମା ! ଶେଷ ପର୍ଯ୍ୟନ୍ତ ନବାବ ରାମପୁରର ବିଶିଷ୍ଟ ବଗିଚାରେ କାମ କରି ସାରିଛି, ଆଉ କଥାର ମଧ୍ୟ ଏମିତି ବୁଦ୍ଧିମାନ - ବହୁଭାଷୀ ଜ୍ୱାଇଁଙ୍କୁ ଦିନେ ମୁଁ ପଚାରିଲି, 'ଶକୂର, ଶେଷରେ କଣ-କଣ ମସଲା ପକାଅ ଏଥିରେ ? ଟିକିଏ ଆମକୁ ମଧ୍ୟ କହିଦିଅ, ନିଜର ଉଡ଼ିଆ ମହାରାଜକୁ ମଧ୍ୟ ଶିଖେଇ ଦିଏ', ତେବେ ଜାଣିଛ କ'ଣ କହିବାକୁ ଲାଗିଲା ? କହିଲା, 'ହଜୁର, ଏହାର ମସଲା ବାଟିଲାବାଲା ଅନ୍ୟ ଲୋକ, ତିଆରି କଲାବାଲା ଅନ୍ୟଲୋକ ।"

"ଯେତେଦିନ ପର୍ଯ୍ୟନ୍ତ ଲଙ୍କା ଠାରୁ, ଆଖି-ନାକ ଠାରୁ, ପାଣି ବହିବ ନାହିଁ, ତାହେଲେ ଖାଇବାର କ'ଣ ମଜା ?"

"ଓହୋ ପାଣ୍ଡେ, ଏକ୍ ଦୁ ମିଷ୍ଟି ଦାଓ ଦେଖି" (ଆରେ ପାଣ୍ଡେ, ଗୋଟିଏ ଦୁଇଟି ମିଠାଇ ଏଇ ଆଡ଼କୁ ବଢ଼େଇ ଦେଲ) ଆଉ କଟ ଗ୍ଲାସର ଗରମରେ ଫୁଟୁଥିବା ଡୋଙ୍ଗାରୁ ଗୋଟିଏ-ଗୋଟିଏ କରି ବଡ଼ ବଡ଼ 'ଖୀର କଦମ୍ବ' ସୁନ୍ଦର ରସବାଲା କେମିତି ବିସ୍ତାରିତ ବିରାଟ ମୁହଁରେ ଏମିତି ଯିବାକୁ ଲାଗିଲା ଯେମିତି କି ଷ୍ଟ୍ରବେରି ଅଟେ ।

ସେହି ବ୍ୟକ୍ତିର ଖାଇବାର କ୍ଷମତା ଦେଖିକରି ପ୍ରବୀର ଆଶ୍ଚର୍ଯ୍ୟ ହେଇଗଲା । ଜୀବନ ପରି ଅସଂଯମ ସେ ଖାଇବାରେ ମଧ୍ୟ ବ୍ୟବହାର କରୁଥିଲେ । କେବେ କଳା-

କଳା ଲମ୍ପଟ ପୁରୁଷର ହାତର ମୋଟା ଫୁଲି ଯାଇଥିବା ଆଙ୍ଗୁଳି ଗୁଡ଼ିକରେ ନାନକୁ ଶୀଘ୍ର ଶୀଘ୍ର ପାଟିରେ ଭର୍ତ୍ତି କରିଦେବା, କେବେ ମିଠେଇ ଓ କୁକୁଡ଼ାର ବଡ଼ ବଡ଼ ଖଣ୍ଡକୁ ବିରିଆନୀର ସିଂହଭାଗ ବଡ଼ ବଡ଼ ଗୁଣ୍ଡାକରି ମୁହଁରେ ପୁରେଇ ଦେଉଥିଲେ । ତା'ର ଲୋଲୁପ ଦୃଷ୍ଟି ଗୋଲ ଟେବୁଲ ଉପରେ ସଜା ହେଇଥିବା ନାନା ରକମର ବ୍ୟଞ୍ଜନର ପରିକ୍ରମା କରୁଥିଲା । ଏକାଥରକେ ସେ ପ୍ଲେଟ୍‌କୁ ଏମିତି ଭର୍ତ୍ତି କରି ନେଉଥିଲେ ଯେମିତିକି ଟିକିଏ ଡେରିକଲେ ସବୁ ଜିନିଷ ଶେଷ ହେଇଯିବ ।

ଖାଇବା ପରେ ଟୁଥ୍‌ପିକର ପୁରା ଡବା ନେଇକରି ସେ ଅଳସୁଆ ତୃପ୍ତ ଅଜଗର ପରି ଆରାମ ଚଉକିରେ ଲଦି ହେଇ ପଡ଼ିଲା । "ଜା ଖେୟେଛି ।" (ଯେଉଁ ପରିମାଣରେ ଖାଇଛି) କହୁଥିଲା ସେ ଗଗନ ଭେଦୀ ହାକୁଟିର ସିଂହନାଦରେ ଖାଇବା ଘର ଗୁଞ୍ଜନ କରି ଉଠୁଥିଲା, ନିତାନ୍ତ ଘୃଣ୍ୟ ଢଙ୍ଗରେ ଦାନ୍ତକୁ ଉଖାରି ଉଖାରି କରି ମାଂସ-ମାଛର ଅବଶେଷ ବାହାର କରି ଭୂମି ଉପରେ ଛେପ ସହିତ ପକେଇବାକୁ ଲାଗିଲା ।

ପ୍ରବୀରର ଶରୀର ଶିହରୀ ଉଠିଲା । ଏହା ଠିକ୍ ଥିଲା ଯେ ସେ ସ୍ୱୟଂ ଆମିଷଭୋଜୀ ଥିଲା, କିନ୍ତୁ ସଂସ୍କାରୀ ଗୁହର ଏହି ସଭ୍ୟ ଯୁବକ ଗୁଆର ଖଣ୍ଡ ମଧ୍ୟ ଶବ୍ଦ କରି କାମୁଡ଼ି ପାରୁ ନଥିଲା । ଏହି ଚିକ୍କୁର ପରି ମହାଦାନବ ହାତ ମୁହଁ ନଧୋଇ ଗୋଡ଼ ମେଲେଇ କରି ଗୁହର ମା-ଝିଅ ସମ୍ମୁଖରେ ଯେଉଁ ନିର୍ଲ୍ଲଜ ଭାବରେ ପଡ଼ି ପାକୁଳି କରୁଥିଲା, ତାହା ଦେଖିକରି ହିଁ ତାହାକୁ ଘୃଣା ହେବାକୁ ଲାଗିଲା । କ'ଣ ଏହି ଗୁହରେ ମର୍ଯ୍ୟଦା ନାମର କୌଣସି ବସ୍ତୁହିଁ ନାହିଁ ?

"ଓହୋ ପାଣ୍ଡେ, ଆମି ଏଖୋନ ତୋର ବଁଗଲିୟାୟ ଗିୟେ ଏକଟୁ ଶୋବୀ ବୂଝଲୀ !"

(ଆରେ ପାଣ୍ଡେ, ଏବେ ମୁଁ ତୋର ବଙ୍ଗଳାକୁ ଯାଇକରି ଟିକିଏ ଶୋଇବି-ବୁଝିଲୁ)

"ମତେ ମଧ୍ୟ ଅନୁମତି ଦିଅନ୍ତୁ", ପ୍ରବୀର ମଧ୍ୟ ଉଠିପଡ଼ିଲା, "ସାଢ଼େ ଦଶ ବାଜି ଯାଇଛି, ପହଞ୍ଚୁ-ପହଞ୍ଚୁ ଏଗାର ବାଜିଯିବ ।"

"ସୁନ୍ଦର ସିଂହ, ବଟୀସିଂହ, ଭୋଲା ମହାବୀର –" ପାଣ୍ଡେ ମହାଶୟ ଏକା ସାଙ୍ଗରେ ଚାରୋଟି ଭୃତ୍ୟଙ୍କୁ ଡାକିଲେ ଆଉ ଚାରିଜଣ ଯାକ ହାତ ବାନ୍ଧି ଛିଡ଼ା ହେଇଗଲେ ।

"ଯାଅ, ରତନସିଂହକୁ କୁହ କଳା ଫିଏଟ ଗେରେଜରୁ ବାହାର କରି କୁମାର ସାହେବକୁ ଛାଡ଼ି ଆସିବ ।"

ପ୍ରବୀର ଏହି ସକଳ ପ୍ରକାରର ନୂତନ ସମ୍ବୋଧନକୁ ଶୁଣିକରି ଚମକି ପଡ଼ିଲା । ଏକ ଦିନରେ ହିଁ ପାଣ୍ଡେ ମହାଶୟ ଯେମିତିକି କୌଣସି ଜାଦୁକାଠି ସ୍ପର୍ଶ କରିବା ଦ୍ୱାରା ତାକୁ ପାଦରୁ ମୁଣ୍ଡଯାଏ ବଦଳେଇ ଦେଇଥିଲେ ।

ତାକୁ ଛାଡ଼ିବାକୁ ପୁରା ପରିବାର ଗେଟ ପର୍ଯ୍ୟନ୍ତ ଚାଲି ଆସିଥିଲେ । କୁନ୍ନୀ ଆଗେଇ ଆସି ଅତି ଅନ୍ତରଙ୍ଗ ଆତ୍ମୀୟତାରେ କାରର ଦରଜା ବନ୍ଦ କଲା ଆଉ କାର ଷ୍ଟାର୍ଟ ହେବାପରେ

ମଧ୍ୟ ଲାଖିକରି ଛିଡ଼ା ହେଇ ରହିଲା ।

ଏତେ ଲୋକଙ୍କ ସାମ୍ନାରେ କିଛି କହିବାକୁ ବା ମୂକ ଦୃଷ୍ଟିରେ ବିଦାୟ ନେବାକୁ ମଧ୍ୟ ପ୍ରବୀରର ସଂକୋଚ ହେଲା । କିନ୍ତୁ ସୁନ୍ଦର ବାହୁରେ ବନ୍ଧା ବାଜୁବନ୍ଧରେ ଲାଖିଥିବା ଜରୀବାଲା ଲାଲ ଡୋରିଆ ସାଢ଼ୀକୁ ଦେଖିକରି ନିଜର ଭାବି ବଧୂର ସେହି ହାତ ଧରିକରି ଚାପିଦେବା ପାଇଁ ସେ ବ୍ୟାକୁଳ ହେଇ ଉଠିଲା । ସଂସାରୀ ପାଣ୍ଡେ ମହାଶୟର କୁଟିଳତା, ତାଙ୍କର ଘୃଣ୍ୟ ମିତ୍ର ରାଜା ଗଜେନ୍ଦ୍ର କିଶୋର ବର୍ମନର କୁତ୍ସିତ ବ୍ୟବହାର ସେ ଭୁଲି ଗଲା ।

ଚାଲୁଥିବା ଗାଡ଼ି ସହିତ ମୁଣ୍ଡ ନୋଇଁ ଚୁପ୍‌ଚାପ ଛିଡ଼ା ହେଇଥିବା କୁନ୍ନୀର ହାଲୁକା ସବୁଜ ଛବିର ସ୍ମୃତିହିଁ ଶେଷ ପର୍ଯ୍ୟନ୍ତ ତା ସହିତ ଗଲା ।

ଏତେ ଗୁରୁପାକ ଖାଦ୍ୟ ଖାଇବାର ଅଭ୍ୟାସ ପ୍ରବୀରର ନଥିଲା । କେମିତି ଅଳସୁଆମି ହେବାକୁ ଲାଗିଲା ।

"ରତନ ସିଂହ", ସେ କହିଲା, "ତମେ ମତେ ଆଗ ପାନ ଦୋକାନ ପାଖରେ ଓହ୍ଲେଇ ଦିଅ, ସେଠାରୁ ପାଦରେ ଚାଲିଯିବି ।"

ଆଉ ସେ ପାନ ଦୋକାନ ପାଖରେ ଓହ୍ଲେଇ ଗଲା । ତିନି-ଚାରି ମୋଡ଼ ପରେ ହିଁ ଘରେ ପହଞ୍ଚି ଯିବ, ହୁଏତ ଗୋଟିଏ ବିଡ଼ା ପାନ ଖାଇକରି ଦୁଇ-ଚାରି ପାଦ ଚାଲିବା ଦ୍ୱାରା ଆଳସ୍ୟ ମଧ୍ୟ ଦୂର ହେଇଯିବ ।

ସେହି ଗପୁଡ଼ି ପାନବାଲାକୁ ସେ ବର୍ଷ ବର୍ଷ ଧରି ଜାଣିଥିଲା । 'ସେହି ଛୋଟ ଦୋକନରହିଁ ସେହି ଆଠ ଶହ ଟଙ୍କା ମାସକୁ ଦେବାକୁ ପଡ଼େ । କେମିତି ବର୍ଷ ବର୍ଷ ଆଗରୁ ମିର୍ଜାପୁରରୁ ପଳେଇ ଏଠାକୁ ଚାଲି ଆସିଥିଲା ଆଉ କେବେ-କେବେ କେମିତି ଗୁଣ୍ଡାମାନଙ୍କ ଭିଡ଼ ସେଠାରେ ଆସି ପହଞ୍ଚିଯାଏ, ଶୁଣିଥିଲା ସେ ଜାଣିଶୁଣି କରି ଗୋଟିଏ ବିଡ଼ା ପାନ ବନେଇବାକୁ ଅଧଘଣ୍ଟା ଲଗେଇ ଦିଏ । କିନ୍ତୁ ସେଦିନ ପ୍ରବୀର ତା'ର କଥାରେ ଅଡୁଆରେ ପଡ଼ିବାର ଅବକାଶ ନ ଥିଲା । ଏକରେ ଏମିତିହିଁ ଲଜ୍ଜିତ ହେଉଥିଲା, ଏଗାରଟା ପନ୍ଦର ବାଜି ଯାଇଥିଲା, ଏଇଥିପାଇଁ ଜାଣି-ଶୁଣି କରି ସେ ଗାଡ଼ି ଛାଡ଼ି ଦେଇଥିଲା । କାରର ଶବ୍ଦରେ ପୁରା ଘର ଉଠି ପଡ଼ିଥାନ୍ତେ ଆଉ ସମସ୍ତେ କ'ଣ ଭାବିଥାନ୍ତେ । ପ୍ରଥମ ଦିନ ଶ୍ୱଶୁର ଘରକୁ ଗଲାରୁ ମୁହଁ ଫୁଲେଇ ଥିଲା ଆଉ ଦ୍ୱିତୀୟ ଦିନ ରାତିର ସାଢ଼େ ଏଗାରଟା ବଜେଇ ଦେଲା । ପାନର ପଇସା ଦେଇକରି ସେ ଦ୍ରୁତ ପାଦରେ ଚାଲିବାକୁ ଲାଗିଲା ମାତ୍ରେ କେହି ଆସିକରି ପିଠିରେ ହାତ ରଖିଦେଲା । ସେ ଚମକି ପଡ଼ି ବୁଲି ପଡ଼ିବାରୁ ଦେଖିଲା ତା'ର ବନ୍ଧୁ ଘୋଷ ହସୁଥିଲା ।

"କୀ ହେ, ଶଶୁର ବାଡ଼ୀ ଥେକେ ବୁଝୀ ?" (କ'ଣ ହେ ଶ୍ୱଶୁର ଘରଠାରୁ ବୋଧହୁଏ ?) କାନ୍ଧରେ ଝୁଲୁଥିବା ଗାମୁଛାକୁ ଘୋଷ ହାତରେ ଓହ୍ଲାଇ ଦେଲା, "ଏମିତିରେ ଏମିତି ଶୁଭ କାମରୁ ତୁ ଫେରିଛୁ, ମୁଁ ଛୁଇଁବା ଉଚିତ ନୁହେଁ । ଅଶୌଚରେ ଅଛି ବନ୍ଧୁ,

ଏଇକ୍ଷଣି ମୋର ଷଷ୍ଠ ଭଉଣୀର ଶାଶୁଙ୍କୁ ପୋଡ଼ି ଚାଲି ଆସୁଛି – ଆଉ ଜାଣିଛୁ ସେଠାରେ କାହା ସହିତ ସାକ୍ଷାତ ହେଇଥିଲା ?"

ଲେମ୍ପପୋଷ୍ଟ ପାଖରେ ଦୁହେଁ ଛିଡ଼ା ହେଇଗଲେ । ଘୋଷର ଫ୍ଲାଟ ଆସି ଯାଇଥିଲା ।

"ତୋର ଟେନେଣ୍ଟ ମିସ ମଜୁମଦାର । ସତରେ ବନ୍ଧୁ, ବିଚିତ୍ର ଝିଅ ଅଟେ । ତା ସହିତ ଥିଲେ ତିନି ଚାରୋଟି ହିପ୍ପି ବାଳକ ଓ ଏକ ବାଳିକା । ବୁଲି-ବୁଲି କରି ଜଳୁଥିବା ଚିତାକୁ ଦେଖୁଥିଲେ ଯେମିତିକି କୌଣସି ପ୍ରଦର୍ଶନୀ ଚାଲୁଛି କିମ୍ୱା କୌଣସି କାର୍ନିଭାଲ । ମତେ ଦେଖିଲା ମାତ୍ରେ କିଂକର୍ତ୍ତବ୍ୟବିମୂଢ଼ ହେଇଗଲା । ଆସିଥିଲା ଶ୍ମଶାନକୁ ଆଉ ସାଢ଼ୀ ଏମିତି ପିନ୍ଧିଥିଲା ଯେମିତିକି ଶ୍ୱଶୁର ଘରକୁ ଆସିଛି । ଲାଲ ବନାରସୀ । ଏକଦମ ଚିତାର ଲାଲ ଅଗ୍ନିଶିଖା ସହିତ ମେଚ କରୁଥିଲା ସାଢ଼ୀ । ଆଉ ଯାହା ହେଉନା କାହିଁକି, ସେ ଜାଣିଥିଲା ହାଉ ଟୁ କେରୀ ହାରସେଲ୍ଫ ।"

ପ୍ରବୀର ନା କିଛି ପଚାରିଲା, ନା କହିଲା ।

ଘୋଷ କହିବାରେ ଲାଗିଥିଲା, "ଜଣା ନାହିଁ ତମର ପରି ସଂସ୍କାରୀ ଗୃହରେ ଏତେଦିନ ରହିକରି ମଧ୍ୟ ବାଳିକା ଏମିତି ଖରାପ ସଂଗତରେ କେମିତି ପଡ଼ି ପାରିଲା । ଏକରେ ସେମାନେ ହିପ୍ପୀ ବିଦେଶୀ ବାଳକମାନେ ଯାହାକୁ ସାଙ୍ଗରେ ନେଇ ବୁଲିବେ, ତାହାକୁନେଇ ବୁଡ଼ିଯିବେ । ଜଣା ନାହିଁ କେମିତି ଯୁଗ ଆସି ଯାଇଛି", ସେ କୌଣସି ଦାର୍ଶନିକ ପୁରୁଖା ବ୍ୟକ୍ତି ପରି ଗମ୍ଭୀର ସ୍ୱରରେ କହିବାକୁ ଲାଗିଲା, "ଆମେ ଯେମିତି ବୁଦ୍ଧିଜିମ୍, ଜୈନିଜିମର ଉନ୍ନତି ଆଉ ଅବନତିର କାରଣ ମୁଖସ୍ତ କରିଛୁ, ସେମିତି ହିଁ ଆମର ଭବିଷ୍ୟତ ବଂଶଧର ଏବେ ହୁଏତ ହିପ୍ପୀଜିମ୍‌ର ଉତ୍ଥାନ-ପତନର କାରଣ ଘୋଷିବେ ଆଉ ସେହି ଅବନତିର କାରଣମାନଙ୍କ ମଧ୍ୟରେ ନିଶ୍ଚୟ ହିଁ ଏହି ତୋର ଟେନେଣ୍ଟ ଭିକ୍ଷୁଣୀ ମିସ୍ ମଜୁମଦାର ମଧ୍ୟ ଏକ ହେବ । ଆଚ୍ଛା ଗୁଡ୍‌ନାଇଟ୍, ଏବେ ଘରେ ପହଞ୍ଚିଲା ମାତ୍ରେ ମା ପୁଣି ଗାଧୋଇବାକୁ କହିବ । ଏମିତି ଦିନରେ ମରିଛି ମୋର ଷଷ୍ଠ ଭଉଣୀର ଶାଶୁ ଯେ ରବିବାରର ଛୁଟିକୁ ହିଁ ନଷ୍ଟ ଭ୍ରଷ୍ଟ କରିଦେଲା ।"

ପ୍ରବୀରଂ ଶେଷ ପର୍ଯ୍ୟନ୍ତ ଯାହାର ସ୍ମୃତି ବହୁତ ସାବଧାନରେ ଲାଠି ନେଇ କରି ଦୂରକୁ ଘଉଡ଼ି ଦେଇଥିଲା, ସେହି ଶ୍ମଶାନ-ସାଧିକା ରକ୍ତାମ୍ବରାର ନବୀନ ମୂର୍ତ୍ତି ପୁଣି ଆଖି ସାମ୍ନାରେ ନାଚିଗଲା । କେମିତି କଠିନ ଗୋଲକ ଧନ୍ଦା ପରି ବ୍ୟକ୍ତିତ୍ୱ ଅଟେ । ସେହି ବାଳିକାର ଚେହେରା ଏମିତି ସୁକୁମାରୀ, ନିଷ୍ପାପ ଯେମିତି କି ଦୁଧ ଦାନ୍ତ ମଧ୍ୟ ଭାଙ୍ଗି ନାହିଁ, ଆଉ କାମ ଏମିତି ! ଅମ୍ମା କହୁଥିଲା ସେ ପାହାଡ଼ରେ ହିଁ ଜନ୍ମ ହେଇଛି ବଢ଼ିଛି, ତେବେ କ'ଣ ସରଳ ପର୍ବତୀୟ ସମାଜରୁ ସେ କିଛି ମଧ୍ୟ ଗ୍ରହଣ କରି ପାରିଲା ନାହିଁ ? କେମିତି ମା ବାପ ଥିଲେ ଯିଏକି ଏହି ଅଳ୍ପ ବୟସରେ ବାଳିକାକୁ ରିସେପ୍‌ସନିଷ୍ଟ କରି ଏତିକି ଦୂରକୁ ପଠେଇ ଦେଲେ ?

ସେ ଏହି କଥାକୁ ବାରମ୍ବାର ଚିନ୍ତା କରି ଘରେ ପହଞ୍ଚିଲା, ତେବେ ଘର ଶବପରି ପଡ଼ିଥିଲା । ଦୁରାଚାରୀ ମାନବହାଦୁର ଦରଓ୍ୱାନ୍ ମାଗଣାରେ ଦରମା ନେଉଥିଲା । ଆଜି ମଧ୍ୟ ବେଞ୍ଚ ଉପରେ ଶବ ପରି ଶୋଇଥିଲା । ପ୍ରବୀର ପାଦ ଚାପି ଚାପି ଆଗେଇଗଲା । ଆଜି ତାର ଭଲକରି ଖବର ନେବ । ସେହି ବେଞ୍ଚ ଉପରେ ଶୋଇଥିବା ଦରଓ୍ୱାନ୍ ଆଡ଼କୁ ଝୁଙ୍କିଲା ଆଉ ଚମକି ପଡ଼ି ସିଧା ହେଇଗଲା । ଇଏତ ଦରଓ୍ୱାନ୍ ନୁହେଁ, ଯେମିତିକି ବିଷାକ୍ତ କଠିଣ ନାଗର ଫଣା ମେଲେଇ ଦଂଶିବା ପାଇଁ ଛିଡ଼ା ହେଇଥିଲା ।

ଲାଲ ବେନାରସୀ ସାଢ଼ୀରେ, ଛାତି ଉପରେ ଚତୁର୍ଭୁଜ ବଟୁଆ ଧରି କଲୀ ଶୋଇଥିଲା । ଏକ ହାତ ତଳେ ଝୁଲୁଥିଲା, ଗୋଟିଏ ରିଂଗରେ ଝୁଲୁଥିବା ଦୁଇ-ତିନୋଟି ଚାବିର ପେଣ୍ଠା ବିଶିଆଙ୍ଗୁଠିରେ ଅଟକି କରି ରହି ଯାଇଥିଲା । ମନେ ହେଉଥିଲା ଯେ କ୍ଳାନ୍ତ ମାଲିକିଆଣୀ କୋଠରୀ ଖୋଲିକରି ଭିତରକୁ ଯିବାର ଶକ୍ତି ମଧ୍ୟ ନ ଥିଲା । ଅପରେଶନ ଥିଏଟରର ଟେବୁଲ ଉପରେ ଇଥର ଶୁଙ୍ଘେଇ ଦିଆ ଯାଇଥିବା କୌଣସି ଦୁର୍ବଳ ରୋଗିଣୀ ପରି ଏହି ବାଳିକା ବେଞ୍ଚ ଉପରେ ଶିଥିଳ ହେଇକରି ପଡ଼ିଥିଲା । ସେହି ଅତ୍ୟଧିକ ଏକେଲା, ନିର୍ଦ୍ଦୋଷ ଆଉ ଦୁର୍ବଳ ମନେ ହେଉଥିବା ବାଳିକାକୁ ଛାଡ଼ିକରି ପ୍ରବୀର ଭିତରକୁ ଯାଇ ପାରିଲା ନାହିଁ ।

କାହିଁ କେଉଁଠି ନିଶା-ଫିଶା କରିତ ପଡ଼ି ନ ଥିଲା ! ସେ ଝୁଙ୍କିଲା, କିନ୍ତୁ ସେହି ମାଦକ ଅଧରରୁ କୌଣସି ନିଶାର ଭୁରୁଭୁରୁ ଗନ୍ଧ ଆସିଲା ନାହିଁ । ବିବାହର ପ୍ରଥମ ରାତ୍ରିର ନିସ୍ତବ୍ଧତାରେ ବୁଡ଼ିଥିବା ଲାଲ ବେନାରସୀ ସାଢ଼ୀ ପିନ୍ଧିକରି ହିଁ ଯେମିତି କେହି ବାଳିକା ବଧୂ ଶୋଇଥିଲା । ଶ୍ମଶାନରୁ ଫେରି ସେହି ମଧୁର ମଦ୍ୟପାନ ହେତୁ ଶୁପ୍ତ ବାଳିକା ଭୈରବୀକୁ ଦେଖି ତା'ର କଠୋର ଚିତ୍ତ ମଧ୍ୟ କ୍ଷଣକ ପାଇଁ ଆଦ୍ର ହେଇଗଲା । କ'ଣ କରିବି ? ଅମ୍ମା ବା ଜୟା-ମାୟାକୁ ଡାକି ଆଣିବି ? କିନ୍ତୁ ଦାମୋଦର ପରି କୁଟିଳ ବ୍ୟକ୍ତି ଏହି କଥାକୁ ନେଇ ଗଣ୍ଡଗୋଳ କରିପାରେ । ଯିଏ ସ୍ୱୟଂ ଯେମିତି ହୁଏ, ସେମିତି ହିଁ କଥା ଅନ୍ୟମାନଙ୍କ ପାଇଁ ମଧ୍ୟ ଚିନ୍ତା କରେ ଅଧା ରାତିରେ ମୂର୍ଚ୍ଛିତା ସୁନ୍ଦରୀ କଲୀ ପାଇଁ ବ୍ୟାକୁଳ ହେଇକରି ମା ଭଉଣୀଙ୍କୁ ଡାକି ଆଣିଲା ବ୍ୟକ୍ତି ପ୍ରବୀର ପାଇଁ ସେହି ଦୁଷ୍ଟ କେବେ ଭଲ କଥା ଚିନ୍ତା କରି ପାରିବ ନାହିଁ ।

"ମିସ୍ ମଜୁମଦାର, ମିସ ମଜୁମ୍ଦାର", ସେ ନଇଁପଡ଼ି ବେହୋସ ପଡ଼ିଥିବା କଲୀକୁ ତୀକ୍ଷ୍ଣ କାନ୍ଧକୁ ଛୁଇଁକରି ହଲେଇଲା । ସେହି କ୍ଷଣିକ ସ୍ପର୍ଶ ତାକୁ ବିଦ୍ୟୁତର ଖୋଲା ତାର ପରି ଧକ୍କା ମାରିଲା ଆଉ ସେ ସଂକୋଚ କରି ସାବଧାନ ହେଇଗଲା ।

କଲୀ ନା ହଲିଲା, ନା କଡ଼ ମୋଡ଼ିଲା ।

କୋକେଇରେ ବନ୍ଧା ହେଇଥିବା ଶବପରି ଅବଶ ଦେହକୁ ସଂକୀର୍ଣ୍ଣ ବେଞ୍ଚର ଶେଷ ଭାଗରେ ହିଁ ଏମିତି ବେହୋସ କଡ଼ ମୋଡ଼ିଲା ଯେ ସେ ସହାୟତା ନ କରିଥିଲେ ହୁଏତ ମାଟି ଉପରେ ହିଁ ଢଳି ପଡ଼ିଥାନ୍ତା ।

ପ୍ରବୀର ଥରେ ଝୁଙ୍କି ପଡ଼ି କାନ ପାଖରେ ହିଁ ମୁହଁ ଲଗେଇ କହିଲା, "ମିସ୍ ମଜୁମ୍‌ଦାର ।"

ପରିଚିତ ମଧୁର ମାଦକ ସୁଗନ୍ଧ ତାହାର ଗଳାରେ ବାହୁ ରଖିଦେଲା । ସ୍ୱୟଂ କଳୀ ଶବପରି ପଡ଼ି ହିଁ ରହିଲା । ତାହାର ମ୍ଳାନ ଚେହେରା ଦ୍ୱିତୀୟାର ବକ୍ର ଚନ୍ଦ୍ରଲୋକ ମଧ୍ୟ ସ୍ପଷ୍ଟ ହେଇ ଉଠିଲା । ସୌନ୍ଦର୍ଯ୍ୟରେକେମିତି କ୍ଷମତା ଅଛି, କେମିତି ଅମୋଘ ଶକ୍ତି ଅଛି, ଏହା ଦେଖି ପ୍ରବୀର ଭୟଭୀତ ହେଲା 'ଯଦି ତ୍ୱା ବନିତା ହୃଦୟଂ ନିହିତା, କ୍ୱ ଜପଃ, କ୍ୱ ତପଃ କ୍ୱ ସମାଧିରିତି' ଏହି କଥାକୁ ସେ କେମିତି ହସରେ ଉଡ଼େଇ ଦେଉଥିଲା । କିନ୍ତୁ ଆଜି ତାକୁ ମନେ ହେଲା ଏମିତି ଶ୍ୟାମା ସୁନ୍ଦରୀ ପ୍ରକୃତରେ ହିଁ ଜପ-ତପ-ସମାଧିକୁ ବ୍ୟର୍ଥ ସିଦ୍ଧ କରିପାରୁ ଥିଲା ।

ପ୍ରବୀର ତୃତୀୟ ଥର ଝୁଲୁଥିବା ହାତକୁ ଡରି-ଡରି ପୁଣି ହଲେଇଲା ।

ହାତର ବିଶି ଆଙ୍ଗୁଠିରେ ଲାଖିଥିବା କୀ-ରିଂଗ ତଳେ ପଡ଼ିଗଲା ଲଲାଟ ଉପରକୁ ଝୁଲୁଥିବା ବାଳର ଗୁଚ୍ଛ ଆଖି ଉପରକୁ ଝୁଲି ପଡ଼ିଲା, କିନ୍ତୁ ବେହୋସ କଳି ସେମିତି ହିଁ ଶୋଇ ରହିଲା ।

ନିଶ୍ଚୟ ହିଁ ତାହାର ହିପ୍ପୀ ସାଥିମାନେ ତାକୁ ଏଲ.ଏସ.ଡ଼ି.ର ଗୋଟିଏ ଅଧେ ଖୋଲି ଖୁଏଇ ଦେଇଥିଲେ । ନହେଲେ ଏମିତି କୁମ୍ଭକର୍ଣ୍ଣର ନିଦ କାହାକୁ ଗ୍ରାସିପାରେ ? ଏଠାରେ ତାକୁ ଏହି ବିବସ୍ତ୍ରାବସ୍ଥାରେ ଛାଡ଼ି ଦେବା ଠିକ୍ ନୁହେଁ । ବାର ବାଜି ସାରିଥିଲା । ରାସ୍ତାରେ ଚାଲୁଥିବା ମୁଖରା ସଡ଼କକୁ କେହି ମଧ୍ୟ ଚଞ୍ଚଳ ମନା ଛୋଟ-ମୋଟ ଜିନିଷକୁ ଉଠେଇ କରି ଚାଲିହେବ, ବେଞ୍ଚ ଉପରେ ପଡ଼ିଥିବା ସେହି ବିନା ଉତ୍ତରାଧିକାରୀ କମନୀୟ ଲାଲ ରେଶମୀ ଗଣ୍ଠିଲିକୁ କାନ୍ଧରେ ଉଠେଇ କରି ଯାଇ ପାରିଥାନ୍ତା, ଆଉ ପୁଣି ନିଜର ହିଁ ଗୃହ-ଦସ୍ୟୁ ଦାମୋଦର ରାତି-ଅଧାରାତି ଏଠାରେ ଅର୍ଥପୂର୍ଣ୍ଣ ଚକ୍ରାକାରରେ ବୁଲୁଥାଏ । ପ୍ରବୀର ଦୁଇ-ତିନି ଥର ତାକୁ ଧରି ପକେଇ ଥିଲା ।

ପ୍ରବୀର ଚାବି ଉଠେଇ ନେଲା, କଳୀକୁ ବେଞ୍ଚ ଉପରେ ହିଁ ଛାଡ଼ି ସେ କୋଠରୀ ଆସ୍ତେ ଖୋଲି ଦେଲା । ଖୋଲା ଝରକା ଦେଇ ଆସୁଥିବା କ୍ଷୀଣ ଆଲୁଅରେ ହିଁ କୋଣରେ ବିଛା ହେଇଥିବା ସଫା-ସୁତୁରା ପଲଙ୍କ ଦେଖା ଯାଉଥିଲା । ସେ ବାହାରକୁ ଗଲା । ଗୋଟିଏ କ୍ଷଣରେ ହୁଏତ କିଛି ଦ୍ୱିଧାରେ ଯେମିତି ରୋଗୀ ଆଖି ବନ୍ଦକରି ଗୋଟିଏ ନିଶ୍ୱାସରେ କଡ଼ା ଔଷଧ କଣ୍ଠ ଭିତରେ ଢୋକି ନିଏ, ସେ ଡେଇଁପଡ଼ି ବଟୁଆ ସହିତ କଳୀକୁ ବାହୁରେ ଉଠେଇ ନେଲା, ଆଉ ଯତ୍ନକରି ନିଜ କୋଠରି ପର୍ଯ୍ୟନ୍ତ ଆଣି ପଲଙ୍କରେ ଶୁଆଇ ଦେଲା । ପୁଣି ନିଜେ ହିଁ ଟଳମଳ ହେଇ ପଲଙ୍କ ଉପରେ ବସି ପଡ଼ିଲା ।

ବାପରେ ବାପ ! ଦେଖିବାକୁ ଫୁଲପରି ହାଲୁକା ମନେ ହେଉଥିବା ବାଳିକା କେତେ ଓଜନିଆ ଅଟେ । ଏତିକି ଦୂର ଆଣିବାରେ ଗୋଡ଼ ଟଳମଳ ହେଇ ଭାରସାମ୍ୟ ହରେଇ ବସିଲା ।

ଛୋଟ ଭାଇର ମୃତ୍ୟୁ ଆଉ ଭାଇବହୁର କଳଙ୍କ-କଥା ପରେ ସେ ସେହି କୋଠରିକୁ ପ୍ରଥମ ଥର ଆସିଥିଲା । ଛୋଟ ଭାଇ ସହିତ ସେ ଏହି କୋଠରିରେ ପିଲାଦିନରୁ ଶୋଉଥିଲା । ଥରେ ସାମାନ୍ୟ ଝଗଡ଼ା ଉଗ୍ର ରୂପ ଧାରଣ କରିଥିଲା, ଆଉ ସେ ଛୋଟ ଭାଇର ମୁଣ୍ଡ ଧରିକରି ଏହି କାନ୍ଥରେ ପିଟି ଦେଇଥିଲା ପୁଣି ତାହାର କମିଜ୍‌ରେ ପଡ଼ିଥିବା ରକ୍ତଧାରକୁ ଦେଖିକରି ଅମ୍ମା-ବାପାଙ୍କ ଭୟରେ ଏହି ଝରକାରୁ ଡେଇଁ ପଡ଼ି ଅଦୃଶ୍ୟ ହେଇ ଯାଇଥିଲା । ଆଜି ସେହି ପରିତ୍ୟକ୍ତ କୋଠରିର ସହସ୍ର ସ୍ମୃତି ତାକୁ ଘେରିକରି ନାଚିବାକୁ ଲାଗିଛି । ସେ ଉଠିଗଲା । ବାଳିକା କିଛି ଖାଇକରି ଆସିଥିଲା, ଏଥିରେ କୌଣସି ସନ୍ଦେହ ନଥିଲା । ଥରେ ତାକୁ କରୁଣ ଦୃଷ୍ଟିରେ ଦେଖିକରି ସେ ବାହାରକୁ ଚାଲି ଆସିଲା । କିଛି ସମୟ ଭାବିକରି ସେ ତାଲା ଲଗେଇ କରି ବନ୍ଦ କଲା ଆଉ ଚାବି ତାର ପକେଟ୍‌ରେ ରଖିଲା । କାଲି ସେ ଉଠିବା ଆଗରୁ ଆସିକରି ତାଲା ଖୋଲି ଦେଇ ଯିବ । ନରଭକ୍ଷୀ ଦାମୋଦରର ପଞ୍ଜାରୁ ବାଳିକା ବଞ୍ଚି ପାରିବ, ସେ ଭାବିଲା ।

ସାରା ରାତି ସେ ଠିକ୍ ଭାବରେ ଶୋଇ ପାରିଲା ନାହିଁ । ଟିକିଏ ନିଦ ଲାଗିଗଲା ତ ଚମକି ପଡ଼ି ଉଠି ବସୁଥିଲା - ଯେପରି ଏମିତି ନ ହେଉ ଯେ ସେ ଶୋଇ ରହିବ ଓ ବନ୍ଦିନୀ କୋଠରୀରେ ବନ୍ଦ ପଡ଼ି ରହି ଯିବ । ହାତର ଘଡ଼ି ଯେମିତି କଚ୍ଛପ ଗତିରେ ଚାଲୁଥିଲା । ରାମ-ରାମ କରୁ କରୁ ତିନି ବାଜିଲା ଆଉ ସେ ଚୁପ୍‌ଚାପ୍ ଚାବିର ପେନ୍ଥା ନେଇକରି ବାହାରି ଗଲା । ଆକାଶରେ ବର୍ତ୍ତମାନ ତାରା ହିଁ ଥିଲା । ଅବଶ୍ୟ ଗୋଟିଏ-ଦୁଇଟା କାର ଆଉ ରିକ୍ସାର ଯାତାୟାତ ଆରମ୍ଭ ହେଇ ଯାଇଥିଲା । ସେ ପାଦ ଚିପି ଚିପି ଯାଇକରି ତାଲା ଖୋଲିଦେଲା । ଚାବିର ପେନ୍ଥାକୁ ଖୋଲା ଝରକା ଦେଇ ବଡ଼ ଯତ୍ନ ସହକାରେ ପକେଇଲା ପରେ ମଧ୍ୟ ସିମେଣ୍ଟର ଚଟାଣରେ ପେନ୍ଥା ଝଣ-ଝଣ କରି ଶବ୍ଦ କରି ଉଠିଲା । କୋଠରିର ମାଲିକିଆଣୀ ଘୋଡ଼ା ବିକ୍ରି କରି ମୂର୍ଚ୍ଛିତ ହେଇ ଶୋଇ ରହିଲା । ସେ ପୁଣି ନିଜ କୋଠରିକୁ ଆସିକରି ଶୋଇ ପଡ଼ିଲା ।

କ'ଣ ଉଠିଲା ପରେ ସେହି ଚରସ୍-ଗଞ୍ଜେଇ ଟାଣି ଫେରିଥିବା ମୂର୍ଖ କିଶୋରୀର କିଛି ମନେ ପଡ଼ିବ ଯେ ସେ ଦରଓ୍ୱାନ୍‌ର ବେଞ୍ଚ ଉପରେ ହିଁ ଟଳଟଳ୍ ହେଇ ଢଳି ପଡ଼ିଥିଲା ତେବେ ତାକୁ କିଏ ଉଠେଇ କରି, କୋଠରି ଖୋଲି ଏତେ ଯତ୍ନରେ ଶୁଏଇ ଦେଇ ଯାଇଛି ? କେମିତି ଜାଣି ପାରିବ ସେ ? ଠିକ୍ ହେଉଛି - ଯେମତି ବାଳିକା ଥିଲା, କେବେ ଏହି ପ୍ରସଙ୍ଗର ଲାଭ ଉଠେଇ ତାକୁ ଫାଶରେ ପକେଇ ପାରିବ ।

ଉଷା କାଳୀନ ପ୍ରଥମ କିରଣ ପଡ଼ିବାକୁ ଲାଗିଲା, ତେବେ ପ୍ରବୀରର ଆଖି ବନ୍ଦ ହେଇଗଲା । କାହାର ଡାକ ଶୁଣିକରି ସେ ହଠାତ୍ ଚମକି ପଡ଼ି ଉଠି ବସିଲା ।

ମୁଣ୍ଡ ଆଡ଼କୁ ଗମ୍ଭୀର ମୁହଁର ମୁଦ୍ରା କରି ମାୟା ବସିଥିଲା । ମନେ ହେଉଛି ଦୁଇଥର ତ ମୁଁ କୋଠରିକୁ ଉଙ୍କିମାରି ଫେରିଗଲି । ଅମ୍ମା ହୁଏତ କେତେଥର ଆସିକରି ତମକୁ ଦେଖି ଯାଇଛି ।

"କାହିଁକି, କ'ଣ କଥା ହେଇଗଲା ଯେ ପାଳି - ପାଳିକରି ସମସ୍ତେ ମୋର ଉପସ୍ଥାନ ନେବାକୁ ଆସିଗଲେ ?" ପ୍ରବୀର ପଚାରିଲା ।

"କଥା କ'ଣ ହେବ, ଏବେ ଏହି ଘରରେ କେବେ କିଛି ଭଲ କଥା ହୁଏ, ଯେ ପଚାରୁଛ ? ଜଣାନାହିଁ, କାଲି ଟିକିଏ ତମର ଶ୍ୱଶୁର ଘରରେ ହସଖୁସି ହେଲା, ଘରକୁ ଫେରିଲୁତ ପୁଣି ସେହି ଅର୍ଥ ସଙ୍କଟରେ ପଡ଼ିବା, ଉଦ୍‌ବିଗ୍ନତା । ଘରେ ପହଞ୍ଚିଲା ମତେ ଅପା ଆଉ ଭିଣେଇଙ୍କ ମଧ୍ୟରେ ଏମିତି କଳିକଜିଆ ଯେ ନ ପଚାରିଲେ ଭଲ । ଭିଣେଇ ଚିକ୍ରାର କରି କରି ପୁରା କୋଠରୀର ଜିନିଷ ବାହାରକୁ ଫୋପାଡ଼ି ଦେଲେ । ବାହାଘର ବେଳେ ପାଇଥିବା ନିଜ ଘଣ୍ଟା, ତମେ ଆଣିଥିବା ଟ୍ରାନିଜିଷ୍ଟର, ଫାଉଣ୍ଟେନପେନ । ହାଏ, ମୁଁ ତ ଲଜ୍ୟାରେ ଚଟାଣ ଉପରେ ଗଡ଼ି ପଡ଼ିଲି । ଏମିତି-ଏମିତି ଗାଳିସବୁ ଅପାକୁ ଦେଉଥିଲେ ଯେ ଯାହା କୌଣସି ଟାଙ୍ଗାବାଲା ନିଜ ଘୋଡ଼ିକୁ ଦେଇ ପାରେ । ବାପା ବାରଣ୍ଡାରେ ଛିଡ଼ା ହେଇଥିଲେ, ଚଟକରି ଉଠି ଭିତରକୁ ଚାଲିଗଲେ । ତମେ ତ ଜାଣିଛ ତାଙ୍କୁ କେବେ ଆମେ ଜୋର୍‌ରେ କଥା କହିବା ମଧ୍ୟ ପସନ୍ଦ ନଥିଲା । ନା ଅପା ଚୁପ ହେଉଥିଲା, ନା ଭିଣେଇ । ବହୁତ ଡେରି ପର୍ଯ୍ୟନ୍ତ ଏକଦମ ପରିବା ଦୋକାନୀ ମାନଙ୍କ ପରି ଲଢ଼େଇ ଚାଲୁଥିଲା ! ହାରିଯାଇ ମୁଁ ହିଁ ଅପାକୁ ଟାଣିକରି ଅମ୍ମାର କୋଠରୀକୁ ନେଇ ଆସିଲି । ମତେ ଦେଖିଲା ମାତ୍ରେ ଭିଣେଇ ଆହୁରି ଚିକ୍ରାର କରିବାକୁ ଲାଗିଲେ, ତମର ମା-ବାପା ବ୍ୟବସାୟ କରୁଥିବା ପାନ୍ଥଶାଳାର ମାଲିକର ସ୍ତ୍ରୀକୁ ଆଣି ଭଡ଼ାରେ କୋଠରିରେ ରଖିଛି । ତାହାରି ଚାଲିଚଳନ ତମେ ଦୁଇ ଭଉଣୀ ମଧ୍ୟ ଶିଖି ଯାଇଛ ।' ମୁଁ ଚୁପ ରହିଲି । ଇଏତ ଭଲ ହେଲା କଲୀ ତା କୋଠାରୀରେ ନଥିଲା । ଯଦି ଶୁଣିଥାନ୍ତା ତାହେଲେ କ'ଣ ଭାବିଥାନ୍ତା ।"

ପ୍ରବୀରର ଚେହେରା ଗମ୍ଭୀର ହେଇଗଲା, "ଦାମୋଦର କ'ଣ ତାର କୋଠରିରେ ଅଛି ?"

"ସେଇୟାତ କହିବାକୁ ଆସିଛି", ମାୟା ଭାଇର ପାଦ ପାଖରେ ବସିଗଲା "ରାତିରେ ଜ୍ଣାନାହିଁ କେଉଁଠିକୁ ଚାଲିଗଲେ । କାଲି ରାତିରେ କେହି ଭୋଜନ କରି ନାହାନ୍ତି । ପାନ ଦୋକାନ ପର୍ଯ୍ୟନ୍ତ ଯାଇକରି ବାପା ଦୁଇଥର ଦେଖି ଆସିଲେ । ସାରା ରାତି ଅମ୍ମା ବସି ରହିଲା । ତାଙ୍କର ଭୟ ହେଉଛି, ଯଦି କ୍ରୋଧରେ ଆସିକରି କିଛି କରି ନ ପକାନ୍ତି । କିନ୍ତୁ ଅପା କହୁଛି ତାଙ୍କୁ ସେ ଜାଣେ, ପକେଟର ପଇସା ଆଉ ପେଟର ଅନ୍ନ ଶେଷ ହେଇଗଲେ ନିଜେ ଭିକାରି ହେଇ ଦ୍ୱାରରେ ଛିଡ଼ା ହେଇଯିବେ ।"

ପ୍ରବୀର ଉଠିଗଲା, "ତୁ ଚାଲ ମୁଁ ଆସୁଛି । ଜୟା ଠିକ୍ କହୁଛି, କ୍ରୋଧର ବଶବର୍ତ୍ତି ହେଇ କିଛି କରି ବସିବ, ଏମିତି ସାହସ ସେହି ଭୟାଳୁଠାରେ କେବେ ହେଇପାରିବ ନାହିଁ । ଦ୍ୱିପ୍ରହରର ଖାଇବା ପର୍ଯ୍ୟନ୍ତ ସେ ନିଜେହିଁ ଫେରି ଆସିବ । ପ୍ରଥମ ଥର ଥର ମଧ୍ୟ ଏମିତି କରିଥିଲା ।"

ପ୍ରବୀର ଅମ୍ମାର କୋଠରିକୁ ଯିବା ପର୍ଯ୍ୟନ୍ତ ଜୟା କାଠ ପଟାରେ ବସିଥିଲା । ମା ପାଖରେ ବସିଥିବା ଝିଅ ଲଜ୍ଜିତ ଦୃଷ୍ଟିରେ କେବେ ମା'କୁ ଦେଖୁଥିଲା, କେବେ ଆଈକୁ । ମାମୁଁକୁ ଦେଖିକରି ସେ କଇଁ କଇଁ ହେଇ କାନ୍ଦିବାକୁ ଲାଗିଲା ।

"କେମିତି ପିଲାଳିଆମି କରୁଛ ତମେ ଦୁଇଜଣ ଜୟା", ପ୍ରବୀର ନିଜର ବିରକ୍ତି ଅଟକେଇ ପାରିଲା ନାହିଁ, "ଇଉ ସୁଡ୍ ହେଭ ସମ ସେନ୍ସ, ହ୍ୱାଇ କ୍ରିଏଟ ସଚ୍ ସିନ୍ ।"

ହିଷ୍ଟେରିଆ ପରି ହେଇ ଜୟା ଉଠିକରି ବସି ପଡ଼ିଲା । ଭଉଣୀର ଇତସ୍ତତ ହେଇଥିବା ବାଳ ଆଉ ଗଳଗଣ୍ଡର ଭାରରେ ବିକୃତ ହେଇ ଯାଇଥିବା ଫୁଲା ଆଖିରୁ ଅନବରତ ଲୁହ ବୋହୁଥିବା ଦେଖି କରି କ୍ଷଣକ ପାଇଁ ପ୍ରବୀର ନିଜର ସହୋଦର ଭଉଣୀକୁ ହିଁ ଚିହ୍ନି ପାରିଲା ନାହିଁ । କ'ଣ ସତରେ ତା'ର ସେହି ଭଉଣୀ ଥିଲା, ଯାହାକୁ କନଭେଣ୍ଟର ଶିକ୍ଷା ଲାବଣ୍ୟ ଓ ନମ୍ର ମଧୁର ସ୍ୱଭାବ କେବେ ଦୁଇ ଭାଇଙ୍କର ମୁଣ୍ଡବଥା ବହୁତ ବଢ଼େଇ ଦେଇଥିଲା । ଜଣା ନାହିଁ ତହାରି କେତେ ଅଜଣା ପ୍ରଶଂସକର ପ୍ରେମପତ୍ର, ଆତ୍ମହତ୍ୟାର ଧମକ ତାଙ୍କୁ ପ୍ରାୟ ପ୍ରତ୍ୟେକ ଦିନ ସେମାନଙ୍କ ସହିତ ଲଢ଼େଇ କରିବାକୁ ବାଧ କରୁଥିଲା । ଆଜି କୌଣସି ବାଳକ କଲେଜ ଯାଉଥିବା ଜୟାର କୋଳରେ ସେଣ୍ଟରେ ଭରା ନୀଳ ଲଫାପା ପକେଇ ଦେଲା, ଆଜି ଜଷ୍ଟିସ୍ ବାନାର୍ଜୀଙ୍କ ପୁତ୍ର ତାକୁ ଧମକେଇ ଥିଲା ଯେ ସେ ଯଦି ତାର ଚିଠିର ଉତ୍ତର ଦେବ ନାହିଁ ତାହେଲେ ସେ ଏସିଡ୍ ପକେଇ କରି ତା'ର ଚେହେରାକୁ ବିଭତ୍ସ କରିଦେବ । ଆଜି ସତରେ ନିୟତି ଏସିଡ୍ ପକେଇ କରି ସେହି ସୁନ୍ଦର ଚେହେରାର ଲାବଣ୍ୟ ଛଡ଼ାଇ ନେଇଥିଲା । ବେଙ୍ଗଲରେ ଅସାଧାରଣ ରୂପବତୀ କିଶୋରୀକୁ ସବୁବେଳେ ଏକ ନବୀନ ନାମ ଦେଇ ଡାକୁଥିଲେ 'ନାନୀ' । ଜୟା ସତର ବର୍ଷର ମଧ ହେଇ ନଥିଲା ବେଳେ କିଛି ଚେଷ୍ଟା ନକରି 'ବୀବୀ' ହେଇ ଯାଇଥିଲା । ସେହିଦିନମାନଙ୍କରେ 'ବୀବୀ' ଉପାଧି ମିସ୍ ୟୁନିଭର୍ସ ଠାରୁ ମଧ ଅଧିକ ମହତ୍ତ୍ୱ ରଖୁଥିଲା । ଆଜି ସେହି 'ବୀବୀ' ଉପରେ ମାଛିମାନେ ଭଣଭଣ ହେଉଥିଲେ ।

"ମତେ କ'ଣ କହୁଛ ?" ସେ କର୍କଶ ସ୍ୱରରେ ଚିତ୍କାର କରିବାକୁ ଲାଗିଲା, "ଅମ୍ମାକୁ କାହିଁକି କହୁ ନାହଁ, ଯିଏ ଦେଖାଶୁଣା ନକରି ପାହାଡ଼ର ଅନ୍ଧାର କୁଅଁ ଭିତରକୁ ଠେଲି ଦେଲା ? ମୋରତ ମା-ଭଉଣୀ ମଧ ପରର ହେଇଗଲେ । କଲୀତ ତାଙ୍କର ଏମିତି ଅପୂର୍ବ କନ୍ୟା ହେଇଯାଇଛି, ଯିଏ ଅମ୍ମା ଆଖି ବୁଜିଲେ ମଧ ପ୍ରତ୍ୟୟ ହୁଏ । ବେଶ ଆମେ ମିଥ୍ୟା । ଆମେ ଆମର ଆଖିରେ ସେହି ବାଳିକା ଏହାଙ୍କର ବାହୁରେ ଦେଖିଲୁ, ଆଉ ଅମ୍ମାମାୟା ମତେହିଁ ମିଥ୍ୟାବାଦୀ କରୁଛି । ନିଜର ସୁନା ନକଲି ନ ହେଇଥିଲେ କ'ଣ ପରୀକ୍ଷା କରିଲା ଲୋକକୁ ଦୋଷ ଦେଇଥାନ୍ତା ?"

"ଜୟା", ପ୍ରବୀର ତାକୁ ଏମିତି ଧମକେଇଲା ଯେ ସେ ଲଜ୍ଜିତ ହେଲା, "ତୁ କ'ଣ ପୁରାପୁରି ସେବକ ହେଇ ଯାଇଛୁ ? ବୁଦ୍ଧିମତୀ ଝିଅ ଏଠାରେ ବସିଛି ।" ସେ ଇଂରେଜୀରେ ତାକୁ ପୁଣି ନିର୍ଭୀକତାରେ ଧମକେଇବାକୁ ଲାଗିଲା ।

"ତୁ ଏଠାରେ କ'ଣ କରୁଛୁ, ଯା, ବାହାରେ ଖେଳିବୁ", ସେ ପୁଣି ଭୟଭୀତ ଲଜ୍ଜିତ ଭାଣିଜୀକୁ ବାହାରକୁ ପଠେଇ ଦେଲା ।

ରାତିସାରା ବେଞ୍ଚରେ ନିଃସନ୍ତାନ ଶବ ପରି ପଡ଼ିଥିବା ଯେଉଁ ବାଳିକା ପାଇଁ ପ୍ରବୀରର ଚିତ୍ତ ଦୟାରେ ବିଗଳିତ ହେଇଥିଲା, ସେ ବର୍ଷାରେ ଭିଜି କଂକ୍ରୀଟ୍ ପରି ପୁଣି ପଥର ହେଇଗଲା ।

"ମୁଁ ତମକୁ କ'ଣ କହିଥିଲି ଅମ୍ମା ! ଦେଖ ତାହାହିଁ ହେଲା ନା ! ଏକଦମ ଅଜଣା ବାଳିକାକୁ ତମେ ଏଠାକୁ ନେଇ ଆସିଲ ।"

ଏ ପର୍ଯ୍ୟନ୍ତ ଚୁପ୍‌ଚାପ୍ ଛିଡ଼ା ହେଇଥିବା ମାୟା ହଠାତ୍ କଲୀର ପକ୍ଷ ନେଇକରି ଆଖଡ଼ାଶାଳକୁ ଡେଇଁ ପଡ଼ିଲା, ଜଣା ନାହିଁ । ଏହି ଅପାକୁ କ'ଣ ହେଇ ଯାଇଛି । ସି ରିଫ୍ୟୁଜେସ୍ ଟୁ ବି ରିଜନେବଲ । କିଛି ଶୁଣିବ ନାହିଁ । ପୁଣି ତାହେଲେ କ'ଣ ପାଉଁଶ ବୁଝିବ ? ପ୍ରକୃତରେ ଭାଇ କଥା ଏମିତି ଥିଲା...."

ସେ ନିଜ ବାକ୍ୟ ପୁରା ମଧ୍ୟ କରି ପାରି ନ ଥିଲା ଏଇ ସମୟରେ ଲାଲ ଅଙ୍ଗାର ପରି ଜଳୁଥିବା ଆଖି ନେଇକରି ଦାମୋଦର ଦ୍ୱାରରେ ଛିଡ଼ା ହେଇଗଲା ।

"ବା", ସେ ବଡ଼ ନିର୍ଲଜ୍ଜ ପରି ହସିକରି ମଝି ଦ୍ୱାରରେ ଦ୍ୱାରପାଳର ମୁଦ୍ରାରେ ଛିଡ଼ା ହେଇଗଲା, "ଏଠାରେ ତ ପୁରା ସଂସଦ-ସମୀକ୍ଷା ଚାଲିଛି । କ'ଣ ଶାଶୁ ମହାଶୟା, ମୋର ଅନୁପସ୍ଥିତିରେ ମୋ ଉପରେ କ'ଣ କ'ଣ ଅଭିଯୋଗ ଲଗା ଯାଇଛି, ଟିକିଏ ମୁଁ ମଧ୍ୟ ଶୁଣେ !"

## ଅଠର

ବିରୋଧୀ ପକ୍ଷର କୌଣସି ନିର୍ଲଜ୍ଜ ସଂସଦ-ସଦସ୍ୟର ଗୁଣ୍ଡାମିରେ ଗଣ୍ଡିରେ ହାତ ବାନ୍ଧିକରି ସେ ତକ୍ତା ଉପରେ ବସିଗଲା । ତା'ର ମୁହଁରୁ ଆସୁଥିବା ମାଦକ ଦୁର୍ଗନ୍ଧର ଭୁରୁ ଭୁରୁ ଗନ୍ଧ ପୁରା କୋଠରିରେ ବିସ୍ତାରିତ ହେଇଗଲା । ସ୍ପଷ୍ଟ ଜଣାପଡୁଥିଲା ଯେ ସେ ଶସ୍ତା ଦେଶୀ ମଦର ପୁରା ବୋତଲ ଗିଳି ପକେଇ ଫେରିଛି । ଅସଭ୍ୟ ଗାଉଁଲି ଢଙ୍ଗରେ ଚୋବୋଉ ଥିବା ପାନର ଛେପ ଏକ ଲମ୍ବା ରେଖା ତିଆରି କରୁଥିଲା, ତାହାର କଟ୍‌ସଉଲର କମୀଜର ସୁରୁଚିପୂର୍ଣ୍ଣ କଲରକୁ ରଙ୍ଗୀନ୍ ବୋତାମକୁ ଲାଲ କରି ଯାଇଥିଲା, "ୟୁ ଆର ନଟ୍ ସୋବର ଦାମୋଦର", ପ୍ରବୀର ଥଣ୍ଡା ସ୍ୱରରେ କହିଲା, "ଯାଅ ଗୋଟିଏ-ଦୁଇଟି ଢାଳ ଥଣ୍ଡା ପାଣି ମୁଣ୍ଡରେ ଅଜାଡ଼ି କରି ଶୋଇ ପଡ଼, ପୁଣି କଥା ହେବ ।"

"ତମର ମୁଣ୍ଡ ଉପରେ ଢାଳିବି ନାହିଁ ଦୁଇ ଢାଳ ପାଣି ?" ଏହି ଝଗଡ଼ା କରୁଥିବା ଗାଉଁଲି ବ୍ୟକ୍ତି ପ୍ରବୀର ସାମନାରେ ଏମିତି ରାଗି କରି ଛିଡ଼ା ହେଇଗଲା ଯେ ମାୟା ଲଜ୍ଜିତ ହେଇଗଲା । ଜଣା ନାହିଁ, ନିଶାର ଝୁଙ୍କରେ ଯେମିତି କିଛି କରି ନବସୁ ।

"ଯାହା କରିବାର ଅଛି ଏବେ କୁହ, ବୁଝିଲ ମୁଁ ଏ ଘରର ଜ୍ୱାଇଁ ଅଟେ, ଚାକର ନୁହଁ ।"

"ଦେଖ ଦାମୋଦର", ପ୍ରବୀରର ସ୍ୱର ଆଶ୍ଚର୍ଯ୍ୟଜନକ ରୂପରେ ଥଣ୍ଡା ଥିଲା, "ବାପାଙ୍କୁ ଲଢ଼େଇ ଝଗଡ଼ାରେ ଶକ୍ତ ଘୃଣା ଲାଗେ । ତମେ ଯେତେଦିନ ପର୍ଯ୍ୟନ୍ତ ଏଠାରେ ରହିବାକୁ ଚାହଁ ଆମର ଖୁସିରେ ରୁହ, କିନ୍ତୁ ଭଗବାନଙ୍କ ପାଇଁ ଏହି ଚିତ୍କାର-ପାଟିତୁଣ୍ଡ ଆଉ ପିଇବା-ପିଏଇବା ବନ୍ଦ କର । ଏଠାରେ ଏସବୁ ଚଳିବ ନାହିଁ । ଆମ ଘରର ନିଜସ୍ୱ ଏକ ମର୍ଯ୍ୟାଦା ଅଛି ।"

"ଆଚ୍ଛା !" ବ୍ୟଙ୍ଗରେ ଦାମୋଦର ଗଳା ଏକଦମ୍ ନରମ ହେଇଗଲା । ସେହି ସୁଦର୍ଶନ ବ୍ୟକ୍ତିର ଗୋରା ଚେହେରାରେ ସାରା ରାତିର ଅସଂଯମ ହୋଲିର ତେଲ-କଳଙ୍କ ଭରିଥିବା କଳା ରଙ୍ଗପରି ଲିପି ଦେଇ ଥିଲା – "ତମେ ନିଜ ଘରର ମର୍ଯ୍ୟାଦାର କଥା କହୁଛ ? ଘରର ବୋହୂ ସ୍ୱାମିଜୀ ସହିତ ପଳେଇ ଗଲା ଭଡ଼ାରେ ରହୁଛି ସେହି ତିନି କଉଡ଼ିର ବାଳିକା, ଯାହାର ସାଥି ଘରର ଝିଅମାନଙ୍କୁ ମଧ୍ୟ ଅଙ୍କୁରିତ କରିଦେଇଛି, ଯିଏ ପୁରୁଷଠାରୁ ମଧ୍ୟ ଫ୍ଲର୍ଟ କରିବାକୁ ଶ୍ମଶାନରେ ପହଞ୍ଚି ଯାଏ । ଚମକି ପଡ଼ନାହିଁ ପ୍ରିୟ, ମୁଁ ମଧ୍ୟ କେଉଁ ଯୁଗରେ ପୋଲିସ ମହକୁମାରେ ଅଫିସର ରହି ସାରିଛି । କେଉଁ ପକ୍ଷୀ ଉଡ଼ିକରି କେଉଁଠିକୁ ଯାଉଛି । ସବୁ ଖବର ରଖିବାକୁ ହେଉଥିଲା ପୁଣି ମତେ ତମେ ଘରର ମର୍ଯ୍ୟାଦାର ବର୍ଣ୍ଣନା କରୁଛ ? ସ୍ୱୟଂ ତମର ସମ୍ବନ୍ଧ ହେଉଛି ପାଣ୍ଡେ ମହାଶୟଙ୍କ ଝିଅ ସହିତ । ଏବେ କୁହ ତମ ପାଣ୍ଡେ ମହାଶୟଙ୍କୁ କିଏ ନଜାଣେ ? କେଉଁ ଦୁଧର ଧୂଳି ପାଣ୍ଡେ ମହାଶୟ ? କହିବତ ଖୋଲିଦେବି ଫାଇଲ ?"

ପ୍ରବୀର ତାକୁ ଏକ ପ୍ରକାର ଧକ୍କା ଦେଇ ନିଜ କୋଠରିକୁ ଚାଲି ଆସିଲା । ସେହି ବ୍ୟକ୍ତି ସହିତ ନିରର୍ଥକ ତର୍କ କରି ଅତୁଆ କାଦୁଅକୁ ପଥର ଫୋପାଡ଼ିବା ଥିଲା । ଭାବିଥିଲି, କିଛିଦିନ ଛୁଟିରେ ଟିକିଏ 'ଚେଞ୍ଜି' ହେଇଯିବ ଦେଖୁଛି ଖୁବ ଚେଞ୍ଜ ହେଇ ଯାଇଥିଲା । ଆସନ୍ତା ବୁଧବାରକୁ ତାର ଏୟାର ପେସେଜ୍ ବୁକ୍ ହେଇ ଯାଇଥିଲା, କିନ୍ତୁ ତା'ର ମନେ ହେଉଥିଲା ସେ ଘରର ଏହିଦିନ ରାତିର ପାଟିତୁଣ୍ଡ ଝଗଡ଼ାରୁ ଛୁଟି ପାଇବା ପାଇଁ ଶୀଘ୍ର କାବୁଲ ଫେରିଯାଏ ।

ଦ୍ୱିପ୍ରହରର ଖାଇବା ପାଇଁ ମାୟା ଦୁଇଥର ତାକୁ ଡାକିକରି ଫେରିଯାଇଛି ତୃତୀୟ ଥର, ସ୍ୱୟଂ ବାପା ଆସିକରି ଦ୍ୱାରରେ ଛିଡ଼ା ହେଇଗଲେ – "ତୋର ଅମ୍ମା କାଲି ମଧ୍ୟ କିଛି ଖାଇନାହିଁ । ତୁମେ ଭୋକରେ ରହିଲେ, ତାହେଲେ ସେ ମଧ୍ୟ ଅନ୍ନର ଦାନା ମୁହଁରେ ପୁରେଇବ ନାହିଁ ।"

ପ୍ରବୀର ଚୁପଚାପ ଉଠିକରି ତାଙ୍କର ପଛେ ପଛେ ଚାଲିଗଲା । ଖାଇବାର ଟେବୁଲ୍ ଉପରେ ହୁଏତ ସମସ୍ତେ ତାହାର ପ୍ରତୀକ୍ଷା କରୁଥିଲେ । ଦାମୋଦରକୁ ଛାଡ଼ି ଅନ୍ୟ ସମସ୍ତଙ୍କର ଚେହେରାରେ ସେମିତିହିଁ ଅସ୍ୱାଭାବିକ ଅନ୍ଧକାର ଛାଇ ଯାଇଥିଲା । ଯେମିତିକି

ଭୟାନକ ଗୃହ-କଳହର ପରେ ରହିଥିବା ଲୋକଙ୍କୁ ବୁଝେଇଥିଲେ ମଧ ଗୃହ-ସଦସ୍ୟଙ୍କ ଚେହେରାରେ ଅନ୍ଧକାର ରହିଥାଏ । ଜୟା-ମାୟା ଖାଇବାର ଗୁଣ୍ଡାରେ ଖେଳୁଥିଲେ । ନବୀନ ଥାଳିରେ ପଡ଼ିଥିବା ପତଳା ରୁଟିକୁ ଗୋଲ ଗୋଲ ବୁଲଉ ଥିଲା, ପ୍ରବୀରକୁ ଆସିବା ଦେଖି ସେ ଥାଳିକୁ ପାଖକୁ ଟାଣି ନେଲା । ଖାଇବା ଘରରେ ଲାଗିଥିବା ପର୍ଦାର ବ୍ୟବଧାନରେ ରନ୍ଧାଘରେ ପିଢ଼ା ଉପରେ ସମସ୍ତଙ୍କୁ ପିଠିକରି ବସିଥିବା ଅମ୍ମାର ଉଦାସ-ଶୁଖିଲା ଚେହେରା ମଝିରେ ମଝିରେ ଦେଖାଯାଉଥିଲା ।

"ବାପା", ପ୍ରବୀର ଅଶୁଭ ନିରବତାର ହିମଶୀଳା ଉପରେ ହାତୁଡ଼ି ପରି ଚୋଟ ଲଗେଇଲା । "ମତେ ବୁଧବାରକୁ ଯିବାର ଥିଲା, କିନ୍ତୁ ଏବେ ମୁଁ ପୋଗ୍ରାମ କିଛି ବଦଳେଇ ଦେଇଛି । ସେଠାରେ କିଛି ଜରୁରୀ କାମ ଛାଡ଼ି ଦେଇ ଆସିଥିଲି, ଭାବୁଛି ପହରଦିନ ଚାଲିଯିବି ।"

ବାପାଙ୍କର ମୁହଁର ଗୁଣ୍ଡା ମୁହଁରେହିଁ ରହିଗଲା । ସେହି ଧୂଆଁଳିଆ ସରଳ ଦୃଷ୍ଟିର ମୂକ ପ୍ରଶ୍ନର ସେ କିଛି ହେଲେ ଉତ୍ତର ଦେଇ ପାରିଲେ ନାହିଁ । ଅମ୍ମା ଅଚାନକ ପରଦା ଉଠେଇ କରି ଟେବୁଲ ପାଖରେ ଛିଡ଼ା ହେଇଗଲା ।

ବାପା ହୁଏତ ତାହାର ଶୀଘ୍ର ଘରରୁ ଚାଲିଯିବାର କାରଣ ବୁଝି ପାରିଥିଲେ ।

ଦାମୋଦର ଖାଇବା ଶେଷ କରି ଟେବୁଲରେ ବସିଥିବା ଅନ୍ୟ ସଦସ୍ୟଙ୍କ ଅନୁମତି ନ ନେଇ ବହୁତ ଅଭଦ୍ରତାରେ ଶବ୍ଦ କରି ଚଉକି ଠେଲି କରି ବାହାରକୁ ଚାଲିଗଲା । ତାର କୋଠରୀରୁ ଯିବା ମାତ୍ରେ ଝଗଡ଼ାରେ ଭାରିଥିବା ଅସ୍ୱାଭାବିକ ବାତାବରଣ ବାଷ୍ପ ହେଇ ଲୁପ୍ତ ହେଇଗଲା । ଅମ୍ମା ପ୍ରବୀର ପାଖରେ ବସିଗଲା ।

"ଦେଖ ପୁଅ, ଏବେ ଯେତେବେଳେ ନିର୍ବନ୍ଧ ହେଇ ଯାଇଛି, ତେବେ ଢିଲା କରିବା ଠିକ୍ ନୁହଁ, ଏହାକୁତ ଦେଖୁଛୁ, ଖାଇବା ପିଇବା ଛାଡ଼ିକରି ସେହି ନିର୍ଲଜ୍ଜର ଦୁଃଖରେ ମିଳେଇ ଯାଉଛି । ତୋର ବାହାଘର ଯେତେଦିନ ପର୍ଯ୍ୟନ୍ତ ହେଉନାହିଁ । ତୋର ବାପା ପାଣ୍ଡେଜୀଙ୍କୁ କହିବେ କେଉଁ ମୁହଁରେ । ପୁଣି କାଲି ପାଣ୍ଡେ ମହାଶୟ କେତେଥର ହାତ ଜୋଡ଼ିକରି କହି ଯାଇଛନ୍ତି ଯେ ଯେମିତି ବି ହେଉ ଏପ୍ରିଲ୍‌ରେ ହିଁ କୁନ୍ନୀର ବାହାଘର ସମାପ୍ତ କରିବାକୁ ଚାହାନ୍ତି । ବାଳିକାର ଅଢ଼େଇ ବର୍ଷ ପର୍ଯ୍ୟନ୍ତ ଏମିତି ବିକଟ ଦଶା ଅଛି ଯେଉଁଥି ପାଇଁ ପୁଣି ବାହାଘର ହେଇ ପାରିବନାହିଁ ।"

"ତା ହେଲେ କ୍ଷତି କ'ଣ ଅମ୍ମା, ଅଢ଼େଇ ବର୍ଷ ପରେ ହିଁ ହେଉ ।"

ଅମ୍ମା ଅବିଶ୍ୱାସ ପୂର୍ଣ୍ଣ ଦୃଷ୍ଟିରେ ଆଡ଼ବାୟା ପୁତ୍ରକୁ ଦେଖିଲା ଆଉ କାନ୍ଦ କାନ୍ଦ ହେଇଗଲା । "ଆଉ କ'ଣ, ବୁଢ଼ା ବୟସରେ ମୁକୁଟ ପିନ୍ଧିବୁ, ମୋର କ'ଣ ! ଆଜି ପର୍ଯ୍ୟନ୍ତ ତୁ ମୋର କୌଣସି କଥା ଶୁଣିଛୁ, ଯେ ଆଜି ଶୁଣିବୁ ।" ବାପା ଉଠିକରି ବାହାରକୁ ଚାଲିଗଲେ, ତାଙ୍କର କିଛି ନ କହିଲା ପରେ ମଧ ଚେହେରାର କ୍ଷୀଣ ରେଖାଗୁଡ଼ିକ ବହୁତ କିଛି କହି ଯାଇଥିଲା ।

ଅମ୍ମା ଚଷମା ଓହ୍ଲେଇ କରି ପୋଛିବାକୁ ଲାଗିଲା । କାଲି ସମୁଦୁଣୀଙ୍କ ଠାରୁ କେଉଁ ଅଶୁଭ ସମୟରେ ଫେରିଲି ଯେ ବଡ଼ ବଡ଼ ଷ୍ଟିଲ ଥାଳିଗୁଡ଼ିକରେ ଭର୍ତ୍ତିକରି ଶୁଖିଲା ଫଳର ଏକ ଚିନି ମିଠେଇ ମଧ ପାଖ-ପଡ଼ୋଶୀଙ୍କୁ ବାଣ୍ଟି ପାରିନାହିଁ । ସବୁ ଜିନିଷ ସେମିତି ହିଁ ପଡ଼ିଛି । ଜୟାର ଝିଅହିଁ ଥରେ ଦୁଇଥର ଲୋଭନୀୟ ଥାଳିଗୁଡ଼ିକ ଉପରେ ପଡ଼ିଥିବା ଟେବୁଲ କନାର ଓଢ଼ଣା ଘୁଞ୍ଚେଇକରି ଉଙ୍କିମାରିବାକୁ ଯାଇଥିଲା ଆଉ ଜୟା ତାକୁ ଏକ ଚାପୁଡ଼ା ମାରି ଥିଲା । ନପୁଂସକ ପତିର ଘର-ଜୋଇଁ ହେଇ ଯିବା ପରେ ସେ ଝିଅକୁ ଅଜାଘରେ ସାମାନ୍ୟ ମାଗିଥିଲେ ନିର୍ମମ ଭାବରେ ଛେଚି ଦେଇଥାନ୍ତା । ତା'ର ମନେହୁଏ, ସେ ବାପଘରେ ନିଜର ମହତ୍ତ୍ୱପୂର୍ଣ୍ଣ ପଦ ହରେଇ ବସିଛି । ଯେଉଁ ଗେଲବସରରେ ଅମ୍ମା ତାକୁ ଏକମାତ୍ର ପୁଅ ପରି ପାନ ପତ୍ର ପରି ଓଲଟ-ପାଲଟ କରୁଥିଲା, ତାହାର ସ୍ଥାନ ଏତେ କରୁଣା ନେଇ ଯାଇଛି, ସେହି ସହାନୁଭୂତି, ଜନନୀର ନିଷ୍କପଟ 'ସହାନୁଭୂତି ଥିଲେ ମଧ ତାକୁ ବିଷତୁଲ୍ୟ ମନେ ହେଉଥିଲା, ପୂର୍ବର ଜୟା ହେଇଥିଲେ ହୁଏତ ପ୍ରବୀରର ସେଠାରେ ଚିରିକରି ରଖି ଦେଇଥାନ୍ତା । କିନ୍ତୁ ଏବେ ସେ ପୋର୍ଟଫୋଲିଓ ବିହୀନ ମନ୍ତ୍ରୀ ପରି ଚୁପଚାପ ହାତ ଉପରେ ହାତ ରଖି ବସି ରହିଲା । ଥରେ ଅମ୍ମା ବଡ଼ କରୁଣ ଆବେଦନପୂର୍ଣ୍ଣ ଦୃଷ୍ଟିରେ ତା ଆଡ଼କୁ ଅନେଇଲା । ଯେମିତିକି କହୁଛି – 'ତୁ ହିଁ ଏହାକୁ ବୁଝେଇବୁ ଜୟା । ତୋର କଥା ତ ଇଯେ ଖୁବ୍ ମାନୁଥିଲା ।'

"କାବୁଲ ଯିବା ପରେ ତୁ କ'ଣ କେବେ ବର୍ଷକ ପୂର୍ବରୁ ଫେରିଛୁ ।" ଅମ୍ମା ଯେପରି ନିରାଶ ତଥା ହତାଶ ହେଇ ଯାଇଥିଲା ।

"ଦେଖ ଅମ୍ମା !" ପ୍ରବୀର ଚଉକିକୁ ଅମ୍ମା ଆଡ଼କୁ ବୁଲେଇ ଦେଲା । "ସାତଦିନ ପରେ ତ ମତେ ଏମିତିରେ ହିଁ ଯିବାର ଥିଲା ଆଉ ସେହି ସାତ ଦିନର ତମେ ମୋର ବିବାହ କରେଇ ପାରିବ ନାହିଁ । ନାକରେତ ତମେ ଦଉଡ଼ି ବାନ୍ଧି ଦେଇଛ, ବ୍ୟାକୁଳ କାହିଁକି ହେଉଛ ?"

- "କାହିଁକି ଅମ୍ମା", ଦାମୋଦର ଜଣା ନାହିଁ କେଉଁଠୁ ଆସିକରି ପୁଣି ଦ୍ୱାରରେ ଛିଡ଼ା ହେଇଗଲା, "କ'ଣ ସମୁଦୁଣୀ ମିଠେଇର ଆଚାର କରିବ ? ଖୁଆଅ ନା ଗୋଟିଏ ଅଧେ ବାଲୁସାହି । ମୋର ତ ଭାଇ ଘରରେ ଖାଇବା ପରେ ମିଠାଇ ଖାଇବାର ଅଭ୍ୟାସ ଅଛି ।"

ପୁଣି ଅମ୍ମାର ଉତ୍ତରର ପ୍ରତୀକ୍ଷା ନ କରି ସେ ସବୁଠାରୁ ବଡ଼ ଥାଳିର କପଡ଼ା ଉଠେଇ କରି ଦୁଇ ହାତରେ କାଙ୍ଗାଳ ପରି ବାଲୁସାହି ଏମିତି ଭର୍ତ୍ତି କରି ନେଲା ଯେମିତିକି ଆଜି ପର୍ଯ୍ୟନ୍ତ କେବେ ଦେଖି ନାହିଁ । ଜୟାର ଚେହେରା କ୍ରୋଧ, ଅପମାନ ଆଉ ଅସହାୟ ହେଇ ଲାଲ ପଡ଼ିକରି ଧଳା ହେଇଗଲା । ଅବୋଧ ଝିଅକୁ ସେ ଏମିତି ଲୋଲୁପ ଦୃଷ୍ଟି ପାଇଁ ଉଚିତ ଦଣ୍ଡ ଦେଇ ଦେଇଥିଲା, କିନ୍ତୁ ଏହି ସୁଶିକ୍ଷିତ ପରିପକ୍ୱ ମସ୍ତିଷ୍କର ପ୍ରୌଢ଼ ପତିକୁ କ'ଣ ସେହିପରି ଦଣ୍ଡ ଦେଇପାରିଥାନ୍ତା ? ପତିର ନିର୍ଲଜ୍ଜ ଆଚରଣରେ କ୍ଷୁବ୍ଧ ହେଇକରି ସେ କଣ୍ଠର ସୁକୁସୁକୁ କାନ୍ଦ କଣ୍ଠରେ ଶ୍ୱାସରୁଦ୍ଧ ପବନ ପରି ବାହାରକୁ ବାହାରି

ଗଲା । ଅମ୍ମା ରୋଷେଇ ଘରକୁ ଚାଲିଗଲା । ନବୀନ ଫୋନର ଘଣ୍ଟି ଶୁଣିବାର ବାହାନା କରି ଆଖି ଇଶାରାରେ ମାୟାକୁ ମଧ୍ୟ ନିଜ ସହିତ ଟାଣିନେଇ ଗଲା, ଦାମୋଦର ଚଉକି ଟାଣିକରି ମିଠେଇର ଥାଳି ପାଖରେ ଦୃଢ଼ ହେଇ ବସିଲା, ତାକୁ କାହାରି ଆସିବା-ଯିବାର ଚିନ୍ତା ନଥିଲା, ନିଶା ଓହ୍ଲେଇ ଗଲା । କିନ୍ତୁ ମଦନିଶା ଏବେ ମଧ୍ୟ ଲାଲ ଆଖିର ଭାରି ପଲକକୁ ଭାରି କରି ରହିଥିଲା । ଗୋଟିଏ ବାଲୁସାହି ସେ ପ୍ରବୀର ଆଡ଼କୁ ବଢ଼େଇ ଦେଲା ଆଉ ହସିକରି କହିବାକୁ ଲାଗିଲା, ନିଅ ଚାଖ ପ୍ରିୟ, ଶ୍ୱଶୁର ଘରର ମିଠେଇ ଆହୁରି ମିଠା ଲାଗୁଛି ।"

ପ୍ରବୀରର ମନହେଲା, ସେହି ବାଲୁସାହି ଟାଣିକରି ତା'ର ମଦ୍ୟପାନରେ ମୂର୍ଖ ହେଇ ଯାଇଥିବା ଚେହେରା ଉପରକୁ ମାରିବାକୁ । କ'ଣ ଏପରି ବ୍ୟକ୍ତି ଲୋକଲଜ୍ୟା, ମାନ-ସମ୍ମାନକୁ ମଧ୍ୟ ଦେଶୀ ମଦ ସହିତ କକଟେଲ ତିଆରି କରି ପିଇ ଯାଇଥିଲା ବା 'ସସ୍‌ପେଣ୍ଡ'ର ଆକସ୍ମିକ ଆଘାତ ଏହାକୁ ପଡ଼ି ଯାଉଥିବା ଗାତର ଜୀବନନେବା ଗଭୀରକୁ ଠେଲିକରି ଛାଡ଼ି ଦେଇଥିଲା ? "ଭାବୁଛି ପ୍ରିୟ, ଆଜି ତୁମର ଶ୍ୱଶୁର ଘର ପର୍ଯ୍ୟନ୍ତ ଯାଇ ବୁଲି ଆସେ ! କାଲି ଆସିଲା ବେଳକୁ ତମର ଶ୍ୱଶୁର ମହାଶୟ ବହୁତ ପ୍ରେମପୂର୍ଣ୍ଣ ନିମନ୍ତ୍ରଣ କରିଛନ୍ତି ।"

ଦାମୋଦର ବାଲୁସାହୀରେ ଅଠା ଅଠା ହେଇଥିବା ଓଠରେ ସନ୍ତୁଷ୍ଟ ଜିହ୍ୱା ବୁଲେଇ ଚଉକି ପ୍ରବୀର ଆଡ଼କୁ ଟାଣି ନେଲା ।

"ଆଇ ସୀ, ଗୋଟିଏ ଦଶ ଟଙ୍କାର ନୋଟ ଦେଇ ପାରିବକି ? ମୋର ପ୍ରିଭିପର୍ସ ଆଜିକାଲି ତମର ରାଜରାଣୀ ଭଉଣୀ ପାଖରେ ରହୁଛି ଆଉ ଆଜି ତାଙ୍କଠାରୁ କିଛି ମିଳିବାର ଆଶା ବ୍ୟର୍ଥ ଅଟେ ।"

ପ୍ରବୀରର ଚେହେରା ତମତମ ହେଇଉଠିଲା । ଭଉଣୀ ପାଖରେ ତା'ର କେମିତି ପ୍ରିଭିପର୍ସ ଅଛି, ସେ ଜାଣିଥିଲା । କେତେଥର ତାହାର ଉଦାସ କ୍ଷୀଣ ଚେହେରା ଦେଖିକରି ପ୍ରବୀରର ମନକୁ ଆସିଲା ଯେ ତାହାର ହାତରେ ଶହେ-ଦୁଇଶହ ଟଙ୍କା ରଖି ଦେବାକୁ, କିନ୍ତୁ ସେ ଆତ୍ମଭିମାନୀ ଭଉଣୀକୁ ଖୁବ୍ ଚିହ୍ନିଥିଲା । ଚେହେରାକୁ ବିକୃତ କରି ଦେଇଥିବା ରୋଗ ପତିର ନିର୍ଲଜ୍ଜ ଆଚରଣ ଏବଂ 'ସସ୍ପେସନ' ତାକୁ ଏତେ 'ସେନ୍‌ସିଟିଭ୍' କରି ଦେଇଥିଲା ଯେ ତୀଜ-ଉତ୍ସବ ପାଇଁ ଦିଆ ଯାଇଥିବା ଟଙ୍କାକୁ ମଧ୍ୟ ସେ ଶଙ୍କାଶୀଳ ହେଇ ଦେଖୁଥିଲା, ଯଦି କେହି ତାକୁ ଦୟାର ପାତ୍ରୀ ଭାବିକରି ଭିକ ତ ଦେଉ ନାହିଁ । ଏହି ସେହି ଜୟା ଥିଲା, ଯିଏ ଭାଇଠାରୁ କାବୁଲର କୋଟ, ଘଡ଼ି ଆଉ ସିଫନ, ଜର୍ଜେଟର ଇମ୍ପୋଟେଡ଼ ସାଢ଼ୀଗୁଡ଼ିକ ପାଇଁ ଜିଦ୍ କରୁଥିଲା ।

"କାହିଁକି ପ୍ରବୀର, କେଉଁ ଚିନ୍ତାରେ ପଡ଼ିଗଲ । ବଡ଼ ମଣିଷ ଅଟ, ଦଶର ନୋଟ ତ ତମର କୋଟର ସିଲେଇରେ ହିଁ ପଡ଼ିଥିବ ।

ପ୍ରବୀର ବଟୁଆ ଖୋଲିକରି ଦଶ ଟଙ୍କାର ଗୋଟିଏ ନୋଟ୍ ବହୁତ ଅବଜ୍ଞାର

ସହିତ ଦାମୋଦରର ପାଦ ପାଖରେ ଫୋପାଡ଼ି ଦେଲା, ଯେମିତିକି କୌଣସି ବାଜେକଥା କରୁଥିବା ଭିକ୍ଷୁକକୁ ଭିକ ଦେଉଛି ଆଉ ପୁଣି ସେ ବାହାରକୁ ଚାଲିଗଲା । ତାକୁ ଏହି ନୋଟ ଦେଇ ନ ଥିଲେ ହୁଏତ ନିର୍ଲଜ୍ଜ ଦାମୋଦର ତା'ର ଶ୍ୱଶୁର ଘରକୁ ଯାଇକରି ପାଣ୍ଡେ ମହାଶୟଙ୍କ ଠାରୁ ଏହି ଟଙ୍କା ଛଡ଼େଇ ଆଣିଥାନ୍ତା । ଜଣା ନାହିଁ ଏବେ ମଧ ଯାଇ ମାଗି ନେଇପାରେ । ବର୍ତ୍ତମାନହିଁ ତାକୁ ପରିଷ୍କାର ଭାବରେ ବୁଝେଇ ଦେବା ଠିକ୍ ହେବ ।

"ଦେଖ ଦାମୋଦର" ସେ ବୁଲି ପଡ଼ି ଫେରି ଆସିଲା, "ପାଣ୍ଡେ ମହାଶୟଙ୍କ ଘରକୁ ତମର ଯିବା ଠିକ୍ ହେବ ନାହିଁ ।"

"ଓ ଆଚ୍ଛା ! ତମର ଯିବାତ ଠିକ୍ ଅଟେ ନୁହେଁ ?" ସେ ହସିକରି କହିବାକୁ ଲାଗିଲା, "ମୁଁ ଶୁଣିଛି, ତମକୁ କାଲି ପୁଣି ଚା ଖାଇବାକୁ ଡାକିଛନ୍ତି । ହୁଏତ ତମେ ଶୁଣି ନାହଁ । ମୁଁ କହିଥିଲି ନା ହଜାରେ ହେଉ ଶେଷରେ ପୋଲିସ୍ ମହକୁମାର ଅଫିସର ଅଟେ - ଉଡୁଥିବା ପକ୍ଷୀତ ଆମର ଥାନାବାବୁ ହିଁ ଚିହ୍ନିପାରେ । ଏବେ ତାଙ୍କର ଫୋନ୍ ଆସିଥିଲା । ମୁଁ ଶୁଣି ନେଇଛି । ତମେ ତ ଶଳା କାଲା ଅଟ । କେଉଁ ମନ୍ତ୍ରୀ ମହାଶୟ ଆସୁଛନ୍ତି- ପାଣ୍ଡେ ମହାଶୟ ତମର ବଦଳି ପାଇଁ ତାଙ୍କୁ ଧରାଧରି କରୁଛନ୍ତି । ଏଇଥିରୁ ତ ମୁଁ ମଧ ଯାଉଥିଲି ଯେ ବହୁଥିବା ଗଙ୍ଗାରେ ମୁଁ ମଧ ହାତ ଧୋଇ ନେବି, କିନ୍ତୁ ତମେ ମନାକରି ଦେଲ । ଦାମୋଦରକୁ କେହି ଟାଲୁ ଟାଲୁ ମନା କରିଦେଲା, ତା ହେଲେ ସେ ପୁଣି ସେଠାକୁ ଭୁଲରେ ମଧ ଯାଏ ନାହିଁ, ବୁଝିଲ ?"

ପ୍ରବୀର ଠିକ୍ ଶୁଣିଥିଲା । ସେ ନିଜ କୋଠରୀକୁ ଚାଲି ଆସିଲା ତ ମାୟା ଦଉଡ଼ି-ଦଉଡ଼ି ଆସି ପହଞ୍ଚିଲା । "ବଡ଼ଭାଇ, ପାଣ୍ଡେ ମହାଶୟଙ୍କ ଫୋନ ଆସିଥିଲା । କାଲି ମନ୍ତ୍ରୀ ମହାଶୟ ତାଙ୍କର ସେଠାକୁ ଚାହା ପାଇଁ ଆସୁଛନ୍ତି, ପାଣ୍ଡେ ମହାଶୟ ତମକୁ ମଧ ଡାକିଛନ୍ତି । ହୁଏତ ତମର ବଦଳି ଏବେ ଦିଲ୍ଲୀ ଶୀଘ୍ର ହେଇଯିବ ।"

"ଠିକ୍ ଅଛି", ପ୍ରବୀର ମନକୁ ମନ ଭାବିଲା, କାଲିହିଁ ଏକାନ୍ତରେ ସେ କୁନ୍ନୀକୁ ସବୁକଥା ବୁଝେଇ ଦେବ । ଘରର ବହୁ ହେଇ ସେ ଯେତେବେଳେ ଆସୁଥିଲା, ତେବେ ଦାମୋଦରର ପରିଚୟ ଦେବାରେ କ'ଣ ଦୋଷ ହେବ । କିନ୍ତୁ ଜୟା ଦାମୋଦରର ବାହୁରେ କଲୀକୁ ଦେଖିଥିବା ଯେଉଁ ସ୍ପଷ୍ଟ ଅଭିଯୋଗ ଲଗେଇ ଥିଲା, ତାହା କ'ଣ ସତ୍ ଥିଲା ? କ'ଣ ଦାମୋଦ୍ର ସତରେ ଏତେ ତଳକୁ ଖସି ଯାଇଛି ? ଆଉ କଲୀ ? କ'ଣ ସେ ସେହି ବାହୁରେ ବାନ୍ଧିହେଇ ପାଟିତୁଣ୍ଡ-ଚିତ୍କାର କରି ନାହିଁ ?

ସେଦିନ ପ୍ରବୀର କେଉଁଠିକୁ ବୁଲିବାକୁ ଗଲା ନାହିଁ । ମାୟାକୁ ଡାକିକରି ସେ ଗୋଟିଏ କପ୍ କଫି କୋଠରୀରେ ହିଁ ମାଗିକରି ପିଇ ଦେଇଥିଲା ।

"ରାତିରେ ମଧ ମତେ ବାହାରକୁ ଯିବାକୁ ହେବ ମାୟା, ତମେମାନେ ଖାଇଦେବ", କହିକରି ସେ ଘୋଷ ଘରକୁ ଚାଲିଗଲା । ନଟୁ ଘୋଷର ସ୍ନେହୀ ବିଧବା ମା ତାକୁ ପିଲାଦିନରୁ ନିମାଇ ନିମାଇ ବୋଲି ଡାକୁଥିଲେ ।

ଗଲା । ଅମ୍ମା ରୋଷେଇ ଘରକୁ ଚାଲିଗଲା । ନବୀନ ଫୋନର ଘଣ୍ଟି ଶୁଣିବାର ବାହାନା କରି ଆଖି ଇଶାରାରେ ମାୟାକୁ ମଧ୍ୟ ନିଜ ସହିତ ଟାଣିନେଇ ଗଲା, ଦାମୋଦର ଚଉକି ଟାଣିକରି ମିଠେଇର ଥାଳି ପାଖରେ ଦୃଢ଼ ହେଇ ବସିଲା, ତାକୁ କାହାରି ଆସିବା-ଯିବାର ଚିନ୍ତା ନଥିଲା, ନିଶା ଓହ୍ଲେଇ ଗଲା । କିନ୍ତୁ ମଦନିଶା ଏବେ ମଧ୍ୟ ଲାଲ ଆଖିର ଭାରି ପଲକକୁ ଭାରି କରି ରହିଥିଲା । ଗୋଟିଏ ବାଲୁସାହି ସେ ପ୍ରବୀର ଆଡ଼କୁ ବଢ଼େଇ ଦେଲା ଆଉ ହସିକରି କହିବାକୁ ଲାଗିଲା, ନିଅ ଚାଖ ପ୍ରିୟ, ଶ୍ୱଶୁର ଘରର ମିଠେଇ ଆହୁରି ମିଠା ଲାଗୁଛି ।"

ପ୍ରବୀରର ମନହେଲା, ସେହି ବାଲୁସାହି ଟାଣିକରି ତା'ର ମଦ୍ୟପାନରେ ମୂର୍ଖ ହେଇ ଯାଇଥିବା ଚେହେରା ଉପରକୁ ମାରିବାକୁ । କ'ଣ ଏପରି ବ୍ୟକ୍ତି ଲୋକଲଜ୍ୟା, ମାନ-ସମ୍ମାନକୁ ମଧ୍ୟ ଦେଶୀ ମଦ ସହିତ କକଟେଲ ତିଆରି କରି ପିଇ ଯାଇଥିଲା ବା 'ସସ୍‌ପେଣ୍ଡ'ର ଆକସ୍ମିକ ଆଘାତ ଏହାକୁ ପଡ଼ି ଯାଉଥିବା ଗାତର ଜୀବନନେବା ଗଭୀରକୁ ଠେଲିକରି ଛାଡ଼ି ଦେଇଥିଲା ? "ଭାବୁଛି ପ୍ରିୟ, ଆଜି ତୁମର ଶ୍ୱଶୁର ଘର ପର୍ଯ୍ୟନ୍ତ ଯାଇ ବୁଲି ଆସେ ! କାଲି ଆସିଲା ବେଳକୁ ତମର ଶ୍ୱଶୁର ମହାଶୟ ବହୁତ ପ୍ରେମପୂର୍ଣ୍ଣ ନିମନ୍ତ୍ରଣ କରିଛନ୍ତି ।"

ଦାମୋଦର ବାଲୁସାହୀରେ ଅଠା ଅଠା ହେଇଥିବା ଓଠରେ ସନ୍ତୁଷ୍ଟ ଜିହ୍ୱା ବୁଲେଇ ଚଉକି ପ୍ରବୀର ଆଡ଼କୁ ଟାଣି ନେଲା ।

"ଆଇ ସୀ, ଗୋଟିଏ ଦଶ ଟଙ୍କାର ନୋଟ ଦେଇ ପାରିବକି ? ମୋର ପ୍ରିଭିପର୍ସ ଆଜିକାଲି ତମର ରାଜରାଣୀ ଭଉଣୀ ପାଖରେ ରହୁଛି ଆଉ ଆଜି ତାଙ୍କଠାରୁ କିଛି ମିଳିବାର ଆଶା ବ୍ୟର୍ଥ ଅଟେ ।"

ପ୍ରବୀରର ଚେହେରା ତମତମ ହେଇଉଠିଲା । ଭଉଣୀ ପାଖରେ ତା'ର କେମିତି ପ୍ରିଭିପର୍ସ ଅଛି, ସେ ଜାଣିଥିଲା । କେତେଥର ତାହାର ଉଦାସ କ୍ଷୀଣ ଚେହେରା ଦେଖିକରି ପ୍ରବୀରର ମନକୁ ଆସିଲା ଯେ ତାହାର ହାତରେ ଶହେ-ଦୁଇଶହ ଟଙ୍କା ରଖି ଦେବାକୁ, କିନ୍ତୁ ସେ ଆତ୍ମଭିମାନୀ ଭଉଣୀକୁ ଖୁବ୍ ଚିହ୍ନିଥିଲା । ଚେହେରାକୁ ବିକୃତ କରି ଦେଇଥିବା ରୋଗ ପତିର ନିର୍ଲଜ୍ଜ ଆଚରଣ ଏବଂ 'ସପ୍ରେସନ' ତାକୁ ଏତେ 'ସେନ୍‌ସିଟିବ୍' କରି ଦେଇଥିଲା ଯେ ତୀଜ-ଉତ୍ସବ ପାଇଁ ଦିଆ ଯାଇଥିବା ଟଙ୍କାକୁ ମଧ୍ୟ ସେ ଶଙ୍କାଶୀଳ ହେଇ ଦେଖୁଥିଲା, ଯଦି କେହି ତାକୁ ଦୟାର ପାତ୍ରୀ ଭାବିକରି ଭିକ ତ ଦେଉ ନାହିଁ । ଏହି ସେହି ଜୟା ଥିଲା, ଯିଏ ଭାଇଠାରୁ କାବୁଲର କୋଟ, ଘଡ଼ି ଆଉ ସିଫନ, ଜର୍ଜେଟର ଇମ୍ପୋଟେଡ଼ ସାଢ଼ୀଗୁଡ଼ିକ ପାଇଁ ଜିଦ୍ କରୁଥିଲା ।

"କାହିଁକି ପ୍ରବୀର, କେଉଁ ଚିନ୍ତାରେ ପଡ଼ିଗଲ । ବଡ଼ ମଣିଷ ଅଟ, ଦଶର ନୋଟ ତ ତମର କୋଟର ସିଲେଇରେ ହିଁ ପଡ଼ିଥିବ ।

ପ୍ରବୀର ବଟୁଆ ଖୋଲିକରି ଦଶ ଟଙ୍କାର ଗୋଟିଏ ନୋଟ୍ ବହୁତ ଅବଜ୍ଞାର

ସହିତ ଦାମୋଦରର ପାଦ ପାଖରେ ଫୋପାଡ଼ି ଦେଲା, ଯେମିତିକି କୌଣସି ବାଜେକଥା କରୁଥିବା ଭିକ୍ଷୁକକୁ ଭିକ ଦେଉଛି ଆଉ ପୁଣି ସେ ବାହାରକୁ ଚାଲିଗଲା । ତାକୁ ଏହି ନୋଟ ଦେଇ ନ ଥିଲେ ହୁଏତ ନିର୍ଲଜ୍ଜ ଦାମୋଦର ତା'ର ଶ୍ୱଶୁର ଘରକୁ ଯାଇକରି ପାଣ୍ଡେ ମହାଶୟଙ୍କ ଠାରୁ ଏହି ଟଙ୍କା ଛଡ଼େଇ ଆଣିଥାନ୍ତା । ଜଣା ନାହିଁ ଏବେ ମଧ୍ୟ ଯାଇ ମାଗି ନେଇପାରେ । ବର୍ତ୍ତମାନହିଁ ତାକୁ ପରିଷ୍କାର ଭାବରେ ବୁଝେଇ ଦେବା ଠିକ୍ ହେବ ।

"ଦେଖ ଦାମୋଦର" ସେ ବୁଲି ପଡ଼ି ଫେରି ଆସିଲା, "ପାଣ୍ଡେ ମହାଶୟଙ୍କ ଘରକୁ ତମର ଯିବା ଠିକ୍ ହେବ ନାହିଁ ।"

"ଓ ଆଚ୍ଛା ! ତମର ଯିବାତ ଠିକ୍ ଅଟେ ନୁହେଁ ?" ସେ ହସିକରି କହିବାକୁ ଲାଗିଲା, "ମୁଁ ଶୁଣିଛି, ତମକୁ କାଲି ପୁଣି ଚା ଖାଇବାକୁ ଡାକିଛନ୍ତି । ହୁଏତ ତମେ ଶୁଣି ନାହଁ । ମୁଁ କହିଥିଲି ନା ହଜାରେ ହେଉ ଶେଷରେ ପୋଲିସ୍ ମହକୁମାର ଅଫିସର ଅଟେ – ଉଡୁଥିବା ପକ୍ଷୀତ ଆମର ଥାନାବାବୁ ହିଁ ଚିହ୍ନିପାରେ । ଏବେ ତାଙ୍କର ଫୋନ୍ ଆସିଥିଲା । ମୁଁ ଶୁଣି ନେଇଛି । ତମେ ତ ଶଳା କାଲା ଅଟ । କେଉଁ ମନ୍ତ୍ରୀ ମହାଶୟ ଆସୁଛନ୍ତି- ପାଣ୍ଡେ ମହାଶୟ ତମର ବଦଳି ପାଇଁ ତାଙ୍କୁ ଧରାଧରି କରୁଛନ୍ତି । ଏଇଥିରୁ ତ ମୁଁ ମଧ୍ୟ ଯାଉଥିଲି ଯେ ବହୁଥିବା ଗଙ୍ଗାରେ ମୁଁ ମଧ୍ୟ ହାତ ଧୋଇ ନେବି, କିନ୍ତୁ ତମେ ମନାକରି ଦେଲ । ଦାମୋଦରକୁ କେହି ଚାଲୁ ଚାଲୁ ମନା କରିଦେଲା, ତା ହେଲେ ସେ ପୁଣି ସେଠାକୁ ଭୁଲରେ ମଧ୍ୟ ଯାଏ ନାହିଁ, ବୁଝିଲ ?"

ପ୍ରବୀର ଠିକ୍ ଶୁଣିଥିଲା । ସେ ନିଜ କୋଠରୀକୁ ଚାଲି ଆସିଲା ତ ମାୟା ଦଉଡ଼ି- ଦଉଡ଼ି ଆସି ପହଞ୍ଚିଲା । "ବଡ଼ଭାଇ, ପାଣ୍ଡେ ମହାଶୟଙ୍କ ଫୋନ ଆସିଥିଲା । କାଲି ମନ୍ତ୍ରୀ ମହାଶୟ ତାଙ୍କର ସେଠାକୁ ଚାହା ପାଇଁ ଆସୁଛନ୍ତି, ପାଣ୍ଡେ ମହାଶୟ ତମକୁ ମଧ୍ୟ ଡାକିଛନ୍ତି । ହୁଏତ ତମର ବଦଳି ଏବେ ଦିଲ୍ଲୀ ଶୀଘ୍ର ହେଇଯିବ ।"

"ଠିକ୍ ଅଛି", ପ୍ରବୀର ମନକୁ ମନ ଭାବିଲା, କାଲିହିଁ ଏକାନ୍ତରେ ସେ କୁନ୍ନୀକୁ ସବୁକଥା ବୁଝେଇ ଦେବ । ଘରର ବହୂ ହେଇ ସେ ଯେତେବେଳେ ଆସୁଥିଲା, ତେବେ ଦାମୋଦରର ପରିଚୟ ଦେବାରେ କ'ଣ ଦୋଷ ହେବ । କିନ୍ତୁ ଜୟା ଦାମୋଦରର ବାହୁରେ କଳୀକୁ ଦେଖିଥିବା ଯେଉଁ ସ୍ପଷ୍ଟ ଅଭିଯୋଗ ଲଗେଇ ଥିଲା, ତାହା କ'ଣ ସତ ଥିଲା ? କ'ଣ ଦାମୋଦର ସତରେ ଏତେ ତଳକୁ ଖସି ଯାଇଛି ? ଆଉ କଳୀ ? କ'ଣ ସେ ସେହି ବାହୁରେ ବାନ୍ଧିହେଇ ପାଟିତୁଣ୍ଡ-ଚିତ୍କାର କରି ନାହିଁ ?

ସେଦିନ ପ୍ରବୀର କେଉଁଠିକୁ ବୁଲିବାକୁ ଗଲା ନାହିଁ । ମାୟାକୁ ଡାକିକରି ସେ ଗୋଟିଏ କପ୍ କଫି କୋଠରୀରେ ହିଁ ମାଗିକରି ପିଇ ଦେଇଥିଲା ।

"ରାତିରେ ମଧ୍ୟ ମତେ ବାହାରକୁ ଯିବାକୁ ହେବ ମାୟା, ତମେମାନେ ଖାଇଦେବ", କହିକରି ସେ ଘୋଷ ଘରକୁ ଚାଲିଗଲା । ନଟୁ ଘୋଷର ସ୍ନେହୀ ବିଧବା ମା ତାକୁ ପିଲାଦିନରୁ ନିମାଇ ନିମାଇ ବୋଲି ଡାକୁଥିଲେ ।

"ଆହା କି ଠାଁଡ଼ା ଛେଲେ" - (ଆହା କେମିତି ଥଣ୍ଡା ପୁତ୍ର ଅଟେ) - ଗୋଟିଏ ମୋର ନଟୂ ଅଛି, ଟିକିଏ ପଚାର ଏହାକୁ, ଗୋଟିଏ ଦିନ ହେଲେ ଏମିତି ଯାଇଛି, ଯେ ମା ସହିତ ଝଗଡ଼ା କରି ନାହିଁ ।

ସତରେ ଠିକ ସେହି ସମୟରେ ପିତୃହୀନ ନଟୂ ମା'ର ମୁଣ୍ଡବ୍ୟଥା ପ୍ରତ୍ୟେକଦିନ ବଢ଼େଇବାରେ ଲାଗିଥାଏ । ଗତ ବର୍ଷ ମାତା-ପୁତ୍ର ମଧ୍ୟରେ ଏମିତି ଝଗଡ଼ା ହେଲା ଯେ ମା ଗଣ୍ଠିଲି ବାନ୍ଧି-ବୁନ୍ଧି କାଶୀବାସ ପାଇଁ ବାହାରିଗଲେ । ପ୍ରବୀର ହିଁ ତାଙ୍କୁ ବୁଝେଇ କରି ଷ୍ଟେସନରୁ ଫେରେଇ ଆଣିଥିଲା । ଜଣା ନାହିଁ କେଉଁ ନାଟକ-ମଣ୍ଡଳୀରେ ସୀତା ହେଇଥିବା ଗୋଟିଏ ଦୁର୍ବଳ ପତଳା ଗୋରା ଆସାମୀ ବାଳିକାକୁ ନେଇକରି ନଟୁ ଘରକୁ ଆସିଥିଲା ।

"ମା, ତମ ପାଇଁ ବହୁ ନେଇ ଆସିଛି, ରୋଜ କହୁଥିଲୁ ନା - ବୋହୂ ଆଣ, ବୋହୂ ଆଣ ।"

ମା'ର ଏକାଦଶୀ ବ୍ରତରେ ଶୁଖିଲା ମୁହଁ ଆହୁରି ଶୁଖିକରି ରହିଗଲା । ଦୁର୍ବଳ-ପତଳା ଏକଦମ କଂକାଳ, ଚେହେରା ଏମିତି ହଳଦିଆ, ଯେମିତିକି ସୌରଜଗତରୁ ସେ ବର୍ତ୍ତମାନ ବାହାରି କରି ଆସିଛି, ନା ଚେହେରାରେ ଶ୍ରୀ, ନା ଆଖିରେ ଲଜ୍ୟା, ନା ପ୍ରଣାମ, ନା ନମସ୍କାର, ବେଶ ଖିଲି ଖିଲି କରି ହସିବାକୁ ଲାଗିଥିଲା ବାଳିକା ।

"କ'ଣ କହୁଛୁ ନଟୂ", ମା କାନ୍ଧ ସିଧାକରି ଛିଡ଼ା ହେଇଗଲା । "ଇଏ ନୂଆ ବୋହୂ ଅଟେ ନା ସଦ୍ୟ ପ୍ରସୂତା ସ୍ତ୍ରୀ ?"

"ସାବାସ ମା", ନଟୂ ଆଗେଇ ଯାଇ ମା'ର ପିଠିକୁ ବାଡ଼େଇ ଦେଇ ଆଉ ତାକୁ ଭିତରକୁ ଟାଣି ଆଣିଲା । ପଛରେ ପଛରେ ସେହି ଉଦ୍ଧତ ସ୍ୱଭାବର ବାଳିକା ମଧ୍ୟ ଆସିକରି ଛିଡ଼ା ହେଇ ଯାଇଥିଲା ।

"ମା" ନଟୂ ଫୁସ୍ ଫୁସ୍ କରି କହିଥିଲା, "ସେଇଥି ପାଇଁ ତ କହୁଛି, ତମକୁ ସ୍କଟଲେଣ୍ଡ ୟାର୍ଡ଼ର ଗୁଇନ୍ଦା ହେବାର ଥିଲା ।" ପୁଣି ସେ ଯାହାକିଛି ମା'କୁ ଜଣେଇଲା, ତାହା ଶୁଣିକରି ସ୍ତବ୍ଧ ହେଇ ଯାଇଥିଲା । ଏମିତି ପାପୀକୁ ସେ ବୋଧୂ କରି ନେଇ ଆସିଲା ? ଯେଉଁ ନାଟକ-ମଣ୍ଡଳୀରେ ନଟୂ କାମ କରୁଥିଲା, ସେଠାରେ ସେହି ବାଳିକା ମଧ୍ୟ କେବେ-କେବେ ଅଭିନୟ କରିବାକୁ ଆସୁଥିଲା । ନୂତନ ଆଇନ୍‌କାନୁନ ତିଆରି ହେବା ପରେ ତା'ର ମା ବ୍ୟବସାୟ ଛାଡ଼ି ଦେଇଥିଲା । କେବେ-କେବେ ଆକାଶବାଣୀରୁ ଦାଦରା, ଠୁମରୀ ଗାଉଥିଲା - କେବେ ଗୀତର ଟିଉସନ କରୁଥିଲା । ଏହି ଭାବରେ ସେ ବାଳିକାକୁ ବି.ଏ. ପର୍ଯ୍ୟନ୍ତ ପଢ଼େଇ ଥିଲା । ବାଳିକାଠାରେ ମଧ୍ୟ ଅଦ୍ଭୁତ ପ୍ରତିଭା ଥିଲା । ଚେହେରା ଫଟୋଜନିତ ହେଇଥିଲେ, ହୁଏତ୍ ଫିଲ୍ମ ଲାଇନରେ ମଧ୍ୟ ନାମ କରି ପାରିଥାନ୍ତା । କିନ୍ତୁ ଥିଏଟର କମ୍ପାନୀର ଫୁଟଲାଇଟ୍‌ରେ ହିଁ ସେହି ଚେହେରା ଏମିତି ଚମକିଲା ଯେ ଅଳ୍ପ ଦିନରେ ସେ ଏକା ଥରକେ ଅନେକ ନାଟ୍ୟ ସଂଘର ଶ୍ରେଷ୍ଠ ତାରକା ହେଇଗଲା । ସେହି ସୌର-ମଣ୍ଡଳର ଚକମକ କରିବାରେ ମୁଁ ତାହାର ପରିଚୟ ଧୂମକେତୁ

ପରି ଚମକୁ ଥିବା ଶିବକାନ୍ତ ଭାଦୁଡ଼ୀ ସହିତ ହେଲା ।

ପ୍ରସିଦ୍ଧ ଉଦ୍ୟୋଗପତିର ଏକମାତ୍ର ପୁତ୍ର ଜହାଁଗୀର ହେଉଥିଲା ତେବେ ସେ ନୂରଜହାଁ,' ସେହି ଆନନ୍ଦକନ୍ଦ ରଘୁନନ୍ଦନର ଭୂମିକାରେ ଅବତରଣ ହେଉଥିଲା, ତେବେ ସେ ସଂକୁଚିତ ସୀତାର ଅଭିନୟରେ ଦର୍ଶକମାନଙ୍କୁ ସମ୍ମୋହିତ କରି ଦେଉଥିଲା । କିନ୍ତୁ ନାଟକର ପରଦା ସହିତ ହିଁ ଦିନେ ତାହାର ଜୀବନ-ନାଟକର ମଧ ପର୍ଦା ଏମିତି ପଡ଼ିଲା ଯେ ଅଦ୍ୱିତୀୟ ଟୁଲୁ ନିଜର ସମସ୍ତ ମୁଖସ୍ଥ କରିଥିବା ପାର୍ଟ ଭୁଲିକରି ରହିଗଲା ।

ଅବସ୍ଥା ଏମିତି ଥିଲା ଯେ ଏତେ ଲବ-କୁଶର ଜନନୀ ହେବାର କିଛି ପୂର୍ବର ଅଭିନୟ ସେ କରି ପାରିଥାନ୍ତା । ଅସ୍ପଷ୍ଟ ହଳଦିଆ ଚେହେରାର ସେହି ନୂରଜହାଁର ବ୍ୟଥାକୁ ନା ଅନୁମାନ କରିନେଇ ପାରିବେ, ଏମିତି କଲିକତାର ଦର୍ଶକ ନଥିଲେ । ମା ଶୁଣିଲା ପରେ ଦ୍ୱାର ବନ୍ଦ କରିଦେଲେ । ନିଜର କଳୁଷିତ ଜୀବନର ପୂର୍ବ ପରିଚ୍ଛେଦ ଖଣ୍ଡ-ବିଖଣ୍ଡ କରି ସେ ଜଳେଇ ସାରିଥିଲା । ନବୀନ ସମାଜରେ ସେ ଏକ ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନ ତିଆରି କରି ନେଇଥିଲେ, ତାକୁ ଏବେ ମୂର୍ଖ କନ୍ୟାର କଳଙ୍କକୁ ସେ ଦୂଷିତ ହେବାକୁ ଦେବନାହିଁ । କ୍ରୋଧରେ ଉତ୍ତେଜିତ ହେଇ ଟୁଲୁ ପାର୍କର ବେଞ୍ଚ ଉପରେ ବସି କାନ୍ଦୁଥିଲା ଯେ ନଟୁ ଘୋଷ ମିଳିଗଲା । ପ୍ରଥମେ ସେ ଭାବିଲା, ହୁଏତ ସେହି ବନଗାମିନୀ ପତି ପରିତ୍ୟକ୍ତ ସୀତାର ପାର୍ଟ କଣ୍ଠସ୍ଥ କରୁଥିଲା, କିନ୍ତୁ ଯେବେ ତାହାକୁ ପଚାରିଲେ ହିଁ ସେ ତାକୁ ସେ ଆଲିଙ୍ଗନ କରି କଇଁ କଇଁ କରି କାନ୍ଦି ପକେଇଲା, ତେବେ କଞ୍ଚା ହୃଦୟର ନଟୁ ସ୍ୱୟଂ ମଧ କାନ୍ଦିବାକୁ ଲାଗିଲା । ଥରେ ନାଟକର ତିନି ଘଣ୍ଟା ପୂର୍ବରୁ ଜହାଙ୍ଗୀରର ଗେସ୍ଟ୍ରୋଏଣ୍ଟାଇଟିସ ଅଧମରା କରି ଦେଇଥିଲା ଆଉ ନଟୁହିଁ ଏହି ବିଳାପ କରୁଥିବା ନୂରଜାହାଁକୁ ନିଜ ବାହୁରେ ସମ୍ଭାଳି ନେଇଥିଲା । ଦର୍ଶକ ସେହି ନବୀନ ଜହାଁଗୀରର ଅଭିନୟକୁ ଦେଖିକରି ମୁଗ୍ଧହେଇ ଯାଇଥିଲେ, ପୁଣି ଆଜି ସେ ତାକୁ ଜୀବନରେ ବିରାଟ ରଙ୍ଗମଞ୍ଚରେ ଏକେଲା କେମିତି ଛାଡ଼ି ଦେଲା ? ତିନିମାସ ପର୍ଯ୍ୟନ୍ତ ଜଣେ ମିସ୍‌ନେରୀ ଡାକ୍ତରଖାନାରେ ସେ ଟୁଲୁର ପ୍ରସବର ଖର୍ଚ୍ଚ ଏମିତି ଉଦାର ହେଇ କରିଥିଲା, ଯେମିତିକି ସେ ହିଁ ଜନ୍ମ ବନ୍ଧନ ମୁକ୍ତ ଶିଶୁର ପିତା ଅଟେ । ପୁଣି ଯେତେବେଳେ ବ୍ରୋଚ୍‌କେସ୍‌ରେ ଅକାଳ ମୃତ୍ୟୁ କବଳିତ ମୃତଶିଶୁର ଦେହ ଉପରେ ଟୁଲୁ ନାଟାକୀୟ ମୁଦ୍ରାରେ କଚାଡ଼ି ପଡ଼ି ପୋଖରୀରେ ବିଳାପ କରିବାକୁ ଲାଗିଲା, ତେଣୁ ତା ସହିତ ସେ ବିଳାପ କରିବାକୁ ଲାଗିଲା । ସେଠାରେ ଗୋଟିଏ ନର୍ସର ସାନ୍ତ୍ୱନା ତାକୁ ହଠାତ୍ ପ୍ରେରଣା ଦେଇଗଲା, "କାନ୍ଦୁଛନ୍ତି କାହିଁକି ମି. ଘୋଷ, ଏବେ ତ ଆପଣ ଦୁଇଜଣଙ୍କର ପୁରା ଜୀବନ ପଡ଼ିଛି । ଭଗବାନ ଚାହିଁଲେ ଏବେ ଏମିତି କୋଡ଼ିଏଟି ପୁତ୍ର ହେବେ ।" ଆଜିର ପରିବାର ନିୟୋଜନର ବର୍ଷ ହେଇଥିଲେ, ଅଭାଗିନୀ ନର୍ସର ଚାକିରି ଚାଲି ଯାଇଥାନ୍ତା । ନଟୁ ପ୍ରବୀରକୁ ହସିକରି କହିଥିଲା, "କିନ୍ତୁ ମତେ ତାହାର କଥା ପ୍ରେରଣା ଦେଇଗଲା । ମୁଁ ଟୁଲୁକୁ ସେହି କ୍ଷଣରେ ରିକ୍ସା କରି ଘରକୁ ନେଇ ଆସିଲି ।"

କିନ୍ତୁ ଆଣିଲେ କ'ଣ ହେବ । ମା ଅଡୁଆବାଳ ଧରିକରି ହସୁଥିବା ନିର୍ଲଜ୍ଜ ବୋହୂକୁ କ'ଣ ଘରରୁ ବାହାର ଆଉ ନଟୂକୁ କୋଠରୀରେ ବନ୍ଦକରି ତିନିଦିନ ପର୍ଯ୍ୟନ୍ତ ଭୋକିଲା ରଖିଲା । ଚତୁର୍ଥଦିନ ଭୋକିଲା ବାଘ ଓ ବାଘୁଣୀର ଲଢ଼େଇର ମଧ୍ୟରେ ଯଦି ପ୍ରବୀର ପଡ଼ି ନ ଥାନ୍ତା, ତେବେ ଅନର୍ଥ ହେଇ ଯାଇଥାନ୍ତା । ସେହି ଦିନରୁ ପ୍ରବୀରକୁ ଯେବେ ମାସୀମା ଦେଖେ, ତାଙ୍କ ଆଖିରେ କୃତଜ୍ଞତାର ଅଶ୍ରୁ ଛଳଛଳ ହେଇ ଉଠେ । କିନ୍ତୁ ଲକ୍ଷେ ଡାକିଲା ପରେ ମଧ୍ୟ ସେ ଏଥର ଦିନକ ପାଇଁ ମଧ୍ୟ ଖାଇବାର ନିମନ୍ତ୍ରଣ ସ୍ୱୀକାର କରିପାରି ନ ଥିଲା । ଆଜି ହଠାତ୍ ନିଜକୁ ସ୍ୱୟଂ ନିମନ୍ତ୍ରଣ କରି ଉପସ୍ଥିତ ହେଇଗଲା । ଅମୂଲ୍ୟ ଅତିଥିର ଅଭ୍ୟର୍ଥନାରେ ଘୋଷ-ଜନନୀ ଉଚ୍ଛ୍ୱସିତ ହେଇଗଲା । ପୁଅର ପସନ୍ଦକୁ ସେ ପିଲାଦିନରୁ ଚିହ୍ନି ଥିଲେ । ଲକ୍ଷେ ହିନ୍ଦୁସ୍ଥାନୀ ହେଉ ପସନ୍ଦ ଥିଲା ଏକଦମ୍ ବଙ୍ଗାଳୀ । ପୋଟଳର ଡାଲମା, ମାଗୁର ମାଛର ଝୋଳ ଆଉ ଛେନାର କ୍ଷିରୀ । ଏଇ ସବୁ ତା'ର ପସନ୍ଦ ଥିଲା । ଆଜି ସେହିସବୁ ରାନ୍ଧିବାର ସୁବାସିତ ଆୟୋଜନ କରୁଥିବା ମାଉସୀ ସେଠାରୁ ସେହିସବୁ ପ୍ରଶ୍ନର ବୃଷ୍ଟି କରିବାକୁ ଲାଗିଲା ।

"କଣରେ ପ୍ରବୀର, ତୋର ସ୍ତ୍ରୀ ଶୁଣିଲି, ଖୁବ୍ ଗୋରା, ଆମ ଜୟା-ମାୟା ଠାରୁ ମଧ୍ୟ ଉଜ୍ଜ୍ୱଳ । ବାପରେ ବାପ ! ତମ ପାହାଡ଼ିମାନଙ୍କ ରଙ୍ଗତ କାଶ୍ମୀରମାନଙ୍କ ଠାରୁ ମଧ୍ୟ ଗୋରା ହେଇଥାଏ - ଏକା ତୁ କେମିତି କଳା ହେଇଗଲୁ ?"

"ତେବେ ମଧ୍ୟ ତମେ ମା ନିମାଇଁ ବୋଲି ଡାକ", ପ୍ରବୀର ହସିକରି କାଠର ତକ୍ତା ଉପରେ ଶୋଇ ପଡ଼ିଲା ।

"ଆହା, ଚେହେରାର ରଙ୍ଗରୁ କ'ଣ ମିଳିବ ସୁନା, ମନର ରଙ୍ଗ ଦେଖିକରି ହିଁ ତତେ ଡାକୁଛି 'ନିମାଇ' ।"

"ଆଉ କ'ଣ, ନଟୂ ମିତ୍ର ବନ୍ଧୁର ପିଠି ଉପରେ କହୁଣି ଭରା ଦେଇ - "ଏହି ଗୌରାଙ୍ଗ ମହାପ୍ରଭୁ ଆସି ନ ଥିଲେ ଆଜି ଦୁଇ ଦୁଇଟି ନାତି ନାତୁଣୀ ଏହି ଘରକୁ ଶସ୍ୟଶ୍ୟାମଳ କରି ଦେଇଥାନ୍ତେ ।"

"ଚୁପ୍‌କର ରାକ୍ଷସ" ମା ତାକୁ ଗାଳି ଦେଲା, "ଜଣାନାହିଁ କେଉଁଠାରୁ ପୋତା ହେଇଥିବା ଶବ ଖୋଳୁଛି ଅଭାଗା । ହଁରେ ନିମାଇ, ତୋର ମା' କହୁଥିଲା, ଆସନ୍ତା ରବିବାରକୁ ମତେ ମଧ୍ୟ ତୋର ଶ୍ୱଶୁର ଘରକୁ ନେଇଯିବ । କିନ୍ତୁ ମୁଁ ତ ଏହା ମଧ୍ୟରେ ତୋର ଘରକୁ ଯାଇକରି ଅନ୍ୟାୟ କରି ଆସିଲି । ଶୁଣେଇ ଦେ ତ ନଟୂ, ମତେ ତ କହିବାକୁ ମଧ୍ୟ ଲାଜ ମାଡୁଛି ।" ମାଉସୀ କାନିରେ ମୁହଁ ଢାଙ୍କିକରି ହସିବାକୁ ଲାଗିଲା ।

"ଜାଣିଛ ମା' କ'ଣ କରି ଆସିଲା ? ତୋର ସେଠାରେ ଗଲାରୁ ମିସ୍ ମଜୁମ୍‌ଦାର ହୁଏତ କୌଣସି ନୂତନ ବୋହୂର ଫେଶନ ପେରେଡ଼ର ମଡ଼େଲ ହେବାକୁ ଯାଉଥିଲା । ଏକଦମ ସାଜସଜ୍ଜା କରି - ଶୋକେସ୍‌ର ମହମର କଣ୍ଢେଇ ତିଆରି ହେଇଥିଲା । ମା ଚକମକ ଦେଖି, ବେଶ୍ ଲାଖିଗଲା । କହିବାକୁ ଲାଗିଲା, "ମୋର ମନ କହୁଛି, ଇୟେ

ମୋର ନିମାଇର ବୋହୂ ଅଟେ । କ'ଣ ଝିଅ, ପ୍ରବୀରର ଭାବି ବୋହୂ ତମେ ନା ?"

"ଆଉ ବେଶ, ସେହି ବାଳିକା ମଧ୍ୟ ଭାବିଲା କରେ ଯାଙ୍କୁ ବୁଦ୍ଧୁ । ଲଜ୍ଜା-ସଂକୋଚ କରି ଶୁଣିଲି ଏମିତି ଲାଜକୁଳି ହେଇଗଲା, ଯେମିତିକି ସତରେ ତୋର ବୋହୂ ଅଟେ । ହସିକରି କହିଦେଲା, ହଁ ଆଉ ମୋର ଇଡ଼ିୟଟ ମାତେଶ୍ୱରୀ ଆଶୀର୍ବାଦର ଲଗାଣ ବର୍ଷା ଲଗେଇ ଦେଲା । ସେ ତ ସେହି କ୍ଷଣରେ ତତେ ଖୋଜିବାରେ ଲାଗିଲାତ, ହତଚକିତ ହେଇ ରହିଗଲା । ମା'ତାକୁ ଯାଇ ଗାଈ ହେଇ ଏମିତି ଚାଟିବାରେ ଲାଗି ଥିଲା ଯେମିତିକି ହଜି ଯାଇଥିବା ବାଛୁରୀ ଅଟେ । ମୋର ମୁଣ୍ଡ କଣ ହେଇଗଲା, ମୁଁ ପଚାରିଲି, 'କଣ ମିସ୍ ମଜୁମ୍‌ଦାର ଆଜି ମା'ର ଇଏ କେମିତି ପ୍ରେମ ଉଛୁଳି ପଡୁଛି ।' ତେବେ ବଦମାସ ବାଳିକା ହସିବାକୁ ଲାଗିଲା ।"

"ଆରେ, ମୁଁ କ'ଣ ଜାଣେ ନିମାଇ", ମାଉସୀ କହିଲା, "ବାଳିକାର ଚେହେରା ତ ଏମିତି ସିଧାସାଧା ଥିଲା, ଯେମିତିକି ଏବେ ମଧ୍ୟ ମାର ଦୁଧ ପିଉଥିବା ଶିଶୁ ଅଟେ ଆଉ ପେଟରେ ଦୁଇଗଜ ଆଉ ଏକ ପୂର୍ଣ୍ଣ ଚତୁର୍ଥାଂଶ ଲମ୍ବା ଦାଢ଼ି । ଆରେ, ମୁଁ କ'ଣ ତୋର ସାନଯାଆ - ବଡ଼ଯାଆ ଅଟେ, ଯେ ଏମିତି କୌତୁକ କଲୁ ? ଏବେ କହତ ! ତୋର ଅପାର ବୟସର ମୁଁ ଆଉ ମୋତେ ହିଁ ବୁଦ୍ଧୁ ବନେଇ ଦେଲା କିନ୍ତୁ ଆରେ ପ୍ରବୀର ! ଏମିତି ସୁନ୍ଦରୀ କୁମାରୀ ବାଳିକାକୁ ଘରେ ରଖିବା ଠିକ୍ ନୁହେଁ । ଇଏତ ମୁଁ ଜାଣେ ଯେ ତୁ ହେଉଛୁ ସନ୍ନ୍ୟାସୀ-ଯୋଗୀ ମଣିଷ, କିନ୍ତୁ ଏହି ଅଭାଗା ଉପରେ ମୋର ଟିକିଏ ହେଲେ ବିଶ୍ୱାସ ହୁଏ ନାହିଁ । ଦିନ-ରାତି ବାହାରେ ନାଟକ କରି କରି ଘରରେ ମଧ୍ୟ କେବେ-କେବେ ନାଟକ ଆରମ୍ଭ କରିଦିଏ । ତୋର ଘରକୁ ଯିବା ଆସିବା କରେ । କେବେ ଆସିକରି କହିଦେବ, 'ନେ ମା, ତୋର ପାଇଁ ବୋହୂ ନେଇ ଆସିଛି ।" ଆଉ ପୁଣି ଏମିତି ବୋହୂ ଯିଏ ନିଜର ଆଈ-ଜେଜେମା ପରି କୌତୁକ କରି ବୁଲେ, ମୋର ପସନ୍ଦ ନୁହେଁ ବାପା ।"

ନଟୁକୁ ମା'ର ଏହି ସଂକେତାତ୍ମକ ପ୍ରସ୍ତାବ ବହୁତ ପସନ୍ଦ ହେଲା । ସେ ଜୋରରେ ହସିକରି କହିଲା, "ସତରେ ବନ୍ଧୁ, ଏହି କଥା ନିଜ ମସ୍ତିଷ୍କରେ ଆସିନାହିଁ । ଜଣାନାହିଁ ମିସ୍ ମଜୁମ୍‌ଦାରଙ୍କୁ ନାଟକ-ଫାଟକରେ ରୁଚି ଅଛି କି ନାହିଁ । ଏଥର ଆମର ସଂଘ ଗୋଟିଏ ପ୍ରତୀକାତ୍ମକ ନାଟକର ପ୍ରୟୋଗ କରୁଛି । ଗୋଟିଏ ଏମିତି ଚେହେରା ଜୁଟିଗଲେ ତ ବେଶ । ସେହିଦିନ ଶ୍ମଶାନରେ ଷଷ୍ଠ ଭଉଣୀର ଚିତାକୁ ଅପଲକ ଦେଖୁଥିଲା ଟୋକି । ଦୁଇଟି ବଡ଼ ଆଖିର ଫୋକସରେ ଡାହାଣ-ବାମରେ ଜଳୁଥିବା ଦୁଇଟି ଚିତାର ପ୍ରତିବିମ୍ବକୁ କେହି ଦୂରରୁ ମଧ୍ୟ ଦେଖି ପାରିଥାନ୍ତା । ଏମିତି ପାତ୍ରୀ ନିଜର ଟୁଲୁଭାଇର ମେକଅପ୍‌ର ସ୍ୱର୍ଗୀୟ ଷ୍ଟ୍ରୋକ୍‌ରେ ଧନ୍ୟ ହେଇକରି ଥରେ ଷ୍ଟେଜ୍‌ରେ ଓହ୍ଲାଇଗଲେ ବେଶ, ଚିତ ମଧ୍ୟ ନିଜର ପଟ ମଧ୍ୟ । ପାର୍ଟର ଲାଇନ୍ ଭୁଲି ଗଲେ ମଧ୍ୟ, ସେ ଚିରହରିତ୍ ଆଖିହିଁ ପୁରା ପାର୍ଟ ପ୍ରମ୍ପ୍‌ଟ କରି ଦେବ ।"

ପ୍ରବୀର ଚୁପ୍‌ଚାପ କାଠ ପଟା ଉପରେ ପଡ଼ିଥିବା ପେନ୍‌ସିଲରେ ମାଉସୀର ହିସାବର କପି ଉପରେ ଓଲଟା-ସିଧା ରେଖାଗୁଡ଼ିକ ଟାଣିବାରେ ଲାଗିଥିଲା ।

"ଆଉ ଚିନ୍ତା କର", ଘୋଷ ସ୍ୱୟଂ ହିଁ ବକ ବକ କରି ଯାଉଥିଲା, "ପଡ଼ିଯାଇଛି ସେହି ବିଦେଶୀ ଦୁଷ୍ଚରିତ୍ରମାନଙ୍କର ସାଥିରେ । ପୁରାପୁରି ଉଚ୍ଚାସନରୁ ଜଙ୍ଗଲି, ସାପର କାତି, ହିଂସ୍ର, ବଣରେ ବୁଲୁଥିବା ଜଙ୍ଗଲି ଜୀବଜନ୍ତୁ, କାନ୍ଧ ପର୍ଯ୍ୟନ୍ତ ଝୁଲୁଥିବା ସୁନେଲୀ କେଶ, ପୁରାପୁରି ମିଥିଲା ରାଜା ଜନକଙ୍କର ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବା କୋଟ୍, କାମାତୁର ରକ୍ତବର୍ଣ୍ଣ ଆଖି, ଗଳାରେ ରୁଦ୍ରାକ୍ଷର ମାଳା - ଶଳେ ଏକଦମ୍ ବୀର ଭୂମିର ନରଭକ୍ଷୀ କାପାଳିକ ପରି ମନେ ହେଉଥିଲେ ଆଉ ସାଙ୍ଗରେ ଏହି ସୁନ୍ଦରୀ ନରକଗତି-ଭୈରବୀ ।

"ବହୁତ ଆଶ୍ଚର୍ଯ୍ୟ ହେବାର କଥାରେ ପ୍ରବୀର", ପୁଣି ଏମିତି ଧୀର ସ୍ୱରରେ ଫୁସ୍‌ଫୁସ୍ କରି କହିଲା, ଯାହା ଫଳରେ ରନ୍ଧା ଘରରେ ବସିଥିବା ମା ଶୁଣି ପାରିବ ନାହିଁ ।

"ଏମିତି ଜ୍ୱଳନ୍ତ ଚୁହ୍ଲାର ଏତେ ପାଖରେ ଆସିଲେ ତୋର ହୃଦୟ-ଲହୁଣୀ ତରଳି କରି ସେଇ ଥିରେ ପଡ଼ି ଯାଇନାହିଁ । ମୁଁ ତ ତାକୁ ଦୁଇ-ତିନି ଥର ଦେଖିଛି, କିନ୍ତୁ ଯେତେ ଥର ଦେଖୁଛି, ମନ ହେଉଛି ଉଚ୍ଚସ୍ୱରରେ ମୁଁ ଚଣ୍ଡୀଦାସଙ୍କର ଏହି ପଦଟି ଗୁଣୁଗୁଣୁ କରି ଗାଇବାରେ ଲାଗେ -

ପ୍ରଭାତେ ଉଠିୟା, ଢେ ମୁଖ ହେରୀ ତୂ
    ଦିନ ଯାବେ ଆଜ ଭାଲୋ -

"ଆଜି ସକାଳେ ଉଠିଲା ମାତ୍ରେ ଯାହାର ଚନ୍ଦ୍ରମୁଖ ଦେଖିଲା ପରେ ନିଶ୍ଚୟ ମୋର ଦିନ ଭଲରେ କଟିବ ।"

ପ୍ରବୀର ନଟୂକୁ ବର୍ଷ ବର୍ଷ ହେଲା ଜାଣିଛି । ଏମିତି ଜଣା ନାହିଁ କେତେ ଚେହେରା ଦେଖିଲାପରେ ସେ ଏହି ପଦକୁ ଲକ୍ଷେଥର ଦୋହରାଇ ସାରିଛି । ବାଳିକା ମାତ୍ରକୁ ଦେଖିଲା ପରେ ନଟୂର ହୃଦୟ ଶିଖାରେ ନଟ୍-ପରି ମେସିନ୍ ବୁଲିବାକୁ ଆରମ୍ଭ କରେ । ଇଏ କୌଣସି ନୂଆକଥା ନଥିଲା ।

ଭୋଜନ କରିସାରି ପ୍ରବୀର, ବହୁତ ଡେରି ପର୍ଯ୍ୟନ୍ତ ସେଠାରେ ଗପ କରିବାକୁ ଲାଗିଲା । କଳିଁଗୋଳରେ ମଳିନ ପଡ଼ି ଯାଇଥିବା ନିଜର ରିହର୍‌ସାଲ ପାଇଁ ଯିବାର ଥିଲା, ତାକୁ ସେଠାରେ ଛାଡ଼ିକରି ଘରକୁ ଫେରିଲା, ସେତେବେଳେ ଦଶଟା ବାଜି ସାରିଥିଲା । ଗେଟ୍‌ରେ ପହଞ୍ଚିଲା ମାତ୍ରେ, ସଶଂକିତ ଦୃଷ୍ଟିରେ ସେ ବେଞ୍ଚକୁ ଦେଖିଲା । ଯଦି ଆଜି ମଧ୍ୟ ଶ୍ମଶାନ ସାଧିକା ମଦାଳସା ବେଞ୍ଚ ଉପରେ ହିଁ ଚିତହୋଇ ପଡ଼ିଥିବା ମିଳି ନ ଯାଏ । କିନ୍ତୁ ଆଜି ତା'ର କୋଠରୀରେ ତାଲା ନଥିଲା । ଦ୍ୱାର ବନ୍ଦ ଥିଲା । ମନେ ହେଉଥିଲା, ମାୟା-ବନବିହାରିଣୀ ମାଲିକିଆଣୀ ଆଜି ସ୍ୱଇଚ୍ଛାରେ କବାଟ ବନ୍ଦ କରି ଶୋଇ ପଡ଼ିଥିଲା ।

ସେ ତା'ର କୋଠରିକୁ ଯାଇ ଶୋଇ ପଡ଼ିଲା । ତକିଆରେ ମୁଣ୍ଡ ରଖିଲା ମାତ୍ରେ

ତାକୁ ଗଭୀର ନିଦ ହୋଇଗଲା । ଆଖି ବନ୍ଦ ହେଇଛି କି ନାହିଁ ସେ ଅବାକ୍ ହେଇ ଚେଇଁ ଉଠିଲା । ତା'ର ମନେ ହେଲା, କେହି ତାର ପାଦର ଆଙ୍ଗୁଠି ଜୋର୍‌ରେ ଧରି ହଲେଇ ଦେଇଛି । "କିଏ ? ମାୟା", ସେ ପଚାରିଲା- ନିଶ୍ଚୟ ଦାମୋଦର ଅଧ ରାତିରେ ପୁଣି କିଛି ଗଣ୍ଡଗୋଳ କରି ଦେଇଛି ।

"କ'ଣ ହେଲା ମାୟା ?" ସେ ଉଠି ବସିଲା ।

## ଉଣେଇଶି

ସେ ତା'ର କାନ ପାଖରେ ମୁହଁ ଲଗେଇ କରି ଫୁସ୍‌ଫୁସ୍ କରିବାରେ ଲାଗିଲା । "ମାୟା ନୁହେଁ କାବୁଲୀବାଲା, ଇଏ ତ ମୁଁ ଅଟେ-କଳୀ ।" ପୁଣି ସେହି ଶିଶୁଙ୍କ ପରି ହସ ହସିଲା, ତା'ର କାନ୍ଧ ପାଖରେ ନିଜ ମୁଣ୍ଡକୁ ନେଇ ଆସିଲା । କ୍ରମଶଃ ନିକଟକୁ ଆସୁଥିବା ତା'ର ମନ୍ଦସ୍ମିତର ସଲ ସଲ ପ୍ରବୀରର ମେରୁଦଣ୍ଡର ହାଡ଼କୁ ସଲସଲ କରି ଦେଲା ।

ଏତେ ରାତିରେ ତା'ର କୋଠରୀରେ ସେହି ଅତ୍ୟନ୍ତ କଠିଣ ବାଳିକା କୌଣସି ଖୋଲା ଛିଦ୍ର ଝଡ଼ର ଅବାଧ ଧକାରେ ହିଁ ପଶି ଆସିଥିଲା ।

"ଭୟ ପାଅ ନାହିଁ କାବୁଲୀବାଲା ! ତମକୁ ଖାଇବି ନାହିଁ, ନିଅ ଏହାକୁ ଦେବାକୁ ଆସିଥିଲି ।" ସେ ତା'ର ସାମ୍ନାରେ ଛିଡ଼ା ହେଇଗଲା, ଅସ୍ପଷ୍ଟ ଅନ୍ଧକାରରେ ସେ ଛପା ହେଇଥିବା ଡ୍ରେସିଂ ଗାଉନର ନୀଳ ଥଳିରେ ବୁଡ଼ି ରହିଥିବା ଦୁଇଟି ବାଳିକାର ପତଳା ବାହୁକୁ ହିଁ ଦେଖିବାକୁ ପାଇଲା ।

"ନିଅ", ସେ ପକେଟ୍‌ରୁ କିଛି ବାହାର କରି ପ୍ରବୀରର ହାତକୁ ଜବରଦସ୍ତ ଟାଣିକରି ଧରେଇ ଦେଲା, କାଠ ହେଇ ବସିଥିବା ପ୍ରବୀର ଚମକି ଉଠିଲା ।

"ବେଶ୍ ବୁଲି ଆସିଲ କାବୁଲ-କାନ୍ଦାହାର, କିନ୍ତୁ ରହିଛ ମୂର୍ଖକୁ ମୂର୍ଖ ।" କମନୀୟ ଗାଲର ମତୁଆଲା ହେଇ ମଳୟ କସ୍ତୁରୀର ପିଚକାରୀ ପରି କେହି ଟାଣି କରି ପ୍ରବୀରର କାନ ଓ ଆଖିର ମଝିରେ ମାରି ଦେଲା, ସେ ରାଗରେ ତମତମ ହେଇ ପଛକୁ ଚାଲିଗଲା । କିନ୍ତୁ ହିପ୍ନୋଟିକ୍ ଟ୍ରାନ୍ସରେ ଢଳି ପଡୁଥିବା ମିଡ଼ିୟମ-ପରି କଳୀ ସେଠାକୁ ଲଇଁଗଲା ।

"କୌଣସି ଅଜଣା କୁମାରୀ ଶୋଇଥିବା ବାଳିକାର ପଲଙ୍କରେ କେହି ଅବିବାହିତ ତରୁଣର ମୁଦି ମିଳିଲେ ସମସ୍ୟା ରାଦର ସେଡ଼ୀ ମନେହୁଏ, କ'ଣ ହୁଏ ନା ? କିନ୍ତୁ ମୁଁ ବୁଝି ଯାଇଥିଲି ଯେ ଏହା କୌଣସି ଅଜ୍ଞର ପ୍ରଥମ ଥର ଅନଭ୍ୟସ୍ତ ଅଙ୍ଗୁଳିରେ ପିନ୍ଧିଥିବା ମୁଦି ଅଟେ, ଏମିତିରେ ଚାହିଁଥିଲେ ଦୁଷ୍ୟନ୍ତ ପରି ଏହି ମୁଦ୍ରିକା ନିଆଁରେ ପୋଡ଼ା ନ ହେଇଥିବା ଚେକ ବ୍ଲେକମେଲ ମାର୍କେଟରେ ଉଚ୍ଚ ଦରରେ ବିକ୍ରି ହେଇ ପାରିଥାନ୍ତା । କିନ୍ତୁ..." ସେ ପୁଣି କୌଣସି ଅଦୃଶ୍ୟ କିନ୍ନରୀ ପରି କେଉଁ ଦୈବୀ ହସରେ ପ୍ରବୀରକୁ ମୁକ

କରି ଦେଇଗଲା ।

"କିନ୍ତୁ ତୁମେ କଲୀକୁ ଯେତେ ନୀଚ ବୁଝିଛ, ସେ ସେତେ ନୀଚ ନୁହେଁ । ଏମିତି, ସତ କଥା ପଚାରିବ ତେବେ କେବଳ ମୁଦି ବଦଳେଇବାକୁ ଏଠାକୁ ଆସି ନ ଥିଲି ।"

ତା'ର କଣ୍ଠ ସ୍ୱରର ଟ୍ରାନ୍ସମିଟର ଫେଲ୍ ହେଇଯାଇ ରେଡ଼ିଓରେ ଲୁପ୍ତ ହେଉଥିବା ସ୍ୱରପରି କିଛିକ୍ଷଣ ପର୍ଯ୍ୟନ୍ତ ଲୁପ୍ତ ହେଇଗଲା – ପୁଣି ଆକର୍ଷକ ଅଧର କାନରେ ଲାଗିଗଲା । ହୁଏତ ସେ ସେହି ସମ୍ଭାବନା ଆଡ଼କୁ ମଧ ସଜାଗ ଥିଲା ଯେ ଦାମୋଦରର ଅଦୃଶ୍ୟ ଟେପ୍ ରେକର୍ଡ଼ରର ତା'ର-ଫାର କେଉଁ ଆଖ ପାଖରେ ବିଞ୍ଝି ହେଇ ନଥାଉ ।

"ଜାଣିଛ କାହିଁକି ଆସିଛି ?"

ପ୍ରବୀରର ସର୍ବାଙ୍ଗ ଥରି ଉଠିଲା । କାହିଁକି ସେ ତୀବ୍ର ପାହାଡ଼ି ନଦୀର ବେଗରେ ବହି ଯାଉଥିବା କଠୋର ଶିଳାଖଣ୍ଡ ପରି ନିଜର ସମସ୍ତ କଠୋରତା ହରେଇବାକୁ ଯାଉଥିଲା । ଏହା ନିଶ୍ଚୟ ଏହି ବାଳିକାର ଅନ୍ୟାୟ ଥିଲା । ମନେ ହେଉଥିଲା ଆଜି ମଧ ତାକୁ କାଲି ପରି ଉଠେଇ କରି କୋଠରୀରେ ବନ୍ଦିନୀ କରିବାକୁ ପଡ଼ିବ ।

"ତମେ ଭାବୁଥିବ, ମୁଁ କାଲି ନିଶା କରିଥିଲି । ହଁ, କରିଥିଲି, ଜାଣିଛ କ'ଣ ପାଇଁ ?" ସେ ଆହୁରି ନିକଟକୁ ଲାଗିଗଲା ।

ବିଦେଶୀ ସୁଗନ୍ଧ କ'ଣ ଏମିତି ମାରାତ୍ମକ ହେଇଥିବ ? ସୁଗନ୍ଧିତ କେଶର ମୃଦୁ ସ୍ପର୍ଶ କିଛିକ୍ଷଣ ପାଇଁ ପ୍ରବୀରକୁ ପୁଣି କାଠ କରିଦେଲା ।

"ମୋର ଚାକିରି ଏମିତି ଅଟେ କାବୁଲୀବାଲା – କେବେ ତାଜର 'ବଲରୁମ୍', 'କ୍ରିଷ୍ଟଲ ରୁମ୍' ଆଉ କେବେ ଶ୍ମଶାନର ନିସ୍ତବ୍ଧତା ! ସେଦିନ ନିଜର ବିଦେଶୀ ଅତିଥିମାନଙ୍କୁ ନେଇକରି ଯିବାକୁ ପଡ଼ିଲା ଶ୍ମଶାନକୁ ! ପ୍ରଥମେ ଯେଉଁ ଫିରିଙ୍ଗୀ ଭାରତର ରାଜା-ମହାରାଜା ହାତୀ-ହାତୀ ପିଠିରେ ବସିବା ଆସନ ଦେଖିବାକୁ ଆସୁଥିଲେ, ଏବେ ସେମାନେ ମୁର୍ଦାରର କଙ୍କାଳ ଆଉ ଚିତାକୁ ଦେଖିବାକୁ ଆସୁଛନ୍ତି, ଏବେ ସେହି ମୁର୍ଦାରର ଖପୁରୀର ପୋଲୋ ଖୋଲିବା ପାଇଁ ଚାହୁଁଛନ୍ତି, ଅଭାଗା ଦିନସାରା କାଲି ଜଳୁଥିବା ଚିତାଗୁଡ଼ିକ ଦେଖିଲେ, ଫେରିଲା ବେଳକୁ ମନେ ହେଲା କେହି ପଛରେ ପଛରେ ଆସୁଛି । ଜଳୁଥିବା ନଖ ଓ ବାଳର ଦୁର୍ଗନ୍ଧ ନାକ ରନ୍ଧ୍ରରେ ଏମିତି ଭର୍ତ୍ତିହେଇ ରହି ଯାଇଥିଲା ଯେ 'ଅଲ ଦି ପରଫ୍ୟୁମ୍ସ ଅଫ ଆରବିୟା' ସୁଙ୍ଘିକରି ମଧ ହୁଏତ ଯାଇନଥାନ୍ତା ।" ସେ ପୁଣି ହସିକରି ଅଳସ ମଖମଲୀ ପର୍ଶିୟାନ ବିଲେଇ ପରି ପ୍ରବୀରକୁ ଲାଗିଗଲା – "କ୍ଷଣକ ପୂର୍ବରୁ ଶଂଖା ସିନ୍ଦୂର ଚମକୁଥିବା ଯେଉଁ ଦୁଇଟି ସୌଭାଗ୍ୟ-ସୁନ୍ଦରୀମାନଙ୍କୁ ଚିତାରେ ବିଭସ୍ତ କୋଇଲା ହେଇଯିବା ଦେଖିଥିଲେ ସେ ଯେମିତି ଦାନ୍ତ ବାହାର କରି ମତେ ଧମକ ଦେବାକୁ ଲାଗିଲା ।"

"ଯାଉଛତ ଠିକ୍ ଘରକୁ, ଏକେଲୋ କୋଠରୀରେ ଆଜି ଶ୍ମଶାନ-ପ୍ରବେଶର

ମଜା ଚଖେଇ ଦେବି ।"

ସଂକୋଚ କରି, ମୁଁ ପାଲ ଠାରୁ ଗୋଟିଏ ଗୋଳି ମାଗି ଆଣିଲି, କହୁଥିଲା, ମୁହଁରେ ପୁରେଇଲା ମାତ୍ରେ ପୁରାପୁରି ବୈକୁଣ୍ଠ-ଦର୍ଶନ ।"

"ବାପରେ ବାପ । ମୁଁ କ'ଣ ଜାଣିଥିଲି ଯେ ଏମିତି ମାରାତ୍ମକ ପୋଟାସିୟମ ସାଇନାଇଡ୍ ଅଛି । ଚାବି ହାତରେ ଧରିକରି ଖୋଲି ଖାଇଲା ମାତ୍ରେ କୋଠରୀ ଖୋଲିକରି ଶୋଇ ପଡ଼ିବି, କିନ୍ତୁ ସେଠାରେ ତ ସହସ୍ର ଯମଦୂତ ଟାଣିକରି ସାଙ୍ଗରେ ନେଇଗଲେ । ବେଞ୍ଚ ଉପରେ ଢଳି ପଡ଼ିଥିଲି ବେଶ ଏତିକିହିଁ ମନେ ରହିଲା । ଏହି ମୁଦି ନ ମିଳିଥିଲେ, ହୁଏତ ଜାଣି ମଧ ପାରି ନଥାନ୍ତି କେଉଁ ମହା-ମାନବ ବିଛଣା ଉପରେ ଶୁଏଇ ଦେଇ ଯାଇଛି । କିନ୍ତୁ ଆଜି ଗୋଳି ନାହିଁ, ସେତେବେଳଠୁ ମୁଁ ଏମିତିହିଁ ବସି ରହିଛି । ଦେଖ ଛୁଇଁ କରି...." ସେ ତା'ର ବରଫ ପରି ଥଣ୍ଡା ପାପୁଲିରେ ପ୍ରବୀରର ହାତ ଚାପି ଧରିଲା ।

"ଏବେ ମୁଁ ଯିବି ନାହିଁ । ପ୍ରଥମେ ଭାବିଲି ମାୟାକୁ ଉଠେଇକରି ତା ପାଖକୁ ଯାଏ, କିନ୍ତୁ ସେଠାରେ ସେ କ'ଣ ଏକେଲା ରହିଥିବ ? ଆଉ ଜୟା ? ବାପରେ ବାପ, ସେହି କୋଠରୀ ଠାରୁ ମୁଁ ଶ୍ମଶାନ ଯିବାକୁ ପସନ୍ଦ କରିବି । ଅମ୍ମାଙ୍କ କୋଠରୀରେ ବାପା ଥିବେ । ପୁରା ଘରରେ କେବଳ ତମେ ଏମିତି ଅଛ, ଯାହା ପାଖକୁ କିଛିଦିନ ପର୍ଯ୍ୟନ୍ତ ଆସିପାରିବି, ତମେ ଆରାମ କରି ଶୋଇପଡ଼ - ଗୁଡ଼ ନାଇଟ୍ ଏଣ୍ଡ ସ୍ୱିଟ୍ ଡ୍ରିମ୍ସ ।"

ସେ ଦୁଷ୍ଟାମି କରି ହସିଲା ଆଉ ପତଳା ଦଉଡ଼ି ଉପରେ ସାଇକେଲ ଚଲଉଥିବା କୌଣସି ଅଭିନେତ୍ରୀ ପରି ସର୍କସ ସୁନ୍ଦରୀର ନମନୀୟ ଡିଆଁମାରି ପତଳା ଗୋଡ଼ ମାଧମରେ, ଲମ୍ବା ଚଉକିର ମେଲେଇ ହେଇଥିବା ବାହୁରେ ପାଦ ରଖି, ତା'ର ଗଦିରେ ପାଳିତ ବିଲେଇ ପରି ଅଙ୍ଗ ଏକାଠି କରି ଶୋଇ ପଡ଼ିଲା ।

ପ୍ରବୀର ହତବୁଦ୍ଧି ହେଇ ବସି ହିଁ ରହିଲା । ନିଶ୍ଚୟ ସେ ନର୍ମାଲ ନଥିଲା । ଅଧା ରାତିରେ ତା'ର କୋଠରୀକୁ ଆସିକରି ସେ କେମିତି ଅଧିକାର ପୂର୍ଣ୍ଣ ମୁଦ୍ରାରେ ଶୋଇ ରହିଥିଲା, ଯେମିତିକି ସେଇ ହିଁ ତାହାର ପତ୍ନୀ ଅଟେ ।

ପ୍ରତ୍ୟେକ ଦିନ ପୂଜାକରି ଅମ୍ମା ତା'ର କୋଠରିରେ ଚା'ର ଗିଲାସ ଆଣିକରି ଧରେଇ ଯାଉଥିଲା । ସେହି କଳ୍ପନା ମାତ୍ରରେ ହିଁ ସେ ଝାଳରେ ଭିଜିଗଲା । କ'ଣ ସେହି ଟୋକିକୁ ସତରେ ଏତେ ଶୀଘ୍ର ନିଦ ଆସି ଯାଇଥିଲା ନା ତାକୁ ଚିଡ଼େଇବା ପାଇଁ, ଜାଣିଶୁଣି କରି ଗଭୀର ନିଶ୍ୱାସ ଛାଡୁଥିଲା । ବହୁବର୍ଷର ପୁରୁଣା ସେହି ଆରାମ ଚଉକିର ବେତ ଦାମୋଦର ଦୁଇ ପାଦକୁ ଉପରେ ରଖି ଗାଉଁଲି ଢଙ୍ଗରେ ବସିକରି ଦୋଳି ବନେଇ ଦେଇଥିଲା । ପୁରାପୁରି କମୋଡ଼ ହେଇ ଯାଇଥିବା ଯେଉଁ ଚଉକି ଉପରେ କେହି ଠିକ୍ ଭାବରେ ବସି ମଧ ପାରେନାହିଁ, ତାହାରି ଉପରେ ସେ ଏମିତି ଶୋଇ ରହିଥିଲା ଯେମିତିକି କୌଣସି ହୈମାକ ଉପରେ ଶୋଇ ରହିଛି ବିଦେଶୀ ମଡ଼େଲ ଅଟେ ।

ତାକୁ କିଛି ମଧ୍ୟ କହିବା ପାଇଁ ଏବେ ପ୍ରବୀରକୁ ନିକଟକୁ ଯାଇକରି ଫୁସ୍‌ଫୁସ୍ କରି କହିବାକୁ ହେବ ଆଉ ଏମିତି କରିବାରେ ତାକୁ ମହା ସଂକୋଚ ହେଉଥିଲା, ଭାବିବ, ଇଏ ମଧ୍ୟ ତାହାର କଠୋର ଷଡ଼ଯନ୍ତ୍ରକୁ ମାନି ଯାଇଛନ୍ତି । ଆଉ ଯଦି ସେ ସାହାସ କରି ଶଶବ୍ଦ କରି ଗାଳି ଦେଲେ, ତାହେଲେ ଯଦି ଆଖପାଖର କୋଠରିରେ ଶୋଇ ରହିଥିବା ଆତ୍ମୀୟ ସ୍ୱଜନ-ଉଠି ନ ଯା୍‌ଏ । ଶୋଇଥିବା ବାଳିକାର ସେହି କାଲି ରାତିପରି ସଶରୀର ଉଠେଇ କରି, ତା'ର କୋଠରିରେ ଅବଶ୍ୟ କଚାଡ଼ି ପାରିଥାନ୍ତା, କିନ୍ତୁ ସେ ନିର୍ଲଜ୍ଜ ଯଦି ଚିତ୍କାର କରି ଉଠିଥାନ୍ତା ତେବେ ! କାହାକୁ ମୁହଁ ଦେଖେଇ ପାରିବ ପୁଣି ? କ'ଣ ଘରର ସେହି ଜ୍ୟେଷ୍ଠ ପୁତ୍ରର ପ୍ରୋଜ୍ଜ୍ୱଳ ନିଷ୍କଳଙ୍କ ଚରିତ୍ର ଉପରେ ସେହି ଚିତ୍କାର ଆଲକତରା ବୋଲି ଦେବ ନାହିଁ ? ଯଦି ! ଆଜି ସେ ନଟୁର ଘରରେ ଶୋଇ ଯାଇଥାନ୍ତା, କିନ୍ତୁ ସେତେବେଳେ ସେ କ'ଣ ସ୍ୱପ୍ନରେ ମଧ୍ୟ ଚିନ୍ତା କରିଥିଲା ଯେ ଏହି ଦୁର୍ଦ୍ଦିନର ଅଭିସାରିକା ଅଧ ରାତିରେ ତା'ର କୋଠରିକୁ ଏମିତି ଛପର ଫାଡ଼ିକରି ହଠାତ୍ ପଡ଼ିବ ?

ଯଦି କେବେ ଏହା ମଧ୍ୟରେ ମାୟା ଆସିଗଲା ବା ସ୍ୱୟଂ ଦାମୋଦର ! କ'ଣ ସେହି ନିର୍ଲଜ୍ଜ କେତେଥର ଦିନର କଳିଗୋଳ ଭୁଲିଭାଲି କରି ରାତିରେ ତା'ର କୋଠରିରୁ ନ ପଚାରି ସିଗାରେଟ୍‌ର ପେକେଟ୍ ନେଇ ଯାଇ ନାହିଁ ? ଚଉକି ଉପରେ ବେହୋସ ପଡ଼ିଥିବା ସେହି ନିଦ୍ରାନ୍ଧ ସୁନ୍ଦରୀକୁ ଦେଖିକରି ପୁଣି କିଏ ବିଶ୍ୱାସ କରିବ କି ଇଏ ନିର୍ଦ୍ଦୋଷ ଅଟେ ।

କୋଇଲିର କୋଠରିରୁ କ'ଣ ପୁଣି ସେ କଳଙ୍କ ନ ନେଇ ଚଲାବାଟ ପାଇଁ ବାହାରି ପାରିବ ।

ଏମିତି ବିଚିତ୍ର ବାଳିକା ପାଇଁ କ'ଣ କୁହାଯାଇ ପାରେ । ସେ ପୁଣି ଥରେ ଚଉକି ଉପରେ ଶୋଇ ରହିଥିବା କଲୀକୁ ଦେଖିଲା, ତା'ର ଗଭୀର ନିଃଶ୍ୱାସ କୋଠରିର ନିସ୍ତବ୍ଧତାରେ ସର୍ପିଣୀ ପରି ବିଷାକ୍ତ ଫୁତ୍କାର ଛାଡୁଥିବା ଦେଖି ତା'ର ଛାତି ଦୋହଲି ଗଲା । କ୍ରମଶଃ ଉଠୁଥିବା ପଡୁଥିବା ଛୋଟ ସ୍ତନକୁ ସେ ନଚାହିଁଲା ପରେ ମଧ୍ୟ ସ୍ପଷ୍ଟ ଦେଖୁଥିଲା । ଗୋଟିଏ ହାତ କାନ ତଳେ ରଖି ସେହି କୋଶଳାଭିମାନିନୀ କେତେବେଳେ ଗୋଟିଏ ପାଦ ସଂକୋଚିତ କରି କଡ଼ ଲେଉଟାଏ, କେବେ ଦୁଇଟି ଚଉକିକୁ ନିର୍ଜୀବ ମେଳେଇ ଥିବା ବାହୁରେ ଉଠେଇ ନେଇଥାନ୍ତା । ଏମିତି ହାତ ଉପରେ ହାତ ଧରିକରି ବସି ରହିଲେ କଥା ଠିକ୍ ହେବନାହିଁ । ପ୍ରବୀର ଚୁପ୍‌ଚାପ୍ ଉଠିକରି ବାହାରକୁ ଚାଲିଗଲା । ତାହାର ସାନ୍ନିଧ୍ୟ ଅପେକ୍ଷା ବାରଣ୍ଡାର ଥଣ୍ଡା ସିମେଣ୍ଟ ବାଞ୍ଛନୀୟ ଥିଲା । କେବେ କ୍ରୋଧରେ ତାହାର ସର୍ବାଙ୍ଗ ଥରିବାକୁ ଲାଗୁଥିଲା, କେତେ ଅସହାୟ ଭାବ ତା'ର ବେକ ମୋଡ଼ିକରି ରଖି ଦେଉଥିଲା । ଏମିତି ଗୋଡ଼କୁ ମୋଡ଼ି ଆଣ୍ଠୁକୁ ଛାତିରେ ଲଗେଇ ବସି-ବସି ତାକୁ ନିଦ ମାଡ଼ି ଆସିଲା । କିନ୍ତୁ ବସି ବସି ଯଦି ଡେରି ପର୍ଯ୍ୟନ୍ତ ନିଦ ଲାଗିଯାଏ ? କେବେ

ଅସହାୟ ବେକ ଏଆଡ଼େ-ସେଆଡ଼େ ଢଳିପଡ଼େ, କେବେ ହାତର ଦୁଇ କହୁଣି ଖୁବ୍ ଜୋର୍‌ରେ କଷ୍ଟ ହୁଏ ଆଉ ସେ ଅବାକ୍ ହେଇ ଚେଇଁ ଉଠୁଥିଲା । ବସି ବସି ସେ ରାତି କାଟି ଦେଲା । ହାତର ଘଡ଼ିକୁ ବହୁତ୍ ଯତ୍ନରେ ଘୁରେଇ-ଫିରେଇ ସମୟ ଦେଖିଲା, ତେବେ ଚାରି ବାଜି ସାରିଥିଲା ।

ପ୍ରତ୍ୟେକ ଦିନ ପାଞ୍ଚଟା ବାଜିଲେ ଅମ୍ମାର ଶଙ୍ଖ ବାଜିବାର ଏଲାର୍ମ ଘରର ସମସ୍ତଙ୍କୁ ଉଠେଇ ଦେଉଥିଲା । ଏବେ ତା଼କୁ ଉଠେଇ କରି କୋଠରିରେ ନ କଟାଡ଼ିଲେ ଅନର୍ଥର ସମ୍ଭାବନା ଥିଲା । ସେ ଉଠିଲା, କ୍ଳାନ୍ତ, ମୋଡ଼ି-ମାଡ଼ି ହାତପାଦ ସିଧା କଲା ଆଉ କୋଠରିକୁ ଗଲାରୁ ଦେଖିଲା ଚଉକି ଖାଲି ଥିଲା । ଯାହା ହେଉ, ବିପଦ କଟିଲା । ପ୍ରବୀରର ମନେ ହେଲା ତା'ର ଛାତି ଉପରେ ପଡ଼ି ରାତିସାରା ଓଜନିଆଁ ପଥର ସ୍ୱୟଂ ଖସିଗଲା । ଶେଷ ପର୍ଯ୍ୟନ୍ତ ବିଧାତା ତାକୁ ସୁମତି ଦେଇ ହିଁ ଦେଇଛି । ଏବେ ଛିଟିକିନି ଲଗେଇ କରି ସେ ଡେରି ପର୍ଯ୍ୟନ୍ତ ନିଦ ପୁରା କରିବ । ମନ ଏମିତି ହାଲୁକା ହେଇଗଲା ଯେ ସ ଆସ୍ତେ ସିଟି ବଜେଇ କରି ଛିଟକିନି ଦେଇ ପଲଙ୍କ ଆଡ଼କୁ ଡେଇଁଲା । ହଠାତ୍ କଣ୍ଠର ସିଟି କଣ୍ଠରେହିଁ ଶୁଖିକରି ରହିଗଲା । ଅବାଗିଆ ଚଉକିରୁ ସୁବିଧାନୁସାରେ ସ୍ଥାନ ପରିବର୍ତ୍ତନ କରି ଦସ୍ୟୁ କନ୍ୟା ତାହାରି ଚାଦର ମୁଣ୍ଡରୁ ଗୋଡ଼ ପର୍ଯ୍ୟନ୍ତ ଘୋଡ଼ି ହେଇ ତା'ର ଖାଲି ପଲଙ୍କ ଉପରେ ଶୋଇ ପଡ଼ିଥିଲା । ମନେହେଲା ଡେରି ପର୍ଯ୍ୟନ୍ତ ଗଣ୍ଠିଲି ହେଇ ଚଉକି ଉପରେ ଶୋଇବା ପରେ ତା'ର ଅପୂର୍ବ ପ୍ରକମ୍ପିତ ପଲଙ୍କରେ ଶୋଇବାକୁ ତା'ର ଗୋଲଗାଲ ଶରୀର ପୁରା ଲମ୍ବେଇ ଦେଇଥିଲା । ଏମିତି କିଂକର୍ତ୍ତବ୍ୟବିମୂଢ଼ ହେଇ ଛିଡ଼ା ରହିବାର ସମୟ ଏବେ ନ ଥିଲା । ଅମ୍ମା କୌଣସି କ୍ଷଣିରେ ଚା'ର ଗିଲାସ ନେଇ କରି ଦ୍ୱାରରେ ଛିଡ଼ା ହେଇପାରିବ । ପ୍ରବୀର କିଛି ନ କହି ନିଦ୍ରାମଗ୍ନା କଲୀର ପାଦର ଆଙ୍ଗୁଠି ଧରିକରି ଜୋରରେ ସେମିତିହିଁ ହଲେଇ ଦେଲା ଯେମିତି କଲୀ କିଛିକ୍ଷଣ ପୂର୍ବରୁ ହଲେଇ କରି ତାକୁ ଉଠେଇ ଥିଲା ।

ସେ ହଡ଼ବଡ଼ ହେଇ ଉଠି ବସିଲା । ଝରକାରେ ଅନ୍ଧକାର ମିଶି ଥିବା ଶ୍ୟାମଳ ଉଜ୍ଜ୍ୱଳତା ଉଙ୍କି ମାରିବାକୁ ଲାଗିଲା । ନୀଳ ଡ୍ରେସିଂ ଗାଉନରେ ଚମକୁ ଥିବା ଦ୍ୱଚାର ହଳଦିଆ ଗୁଣ ଦେଖିକରି ପ୍ରବୀରକୁ ପ୍ରଥମେ ଦୟା ହେଲା । କେତେ ଅସୁସ୍ଥ, ଭୟଭିତ ସଂକୁଚିତ ମନେ ହେଉଥିଲା ସେ । କିନ୍ତୁ ପରକ୍ଷଣରେ ଲଜ୍ଜାସ୍ପଦ ପରିସ୍ଥିତିକୁ ବାସ୍ତବିକତା ତାହାର ବିବେକପୂର୍ଣ୍ଣ ଚେତନା ଫେରେଇ ଦେଲା । ସେ ପଲଙ୍କ ଉପରେ ବସିଥିବା, ଅର୍ଦ୍ଧ-ଉନ୍ମୀଳିତ ଆଖି ତାକୁ ବିହ୍ୱଳ ହେଇ ଭଲକରି ଦେଖି ବିସ୍ମିତ ହେଇଥିବା କଲୀକୁ ବଡ଼ ରୁକ୍ଷ ଭାବରେ କାନ୍ଧକୁ ଧରି ତଳକୁ ଓହ୍ଲାଇ ଦେଲା । ସେ ପ୍ରଥମେ ମୂର୍ତ୍ତି ପରି ଛିଡ଼ା ହେଇ ରହିଲା । ପୁଣି ସୋମନମ୍ବୁଲିଷ୍ଟ ପରି ଚୁପଚାପ ଛିଟିକିନି ଖୋଲିକରି ବାହାରକୁ ଚାଲିଗଲାରୁ ପ୍ରବୀର ଡେଇଁପଡ଼ି ଛିଟିକିନି ବନ୍ଦ କରିଦେଲା । କିଛିକ୍ଷଣ ପର୍ଯ୍ୟନ୍ତ ସେ ଧୀରେ ଛିଡ଼ା ହେଇଥିଲା । ଛିଟିକିନି ବନ୍ଦ ଥିଲା, ତେବେ ମଧ୍ୟ ତାକୁ ଡର ମାଡୁଥିଲା । ଯଦି ଯାଦୁକରର ଉପଦ୍ରବ ଯାଦୁକରିରେ ସେହି ଛିଟିକିନି ଖୋଲି ପୁଣି ତାହାରି ପଲଙ୍କ

ଉପରେ ପଡ଼ିଥିବା ଦୃଷ୍ଟି ଗୋଚର ନହୁଏ । ଆଜି ତାହାକୁ କୋଠରି ଖୋଲିକରି ଶୋଇବାର ଶିକ୍ଷା ମିଳି ସାରିଥିଲା । ଏମିତି ନରଭକ୍ଷିଣୀ ପାଖ କୋଠରିରେ ଥିଲା ଆଉ ତାକୁ ତା'ର ହୃଷ୍ଟପୁଷ୍ଟ ଶରୀରକୁ ଆଖି-ଆଖିରେ ଗିଳିବା ସେ କେତେଥର ଦେଖି ସାରିଥିଲା, ତେବେ ମଧ୍ୟ ଦ୍ୱାର ଖୋଲିକରି ସେତ 'ଆ ବଳଦ ମତେ ମାର' କହିଥିଲା । ପୁଣି ଦୋଷ ବା କାହାର ଥିଲା ? ଗୋଟିଏ ରାତିର କଥା ଥିଲା, କାଲି ସେ ଅମ୍ମାର ପାଖ କୋଠରିରେ ଯାଇକରି ଶୋଇ ପଡ଼ିବ କହିଦେବ ରାତିସାରା ସଡ଼କ ଚାଲିଥାଏ, ତାକୁ ନିଦ ହୁଏନାହିଁ । ପୁଣି ରାତିସାରାର ବାହାରୁଥିବା ଉତ୍ସବର ସମାରୋହର କୋଳାହଳ ଅମ୍ମା-ବାପା, ମଧ୍ୟ ଶୁଣୁଥିବେ । କେବେ 'କଂଗ୍ରେସର ଧପ୍ପାବାଜୀ, ଚାଲିବ ନାହିଁ ଚାଲିବ ନାହିଁ, କେବେ ସଂଯୁକ୍ତ ଦଳ ହେଲା ବିଫଳ' । ଠିକ୍‌ଥିଲା, ଏହା କହିଦେବ । କାବୁଲ ଯିବା ପରେ ସେ କ'ଣ ଏଠାକୁ ଉଡ଼ିକରି ଆସିବ ? ଯଦି ଆସି ମଧ୍ୟ ଯାଏ ତେବେ ସେ ସେଠାରେ ତା ସହିତ ନିଷ୍ପତ୍ତି କରି ନେବ । ତା'ରି ପରି କୋଡ଼ିଏ ପ୍ରିୟ ମିତ୍ର ମଣ୍ଡଳୀ ଅଭିସାରିମାନଙ୍କୁ ସେ ନିଜ ସଂଯମରେ କଚାଡ଼ି ଦେଇ ପାରିଥାନ୍ତା । ତାହାର ଯେଉଁ ତକିଆ ଉପରେ ସେ ହାତ, ରଖିକରି ଶୋଇଥିଲା ତାହା ଉପରେ ପତଳା ବାହୁର 'ଚଳଚ୍ଚିତ୍ରର ପାତ୍ର' ପରି ହେଇ ଯାଇଥିଲା । କ'ଣ ସେଣ୍ଟର ଶିଶି ଢାଳିଦେଇ ଯାଇଥିଲା ଟୋକି ? ସେହି ପରିଚିତ 'ପରଫ୍ୟୁମ୍' କସ୍ତୁରୀର ଗନ୍ଧ ତାକୁ ବିଚଳିତ କରି ପକେଇଲା । ସେ ଥାପୁଡ଼େଇ ଥାପୁଡ଼େଇ ତକିଆର ଆକାର ଠିକ୍ କଲା ଆଉ ବିଛଣା ଚାଦର ଢାଙ୍କି ଦେଲା । ଆଲୁଅ ହେଇ ଯାଇଥିଲା, ଅମ୍ମାର ଶଙ୍ଖର ଆଲାର୍ମ ବାଜି ସାରିଥିଲା । ସେ ଆଲୁଅ ଜଳେଇ କରି ପୁରୁଣା ଖବର ଖୋଲିଗଲା । ଅମ୍ମା ଚା'ର ଗ୍ଲାସ ନେଇ ଛିଡ଼ା ହେଇଥିଲା, ପନ୍ଦର ମିନିଟ୍ ପୂର୍ବରୁ ଯଦି ଏମିତି ହିଁ ଆସି ଦ୍ୱାରରେ ଛିଡ଼ା ହେଇଥାନ୍ତା !

ଚା'ର ଗ୍ଲାସ ତାକୁ ଧରେଇ ଦେଇ ଅମ୍ମା ତାହାରି ପଲଙ୍କ ଉପରେ ବସିଗଲା ।

"ଗୋଟିଏ କଥା ତତେ କହିବାକୁ ଆସିଛି, ପୁଅ ! ଆଜି ତୁ ସେଠାକୁ ଯିବୁ । ତୋର ବାପା ତ ଏମିତି ସଂକୋଚ କରନ୍ତି ଯେ ଥରେ ତୁ କାବୁଲ ଗଲେ ତୁ ପୁଣି ମୁହଁ ଖୋଲିକରି ପାଣ୍ଡେ ମହାଶୟଙ୍କୁ କିଛି କହି ପାରିବେ ନାହିଁ । ତୁ କାଲିର ନାଟକ ତ ଦେଖିଛୁ, ଯେମିତି ମଧ୍ୟ ହେଉ, ଦାମୋଦରକୁ ଚାକିରିରେ ପୁରେଇବାକୁ ପଡ଼ିବ । ଯେତେଦିନ ପର୍ଯ୍ୟନ୍ତ ଖାଲି ବସିବ, ଏହିସବୁ ଉପଦ୍ରବ ଛିଡ଼ା କରଉଥିବ । ଶେଷ ପର୍ଯ୍ୟନ୍ତ ଜ୍ୱାଇଁ ଅଟେ । ଘରୁ ବାହାରକୁ ତଡ଼ି ମଧ୍ୟ ପାରିବି ନାହିଁ । ଏହାତ ଭଲ ହେଲା, ପରଦେଶରେ ଅଛି । ଏଠାରେ ସମସ୍ତଙ୍କୁ ଏହା କହି ଦେଇଛି ଯେ ଲମ୍ବା ଛୁଟି ନେଇକରି ଜୟାର ଚିକିତ୍ସା କରେଇବା ପାଇଁ ଆସିଛି । କିନ୍ତୁ ଲମ୍ବା ଛୁଟିର ଆମେ କେତେଦିନ କୈଫିୟତ ଦେଇ ଚାଲିବା ? ଆଉ ଗୋଟିଏ କଥା ହେଉଛି ପୁଅ ।" ଅମ୍ମା କାନ୍ଦ କାନ୍ଦ ହେଇଗଲା- "ଆଜି ସେ ବିବାହର ତିଥି କହିବେ ତ ଟାଳଟୁଳ କରିବୁ ନାହିଁ । ନିଜର ମାମୁଁକୁ ଦେଖ, ଶୁଭ କାର୍ଯ୍ୟ ଯେଉଁଠି ଥରେ ଟଳି ଗଲାତ ଟଳିଗଲା ।"

ପ୍ରବୀରର ମାମୁଁର ଦୁଃଖଦାୟକ ଦୃଷ୍ଟାନ୍ତ ତାକୁ ଆଗରୁ ମଧ୍ୟ କେତେଥର ଦିଆ ସରିଥିଲା ।

ପନ୍ଦର ବର୍ଷ ପୂର୍ବ ତାଙ୍କର ଜଣାନାହିଁ କେଉଁ ଦୁଃସମୟରେ ହେଇଥିବା ନିର୍ବନ୍ଧ ସେହି 'ଷ୍ଟେଜ୍'ରେ ବନ୍ଦ ହେଇ ରହି ଯାଇଥିଲା । ମାମୁଁ ବହୁତ ଉତ୍ସାହର ସହିତ ପ୍ରଥମ ତିଥି ସ୍ୱୟଂ ହିଁ ଘୁଞ୍ଚେଇ ଦେଇଥିଲେ ।

'ପାହାଡ଼ରେ କୋର୍ଟସିପ ନାମର କୌଣସି ଜିନିଷ ନାହିଁ', ସେ ଦୁଇ ଭଣଜାଙ୍କୁ ପ୍ରଭାବିତ କରି ଦେଇଥିଲା, ଚଟ ମଗନୀ ଆଉ ପଟ ବିବାହ, ଆମକୁ ଏସବୁ ପସନ୍ଦ ନୁହେଁ । ମାମୁଁ ଗୋଟିଏ ଲମ୍ୱା ସମୟ ପର୍ଯ୍ୟନ୍ତ ରୋମାଣ୍ଟିକ୍ ବୁଡ଼ମାରିବାରେ ଆନନ୍ଦ ପାଇବାକୁ ଚାହାନ୍ତି, କିନ୍ତୁ ରସବନ୍ତୀ ବୁଡ଼ମାରିବାର ପ୍ରଥମ ବୁଡ଼୍‌ରେ ବିଚାରାମାନେ ଏମିତି ବୁଡ଼ିଲେ ଯେ ପୁଣି ଉପରକୁ ଆସି ପାରିଲେ ନାହିଁ । ପ୍ରଥମ ବର୍ଷ ପ୍ରବୀରର ଅଜାଙ୍କର ମୃତ୍ୟୁ ବିବାହ ତିଥିକୁ ଘୁଞ୍ଚେଇ ଦେଇଥିଲା । ଦ୍ୱିତୀୟ ବର୍ଷ ସ୍ୱୟଂ ମାମୁଁଙ୍କୁ ଏମିତି ବିଷମ ସନ୍ନିପାତ ଜର ହେଲା ଯେ ଚାନ୍ଦ ଚନ୍ଦାମୁଣ୍ଡିଆ ହେଇଗଲା । ସେମିତି ଚନ୍ଦାମୁଣ୍ଡର ଚେହେରାରେ ବାହାଘରର ମୁକୁଟ କେମିତି ବନ୍ଧା ହେଇଥାନ୍ତା । ତୃତୀୟ ବର୍ଷ ମାମୁଁ କୌଣସି ସରକାରୀ ପୋଲ ନିର୍ମାଣ ଯୋଜନାର ପ୍ରମୁଖ ଇଞ୍ଜିନିୟର ନିଯୁକ୍ତ ହେଇଥିଲେ । ସେହି ଭୀମକାୟ ସେତୁର ମୂଳଦୁଆ ତାଙ୍କର କେତେକ ବେଇମାନ ଠିକାଦାର ଉଇ ହେଇ ଜଣା ନାହିଁ କେବେଠାରୁ ଚାଟିବାରେ ଲାଗିଥିଲେ, ମଡ଼ ମଡ଼ ହେଇ ଲୁହାର ଗୋଟିଏ ପୁରା ଖମ୍ୱ ମାମୁଁର ମୁଣ୍ଡ ଉପରେ ଆସି ପଡ଼ିଲା । ପ୍ରାଣ ବଞ୍ଚିଗଲା, ଅର୍ଦ୍ଧାଙ୍ଗ ଚାଲିଗଲା । ପକ୍ଷଘାତରେ ସେ ପଙ୍ଗୁହେଇ ମାମୁଁ ପୁଣି ଚିରକୁମାର ହିଁ ରହିଗଲେ । କୌମାର୍ଯ୍ୟ କବଚ ଧାରିଣୀ ଅପୂର୍ଣ୍ଣ ମାଇଁ ସୀମାବତୀ କ୍ଷେତ୍ରର କୌଣସି ମୋବାଇଲ ସ୍କୁଲର ପ୍ରଧାନ ଅଧ୍ୟାପିକା ହେଇ ପୁରାପୁରି ସାହସୀ ମହିଳା ହେଇ ସାରିଥିଲେ । ଗତବର୍ଷ ନିଜ ସ୍କୁଲର ଗାଇଡ୍ ପିଲାଙ୍କ ଦଳକୁ ନେଇକରି କଲିକତା ଆସିଥିଲା, ତେବେ ପ୍ରବୀର ତାଙ୍କୁ ପ୍ରଥମେ ଚିହ୍ନିପାରିଲା ନାହିଁ । ପ୍ରକୃତି ସହିତ ଲଢ଼େଇ କରି କ'ଣ କେହି ତାକୁ ପରାଜିତ କରିପାରିଛି ? ଯିଏ ଯେତେ ଅମାନବୀୟ ଧୈର୍ଯ୍ୟ ଧରି ତାକୁ ଟାଣୁଥିଲା, ତାକୁ ସେତେ ହିଁ କଠୋର ଦଣ୍ଡ ଦେଇକରି ପ୍ରକୃତି ପରାଜିତ କରିଦିଏ । ସେ ସେହି ମାଇଁ ଥିଲେ ଯାହାଙ୍କୁ କୋଡ଼ିଏ ପାହାଡ଼ି ବାଳିକାଙ୍କୁ ପ୍ରତ୍ୟାଖ୍ୟାନ କରି ମାମୁଁ ପସନ୍ଦ କରିଥିଲେ । ଦୁର୍ବଳ, ଚାଲାକ କିଶୋରୀ, ଯିଏ କେବେ ପାହାଡ଼ର ପରିଧି ଡେଇଁ ନ ଥିଲେ । ଏଇଥିରେ ଗାଲରେ ଥିଲା ସ୍ୱାଭାବିକ ଲାଲରଙ୍ଗ, ଚେହେରାରେ ନିର୍ଦ୍ଦୋଷ ଶିଶୁର ଲାବଣ୍ୟ । ଏବେ ସେହି ଗୋରା ରଙ୍ଗ କୃଷ୍ଣବର୍ଣ୍ଣ, ପୁରୁଷମାନଙ୍କ ପରି ଝବୀଡ଼ର ଲମ୍ୱା କୋଟ, କ୍ରେପସୋଲର ପୁରୁଷମାନଙ୍କର ଜୋତା ଆଉ ଆକାରହୀନ ଶରୀରରେ ଉଚ୍ଚା ବନ୍ଧା ହେଇଥିବା ସାଢ଼ି, ଥୋଡ଼ିରେ ଗୋଟିଏ ନୂଆଁ ଦ୍ୱୀପରୁ ଉଠିଥିବା କଳାଜାଇ ଉପରେ ଦାଢ଼ିର ଏକ ପେନ୍ଥାର ପେନ୍ଥା ଝୁଲି ପଡ଼ିଥିଲା, ଯାହାକୁ ସେ ଅଭ୍ୟାସବଶତ ଥରକୁ ଥର ମୋଡ଼ିବାରେ ଲାଗିଥିଲା ।

ଅମ୍ମା ଚିନ୍ତାରେ ବୁଡ଼ି ଯାଇଥିବା ପ୍ରବୀରର ପିଠି ଉପରେ ହାତ ରଖିଲାରୁ ସେ ଚମକି ପଡ଼ିଲା । ଜଣାନାହିଁ କେମିତି କେମିତି ନିରର୍ଥକ କଥା ମସ୍ତିଷ୍କ ଭିତରକୁ ଆସିବାରେ ଲାଗିଥିଲା, କ'ଣ କୁନ୍ନୀ ମଧ କେବେ ସେମିତିହିଁ ହେଇଯିବ ? "ମୁଁ ଯାଉଛି ପୁଅ । ଆଗ-ପଛ ସବୁ ଭାବିକରି ଚାଲିବାକୁ ହେବ, ଏଇଥିପାଇଁ ଭାବିଲି ଏକାନ୍ତରେ ତତେ ମନର କଥା କହି ଆସେ ।" ଅମ୍ମା ତାକୁ ଶିକ୍ଷା ଦେଇକରି ଚାଲିଗଲା । ଏମିତିରେ ମଧ ଶିକ୍ଷା ନ ମିଳିଥିଲେ, ତେବେ ସେ ସ୍ୱୟଂ ହିଁ ପାଣ୍ଡେ ମହାଶୟଙ୍କର ନିର୍ଦ୍ଧାରିତ ତିଥି ସ୍ୱୀକାର କରିବାର ନିଷ୍ପତ୍ତି ନେଇ ସାରିଥିଲା । କାଲି ରାତିର ଘଟଣା ତାକୁ ସଂକୋଚିତ କରି ଦେଇଥିଲା । ଏବେ ସେହି ଯୁଗ ଆଉ ନାହିଁ, ଯେବେ କୁମାରୀ ବାଳିକାମାନେ ସମାଜର ନର-ବ୍ୟାଘ୍ରର ଭୟରେ ଭୟଭୀତ ହେଇ ସ୍ୱୟଂ ହିଁ ଆଶ୍ରୟ ରୂପରେ ପତିର କାନ୍ଧ ପାଇଁ ଦେବ ଦେବୀଙ୍କୁ ମାନସିକ କରୁଥିଲା, ଏବେ ତ ମର୍ଯ୍ୟାଦାଶୀଳ କୌଣସି ପୁରୁଷକୁ ଶୃଙ୍ଗାର କରିଥିବା ଆଧୁନିକା ନିଜର ସୁବର୍ଣ୍ଣ ମୃଗଚର୍ମରେ କପଟ କରିପାରେ ।

ସେ ବାରଣ୍ଡାକୁ ଗଲା, ଦେଖିଲା କଲୀର କୋଠରି ବନ୍ଦ, ବଡ଼ ତାଲା ଝୁଲୁଥିଲା । ସେହି ନିଶାଚରୀ କ'ଣ ଦିନସାରା ଏଠାରେ ସେଠାରେ ବୁଲାବୁଲି କରି ରାତିରେ ଡେରି ପର୍ଯ୍ୟନ୍ତ ଚେଇଁ ରହୁଥିଲା ।

ପାଣ୍ଡେ ମହାଶୟଙ୍କର ସେଠାରେ ତା'ର ନିମନ୍ତ୍ରଣ ନିର୍ବାହ କରିବା ପାଇଁ ଯିବାକୁ ପଡ଼ିବ, ଏହା ମାୟା, ଅମ୍ମା ଆଉ ସ୍ୱୟଂ ବାପା କେତେଥର ଆସିକରି ତାକୁ ମନେ ପକେଇ ଦେଇଗଲେ । ସେଠାକୁ ଯିବାକୁ ପ୍ରବୀରକୁ ବହୁତ ସଂକୋଚ ହେଉଥିଲା । ନିଜ ମୁହଁରେ ସେ ଦାମୋଦରର 'ସସ୍‌ପେନ୍‌ଶନ'ର ଅପ୍ରିୟ ପ୍ରସଙ୍ଗ ଉଠେଇବ କେମିତି ? ପାଣ୍ଡେ ମହାଶୟ ଇଏ ନ ବୁଝନ୍ତୁ ଯେ କ୍ୱାଇଁ କଚଟି ଧରିଲା ମାତ୍ରେ ଦେଶୀ ମଦ ଧରିବାକୁ ଲାଗିବ । ତାଙ୍କ ସହିତ ତା'ର ପରିଚୟ ବା କେତେ ଦିନର ଥିଲା । କିନ୍ତୁ ସେଠାରେ ପହଞ୍ଚିଲା ମାତ୍ରେ ହିଁ ତା'ର ଭୟର ବେଢ଼ି ସ୍ୱୟଂ କଟିଗଲା । କୁନ୍ନୀର ବଡ଼ ଭଉଣୀ ମୁନୀ ପତି ସହିତ ପାହାଡ଼ରୁ ଆସି ଯାଇଥିଲା । ଗୋରୀ, ଲମ୍ବା, ବଡ଼-ବଡ଼ ଆଖି । ଏହି ମୁଖରା ଶାଳୀ ବାତାବରଣକୁ ପୁରାପୁରି ସ୍ୱଭାବିକ କରି ସ୍ୱୟଂ ହିଁ ଅପ୍ରିୟ ପ୍ରସଙ୍ଗ ଆରମ୍ଭ କରିଦେଲା । ସେହି ବଡ଼ଦାପର ଝିଅହିଁ ନ ଥିଲା, ଲକ୍ଷପତି ଶ୍ୱଶୁରର ପୁତ୍ରବଧୂ ମଧ ଥିଲା । ଏଇଥିରୁ ଶ୍ୱଶୁର ଘର ଐଶ୍ୱର୍ଯ୍ୟ ଲାବଣ୍ୟକୁ ସ୍ୱାଭାବିକ ଗୌରବ ପ୍ରଦାନ କରି ଜିହ୍ୱାକୁ ପ୍ରଗଲ୍‌ଭା କରି ଦେଇଥିଲା । ସେ କଥା-କଥାରେ ମନ୍ତ୍ରୀ ମହାଶୟଙ୍କୁ ବହୁତ ଆତ୍ମୀୟତାରେ କହିଲା ଏମିତି ଚିଡ଼ୋଉ ଥିଲା ଯେ ଯେମିତି ତାଙ୍କର ସହୋଦର ନିଜର ଭାଣିଜି ଅଟେ । ସୋଫାର କୋଣରେ ବସିଥିଲା ମୁନୀର ଶ୍ୟାମଳ ରଙ୍ଗର ଅସ୍ପଷ୍ଟ ପତି ମୁଖରା ପତ୍ନୀର ପ୍ରଭାବଶାଳୀ ବ୍ୟକ୍ତିତ୍ୱର କାନିରେ ହିଁ ଚୁପକରି ଲୁଚି ଯାଇଥିଲା ।

"ଦେଖନ୍ତୁ ଅଙ୍କଲ", ସେ କହିବାକୁ ଲାଗିଲା, "ମୋର ବାହାଘରରେ ଆପଣ 'ଇଲେକ୍ସନ'ର ବାହାନା କରିଥିଲେ, ଏବେ ଦେଖେ କୁନ୍ନୀର ବାହାଘରରେ କେଉଁ ବାହାନା

କରୁଛନ୍ତି - କିନ୍ତୁ ଦେଖନ୍ତୁ ଆପଣ ଆସନ୍ତୁ ନ ଆସନ୍ତୁ, କୁନ୍ନୀର ଓ୍ୱେଡ଼ିଂ ପ୍ରେଜେଣ୍ଟ ଆପଣଙ୍କ ଠାରୁ ଆଜିହିଁ ଏଡ଼ଭାନ୍ସ ନେଇଯିବ ।"

ବାଳିକାର ହୀରାରେ ଚମକୁଥିବା କର୍ଣ୍ଣଫୁଲର ସପ୍ତ କିରଣର ସର୍ଚ୍ଚଲାଇଟରେ ବିଚାରା ମନ୍ତ୍ରୀ ମହାଶୟର ଆଖି ଯୋଡ଼ିକ ଝଲସି ଗଲା । ମୁନୀର ନିଜ ଶରୀରକୁ ଛାଡ଼ିକରି ସବୁକିଛି ଇମ୍ପୋର୍ଟେଡ଼ ଥିଲା । କାନ-ହାତର ହୀରା ତା'ର ଡାଡ଼ି ବିଦେଶରୁ ଆଣିଥିଲେ । ହାତର ଘଡ଼ି ତାଙ୍କର ଗତଥର ବିଦେଶ ଯାତ୍ରାର ଉପହାର ଥିଲା । କାର୍ଡ଼ିଗନ ପିତାଙ୍କର ଏକ ରାଜନୀତିକ ମିତ୍ର ଆଣି ଦେଇଥିଲେ, ସାଢ଼୍ୀର ବୈମବର୍ଗ ଜର୍ଜେଟ ଅନ୍ୟଜଣେ ମିତ୍ରର ଧୋତି ଭିତରେ ଲେଙ୍ଗୁଟି ହେଇକରି ଯୋଗାଡ଼ ହେଇଥିବା ପ୍ରଧାନ ଉପକରଣର ଉଚିତ ଉପଯୋଗ କରିବା ମଧ୍ୟ ଜାଣିଥିଲା । ମନ୍ତ୍ରୀ ମହାଶୟ ଥିଲେ ଗାଉଁଲି ଗାଁର ମଣିଷ । ଗୋସେଇଁ ମାଆ-ଆଈ-ଖୁଡ଼ି-ବଡ଼ମାଆଙ୍କୁ ମହିଷି ଦୁହିଁବା ଦେଖିଥିଲେ, ପତ୍ନୀଙ୍କୁ ଭଲ ଭଲ ସାଢ଼ୀ ଆଣିକରି ଦେଲେ ସର୍ବନାଶ କରି ରଖି ଦେଇଥାନ୍ତା । ମୁନୀର ମଧୁର ଆଦେଶକୁ ସେ ମସ୍ତକକୁ ଆଖି ଉପରେ ସହ୍ୟ କରିନେଲେ - "କୁହ ଝିଅ, କୋଉ ଉପହାର ଦରକାର ?" ସେ ହସିକରି କୁନ୍ନୀକୁ ପଚାରିଲେ ।

"ବା ଭଲ କଥା, ସେ କ'ଣ ନିଜ ମୁହଁରେ ମାଗିବ ? ଥେଙ୍କ୍ ଗଡ଼୍, ଏବେ ଆମେ ସବୁ ଘରର ହିଁ ଲୋକ ଅଛୁ- ଆସନ୍ତୁ ମୁଁ କହୁଛି ।" ମୁନୀ ତାଙ୍କ ବାହୁକୁ ଧରିକରି ଏକାନ୍ତକୁ ଟାଣି ନେଇଗଲା- "ଏକରେ ଆପଣଙ୍କୁ କୁନ୍ନୀର ପତିର ବଦଳି ଦିଲ୍ଲୀକୁ କରେଇବାକୁ ପଡ଼ିବ । ସେହି ଆଫ୍‌ଗାନିମାନଙ୍କ ମଧ୍ୟରେ ଆମର କୁନ୍ନୀ ଶୁଖିକରି ରହିଯିବ ଆଉ ଦ୍ୱିତୀୟ, ଯାଙ୍କର 'ବ୍ରଦର ଇନ୍ ଲ' ହେଉଛନ୍ତି - ଦାମୋଦର । ଆଇ.ପି.ଏସ୍.ର ମଣିଷ ଅଟନ୍ତି, କିନ୍ତୁ ସସ୍‌ପେଣ୍ଡ କରି ଦେଇଛନ୍ତି । ତାଙ୍କୁ ମଧ୍ୟ ଠିକ୍ କରିବାକୁ ହେବ ଆପଣଙ୍କୁ ।" ସେ ପୁଣି ତାଙ୍କୁ ବାପାଙ୍କ ପାଖକୁ ଟାଣି ଆଣିଲା ଆଉ କହିବାକୁ ଲାଗିଲା, "ଦେଖନ୍ତୁ ଅଙ୍କଲ, ଏକ ସୂତ୍ର ଆପଣଙ୍କୁ କହିଦିଏ - ସେହି ପ୍ରଦେଶରେ ଭିଜିଲେନ୍ସ କମିଶନ ପାଇଁ ଯାହାର ନାମ ପ୍ରସ୍ତାବିତ ହେଇଛି, ତାଙ୍କ ମଧ୍ୟରୁ ଜଣେ ଆପଣଙ୍କ ପାର୍ଲ୍ୟାମେଣ୍ଟ ସେକ୍ରେଟେରୀର ଶଳା ଅଛି ।"

"ଠିକ୍ ଅଛି, ହେଇଯିବ ।" ମନ୍ତ୍ରୀ ପ୍ରବର ଚୁଟକି ମାରି ସୋଫା ଉପରେ ବସିଗଲେ, ତେବେ ସୋଫାର ପୁରା ସ୍ପ୍ରିଙ୍ଗ ଭିତରକୁ ଦବିଗଲା ।

"ଦେଖନ୍ତୁ ଅଙ୍କଲ, ଏହି ମନ୍ତ୍ରୀ ମାନଙ୍କର 'ହେଇଯିବ' ମାନେ ହେବ ନାହିଁ ନା ? ବାହାଘର ପୂର୍ବରୁ ହିଁ ଆପଣଙ୍କୁ ସବୁକିଛି କରିବାକୁ ହେବ । ଘରର ଅଶୁଭ ସମୟରେ ବିବାହର ସାହାନାଇ କ'ଣ କିଛି ଭଲ ଲାଗିବ ?"

ପାଣ୍ଡେ ମହାଶୟ ଆଖି-ଆଖିରେ ସାଧୁବାଦ ଜଣେଇ କରି ଗୁଣୀ ଝିଅକୁ କାଞ୍ଚନିକ ପୁଷ୍ପ ହାରରେ ଲଦିଦେଲେ । ହାଏ, ତାଙ୍କର ଏହି ଡିପ୍ଲୋମେଟ୍ ବାଳିକା ବାଳକ ହେଇ ଜନ୍ମ ହେଇଥାନ୍ତା । ଏକମାତ୍ର ପୁତ୍ର ଠାରୁ ତାଙ୍କୁ ଏକରତିର ଆଶା ନଥିଲା । ଜଣାନାହିଁ

କେତେ ଟ୍ରାମ-ବସ ଜଳିଲା, ସେ ପିତାଙ୍କୁ ହୃଦ୍‌ରୋଗର ଅମୂଲ୍ୟ ଉପହାର ଦେଇ ସାରିଥିଲା । ଗତ ସପ୍ତାହରେ ନିଜର ପିତାର ପିତୁଳା ଜଳେଇ ସେ ବିଦ୍ୟାର୍ଥୀମାନଙ୍କ ଭିତରେ ସର୍ବୋଚ୍ଚ ସ୍ଥାନ ପ୍ରାପ୍ତ କରି ନେଇଥିଲା । ଜୀବନାବସ୍ଥାରେ ହିଁ ଯୋଗ୍ୟ ପୁତ୍ରଦ୍ୱାରା ଏହି ପିଣ୍ଡଦାନର କାରଣ ଥିଲା - ତାଙ୍କର ଚଉକିରେ ବସିଥିବା ନେତାମାନଙ୍କ ସହିତ ମିତ୍ରତା । ମଝି-ମଝିରେ ତାଙ୍କୁ ଡରେଇ-ଧମକେଇ, ନିଜର ନାମ ନଥିବା ପାର୍ଟି ପାଇଁ ସେ ପିଣ୍ଡାରୀ ଡାକୁର କ୍ରୂରତାରେ ବଡ଼ଥଳୀ ଭର୍ତ୍ତି ଟଙ୍କା ଆଦାୟ କରି ପୁଣି ବୀରାନ ଘାଟିମାନଙ୍କରେ ହଜି ଯାଉଥିଲା ।

କୁନ୍ନୀ ସେଦିନ ନିଜର ବଡ଼ ଭଉଣୀର ତୁଳନାରେ ଶାନ୍ତ ହୋଇ ବସିଥିଲା । କେବେ-କେବେ ସେ ନିଜର ଆଖି ପ୍ରବୀରର ଚେହେରା ଉପରେ ଏମିତି ବୁଲୋଉ ଥିଲା ଯେ ସେ ଲଜ୍ଜିତ ହୋଇ ଯାଉଥିଲା । ପର କ୍ଷଣରେ ତା'ର ସମ୍ମୁଖରେ ସେ ମିଠେଇ-ଲୁଣିଆ ଜିନିଷର ପ୍ଲେଟ୍‌ଗୁଡ଼ିକୁ ସଜେଇ ଦେଉଥିଲା ।

"କଣରେ କୁନ୍ନୀ", ମୁନୀ ଛୋଟ ଭଉଣୀକୁ ହସିକରି ଅଟକେଇ ଦେଲା, "କଣ ନିଜର ବରକୁ ଖୁଏଇ-ଖୁଏଇ କରି ମୋଟା କରିଦେବୁ ? ବିବାହ ପୂର୍ବରୁ ଯେମିତି ପେଟ ବାହାରି ନ ଆସେ । ଟିକିଏ ତା'ର ୱେଷ୍ଟ ଲାଇନର ନଜର ରଖ, ବୁଝିଲୁ ? ଏକରେ ଆମର ପାହାଡ଼ର ବିବାହ ଉତ୍ସବରେ ବରକୁ ଏମିତିରେ ମଧ୍ୟ କାର୍ଟୁନ ବନେଇ କରି ଧରେଇ ଦିଅନ୍ତି । ମୋର ବାହାଘରର ମୁକୁଟ କେମିତି ଥିଲା ମନେଅଛି- ନା, ଡାଡ଼ି ? ସାମ୍ନାରେ ଗଣେଶଜୀ ଆଉ ପଛରେ ଜାଲିମଲୋଶନର ବିଜ୍ଞାପନ ।" ମନ୍ତ୍ରୀ ମହାଶୟ ମଧ୍ୟ ହୋ-ହୋ ହସିବାକୁ ଲାଗିଲେ ।

"ମୁଁ ଚା କେତେବେଳଠୁ ପିଇ ନେଇଛି ଆଉ ଦୁଇଟି ଅତିଥି ଆସିଲେ ନାହିଁ - ନା ବିଧୁତରଞ୍ଜନ ଆସିଲା ନା ଲୌରୀନ -"

"ମୁଁ କହିବି ଡାଡ଼ି", ମୁନୀ ଗପକରି ଗୋଟିଏ ପ୍ରେସ୍ଟ୍ରି ମୁହଁରେ ପୁରେଇ ଦେଲା, "ମୋର ମନେ ହେଉଛି ରଞ୍ଜନ କାକା ଲୌରୀନ ଆଣ୍ଟିକୁ ତାଙ୍କର ଗାଡ଼ିରେ ଆଣୁଥିବେ । ବିଚାରି ଲୌରୀନ ଆଣ୍ଟିର ଗାଡ଼ିକୁତ ଶୁଣିଛି ଲଖନଉରେ ଧରାଧରି କରି ଜଳେଇ ଦେଇଛନ୍ତି ।"

"ଆଚ୍ଛା ?" ମନ୍ତ୍ରୀ ମହାଶୟ ଲୌରୀନ୍‌କୁ ଅନେକ ବର୍ଷରୁ ଜାଣନ୍ତି ।

"ଆଣ୍ଟିର ନେମ୍‌ପ୍ଲେଟ୍ ଉପରେ ଆଲକାତରା ବୋଳିବାକୁ ଲାଗିବାରୁ ତାଙ୍କୁ ରାଗ ହେଲା । ଇଂରେଜୀରେ ହିଁ ଆଣ୍ଟି ଭାଷଣ ଦେବାକୁ ଲାଗିଲା । ବେଶ୍ ପୁଣି କ'ଣ ଥିଲା - ପୁରା ଗାଡ଼ିହିଁ ହାତରୁ ବାହାରିଗଲା ।"

"ଜଣାନାହିଁ କ'ଣ ଅବସ୍ଥା ହୋଇ ଯାଇଛି ଦେଶର ?" ପାଣ୍ଡେ ମହାଶୟର କ୍ଷୀଣ ସ୍ୱର ହୁଏତ ଅବୋଧ ପୁତ୍ର ପାଇଁ ମୂକ କ୍ଷମାଯାଚନା କରୁଥିଲା, "ଆପଣ କହନ୍ତୁ ତ, କ'ଣ ଏହି ଲିପାପୋଛାରେ ଇଂରେଜମାନେ ଦେଶରୁ ଚାଲିଯିବେ ? ପଢ଼ିବାର ଉପାୟ

ଆହୁରି ଅଛି, ଏବେ ଆପଣମାନେ ଇଂରେଜମାନଙ୍କୁ ଦେଶରୁ ତଡ଼ି ବାହାର କଲେ କେଉଁ ଆଲକାତରା ବୋଲିଥିଲେ ?" ମନ୍ତ୍ରୀ ମହାଶୟଙ୍କୁ ହଠାତ୍ ନିଜ ମୁଣ୍ଡ ଉପରେ ପଡ଼ିଥିବା ଲାଠିମାଡ଼ ଆଉ ଗୋରା ସିପାହିମାନଙ୍କର ପଦାଘାତ ମନେ ପଡ଼ିଗଲା । ତାଙ୍କର ଛାତି ରିକ୍ରୁଟମେଣ୍ଟ ସେଣ୍ଟରରେ ଛିଡ଼ାହେଇଥିବା କୌଣସି ସୈନ୍ୟ ବାହିନୀରେ ନବ ନିଯୁକ୍ତ ବ୍ୟକ୍ତିର ଛାତି ପରି ବିସ୍ତୃତ ହେଇ ବାହାରି ଆସିଲା । ବହୁତ ଗର୍ବପୂର୍ଣ୍ଣ ଢାଉର ଦୃଷ୍ଟିରେ ସେ ଏ ଆଡ଼କୁ ସେଆଡ଼କୁ ଦେଖିଲା ।

ସମସ୍ତ ଆଲୋଚନା ମଝିରେ ଜଣେ ବ୍ୟକ୍ତି ଉଦାସୀନ ହେଇ କରି ସୋଫାର କୋଣରେ ବସିଥିଲା । ନା ସେହି ଅନାସକ୍ତ ଚେହେରାରେ ଉତ୍ସାହ ଥିଲା, ନା ବିଦ୍ରୋହ । ମନେ ହେଉଥିଲା ସବୁବେଳେ ସଂଘର୍ଷ କରୁଥିବା ସେ ପୁରାପୁରି ଭୁଲ କରୁଛନ୍ତି । ପ୍ରଥମ ଥର ପ୍ରବୀର ତାଙ୍କୁ ଦେଖିଥିଲା । ସେତେବେଳେ ମଧ୍ୟ କୁନୀର ମା ଏମିତି ହିଁ ଚୁପ୍‌ଚାପ୍ ଥିଲେ ଆଉ ଆଜି ମଧ୍ୟ ।

କେଉଁଠି-ନା-କେଉଁଠି ଭୀଷଣ ଆଘାତ ପାଇଛନ୍ତି, ଏହା ପ୍ରବୀର ଠାରୁ ଲୁଚି ରହିଲା ନାହିଁ ।

"ଏଇ ଯେ, ଲୌରୀନ ଆଣ୍ଟି ଆସିଗଲେ ।" ମୁନୀ ସ୍ୱାଗତ ପାଇଁ ଆଗେଇ ଗଲା – "ମୁଁ କହିଥିଲି ନା, ରଂଜନ କାକାର ଗାଡ଼ିରେ ଆସୁଥିବ ।"

## କୋଡ଼ିଏ

"ଓଃ ମାଇ ଡିଅର, ସନୀ !" କହି ଲୌରୀନ ଆଗେଇ ଯାଇ ପାଣ୍ଡେ ମହାଶୟଙ୍କର ଦୁଇ ହାତକୁ ଧରିକରି ବହୁତ ଆତ୍ମୀୟତାରେ ଖୁବ୍ ହଲାଇ ଦେଲା ! ପୁଣି ମୁନୀ ଆଉ କୁନ୍ନୀର ଗାଲକୁ ଚୁମ୍ବନ କରି ସେମାନଙ୍କ ମା'ଙ୍କ ସମ୍ମୁଖରେ ଦୁଇହାତ ଯୋଡ଼ିକରି ଛିଡ଼ା ହେଇଗଲା ।

ନା ସେ ସେହି ବିନମ୍ର ନମସ୍କାରର ପ୍ରତ୍ୟାଭିବାଦନ କଲେ, ନା କିଛିଁ କହିଲେ । କ୍ଷଣକ ପାଇଁ ଚେହେରା ତମତମ ହେଇ ପୁଣି ସ୍ୱାଭାବିକ ଉଦାସୀନତାରେ ଭରିଗଲା । ଅଳ୍ପସମୟ ପରେ ସମସ୍ତଙ୍କ ଦୃଷ୍ଟିକୁ ଏଡ଼େଇ ସେ ଭିତରକୁ ଚାଲିଗଲେ । ସ୍ପଷ୍ଟ ଜଣା ପଡୁଥିଲା ଯେ ଏହି ଚେହେରାରେ ଲମ୍ପଟ ମନେ ହେଉଥିବା ଏଙ୍ଗଲୋ-ଇଣ୍ଡିଏନ୍ ମହିଳାର ଆଗମନରେ ଅସନ୍ତୁଷ୍ଟ ହେଇକରି ପାଣ୍ଡେ ଗୃହିଣୀ ଭିତରକୁ ଚାଲିଯାଇଥିଲେ ।

"କ'ଣ ଲୌରୀନ, କେମିତି ଚାଲିଛି ତମର ପୋଲଟ୍ରୀ ?" ପାଣ୍ଡେ ମହାଶୟ ଗରମ ଚା'ର କପ୍ ଅତିଥିମାନଙ୍କୁ ଦେଇକରି ପଚାରିଲେ । ପୁଣି ମନ୍ତ୍ରୀ ମହାଶୟଙ୍କ ଆଡ଼କୁ ବୁଲିପଡ଼ି କହିବାକୁ ଲାଗିଲେ- "ଆମର ଲୌରୀନ୍ ପ୍ରକୃତ ଅର୍ଥରେ ସମାଜସେବିକା

ଅଟେ । କହେ, ଯେତେଦିନ ପର୍ଯ୍ୟନ୍ତ ଭାରତର ପ୍ରତ୍ୟେକ ଅଣ୍ଡରନରୀଶ୍ଡ ପିଲାଙ୍କ ହାତରେ ଗୋଟିଏ ଗୋଟିଏ ସଜ ଅଣ୍ଡା ଦେଖିବ ନାହିଁ, ସେତେଦିନ ପର୍ଯ୍ୟନ୍ତ ଜବରରେ ପାଦ ରଖିବ ନାହିଁ ।”

ହୋ-ହୋ କରି ଲୌରୀନ୍ ନିଜର ପୁରୁଷମାନଙ୍କ ପରି ହସରେ ଗୋଲ କୋଠରୀକୁ ଆନନ୍ଦ ଧ୍ୱନିରେ ଭରି ଦେଲା ।

ବିଧୁତରଞ୍ଜନଙ୍କର ପ୍ରଭାବଶାଳୀ ବ୍ୟକ୍ତିତ୍ୱ, ଜରିବାଲା କୁନ୍ନୀର ଖଦଡ଼ର ଧୋତି ଆଉ ଅହିଂସାତ୍ମକ ମାଟିଆ ରଙ୍ଗର ସିଲ୍କ କମୀଜରେ ଆହୁରି ଫୁଟି ଉଠିଥିଲା ।

“ଏକଦମ୍ ‘ସାହେବ ବୀବୀ ଗୁଲାମ’ର ଜମିଦାର ମନେ ହେଉଥିଲା ନା!”, ମୁନୀ ପ୍ରବୀରର କାନ ପାଖକୁ ଆସିକରି ଫୁସ୍‌ଫୁସ୍ କରି କହିଲା, “ବଡ଼ କରିତକର୍ମା ମଣିଷ ଅଟେ । ତମର ବଦଳି ପାଇଁ ଡାଡ଼ି ଏବେ ଯାଙ୍କୁ ମଧ୍ୟ କହିବେ । ଆସ, ତମର ପରିଚୟ କରେଇ ଦିଏ ।”

“କାହିଁକି, ଦିଲ୍ଲୀ ଆସିବାକୁ ଚାହୁଁଛ ନା କ’ଣ ?” ବିଧୁତରଞ୍ଜନର ଆକର୍ଷକ ହସ ହିଁ ତା’ର ସବୁଠାରୁ ବଡ଼ ଆକର୍ଷକ ଥିଲା । “ମୁଁ ତ କହିବି ସେଇଠି ରହିଥାଅ, ଥରେ ପାଣ୍ଡେର ଝିଅ ହାତରେ ପଡ଼ିଲେ ଅଣ୍ଡିରା ଛେଳି କରି ବାନ୍ଧି ନେବ ।” ପୁଣି ଜୋରରେ ହସିବାକୁ ଲାଗିଲା ।

“ଦେଖୁନ” ମନ୍ତ୍ରୀ ଚିଡ଼ି ଉଠି ବଙ୍ଗଳାରେ ପହଞ୍ଚି ଗଲା, “ଭାଲୋ ହବେନା ବୋଲଛୀ ।” (ଦେଖନ୍ତୁ, ମୁଁ କହୁଛି ଭଲ ହେବ ନାହିଁ) । ବହୁତ ହାଲୁକା, ମୈତ୍ରୀପୂର୍ଣ୍ଣ ରାଜଯୋଗ୍ୟ ବାତାବରଣରେ ପ୍ରବୀରର ଚିତ୍ତ ହାଲୁକା ହେଇକରି ପକ୍ଷୀପରି ଅନେକ ସମୟ ପର୍ଯ୍ୟନ୍ତ ଉଡ଼ିବାକୁ ଲାଗିଲା । ଫେରିବ । ସମୟ ହେଲା, ପୁଣିଥରେ ପୁରା ପରିବାର ତାକୁ ବିଦା ଦେବାକୁ ଆସିଲେ । ଆଜି ସେ ନିଜ ଗାଡ଼ି ନେଇକରି ଆସିଥିଲା ।

“ଦେଖ ପୁଅ”, ପାଣ୍ଡେ ମହାଶୟ ପାଦ ଛୁଇଁବା ପାଇଁ ଝୁଙ୍କିଥିବା ପ୍ରବୀରର ପିଠି ଉପରେ ହାତ ରଖି ଦେଲେ, “ମୁଁ ପଣ୍ଡିତ ମହାଶୟଙ୍କୁ କୋଷ୍ଠୀ ଦେଖେଇ କରି ଡେଟ୍ ଫିକ୍ସ କରିଦେଇଛି । ପନ୍ଦର ଏପ୍ରିଲର ତିଥି ହିଁ ତୁମ ଦୁଇଜଣଙ୍କୁ ଠିକ ହେଉଛି । ତା ସହିତ ଆମକୁ ମଧ୍ୟ । ମାର୍ଚ୍ଚ ପର୍ଯ୍ୟନ୍ତ ଆମେ ତମକୁ ଦିଲ୍ଲୀ ନେଇ ଆସିବୁ । ଆଉ ଦେଖ, ନିଜ ବାପାଙ୍କୁ କହିଦେବ ଦାମୋଦରର ଚିନ୍ତା କରିବେ ନାହିଁ, ସବୁ ଠିକ୍ ହେଇ ଯିବ ।”

ସେଦିନ ମଧ୍ୟ ସେ କୁନ୍ନୀ ଆଡ଼କୁ ଠିକ୍ ଭାବରେ ଆଖି ଉଠେଇ କରି ଦେଖି ପାରିଲା ନାହିଁ । କାରକୁ ସେ ଭିଡ଼ ହେଇଥିବା ଛକ ଜାଗାରୁ ବାହାରି ଚାଲି ଯାଉଥିଲା ବେଳେ ଭିକ୍ଟୋରିଆ ମେମୋରିଆଲ ସାମ୍ନାରେ ଆସୁଥିବା ଗୋଟିଏ ଲମ୍ବା ଏକ ଉତ୍ସବର ସମାରୋହକୁ ଦେଖିକରି ସେ ଗାଡ଼ି ପଛକୁ କରିନେଲା । ଏହି ବୁଦ୍ଧିହୀନ ପିଲାଳିଆମୀର ଉତ୍ସବର ସମାରୋହକୁ ଦେଖିକରି ସେ ଗଜେ ଦୂରରେ ପ୍ରାୟ ଥିଲା । ବଡ଼ କୌଶଳରେ ସେ ଗାଡ଼ିକୁ ବ୍ରେକ୍ କରି ବରଗଛର ଜଟାର ଫାଟକର ଦ୍ୱାରରେ ଲୁଚାଇ ଦେଲା ଆଉ

ସ୍ୱୟଂ ଓହ୍ଲାଇ କରି ପାର୍କକୁ ଚାଲିଗଲା । ଗଛମାନଙ୍କର ବୁଦାଳିଆ ଜଙ୍ଗଲରେ ପଡ଼ିଥିବା ବେଞ୍ଚ ଆଡ଼କୁ ସେ ଆଗେଇଲା ଆଉ ଅଟକି ରହିଗଲା । କ'ଣ ସେହି କିନ୍ନରୀ ତା'ର ଉପସ୍ଥିତିକୁ ସୁଙ୍ଘିକରି ହିଁ ଆକାଶରୁ ଓହ୍ଲେଇ ପଡ଼ିଥିଲା ।

ସେ ହିଁ ଥିଲା, ସେହି ମୁଦ୍ରାକୁ ସେ ଦଶ ଗଜର ଦୂରତାରୁ ମଧ୍ୟ ଚିହ୍ନିପାରେ । ସେମିତି ହିଁ ବେହୋସ, ଯେମିତି ସେହି ରାତିରେ ଦରୱାନ୍‌ର ବେଞ୍ଚ ଉପରେ ପଡ଼ିଥିଲା । କ'ଣ ଆଜି ମଧ୍ୟ ଗୋଲି ଖାଇକରି ଆସିଥିଲା । ପ୍ରଥମେ ସେ ଭାବିଲା, ବୁଲିକରି ଅନ୍ୟ ଆଡ଼କୁ ବାହାରି ଯାଏ, କିନ୍ତୁ ପୁଣି ଏମିତି ସୁ-ଅବସରକୁ ହାତରୁ ଯିବାକୁ ଦେବା ମୂର୍ଖତା ଥିଲା । ତାକୁ ସେହି ଏକାନ୍ତରେ ବୁଝେଇବା ଘରେ ପହଞ୍ଚି ବୁଝେଇବା ଠାରୁ ଅନେକ ଭଲ ଥିଲା ତାକୁ ଉଠେଇ କରି ଘର ଛାଡ଼ିବାର ନୋଟିସ୍ ଆଜି ପ୍ରବୀର ସେହି ବେଞ୍ଚ ଉପରେ ଦେଇଦେବ । ସେ ନିକଟରେ ପହଁଞ୍ଚିଲା, ତେବେ ସେ ଚମକି ପଡ଼ି ଦେଖିଲା, ପୁଣି ହଡ଼ବଡ଼େଇ କରି ବସିଗଲା, "ଏ କାବୁଲୀବାଲା, ବା, ଆଜିତ ଛୋଟ ଥଳୀ ନେଇକରି ଆସିଛ - ଦେଖେ କ'ଣ ଅଛି ତମର ଛୋଟ ଥଳୀରେ -" ସେହି ଆନନ୍ଦିତ ବାଳିକା ଡେଇଁପଡ଼ି ପ୍ରବୀରର ହାତରେ ଝୁଲୁଥିବା ବ୍ରାଉନ୍ କାଗଜର ଥଳୀ ଛଡ଼େଇ ନେବାରୁ ସେ ଲଜ୍ଜିତ ହେଲା । କେମିତି ମୂର୍ଖ, ଅନ୍ୟମନସ୍କ ବ୍ୟକ୍ତି ସେ ଥିଲା । ଚାଲିବାକୁ ଲାଗିଲାତ ତା'ର ଭାବୀ ଶାଶୁ ଅମ୍ମା ପାଇଁ ଶୁଖିଲା ଫଳର ଏକ ଥଳୀ ଦେଇଥିଲା । ସେ ଜଣା ନାହିଁ କେଉଁ ଭାବନାରେ ବୁଡ଼ିଥିଲା ଯେ ଥଳୀ ହାତରେ ନେଇ ଓହ୍ଲେଇ ଗଲା । "ବା, ବା, ଏକଦମ୍ ଟେଗୋରଙ୍କର କାବୁଲୀବାଲାର ଶୁଖିଲା ଫଳ ଅଟେ - କାଜୁ, ଭଜା ବାଦାମ, ଲୁଣିଆଁ ଜିନିଷ, ପିସ୍ତେ - କିଏ କହିବ ଆମ ଦେଶରେ ଭୋକରେ ଲୋକ ମରୁଛନ୍ତି ।" ସେ ମୁଠିଏ ଶୁଖିଲା ଫଳ ବାହାରକରି କୋଳରେ ରଖିଦେଲା ଆଉ ଖାଇବାକୁ ଲାଗିଲା । ପ୍ରବୀରକୁ ଛିଡ଼ା ହେଇଥିବା ଦେଖି ସେ ପୁରା ଶୁଖିଲା ଫଳ କୋଳରେ ଢାଳିଦେଇ ଆଉ ବେଞ୍ଚ ଉପରେ ହାତ ଆପୁଡ଼ାଇ କହିଲା, "ବସ ନା, ଛିଡ଼ା କାହିଁକି ହେଇଛ ? ମନେ ହେଉଛି ଶ୍ୱଶୁର ଘର ଥଳୀ, କାହିଁକି ଅଟେ ?"

"ମୋର ଆପଣଙ୍କ ସହିତ କିଛି କଥା ହେବାର ଥିଲା ମିସ୍ ମଜୁମ୍‌ଦାର୍, ହସ-ଖୁସି କରିବାକୁ ଏଠାକୁ ଆସିନାହିଁ ।" ପ୍ରବୀରର ଗମ୍ଭୀର ସ୍ୱରରେ କୃତ୍ରିମ ଗାମ୍ଭୀର୍ଯ୍ୟ ନ ଥିଲା । ଦସ୍ୟୁକନ୍ୟା ବଡ଼ ବଡ଼ କଳା ପୁତୁଳି ବୁଲେଇ କରି ଦୁଇହାତ ଛାତି ଉପରେ ରଖିଦେଲା, "ବାପରେ ବାପ ! ଯାହାହେଉ କଥା ତ ବାହାରିଲା, ମୁଁ ତ ଭାବିଥିଲି ଆପଣ ଘୁଙ୍ଗା ଅଟନ୍ତି । କିନ୍ତୁ ଦେଖନ୍ତୁ ନା, ଇଚ୍ଛାଶକ୍ତି ମଧ୍ୟ ନିଶ୍ଚୟ ନିଜର ଅସ୍ତିତ୍ୱ ରଖେ । ମୁଁ ବର୍ତ୍ତମାନ ଏଠାରେ ଶୋଇ-ଶୋଇ ଭାବୁଥିଲି ଯଦି, ଆଜି ଆପଣ ଏଠାକୁ ଆସି ଯାଆନ୍ତେ । ଶୁଣିଲି କାଲି ଯାଉଛନ୍ତି । ଚାଲନ୍ତୁ, ଆଜି ଆପଣଙ୍କୁ ପୁରା କନ୍‌ଫେସନ୍ କରି ଦିଏ । କେଥୋଲିକ୍, ନନ୍ସ ଠାରୁ ଶିକ୍ଷା ପାଇଛି ତ, ସେଇଠାରୁ ସଂସ୍କାର ପାଇଛି ।

"ବସନ୍ତୁ ନା", ସେ ହାତ ଧରିକରି ବସେଇ ଦେଲା ଆଉ ପୁଣି ମୁଠିଏ କାଜୁ

ବାହାର କରି ନେଲା, "କେମିତି ଫୁଲିଲା-ଫୁଲିଲା କାଜୁ ଅଟେ ବନ୍ଧୁ, ଏକଦମ ଓଟପକ୍ଷୀର ଅଣ୍ଡା । ମନେ ହେଉଛି ବିଶେଷ ଅର୍ଡ଼ର ଦେଇକରି ଗଛରେ ଫଳେଇଛନ୍ତି ।"

କଲୀ ଗୋଟିଏ ବଡ଼ କାଜୁ ପ୍ରବୀରର ଓଠ ପାଖରେ ଧରିଲା । ସେ ମୁଣ୍ଡକୁ ପଛକୁ କରିଦେଲା, ତେବେ ହସିକରି ସେ ନିଜ ମୁହଁରେ ପୁରେଇ ଦେଲା ।

"ହଁ, କହନ୍ତୁ, କ'ଣ କହିବେ ମତେ ? ଏମିତିରେ ହୁଏତ ଆପଣଙ୍କୁ ଏଠାରେ କହିବାକୁ ସଂକୋଚ ହେଉଥିବ, କ'ଣ ହେଉଛି ନା ? ଚାଲନ୍ତୁ, ଆପଣଙ୍କୁ ନିଜର ରାଣୀମାନଙ୍କର ଅନ୍ତପୁରକୁ ନେଇଯିବି"- ସେ ଥଳୀ ହାତରେ ନେଇ ଓହ୍ଲେଇ ଗଲା । କିଛି ପାଦ ଆଗକୁ ଆଗେଇ ଯାଇ ସେ ଦେଖିଲା ପ୍ରବୀର ମୁହଁ ଫୁଲେଇ ବେଞ୍ଚ ଉପରେ ହିଁ ବସିଥିଲା । "ବାପ୍ରେ ବାପ୍, କ'ଣ ହାତ ଧଣିକରି ଟାଣି ହେଇ ଯିବାକୁ ଆପଣ ପସନ୍ଦ କରନ୍ତି ?" ସେ ଫେରିକରି ତାକୁ ହାତ ଧରିକରି ବହୁତ ସ୍ୱାଭାବିକ ଭାବରେ ଟାଣି ନେଇ ଗଲା । "ଥରେ ନୈନିତାଲରେ ମଧ ଏମିତିହିଁ ବିଗିଡ଼ି ଯାଇଥିବା ଘୋଡ଼ା ସହିତ ପାଳି ପଡ଼ିଥିଲା । ଲଗାମ ଧରି ଟାଣି-ଟାଣି ଘର ପର୍ଯ୍ୟନ୍ତ ନେଇ ଯାଇଥିଲି ।"

"ଇଏ ଦେଖନ୍ତୁ, କେମିତି ରାଜକୀୟ ପ୍ରାଇଭେସି ଅଟେ, ଦେଖୁଛ ନା ?"

ସତରେ କାନ୍ଧରେ କାନ୍ଧ ମିଳେଇ ଅର୍ବାଚୀନ ଦୁଇ-ତିନୋଟି ବଟବୃକ୍ଷର ସମ୍ମିଳିତ ଭାବରେ ଓହଳି ଥିବା ଓହଳର ଭାରି ପରଦା ଝୁଲୁଥିଲା । ମଝିରେ ଥିଲା ଏକ କଟା ଗଛର ମୋଟା ଗଣ୍ଡି । "ବିରାଜମାନ ହୁଅନ୍ତୁ, ଇଏ ମୋର ଆରଣ୍ୟକ ନିବାସର ରାଜସିଂହାସନ ଅଟେ ।" କଲୀ ତାକୁ ଆଉଥରେ ପୁଣି ଟାଣିକରି ଗଣ୍ଡି ଉପରେ ବସେଇ ଦେଲା ଆଉ ସ୍ୱୟଂ ତାହାର ପାଦ ପାଖରେ ବସି ପଡ଼ିଲା ।

ଥରେ ପ୍ରବୀରର ମନେହେଲା, ତାକୁ ପଚାରି ଦିଏ - ଏହି ରାଜ ସିଂହାସନ ଉପରେ ଦେଶ ବିଦେଶର କେତେ ରାଜା ଆଜି ପର୍ଯ୍ୟନ୍ତ ବସି ସାରିଛନ୍ତି ? କିନ୍ତୁ ଏମିତି ଶାସ୍ତା କଥାବାର୍ତ୍ତା କରିବା ତା'ର ଅଭ୍ୟାସ ନ ଥିଲା ।

"ଦେଖନ୍ତୁ ମିସ୍ ମଜୁମ୍ଦାର, ଆପଣଙ୍କୁ ହାତ ଯୋଡ଼ିକରି ଗୋଟିଏ ଅନୁରୋଧ କରି ଆସୁଛି", ପ୍ରବୀରର ନମ୍ର ଶିଷ୍ଟ ସ୍ୱର ସଂଯତ ଆଉ ଶାନ୍ତଥିଲା । "କୃପା କରି ଆପଣ ରହିବା ପାଇଁ କେଉଁ ଅନ୍ୟସ୍ଥାନର ବନ୍ଦୋବସ୍ତ କରି ନିଅନ୍ତୁ ।"

"ବେଶ୍, ଏତିକି କଥା ?" କଲୀ ହସିକରି କହିଲା, "ଗୋଟିଏ ଅନୁରୋଧ ମୋର ମଧ ଅଛି - ଯେତେ ସମୟ ଏଠାରେ ଅଛୁ, କୃପାକରି ମତେ ମିସ୍ ମଜୁମ୍ଦାର କହି ବିଷ କଣ୍ଟା ମାରନ୍ତୁ ନାହିଁ । ଏହି ନାମରେ ମତେ ଡାକିବା ପାଇଁ ଈଶ୍ୱରଙ୍କ କୃପାରୁ ବହୁତ ଅଛନ୍ତି । ମୋର ନାମ ବହୁତ ସାନ ଅଟେ । ଜିଭକୁ କୌଣସି ପ୍ରକାରର ଜିମନାଷ୍ଟିକ କରିବାକୁ ପଡ଼ିବ ନାହିଁ । କଲୀ - ଆଉ ରହିଲା ଅପାଣଙ୍କ ଘର ଛାଡ଼ିବାର କଥା, ମୁଁ କାଲି ହିଁ ଯାଉଛି ମହାଶୟ ।"

ପ୍ରବୀରର ସ୍ୱର କିଛି ଉଚ୍ଚ ହେଇଗଲା "ଦେଖନ୍ତୁ, ମୋର ମଜା କରିବାର ଅଭ୍ୟାସ

ନାହିଁ - କାଲି ଆଉ ପଅରଦିନ ଆପଣ ଯାହା କିଛି କରିଛନ୍ତି, ସେଥିପାଇଁ ହୁଏତ ଆପଣଙ୍କ ଲଜ୍ୟା ହେଉ ନଥିବ ଆଉ ଏମିତି କରିବାର ଅଭ୍ୟାସ ରହିଚି, କିନ୍ତୁ ମୋର ନାହିଁ । ଆମର ଘରର ନିଜସ୍ୱ ଏକ ମର୍ଯ୍ୟାଦା ଅଛି ।"

"ଓ, ଆଇ ସୀ ।" ବଡ଼ ବଡ଼ ଆଖିରୁ ବ୍ୟଙ୍ଗରେ ସହସା ଦାମୋଦର ଜୀବନ୍ତ ହେଇକରି ପ୍ରବୀରକୁ ଆଙ୍ଗୁଠି ଦେଖେଇବାକୁ ଲାଗିଲା ।

"ମୁଁ ଶୁଣିଛି ଯେ ବିଧୁତ୍‌ରଂଜନ ମଜୁମଦାର, ରାଜା ଗଜେନ୍ଦ୍ର ବର୍ମନ ଆପଣଙ୍କ ଶ୍ୱଶୁରଙ୍କର ପରମ ମିତ୍ର ଅଟନ୍ତି । ଲୌରୀନ୍ ଆଷ୍ଟିର ପୋଲଟ୍ରି ଫାର୍ମରେ ମଧ ପାଣ୍ଡେ ମହାଶୟଙ୍କର ଗୁରୁତ୍ୱପୂର୍ଣ୍ଣ ସେୟାର ଅଛି - ତେବେ ତ ନିଷ୍ଚୟ ହିଁ ଆପଣଙ୍କୁ ନିଜ ଗୃହର ମର୍ଯ୍ୟାଦାର ବିଶେଷ ଧ୍ୟାନ ରଖିବାକୁ ହେବ ।"

ପ୍ରବୀର ପାଗଳ ପରି ପ୍ରଳାପ କରି ଉଠିଗଲା । "ମୁଁ ଆପଣଙ୍କ ଠାରୁ ଏଠାକୁ ନୀତିଶତକ ପଢ଼ିବାକୁ ଆସିନାହିଁ । ଏତେ ଦିନ ଆପଣ ମାଗଣାରେ ଆମ କୋଠରି ହାତ କରି ବସିଛନ୍ତି, ରାତି-ଅଧ ରାତି ମଶାଣି ଦୀର୍ଘ ଅଭିଳାଷା, ଚରସ-ଗଞ୍ଜେଇର ଦମ ଲଗେଇବାକୁ କ'ଣ ଆମର ହିଁ ଘର ରହି ଯାଇଥିଲା ?

"ଶାନ୍ତ ହୁଅ ମହରାଜ", କଲୀ ଦୁଇ ହାତ ମେଲେଇ କରି ତା'ର ମାର୍ଗ ଅଟକେଇ ଦେଲା - "ମୁଁ ମଜାକ୍ କରୁ ନାହିଁ । ମତେ ସିଲୋନରେ ଚାକିରି ମିଳିଯାଇଛି । ଏବେ ଆପଣ ଯାଉଛନ୍ତି କାବୁଲ ଆଉ ମୁଁ ସିଲୋନ - ଦୁଇଟି ବିଭିନ୍ନ ଦିଗରେ । ଆମେ ଦୁହେଁ କାଲି, ସାଟେଲାଇଟର ହିଁ ତେଜର ଭିଡ଼ିକରି ଅଦୃଶ୍ୟ ହେଇଯିବା ହ୍ୱାଇ ନଟ ପାର୍ଟ ଫ୍ରେଣ୍ଡସ ? ଆବଶ୍ୟକତା ନାହିଁ ଯେ ଏଠାରେ କୁତ୍ସିତ ମାରପେଞ୍ଚ ହେଉ ।"

ବହୁତ ହାଲୁକା ସ୍ୱରରେ ଚମତ୍କାର ପୂର୍ଣ୍ଣ ଭକ୍ତିରେ କଲୀ ତାକୁ ପୁଣି ସେହି ଆସନକୁ ଟାଣି ଆଣିଲା ।

"ବିଧୁତରଞ୍ଜନ ମଜୁମଦାର ତମର ଶ୍ୱଶୁରର ମିତ୍ର ନ ହେଇଥିଲେ ମୁଁ ତୁମକୁ ଯିବାକୁ ଦେଉ ନ ଥାନ୍ତି, କିନ୍ତୁ ମୋର ଅନୁପସ୍ଥିତିରେ ସେ କେଉଁଠି କୌଣସି ବିଷ ବୃକ୍ଷ ଶବ୍ଦଭେଦୀ ବାଣ ମାରିକରି ମତେ ଲଙ୍କାରେ ହିଁ ଅଣ୍ଟା କରି ନ ଦେଉ, ଏଇଥି ପାଇଁ ତମକୁ ସବୁ ଶୁଣିବାକୁ ପଡ଼ିବ । ମୁଁ କାହିଁକି ମଶାଣିରେ ସାଧନା କରେ, କାହିଁକି ଗଞ୍ଜେଇ-ଚରସର ଦମ ଲଗାଏ - କ'ଣ ଏହା ମଧ ତମେ କେବେ ଜାଣିବାକୁ ଚେଷ୍ଟା କରିଛ କାବୁଲୀବାଲା ? କ'ଣ କେବେ ତମେ ଏହା ମଧ ଭାବିଛ କି କାହିଁକି ସମସ୍ତେ ମୋର ବ୍ୟକ୍ତିତ୍ୱ ଉପରେ କାଦୁଅ ପକାନ୍ତି ?

"କାହିଁକି ମୋର ବିକାଶର ପଥ କଣ୍ଟାରେ ଅବରୁଦ୍ଧ ହେଇଛି ? ତମର ଦୃଷ୍ଟିରେ ହୁଏତ ମୁଁ ବ୍ୟଭିଚାରିଣୀ ଅଟେ, କାହିଁକି ? ବିଦେଶୀ ଟୋକାମାନଙ୍କ ସହିତ ରାତି-ଅଧରାତି ମଶାଣିରେ ସାଧନା କରେ, ପୁଣି ସତରେ ମୁଁ ଭଲ କେମିତି ହେଇପାରିବି ।" କଲୀ ତା'ର ଏକଦମ୍ ପାଖକୁ ଘୁଞ୍ଚି ଆସିଲା । "ନର୍ସରୀ ରାଇମ ପଢ଼ିଛ ନା ? 'ହ୍ୱେନ

ସୀ ଉଆଜ୍ ଗୁଡ଼୍ ସୀ ଉଆଜ ଭେରି ଭେରି ଗୁଡ଼୍ - ହ୍ୱେନ ସୀ ଉଆଜ ବେଡ଼୍, ସୀ ଉଆଜ ହରିଡ଼୍ ।' ହୁଏତ ସେ ହିଁ ହେଉଛି ମୁଁ...."

କଲୀ ହସିକରି ନିଜର ଗୋଟିଏ ହାତ ପ୍ରବୀରର ଆଣ୍ଠୁରେ ରଖିଦେଲା । "ଥରେ ମାତ୍ର ଶ୍ମଶାନ ଯାଇଛି, କିନ୍ତୁ କେତେ ଶାନ୍ତି ମିଳିଥିଲା ସେଠାରେ, ତମକୁ କେମିତି କହିବି ? କେମିତି ଆଶ୍ଚର୍ଯ୍ୟ ଥିଲା ଯେ ଯେଉଁଠାରେ ଏମିତି ଶାନ୍ତି ମିଳିଥିଲା, ଭୟ ନାମର କୌଣସି ବସ୍ତୁର ଅସ୍ତିତ୍ୱ ହିଁ ରହି ନଥିଲା । ଘରକୁ ଫେରିବା ପରେ ସେହି ଶ୍ମଶାନର ସ୍ମୃତି ମୋର ପ୍ରାଣ ନେବାକୁ ଲାଗିଥିଲା - ତେଣୁ ତ ତମର କୋଠରିକୁ ପଳେଇ ଆସିଥିଲି ।"

କଲୀ ସଂକୁଚିତ ହେଇ ନିଜର ଲମ୍ବା ଅଙ୍ଗୁଳୀରେ ଯତ୍ନରେ ବଢ଼େଇ ଥିବା ଲମ୍ବା ତୀକ୍ଷ୍ଣ ନଖ ପ୍ରବୀରର ଆଣ୍ଠୁରେ ଫୋଡ଼ି ଦେଲା ।

"ତମେ ଭାବିଥିଲ ମୁଁ ବାହାନା କରୁଛି, କାହିଁକି ? କିନ୍ତୁ ତୁମେ ମୋର ଉଚ୍ଛୃଙ୍ଖଳତାକୁ ମୁଖର କରି ଦେଇଛ । ଯେଉଁଦିନ ତମକୁ ପ୍ରଥମ ଥର ଦେଖିଲି, ସେହିଦିନ ମୋର ମନେ ହେଇଥିଲା ଯେ ଇଏ ମୋର ସିଦ୍ଧି-ସୋପାନ ଅଟେ । ଯେଉଁଦିନ ଏହି ଦୁରୂହ ବ୍ୟକ୍ତିତ୍ୱ-ଦୁର୍ଗର ସୌନ୍ଦର୍ଯ୍ୟ, ସଂଯମ ଆଉ ଦର୍ପର କାନ୍ଥକୁ ନିଜର ସୌନ୍ଦର୍ଯ୍ୟ ଡାଇନାମାଇଟରେ ଉଡ଼େଇ କରି ଏହି ସିଦ୍ଧି-ସୋପାନ ଉପରେ ବସି ପାରିବି ସେହିଦିନ ମୋର ହୃଦୟରେ ଜନ୍ମରୁ ଜଳୁଥିବା ନିଆଁ ବିଦ୍ରୋହାଗ୍ନି ସ୍ୱୟଂହିଁ ଥଣ୍ଡା ହେଇଯିବ । କେବେ କେବେ ଏହି ଅଗ୍ନିରେ ମୁଁ ଭିତରେ ହିଁ ଭିତରେ ଏମିତି ଦାଉ ଦାଉ ହେଇ ଜଳେ ଯେ ମନକୁ ଆସେ, ପୁରା ସଂସାରକୁ ପୋଡ଼ିଦିଏ । ଯେତେବେଳେ ସେହି ତୀବ୍ର ଦାହ ଅସହ୍ୟ ହେଇଉଠେ" ତାହାର ସୁକୁମାର ଭୋଳା ଚେହେରା ଯେମିତିକି କୌଣସି ଦୈବୀ ତେଜରେ ତେଜୋମୟ ହେଇକରି ପ୍ରକାଶିତ ହେବାକୁ ଲାଗେ, "ତେବେ ମୁଁ ମଶାଣିରେ ସାଧନା କରେ, ତେବେ ଗଞ୍ଜେଇ-ଚରସର ଦମ ଲଗାଏ । ଯେବେ ଲୋକଙ୍କର ଦୃଷ୍ଟିରେ ମୁଁ କେବେ ଭଲ ହେଇ ପାରିବି ନାହିଁ, ତେବେ ଭଲ ହେବାର ବ୍ୟର୍ଥ ଚେଷ୍ଟା କାହିଁକି କରିବି ?"

ପ୍ରବୀରକୁ ଏବେ ନିଶ୍ଚୟ ଭାବରେ ମନେ ହେବାକୁ ଲାଗିଲା ତା'ର ଆଣ୍ଠୁ ଉପରେ ନଖ ଫୋଡ଼ିକରି ବସିଥିବା, ଏହି ଲାଲ ଲାଲ ଅଙ୍ଗାର ପରି ଦାଉ ଦାଉ ହେଇ ଜଳୁଥିବା ବଡ଼ ଆଖି ଥିବା ବାଳିକା ଏବ ନର୍ମାଲ ଅଟେ । କେମିତି ଥରୁଥିଲା, ଯେମିତିକି ଦେବୀ ଆସି ଯାଇଛି । ଅନ୍ଧାର ହେବାକୁ ଲାଗିଥିଲା । ଗାଡ଼ି ମଧ୍ୟ ବହୁତ ସୁରକ୍ଷିତ ନଥିଲା ।

ପ୍ରବୀର ଛିଡ଼ା ହେଇଗଲା ।

କଲୀ ତାକୁ ଦୁଇ ହାତ ଧରିକରି ବସେଇ ଦେଲା, "ମୁଁ ପ୍ରଥମରୁ କହି ଦେଇଥିଲି । ଆଜି ସବୁ ନ ଶୁଣେଇ ଛାଡ଼ିବି ନାହିଁ ।"

କଲୀର ବିଚିତ୍ର ଅନ୍ତପୁର ଅନ୍ଧକାରରେ ଗଳା ପର୍ଯ୍ୟନ୍ତ ବୁଡ଼ି ସାରିଥିଲା । ତା'ର ପ୍ରବୀରର ଆଣ୍ଠୁରେ ଲାଗିଥିବା ହଳଦିଆ ଚେହେରା କେତେବେଳେ ସଡ଼କ ଉପରେ ଯାଉଥିବା କୌଣସି କାରର ଆଲୁଅରେ କ୍ଷଣକ ପାଇଁ ଆଲୋକିତ ହେଉଥିଲା ଆଉ ପୁଣି

ବୁଡ଼ି ଯାଉଥିଲା ।

ସେ ଅନର୍ଗଳ କହିବାରେ ଲାଗିଥିଲା, ଯେମିତିକି ଆକାଶବାଣୀର କୌଣସି ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମର ଟେପ ଗୋଲ-ଗୋଲ ହେଇ ବୁଲୁଛି । ଶିଶୁ ହତ୍ୟାକାରୀ ପାର୍ବତୀ, ପଠାଣ ପିତା, ସୁନ୍ଦରୀ ପନ୍ନା, ବିଧୁତରଞ୍ଜନ, ଅସଂଖ୍ୟ ଦେଶୀ-ବିଦେଶୀ ମାଉସୀମାନଙ୍କର ଅସ୍ପଷ୍ଟ ଦେଖା ଯାଉଥିବା ଚେହେରା, ଲୌରୀନ୍ ଆଣ୍ଟି-ସମସ୍ତେ ଜଣକ ପରେ ଜଣେ ଆସିକରି ପ୍ରବୀରକୁ ଘେରିକରି ବସିଗଲେ । ଆଖୁରେ ଲାଗିଥିବା ସେହି ଦୁର୍ବଳ ଅସମର୍ଥ ବାଳିକା ପ୍ରତି ମାସମାସ ଧରି ସଞ୍ଚିତ ନିର୍ଦ୍ଦୟ ଭାବ ହଠାତ୍ ଆକର୍ଷକ ହେଇ ଉଠିଲା ।

କାନ୍ଧ ପର୍ଯ୍ୟନ୍ତ ଝୁଲୁଥିବା କିଞ୍ଚିତ କୁଞ୍ଚିତ କେଶ, ନିର୍ଦୋଷ ଉତ୍ସାହ ବାନ୍ଧି ନେଇ ପାରୁଥିବା ବଡ଼ ଆଖି, ଯତ୍ନରେ ସଜଡ଼ା ଯାଇଥିବା କୁଞ୍ଚ ଆଉ ମୂର୍ତ୍ତିରେ କଟି ଯାଇଥିଲା ଉନ୍ନତ ନାସିକା । "କେଉଁ ମୂର୍ଖ କହିଛି" ପ୍ରବୀର ଭାବିବାକୁ ଲାଗିଲା, ଫଳେନ ପରିଚୀୟତେ ବୃକ୍ଷଃ (କିଏ କହିଛି ଯେ ବୃକ୍ଷର ଚିହ୍ନଟ ଫଳରୁ ହେଇଥାଏ ?) କ'ଣ ସଢ଼ି-ପଚି ଯାଇଥିବା କୌଣସି ବୃକ୍ଷରେ ଏମିତି ଲୋଭନୀୟ ଫଳ ସତରେ ଲଗା ହେଇଥିବ ?"

"ମୁଁ ସବୁବେଳେ ଭାବୁଥିଲି", କଲୀ କହିବାରେ ଲାଗିଥିଲା, "ଯେ ମୋର ଡାଡ଼ି ମଧ୍ୟ ବିବିୟନର ଡାଡ଼ି ପରି ହେଇଥିବେ, ଉଚ୍ଚ, ଆଗ ହାତରେ ଚାପି ରହିଥିବ ସିଗାର । ସେତେବେଳେ ମୁଁ କ'ଣ ଜାଣିଥିଲି ଯେ ମୁଁ ହାତରେ ସିଗାର୍ ଧରେଇ ଦେଲେ ତେବେ ମଧ୍ୟ ହୁଏତ ମୋର ଡାଡ଼ି ନିଜର ଥୁଣ୍ଟା ଅଙ୍ଗୁଳିଗୁଡ଼ିକରେ ତାକୁ ଧରି ପାରି ନଥାନ୍ତେ । ଅମ୍ମା ଏହି ବିଧୁତରଂଜନ ମଜୁମ୍‌ଦାରକୁ କହୁଥିଲା ଆଉ ମୁଁ ଲୁଚିକରି ସବୁ ଶୁଣି ନେଲି । ଡାଡ଼ିର ଯେଉଁ ଇମେଜ୍‌କୁ ତିଆରି କରିବାରେ ଅଠର ବର୍ଷ ଲାଗିଥିଲା, ତାହା ତିନି ମିନିଟ୍‌ରେ ନଷ୍ଟ ହେଇ ରହିଗଲା । 'ନିଜକୁ ପରୀ ଭାବୁଛି ଟୋକୀ', ଅମ୍ମା କହୁଥିଲା- 'ଜଣାନାହିଁ, କୁଷ୍ଠରୋଗୀମାନଙ୍କ ଭିଡ଼ରେ ହୁଏତ ତତେ ତୋର କୁଷ୍ଠ ରୋଗୀ ବାପ ମିଳିଯିବ ବା ନୈନା ଦେବୀଙ୍କ ବାହାରେ ବସିଥିବା କୁଷ୍ଠରୋଗୀମାନଙ୍କର ପଙ୍ଗତରେ ତୋର ମା !'

"ପ୍ରଥମେ ମୋର ମନେ ହେଲା, ମୁଁ ପାଗଳ ହେଇଯିବି । ଏମିତି କେବେ ହେଇପାରିବ ନାହିଁ । ଯେଉଁଠାରେ କୌଣସି କୁଷ୍ଠରୋଗୀକୁ ଦେଖୁଥିଲି, ମୋର ମନେ ହେଉଥିଲା, ଇଏ ମୋର ପିତା ଅଟେ । ଉଠିଗଲେ ରାତିସାରା ବସି ରହୁଥିଲି । କେବେ ଦେଖୁଥିଲି, ମୋର ଦୁଇ ପାଦର ଅଙ୍ଗୁଳିଗୁଡ଼ିକ ଝଡ଼ିଯାଇଛି ଆଉ ଛୋଟେଇ-ଛୋଟେଇ ଭିକ ମାଗୁଛି, କେବେ ଦେଖୁଥିଲି, ମୋର ଏହି ନାକ, ଯାହାପାଇଁ ମୋର ଏତେ ଗର୍ବ, ବିଭତ୍ସ ହେଇକରି ଭିତରକୁ ପଶି ଯାଇଛି । ଯେଉଁଠାରେ ଲେପ୍ରୋସିର ଲିଟରେଚର ମିଳେ, ଉଇ ହେଇ ଖାଇଯାଏ । ଆରମ୍ଭରେ କେମିତି ଏହି ରୋଗ ଛଦ୍ମବେଶୀ ଶତ୍ରୁ ପରି ଆସିକରି କାନ୍ଧ ଉପରେ ହାତ ରଖେ, ସବୁ ମୁଁ ଜାଣିଯାଇଛି । କେବେ ଏକାନ୍ତ କୋଠରିରେ ମୁଁ ଘଣ୍ଟା ଘଣ୍ଟା ନିଜ ତ୍ୱଚାକୁ ଅଣ୍ଡାଳିବାକୁ ଲାଗେ, ଜଣାନାହିଁ କେଉଁଠୁ ପୈତୃକ ରୋଗ

କୌଣସି କୋଣରେ କୁଟିଳ ଶତ୍ରୁପରି ଚୁପକରି ଲୁଚି ବସିଛି ।"

କଲୀର ହାତ ପ୍ରବୀରର ଆଣ୍ଠୁରେ ଲାଗି ଥରକୁ-ଥର ଥରୁଥିଲା । "ଦେଶ-ବିଦେଶରେ ଯେବେ-ଯେବେ ମୋର ସୌନ୍ଦର୍ଯ୍ୟର ପତ୍ର-ପୁଷ୍ପ ସମର୍ପିତ ହେଉଥିଲା, ଜିଓ୍ଵତି ସାଙ୍ଗରେ ଚାଲୁଥାଏ କୌଣସି ଶୁଭେଚ୍ଛୁର ସେପ୍ରନ ପରି ମତେ ଅନ୍ତରାତ୍ମାର ଏକାନ୍ତ କକ୍ଷରେ ଟାଣିକରି ବୁଝେଇବାରେ ଲାଗେ, 'ଡୋଣ୍ଟ ଲେଟ୍ ଇଟ ଗୋ ଟୁ ୟୋର ହେଡ୍ !' ପ୍ରଶଂସାର ମଦ ସମ୍ପେନ ପରିହିଁ ମଦ ହେଇଥାଏ, 'ଇଟ୍ ଗୋଜ ଟୁ ୟୋର ହେଡ୍ ଇନ୍ ନୋ ଟାଇମ୍' ଆଉ ଯେଉଁଠି ଥରେ ଓହ୍ଲାଏ, 'ଇଟ୍ ମେକ୍ସ ୟୁ ଫୀଲ୍ ମିଜ ରେବଲ ।' ପୁଣି ମଧ୍ୟ ମୁଁ ବିଶ୍ୱ ମେଳାର ପ୍ରାଙ୍ଗଣରେ ସେହି ମଦରେ ଝୁଲି ଝୁଲି ନିଜ ହୋଟେଲର ଏକାନ୍ତ କୋଠରିକୁ ଫେରେ, ତେବେ ନିଶା ଓହ୍ଲେଇଯାଏ । ମନେହୁଏ, ମୋର ଦିନ-ଦରିଦ୍ର, ପଙ୍ଗୁ ମାତା-ପିତା ମୋର ମୁଣ୍ଡ ପାଖରେ ଛିଡ଼ା ହେଇକରି ମତେ ଧମକ ଦେବାକୁ ଲାଗିଛନ୍ତି - ବିଳାସ, ବୈଭବ ଆଉ ଐଶ୍ୱର୍ଯ୍ୟରେ ଅନ୍ଧ ବାଳିକା, ତେର ମା-ବାପ ଗଳି-ଗଳିରେ ଭିକ ମାଗୁଛନ୍ତି, ସେମାନଙ୍କର ଆମେରିକି ଦୁଧର ଖାଲି ଡବାର ଭିକ୍ଷାପାତ୍ରରେ ଗୋଟିଏ ନୂଆ ପଇସା ମଧ୍ୟ ଠଣ ଠଣ ହୁଏ, ତେବେ ତାଙ୍କର ଆଖି ଚକଚକ କରିବାକୁ ଲାଗେ । ଆଉ ତୋ ଉପରେ ଏମିତି ବିଦେଶୀ ଡଲାର ବର୍ଷିବାକୁ ଲାଗିଛି ! କ'ଣ ତତେ ଲାଜ ମାଡ଼େ ନାହିଁ ?"

କଲୀ ଯତ୍ନକରି କଇଁ କଇଁ କାନ୍ଦିବା ଶବ୍ଦକୁ ଦବେଇ ଦରି ପ୍ରବୀରର ଆଣ୍ଠୁରେ ମୁଣ୍ଡ ରଖିଦେଲା । ମେଲେଇ ହେଇଥିବା ବାଳ ଉପରେ ସ୍ୱୟଂହିଁ ପ୍ରବୀରର ହାତ ଚାଲିଗଲା । ସେହି ସ୍ପର୍ଶରେ ଚମକି ପଡ଼ି କଲୀ ମୁଣ୍ଡ ଉଠେଇଲା । ଅବିଶ୍ୱାସରେ ମୁଣ୍ଡରେ ହାତ ବୁଲେଇ ଦେଉଥିବା ଲୋକକୁ ଦେଖିବାକୁ ଚେଷ୍ଟା କଲା, କିନ୍ତୁ ଅନ୍ଧକାରରେ କେବଳ ସ୍ପର୍ଶହିଁ ହାତକୁ ଲାଗିଲା । ସେହି ହାତକୁ କଲୀ କସିକରି ଧରି ନେଲା । "ଚାହିଁଥିଲେ ମୁଁ ଜଣେ ବିଦେଶୀ ଲକ୍ଷାଧିପତିକୁ ଛଳନା କରି ତାହାର ଅଗାଧ ସମ୍ପତ୍ତି ହାତ କରି ପାରିଥାନ୍ତି । ବିଚାରା ମୋ ପ୍ରେମରେ ପୁରାପୁରି ପାଗଳ ହେଇଯାଇଥିଲା । ସେ ବିବାହର ପ୍ରସ୍ତାବ ଦେଇଥିଲା ଆଉ ମୁଁ ନିଜର ଜନ୍ମର ଟେପ ଖୋଲି ଦେଇଥିଲି । ପୁଣି ଅଭାଗା ଲେଉଟି କରି ଦେଖି ନଥିଲା । ଯଦି ତମେ ଏମିତି ପ୍ରସ୍ତାବ ରଖିଥାନ୍ତ, କ'ଣ ମୋର ଟେପ୍ ଶୁଣିକରି ମଧ୍ୟ ମତେ ଗ୍ରହଣ କରି ପାରିଥାନ୍ତ ?" ସେ ହସିକରି ପଚାରି ତା'ର ଶରୀରରେ ଲାଖିଗଲା - "ହୁଏତ ନୁହେଁ - ଏଇଥି ପାଇଁତ ମୁଁ ନିଜର ଜୀବନଦାତ୍ରୀକୁ କେବେ କ୍ଷମା କରି ପାରିବି ନାହିଁ । ମତେ ବଞ୍ଚେଇତ ନେଲା, କିନ୍ତୁ ପୁଣି ମେର ଗଳାରେ ପଥର ବାନ୍ଧି କରି ମୋର ହାତ-ପାଦ ବାନ୍ଧିକରି ମତେ ଗଭୀର ହ୍ରଦରେ ପହଁରିବା ପାଇଁ ଛାଡ଼ି ଦେଲା ।"

"କଲୀ", ନିଜ ମୁହଁରେ ବହୁତ ସ୍ୱାଭାବିକ ଭାବରେ ଖସିଗଲା ସେହି ଦୁଇ ଅକ୍ଷରର ନାମର ଶବ୍ଦରେ ପ୍ରବୀର ଚମକିଲା ନାହିଁ ।

"ବହୁତ ରାତି ହେଇ ଯାଇଛି, ବର୍ତ୍ତମାନ ଚାଲ ।"

ସେ ଉଠିଗଲା କିନ୍ତୁ କଲୀ ଆଣ୍ଠୁରେ ମୁଣ୍ଡ ଲୁଚେଇ ସେମିତି ହିଁ ବସି ରହିଗଲା । ଏହା ବିଦ୍ରୋହିଣୀ କଲୀର ନୂତନ ରୂପ ଥିଲା । ସବୁବେଳେ ବିଦେଶୀ ମଡ଼େଲିଂ ସ୍କୁଲରେ କାନ୍ଧ ସିଧା ରଖି ମୁଣ୍ଡ ଉଠେଇ ଚାଲିବାର ଶିକ୍ଷା ପାଇଥିବା କଲୀ ହଠାତ୍ ନତମୁଖୀ କେମିତି ହେଇଗଲା ।

"ଚାଲ, ଘରକୁ ଯିବା ।" ପ୍ରବୀର କୌଣସି ସଂକୋଚ ନକରି ବଡ଼ ଆଦରରେ ତା'ର ହାତ ଧରିନେଲା ।

"ଘର ? ପୁଣି କୁହ ଥରେ - ଚାଲ ଘରକୁ ଯିବା ।" ସେ ଉଠିଲା କଲୀର ହସ ଥିଲା କି କାନ୍ଦ ? ଛିଡ଼ା ହେଇକରି କଲୀ ପ୍ରବୀରର ବାହୁରେ ଲତା ପରି ଲାଖିଗଲା ।

"କ'ଣ ନିଜର ଅମ୍ମା ସାମ୍ନାରେ, ନିଜର କୁନ୍ନୀ ସାମ୍ନାରେ ମୋର ହାତ ଧରିକରି ଏମିତି ହିଁ କହି ପାରିବ, ଚାଲ ଘରକୁ ଯିବା ?

"ମୋର ଗଳିତ ବଂଶର ମହିମା କ'ଣ ଏତେ ଶୀଘ୍ର ଭୁଲିଗଲ ? ମୁଁ ଏମିତି ବେଶ୍ୟାର ସ୍ତନପାନ କରିଛି, ଯାହାର ଧମନି ମାନଙ୍କରେ ଫିରିଙ୍ଗୀର ରକ୍ତ ବହୁଥିଲା ବର୍ଣ୍ଣଶଙ୍କର ସନ୍ତାନକୁ ସାଙ୍ଗରେ ନେଇକରି ଅଗ୍ନିକୁ ସାକ୍ଷୀ ରଖି ହୋମର ଚାରିଦିଗରେ ବୁଲିବା ଏତେ ସହଜ ହେଇ ନଥାନ୍ତା । ତେବେ ମଧ୍ୟ ଅଜଣା ହେଇକରି କହୁଛ, ଚାଲ ଘରକୁ ଚାଲ ! ସାବଧାନ, ଏବେ ଏମିତି କହିବ ନାହିଁ, କ'ଣ ଜଣା ଯଦି ସତରେ ବାହୁକୁ ଧରିକରି ସାଙ୍ଗରେ ଚାଲିଯିବି ।" ସେ ତାକୁ ଚିଡ଼େଇ, ବାହୁରେ ଝୁଲି ଚାଲିବାକୁ ଲାଗିଲା ।

ପ୍ରବୀର ବାହୁ ଛଡ଼େଇବାର ଚେଷ୍ଟା କଲାନାହିଁ । କାର ପାଖରେ ପହଞ୍ଚି କରି ସେ ବଡ଼ ସ୍ୱାଭାବିକ ଭଦ୍ରତାରେ ପଛଦ୍ୱାର ଖୋଲିଦେଲା ଆଉ ଏମିତି ଛିଡ଼ା ହେଇଗଲା ଯେମିତି ସ୍ୱୟଂ ସେହି ଗର୍ବୀ ମାଲିକିଆଣିର ଦୀନ-ହୀନ ଚାଳକ ଅଟେ ।

କଲୀ ତେଇଁପଡ଼ି ଦ୍ୱାର ବନ୍ଦକରି ଦେଲା ଆଉ ଚାଳକର ସିଟର ପାର୍ଶ୍ୱରେ ବହୁତ ଅଧିକାରରେ ବିସ୍ତୃତ ହେଇ ବସିଗଲା । ପ୍ରବୀର କିଛି ନକହି ଅନ୍ୟ ଦ୍ୱାର ଖୋଲି କରି ହ୍ୱୀଲ ବୁଲେଇବାକୁ ଲାଗିଲା ।

"ଡରିବ ନାହିଁ", ହସିକରି କଲୀ ବାହୁ ଧରିକରି ତାହାରି ଆଡ଼କୁ ଢଳିଗଲା । "ପ୍ରତ୍ୟେକ ତୃତୀୟ ମାସରେ ନିଜର ରକ୍ତର ପରୀକ୍ଷା କରେଇ ଥାଏ । ଆରେ, କେଉଁଠାକୁ ନେଇ ଯାଉଛ ।" ବାହୁ ଧରିବା ଶେଷ ହେଇଗଲା । "ମୁଁ ଆଜି ଘରକୁ ଯିବି ନାହିଁ ।"

ପରିଚିତ ଆକର୍ଷକ ସୁଗନ୍ଧ ସହିତ ଲୋଭନୀୟ ଚେହେରା ପ୍ରବୀରର କାନ୍ଧରେ ଲାଗିଗଲା । "ଚମକି କାହିଁକି ଗଲ, ମୁଁ ସତ କହୁଛି, ଆଜି ଘରକୁ ଯିବିନାହିଁ ।"

କ'ଣ ଆରଣ୍ୟକର ନତମୁଖୀ କଲୀ ଆଣ୍ଠୁରେ ମୁଣ୍ଡ ଲୁଚେଇ ସେଠାକୁ ଦଉଡ଼ି ଯାଇଥିଲା ?

ଇଏ ତ ପ୍ରତିଦିନର ବିଦ୍ରୋହିଣୀ କଲୀ ଥିଲା । ଯିଏ ନିଜ ହୃଦୟର ଢଳି ଉଠିଥିବା

ଜ୍ୱାଳାରେ ସମୂହ ସଂସାରକୁ ଫୁଙ୍କିବାକୁ ଚାହୁଁଥିଲା ।

"ମତେ ଲୌରୀନ ଆଣ୍ଟି ପାଖରେ ଛାଡ଼ି ଦିଅ, ଆଜି ମୁଁ ସେଠାରେ ରହିବି ।".

ଯେଉଁ ଲମ୍ପଟ ଲୌରୀନ ଆଣ୍ଟିର ପରିଚୟ ସେ ଘଣ୍ଟାଏ ପୂର୍ବରୁ ସ୍ୱୟଂ ହିଁ ତାକୁ ଦେଇ ସାରିଥିଲା, ଯେଉଁଠାରେ ସବୁବେଳେ ଏହା ମନେ ହେଉଥିଲା ଯେ ସି.ଆଇ.ଡ଼ି.ର ପୁରା ଗୁପ୍ତଚର ବିଭାଗ ତାହାର ଗୋଟିଏ ଗୋଟିଏ ନିଶ୍ୱାସର ହିସାବ-କିତାବ ରଖୁଥିଲା, ଦିନରାତି ଅଦୃଶ୍ୟ ତିଆରି କରି ତା'ର ପଛରେ ହାତକଡ଼ି ନେଇ ବୁଲୁଛି, ସେହି ଲୌରୀନର ସେଠାରେ ସ୍ୱଂୟ ରାତି କଟେଇବାର ପ୍ରସ୍ତାବ !

"କାହିଁକି, କ'ଣ ଆଜି ପୁଣି ସେଠାରେ ରହିବାକୁ ଯାଉଛ ?" ପ୍ରବୀରର କ୍ଷୀଣ ଧୀର ସ୍ୱରରେ କରୁଣା ଥିଲା ନା ବ୍ୟଙ୍ଗ ? କଲୀ ଅନ୍ଧାରରେ ତା'ର ଚେହେରା ଠିକ୍ ଭାବରେ ଦେଖିପାରୁ ନଥିଲା ।

"ପଚାରୁଛ କାହିଁକି ?" ସେ ହ୍ୱୀଲ ସହିତ ବୁଲୁଥିବା ବାହୁ ସହିତ ଚାଲି ଯାଉଥିଲା । "କାହିଁକି ନା ଆଇ ଡୋଣ୍ଟ ଟ୍ରଷ୍ଟ ମାଇସେଲ୍ଫ, ଚାଲ ବାମ ସଡ଼କ ଆଡ଼କୁ ମୋଡ଼ିଦିଅ । ତୃତୀୟ ମୋଡ଼ରେ ଆଣ୍ଟିର ବଙ୍ଗଳା ଅଛି । ଏମିତି ବଙ୍ଗଳା-ବଙ୍ଗଳା କେବଳ ଏମିତି ହିଁ ଅଛି, କିନ୍ତୁ ଆଣ୍ଟି ବଡ଼ ଗର୍ବରେ ତାକୁ 'ବଙ୍ଗଲୋ' ହିଁ କହିବା ପସନ୍ଦ କରେ, ବେଶ୍ ଏଠାରେ ଗାଡ଼ି ରଖିଦିଅ ।" ପ୍ରବୀର ଏ ଆଡ଼କୁ - ସେ ଆଡ଼କୁ ଦେଖିକରି ଗାଡ଼ି ରଖିଦେଲା । ଖାଲଢ଼ିପ ବସ୍ତିରେ ଦୁଇ-ତିନୋଟି ସବୁଠାରୁ ଛୋଟ ଧୂଆଁଳିଆ ବତୀ ମିଞ୍ଜି ମିଞ୍ଜି ହେଇ ଜଳୁଥିଲା ।

"କ'ଣ ଦେଖୁଛ ଏମିତି...." କାରର ଦ୍ୱାର ଖୋଲିକରି ସେ ହସି ହସି ଓହ୍ଲେଇ ଗଲା ।

"ଆଣ୍ଟିର ସଂକୀର୍ଣ୍ଣ ଗଳିରେ ତୁମର ଗାଡ଼ି ଯାଇପାରିବ ନାହିଁ, ଏକଦମ ସଂକୀର୍ଣ୍ଣ ଟନେଲ ଅଟେ । କାଲି କେତେବେଳେ ଯାଉଛ ତମେ ?"

ପ୍ରବୀର ସେହି ସ୍ପଷ୍ଟ ଭାରସାମ୍ୟ ଥିବା ସ୍ୱରକୁ ଶୁଣିକରି ଚମକି ପଡ଼ିଲା, "ତିନଟାରେ... କିନ୍ତୁ କ'ଣ ତମେ ସତରେ ଘରକୁ ଯିବ ନାହିଁ ?"

"ପୁଣି ସେହି..." ଅତ୍ୟାଚାରୀ ବଡ଼ ଆଖିରେ ଅପୂର୍ବ ଥଟ୍ଟା ପରିହାସର ବିଜୁଳୀ ଝଟକି ଗଲା । ଲେଉଟି କରି ତା'ର ଝରକା ପାଖରେ ଲାଖିଗଲା ।, "କେଉଁଠି କାନ୍ଧ ଉପରେ ମଧ୍ୟ ହାତ ଧରିବାକୁ ଦେଉ ନ ଥିଲ ଆଉ କେଉଁଠି ଏବେ ଛାଡ଼ିବାକୁ ମନ ହେଉନାହିଁ, କାହିଁକି ? ଚାଲୁ-ଚାଲୁ ତମକୁ ଗୋଟିଏ କଥାକହି ଦିଏ । କନଫେସନ ହିଁ କରିବି ତ ପୁରା କାହିଁକି କରିବି ନାହିଁ । ଯେଉଁ ଦିନ ତୁମର ନିର୍ବନ୍ଧ ହେଇଥିଲା, ସେଦିନ ମୁଁ ମଧ୍ୟ ମୋର ନିର୍ବନ୍ଧର ଉତ୍ସବ ପାଳନ କରିଥିଲି, ଜାଣିଛ କେଉଁଠି ? ଶ୍ମଶାନରେ !" ଓଠର ବଙ୍କା ହସରେ ସେହି ଚେହେରା କେତେ ପିଲାଳିଆ ମନେ ହେଉଥିଲା ବା ହୁଏତ ଡେଢ଼ା ସିଟ୍ଟି ବାହାର କରି ସେଦିନ ଚେହେରାକୁ ସେ ସ୍ୱୟଂ ହିଁ ବଦଳେଇ ଦେଇଥିଲା ।

ଆଜି ସେ ଯେମିତି ଆହୁରି ଛୋଟ ଛୁଆ ହେଇ ଯାଇଥିଲା ।

"ତମର କୁନ୍ନୀ ପରି ସାଢ଼ୀ ପିନ୍ଧିକରି ମୁଁ ମନକୁ ମନ ତମର ବାଗଦତ୍ତା ହେଇକରି ଗର୍ବ କରିବାକୁ ଲାଗିଥିଲି । ମୋର ଅତିଥି ଥରେ କୋକେଇରେ ବନ୍ଧାହେଇ ଆସିଥିବା ଶବ । ଯେଉଁଦିନ ତମର ବରାତ, ସେଦିନ ଥରେ ପୁଣି ସେହି ସାଢ଼ୀ ପିନ୍ଧିକରି ନବବଧୂ ହେବି । ତମର ଚାଦରର ଗଣ୍ଠି ମୁଁ ସ୍ୱୟଂହିଁ ଅନ୍ୟ ଜାଦୁକରି ଗଣ୍ଠି ଲାଗିଯିବତ ଚମକିବ ନାହିଁ ।" କାରର ଖୋଲା ଝରକାରେ ସେ ନିଜର ଚେହେରା ପ୍ରବୀରର ଗାଲରେ ଲଗେଇ ଦେଲା, "ତୁମର ହିଁ ଶବରେ ମୁଁ ମଶାଣିରେ ସାଧନା କରିଥିଲି । ସବୁକିଛି କରି ପାରେ ମୁଁ । ନୈନିତାଲରେ ଆମର ପଡ଼ୋଶୀରେ ଗୋଟିଏ ପରିବାର ରହୁଥିଲା । ତାଙ୍କର ଶଳାର ବିବାହ ହେଲା, ବିଚାରା ନିଜର ଛୋଟପିଲା ପରି ନବବଧୂର ପଛରେ ପାଗଳ ପରି ବୁଲୁଥିଲା । ବିବାହର ଷଷ୍ଠ ମାସରେ ହିଁ ବିଚାରାକୁ ଟି.ବି. ହେଇଗଲା । ଛୋଟ ପେଟରେ ଟ୍ୟୁମରର ମାରାତ୍ମକ ପେଣ୍ଟା ପେଣ୍ଟା ବିଞ୍ଚିହେଇ ଗଲା । ଯେତେବେଳେ ସେ ମରିଗଲା ତ ବିଚାରା ଅଶ୍ୱତ୍ଥ ବୃକ୍ଷର ତଳେ ଛିଡ଼ା ହେଇକରି ଅଞ୍ଜଳି ଭର୍ତ୍ତି ପାଣି ଏମିତି ଚଢ଼ାଉ ଥିଲା, ଯେମିତିକି ତା'ର ତୃଷାର୍ତ୍ତ ନବବଧୂ ତା'ର ଅଞ୍ଜଳିକୁ ସତରେ ମୁହଁ ଖୋଲିକରି ପାଣି ଢକଢ଼କ କରି ପିଇବାରେ ଲାଗିଛି । କେମିତି ଭାଗ୍ୟବତୀ ହେବ ସେ ! ମରିଲା ପରେ ମଧ୍ୟ ପତିର ହାତର ପାଣି ! ସେହିଥି ପାଇଁ ତ ଶାହଜହାଁ ଆଉରଙ୍ଗ ଜେବ୍‌କୁ ଲେଖିକରି ପଠେଇ ଥିଲେ 'ଧନ୍ୟ ଅଟେ ହିନ୍ଦୁ ଜାତି, ଯିଏ ମରି ଯାଇଥିବା ପିତାକୁ ମଧ୍ୟ ପାଣିଦିଏ ଆଉ ଜଣେ ତୁ ହେଉଛୁ, ଯିଏ ବଞ୍ଚିଥିବା ବାପକୁ ମଧ୍ୟ ବୁନ୍ଦିଏ ପାଣି ପାଇଁ ବ୍ୟାକୁଳ କରୁଛୁ ।"

କଲୀ ହ୍ୱିଲ୍‌କୁ ଧରିଥିବା ଚଉଡ଼ା ହାତ ଉପରେ ଝୁଙ୍କିପଡ଼ି ଓଠ ଲଗେଇ ଦେଲା । ରେଶମୀ ବାଳ ଗୁଚ୍ଛା ଗୁଚ୍ଛା ପ୍ରବୀରକୁ ରୋମାଞ୍ଚିତ କରି ପକେଇଲା । କିଛିକ୍ଷଣ ପର୍ଯ୍ୟନ୍ତ କଲୀ ଚେତନା ହରେଇ ବସିଲା, କିନ୍ତୁ ପୁଣି ସେ ନିଜର ବିଦ୍ରୋହୀ ଚିତ୍ତର ଲଗାମ ଟାଣି ଧରିଲା । ବାହାରେ ଛିଡ଼ା ହେଇକରି ସେ ସ୍ଥିର ଶାନ୍ତ ସ୍ୱରରେ କହିଲା, "ତମେ ଯାଅ ବହୁତ ରାତି ହେଇ ଗଲାଣି ।"

ପ୍ରବୀରର ଉତ୍ତରକୁ ପ୍ରତୀକ୍ଷା ନ କରି ସେ ବୁଲିଗଲା ଆଉ ଓଲଟି କରି ଦେଖି କୌଣସି ସଂକୀର୍ଣ୍ଣ ଗଳିରେ ହଜିଗଲା । କାଲି ପର୍ଯ୍ୟନ୍ତ ଯାହାର ସ୍ପର୍ଶର କଳ୍ପନାରେ ହିଁ ସେ ଘୃଣାରେ ଶିହରି ଉଠୁଥିଲା, ଆଜି ତାହାର ପଛରେ ଦଉଡ଼ି ଯାଇ ତାକୁ ବାହୁରେ ଧରିବାକୁ ସେ ବ୍ୟାକୁଳ ହେଇ ଉଠିଲା । ସେ କାରରୁ ଓହ୍ଲେଇ ଗଲା, କ'ଣ କଲିକତାରେ ମଧ୍ୟ ଏମିତି ନିର୍ଜନ ବଣର ବସ୍ତି ହେଇପାରେ ? ବସ୍ତି ମଧ୍ୟ କେଉଁଠି ଥିଲା ? ମନେ ହେଉଥିଲା କୌଣସି ଜାଦୁ ପରୀ ପରି ସେ କୌଣସି ଜଙ୍ଗଲରେ ପବନ ବେଗରେ ଚାଲିବାର ଶବ୍ଦରେ ଆଗକୁ ଚାଲି ଯାଇଛି ।

କିଛି ସମୟ ପର୍ଯ୍ୟନ୍ତ ପ୍ରବୀର ସେଠାରେ ଛିଡ଼ା ହେଇ ରହିଲା । ଜଣା ନାହିଁ ହୁଏତ

ତା'ର ଲୌରୀନ ଆଣ୍ଟି ନଥିଲେ ସେ ଫେରି ଆସିବ । କିନ୍ତୁ ଅନେକ ସମୟ ଛିଡ଼ା ହୋଇ ରହିଲା ପରେ ମଧ୍ୟ କଳୀ ଫେରିଲା ନାହିଁ । ହାତର ଘଡ଼ିରେ ନଅ ବାଜି ସାରିଥିଲା । ପ୍ରବୀର ଆସିକରି ଗାଡ଼ିରେ ବସିଗଲା, କାର ଷ୍ଟାର୍ଟ କରିବା ପାଇଁ ଟିକିଏ ଝୁଙ୍କିଲା ଆଉ ଦୁଇ ହାତରେ ଅନେକ ସମୟ ପର୍ଯ୍ୟନ୍ତ ଭରା ଦେଇଥିବା ଚେହେରାର ପରିଚିତ ସୁଗନ୍ଧ ତାକୁ କଷିକରି ବାନ୍ଧି ଧରିଲା । ଶେଷଥର ନିରାଶ ହୋଇ ଶୁନ୍‌ଶାନ୍ ଗଳିର ବିଚିତ୍ର ଛକ ଆଡ଼କୁ ଦେଖି ସାମ୍ନାକୁ ଗାଡ଼ି ଆଗେଇ ନେଲା ।

## ଏକୋଇଶି

ସେ ଘରେ ପହଁଞ୍ଚିଲା, ବାରଣ୍ଡାରେ ଛିଡ଼ା ହୋଇଥିବା ପରିବାରର ଭିଡ଼କୁ ଦେଖିକରି ଲଜ୍ଜିତ ହେଲା । ଚିନ୍ତିତ ବାପା ତା'ର ଅନୁପସ୍ଥିତିରେ କେତେଥର ପାଣ୍ଡେ ମହାଶୟଙ୍କୁ ଫୋନ କରି ସାରିଥିଲେ । ଜଣାନାହିଁ କୌଣସି ଦୁର୍ଘଟଣାର ବନ୍ଧନରେ ନ ପଡ଼ି ଆଉ, ବହୁତ ଜୋରରେ ଗାଡ଼ି ଚଲାଏ । ତାଙ୍କର ଉଦ୍‌ବିଗ୍ନ ସ୍ୱରର ଛୁଆଁ ହୁଏତ ପାଣ୍ଡେ ମହାଶୟଙ୍କୁ ମଧ୍ୟ ଲାଗି ଯାଇଥିଲା । କିଛି ସମୟ ପରେ ଗାଡ଼ିରେ କୁନ୍ନୀକୁ ନେଇକରି ସେ ସ୍ୱୟଂ ଉପସ୍ଥିତ ହୋଇଗଲେ । ଚିନ୍ତାନ୍ୱିତ ଜର୍ଜର ଦମ୍ପତି ଛୋଟ ପୁଅର ଅକାଳ ମୃତ୍ୟୁ ପାଇଁ ଆବଶ୍ୟକତାରୁ ଅଧିକ ଭୀରୁ ହୋଇ ଯାଇଥିଲେ । କୁନ୍ନୀକୁ ସେଠାରେ ଛାଡ଼ିକରି ପାଣ୍ଡେ ମହାଶୟ ଗାଡ଼ି ନେଇକରି ନଟୁ ଘୋଷର ଘରକୁ ମଧ୍ୟ ଯାଇକରି ଦେଖି ଆସିଥିଲେ - ଫେରିକରି ଆସୁଥିବା ବେଳେ ପ୍ରବୀରର ଗାଡ଼ି ଦେଖି ପାରିଥିଲେ ।

"କେଉଁଠାକୁ ଚାଲି ଯାଇଥିଲ ପୁଅ, ମୁଁ ତ ପୁରା କଲିକତା ହିଁ ଖୋଜି ଆସିଲି । କୁନ୍ନୀ ତ କାନ୍ଦିବାକୁ ଲାଗିଲା, ବଡ଼ ପତଳା ହୃଦୟ ଆମ କୁନ୍ନୀର ।"

ପ୍ରବୀର ଲଜ୍ଜିତ ହେଲା । ବାପାଙ୍କୁ ମଧ୍ୟ କ'ଣ ଦରକାର ଥିଲା, ଯେ ତାଙ୍କୁ ଫୋନ କରିଦେଲେ । କୁନ୍ନୀ ମୂକ କଟାକ୍ଷରେ ଭାବୀ ପତିକୁ ବିନ୍ଧିକରି ରଖିଦେଲା ।

"ତୁ ତ କେବେ ଏତେ ଡେରି କରୁ ନ ଥିଲୁ ପୁଅ । ଏହା ମୁଁ ବର୍ତ୍ତମାନ ପାଣ୍ଡେ ମହାଶୟଙ୍କୁ କହୁଥିଲି ।" ଅମ୍ମା ଭାବୀ ପୁତ୍ରବଧୂ ପାଖରେ ଏମିତି ଅଧିକାରରେ ଛିଡ଼ା ହୋଇଥିଲା ଯେମିତିକି ତା'ର ବରଣ କରି ଏବେ ଏବେ ସବାରିରୁ ଓହ୍ଲେଇଛି ! କୁନ୍ନୀ ହୁଏତ ଭାବୀ ଶାଶୁ-ଶ୍ୱଶୁରଙ୍କର ଉପସ୍ଥିତି ସାମ୍ନାରେ ମୁଣ୍ଡ ଘୋଡ଼େଇ ନେଇଥିଲା । ଏଥିରେ ତା'ର ଗୋଲ ଗୋଲ ଚେହେରା ଆହୁରି ଗୋଲ ଲାଗୁଥିଲା । ପତିର ରୁକ୍ଷ-ଶୁଖିଲା ବାଳ ଆଉ ସୁଦର୍ଶନ ଚେହେରାରୁ ସେ ନିଜ ଆଖି ଘୁଞ୍ଚେଇ ପାରୁ ନ ଥିଲା । କାଲି ସେ ଚାଲିଯିବ, ଏହା ଭାବିକରି ସ୍ନିଗ୍ଧ ଦୃଷ୍ଟି ତରଳ ହୋଇ ଉଠିଥିଲା ।

"ଏବେ ବହୁତ ରାତି ହୋଇ ଯାଇଛି । ସମ୍ବୁଦୁଣୀ, ଆମକୁ ଆଜ୍ଞା ଦିଅନ୍ତୁ, ଆପଣଙ୍କ

ପୁଅ ଘରକୁ ଆସିଗଲା, ଆମର ମଧ୍ୟ ଚିନ୍ତା ଦୂର ହେଲା ।"

"ବସନ୍ତୁ ନା", ମାୟା ଦୁଇ ତିନୋଟି ଚଉକି ଟାଣିକରି ସାମ୍ନାକୁ ଆଗେଇ ଦେଲା । କୁନ୍ନୀ ହୁଏତ ବସି ମଧ୍ୟ ଯାଇଥାନ୍ତା, କିନ୍ତୁ ପାଣ୍ଡେ ମହାଶୟ ଅଧୈର୍ଯ୍ୟ ହେଇ ଉଠିଗଲେ ।

"ନା ଝିଅ, ଏବେ ବସିବୁ ନାହିଁ-ଦଶଟା ବେଳ ଟ୍ରେନରେ ମନ୍ତ୍ରୀ ମହାଶୟ ଦିଲ୍ଲୀ ଯାଉଛନ୍ତି, ଯିବା ଆଗରୁ ତାଙ୍କୁ ପୁଣି ଥରେ ରିମାଇଣ୍ଡ କରିବାକୁ ପଡ଼ିବ । ଆଚ୍ଛା ପୁଅ, ଟିଲ ଉଇ ମୀଟ୍", ସେ ବହୁତ ଗେଲରେ ଭାବୀ ଜ୍ୱାଇଁର ପିଠି ଥାପୁଡ଼େଇ ଦେଲେ । ସମୁଦି-ସମୁଦୁଣୀଙ୍କ ଠାରୁ ବିଦାୟ ନେଇ ଆଉ ଅନିଚ୍ଛାରେ ଅଟକି ଯାଉଥିବା ଝିଅକୁ ଏକ ପ୍ରକାର ଟାଣିକରି କାରରେ ବସେଇ ଦେଲେ ।

କାର ଗେଟ୍‌ରୁ ବାହାରିଲା ମାତ୍ରେ ଅମ୍ମା ଡେରିରେ ଘରକୁ ଫେରିଥିବା ପୁତ୍ର ସାମ୍ନାରେ ଛିଡ଼ା ହେଇକରି କାନ୍ଦ କାନ୍ଦ ସ୍ୱରରେ କହିବାକୁ ଲାଗିଲା, "ଆଜି ତୁ ଆମ ଦୁଇଜଣଙ୍କର ବୟସ ଖୁବ୍ କମ୍‌ରେ କୋଡ଼ିଏ ବର୍ଷ ବଢ଼େଇ ଦେଲୁ ପୁଅ । ମନ୍ତ୍ରୀ ମହାଶୟ ସବୁ ଠିକ୍ କରିଦେବେ । ପାଣ୍ଡେ ମହାଶୟ ବର୍ତ୍ତମାନ କହିଲେ ଯେ ତୁ ମଧ୍ୟ ପନ୍ଦର ଏପ୍ରିଲ ପାଇଁ ରାଜି ହେଇ ଯାଇଛୁ । ସେତେବେଳ ପର୍ଯ୍ୟନ୍ତ ଆମର ମଧ୍ୟ ସବୁ ସୁବିଧା ଅଛି । ଜୟାର ଅପରେଶନ ମାର୍ଚ୍ଚରେ ଅଛି ଆଉ ତୋର ବଦଳି ମଧ୍ୟ ହେଇଯିବ ।"

ଏତେ ଆନନ୍ଦର ଦିନରେ ମଧ୍ୟ ପୁଅର ଶୁଖିଲା ଚେହେରାର ରହସ୍ୟ ଅମ୍ମା ବୁଝି ପାରିଲା ନାହିଁ । ସେ କିଛି ନ କହି ନିଜ କୋଠରିକୁ ଚାଲିଗଲା । ମାୟା ଖାଇବା ପାଇଁ ଡାକିବାକୁ ଗଲାରୁ କହିଦେଲା, "କେଉଁଠି ଖାଇ ଆସିଛି", ଅମ୍ମା ଅନୁତାପ କରିବାକୁ ଲାଗିଲା, କିନ୍ତୁ ସେ ଆସିଲା ନାହିଁ । ହାରିକରି ମାୟା କୋଠରିରେ ହିଁ କ୍ଷିରୀର ଗିନା ରଖି ଆସିଲା । ସେହି ରାତିରେ ପ୍ରବୀର ଦ୍ୱାରର ହୁଡ଼କା ଖୋଲିହିଁ ରଖି ଦେଇଥିଲା । ସାମାନ୍ୟ ପବନ ବହିଲେ ଦ୍ୱାର ହଲୁଥିଲା, ତେବେ ସେ ଚମକି ପଡ଼ି ଦେଖିବାକୁ ଲାଗୁଥିଲା । ଜଣା ନାହିଁ ସ୍ୱଭାବ ବଶତଃ ଆନନ୍ଦୀ ସେହି ସୁଗନ୍ଧିତ ବାଳିକା କୋଠରିରେ ହଠାତ୍ ଡେଇଁ କରି ଛୋଟ ଚଉକିରେ ହାତ-ପାଦ ଏକାଠି କରି ଶୋଇଯିବ ।

କିନ୍ତୁ ସେ ଆସିଲା ନାହିଁ । ଆସିଥାନ୍ତା ମଧ୍ୟ କେମିତି ? କ'ଣ ସେ ସ୍ୱୟଂ ହିଁ ତାହାର ଚେହେରାରେ ନିଜ ଚେହେରା ଲଗେଇ କହି ଯାଇ ନ ଥିଲା ଯେ ଏବେ ସେ ନିଜକୁ ଟ୍ରଷ୍ଟ କରୁ ନାହିଁ ।

ତା' ପରଦିନ ତିନିଟା ବେଳେ ତା'ର ଯିବାର ଥିଲା । ଜଣା ନାହିଁ, ଯିବା ପୂର୍ବରୁ ହୁଏତ ଆସିଯିବ । କିନ୍ତୁ ତା'ର ବ୍ୟର୍ଥ ଆଶାର ଫମ୍ପା ଲାଳସାକୁ ପ୍ରବୀର ସ୍ୱୟଂ ଜାଣିଥିଲା । ଆସିଲେ କେଉଁ କଥା ହେଇ ଯାଇଥାନ୍ତା ? ସେ ମୁଣ୍ଡ ଘୋଡ଼େଇ କରି ଅମ୍ମା ପାଖରେ ଛିଡ଼ା ହେଇଥିବା କୁନ୍ନୀକୁ ଠେଲି ପାରିଥାନ୍ତା ?

ପ୍ରବୀର ଚାଲିଗଲା ଆଉ ତାହାର, ଯିବାର ତିନିଘଣ୍ଟା ପରେ ଦିନ ବୁଡ଼ିଗଲା ଶୁଖିଲା ଚେହେରା ନୁଆଁଇ କରି କଲୀ ଦ୍ୱାରରେ ଛିଡ଼ା ହେଇ ଗଲା । ମାୟା କେକଟସ୍‌ର ଗମଲା

ଠିକ୍ କରୁଥିଲା । ତାକୁ ଦେଖିଲା ମାତ୍ରେ ହାତ ପୋଛିକରି ଆଗେଇ ଆସିଲା । ସେ ଉତ୍ସାହରେ ଯେମିତି ଫାଟି ପଡୁଥିଲା ।

"ଆରେ, କ'ଣ ଆପଣ ପୁଣି ଗସ୍ତରେ ଚାଲି ଯାଇଥିଲେ ? ଜାଣିଛନ୍ତି, ବଡ଼ ଭାଇର ବାହାଘରର ଡେଟ୍ ଫିକ୍ସ ହେଇଗଲା । ଏପ୍ରିଲରେ ହେବ । ମୁଁ ମାର୍ଚ୍ଚରେ କିଛିଦିନ ପାଇଁ ପାହାଡ଼କୁ ଯାଇକରି ପୁଣି ଫେରି ଆସିବି । ଅପାର ଅପରେଶନ ମଧ୍ୟ ଅଛି ନା - ଆପଣ ଆସିବେ ନା ବାହାଘରକୁ ?"

ଶୁଖିଲା ଚେହେରା ଆହୁରି ଶୁଖିଗଲା । ଫିକା ହସ ହସିକରି, ଏକଦମ ବଡ଼ଭାଇର ଚେହେରାର ଛାଞ୍ଚରେ ଗଢ଼ା ନେଇଥିବା ଛାପର ଆକର୍ଷଣ ଭଉଣୀକୁ କଲୀ ହାତ ଧରିକରି ନିଜ କୋଠରିକୁ ଟାଣି ନେଇଗଲା ।

"ଏବେ ଦେଖ ମାୟା, କାଲି ତ ଯାଉଛି । ନୂଆ ଯାଗା ଅଟେ ଆଉ ନୂଆ ଚାକିରି । ଏବେ ତ ଏହା ଧରିନିଅ ଯେ ଯିବି ନିଜ ପାଦରେ, ଆସିବା ପରର ପାଦରେ । କ'ଣ ତମର ବଡ଼ ଭାଇ ଚାଲିଗଲେ ?"

"ଆରେ ହଁ, କେତେ ବେଳର", ନିର୍ଦ୍ଦୋଷ ମାୟା କ'ଣ କେବେ ସ୍ୱପ୍ନରେ ମଧ୍ୟ ଭାବି ପାରିବ ଯେ ତା'ର ସାମ୍ନାରେ ହସୁଥିବା ସେହି ଭୁବନ ମୋହିନୀ କାଲି ତାର ବଡ଼ ଭାଇର କାନ୍ଧରେ ଲାଗି କ୍ଷଣକ ପାଇଁ ଇନ୍ଦ୍ରାଣୀ ହେଇ ଯାଇଥିଲା ।

"ବଡ଼ ଭାଇତ ତିନିଟା ବେଳେ ଚାଲିଗଲେ, ଦିଲ୍ଲୀରୁ କାବୁଲ ପହଞ୍ଚିବା ପାଇଁ ଶୁଣିଛି ସାତ ଘଣ୍ଟା ଲାଗେ । କିନ୍ତୁ ଛୁଟି ହିଁ ନ ଥିଲା ।" ଆଶାର ବାୟୁଶୂନ୍ୟ ଦୀପର ମୃତପ୍ରାୟ ଜ୍ୟୋତି-କିରଣ ମଧ୍ୟ ଦପ୍ କରି ଲିଭିଗଲା । ଯେଉଁ ଦୀପକୁ କଲୀ ସ୍ୱୟଂ ଫୁଙ୍କି କରି ଲିଭେଇ ଦେଇଥିଲା, ସେଥିରେ କ'ଣ ଗୋଟିଏ ବତୀ ଅଜଣାରେ ଏବେ ପର୍ଯ୍ୟନ୍ତ ଦିକି-ହିକି କରୁଥିଲା ? ଜଣା ନାହିଁ ନ ଥାଇପାରେ ? ଦିନକର ଛୁଟି ବଢ଼େଇ ମଧ୍ୟ ହେଇପାରେ ତ ?

"ଜାଣିଛ, ବଡ଼ ମଜା ହେଲା", ମାୟା କଲୀ ହାତ ଧରି ଦେଲା, "ସତରେ ତମେ ମିସ କଲ । କାଲି ଏଠାରେ ରହିଥିଲେ, ତମେ କୁନ୍ନୀକୁ ଦେଖି ପାରିଥାନ୍ତ ।"

ଉତ୍ତେଜନାଜନିତ ତେଜସ୍ୱୀ କଲୀ ନଇଁପଡ଼ି ବିନମ୍ର ହେଇଗଲା, "ଆଚ୍ଛା । କାଲି କ'ଣ ଏଠାକୁ ଆସିଥିଲା ?"

"ହଁ, ଜଣାନାହିଁ କାଲି ପାର୍ଟି ପରେ ବଡ଼ଭାଇ କେଉଁଠାରେ ଅଦୃଶ୍ୟ ହେଇଗଲେ ।"

କଲୀର ଚେହେରା ଓଠ ଠାରୁ ଆରମ୍ଭ ହେଇ କର୍ଣ୍ଣମୂଳ ପର୍ଯ୍ୟନ୍ତ ଲାଲ ହେଇଗଲା । ସରଳା ମାୟା ନିଜର ପାଗଳାମିରେ କହିବାରେ ଲାଗିଥିଲା, "ଏଠାରେ ବାପା, ଅମ୍ମାର ଖରାପ ଅବସ୍ଥା ହେଇଗଲା । ଅସଲରେ ଯେତେବେଳେ ଛୋଟ ଭାଇର ଟେଲିଗ୍ରାମ ଆସିଲା, ତେବେ ମଧ୍ୟ ହଠାତ୍ ଗୋଳି ପରି ଦଗ୍ଧ ହେଇଥିଲା ଆଉ ପୁଣି ଛୋଟ ଭାଉଜ ମଧ୍ୟ ପର ଉତ୍ପନ୍ନ କରି ଏମିତି ଫୁର କରି ଉଡ଼ିଗଲେ । ଏଇଥି ପାଇଁ ନୁହେଁ ଏବେ ଭଲ

କଥା ଚିନ୍ତା ମଧ୍ୟ କରିପାରନ୍ତି ନାହିଁ । ଲାଲ ବଜାରରେ ପୋଲିସର ଲାଠି–ଚାର୍ଜ ହେଇଛି, କେଜାଣି ପୁଅ ସେଠାରେ ନଥାଉ; କେବେ କହୁଥିଲେ, ହେଉ ନ ହେଉ, ମୋଟର ଧକ୍କା ଦେଇଥିବ । ପାଣ୍ଡେଜୀଙ୍କୁ ଫୋନକରି ଦେଲା, ଆଉ ସେ ବିଚରା ତୁରନ୍ତ ଦଉଡ଼ି ଆସିଲେ । ଶୁଣିଲି, କୁନ୍ନୀ ବିଚାରି କାନ୍ଦିବାକୁ ମଧ୍ୟ ଲାଗିଥିଲା ।"

ସଉତୁଣୀର ଈର୍ଷାରେ କଲୀର ସର୍ବାଙ୍ଗ ଜଳି ଉଠିଲା । ଥରେ ସମଗ୍ର ସଂସାରକୁ ଭସ୍ମ କରିବାର ଜ୍ୱାଳା ଆଖିରେ ପୁଣି ଓହ୍ଲେଇ ଆସିଲା ।

ଯେଉଁ ନିର୍ଦ୍ଦୟ ତଟସ୍ଥ ହେଇ ତାକୁ ଥରକୁ ଥର ଦୂରକୁ ଠେଲି ଦେଉଥିଲା, ଆଜି ଚାଲିବା ସମୟରେ ତା'ର କ୍ଳାନ୍ତ ମୁଣ୍ଡ ଉପରେ ନିଜର ଚଉଡ଼ା ହାତ ପାପୁଲିର କ୍ଷଣକର ସ୍ପର୍ଶ ପାଇଁ ତାକୁ କେଉଁ ଅପୂର୍ବ ଖୁଷିରେ ସେ ଏମିତି ଭ୍ରମରେ ପକେଇ ଥିଲା । କାହିଁକି କୁନ୍ନୀର ନାମରେ ତାହାର ସର୍ବାଙ୍ଗ ଜଳିବାକୁ ଲାଗିଥିଲା ।

ଯେତେବେଳେ ସେ ଖୁଷିରେ ଦୀର୍ଘସ୍ଥାୟୀ ରହିଥିବା ଚଉଡ଼ା ହାତ ପାପୁଲି ଉପରେ ନିଜର ଓଠର ସିକ୍ତ ମୋହର ଲଗେଇଥିବା ପାଇଁ ନଇଁ ଥିଲା କ'ଣ ତେବେ କ୍ଷଣକ ପାଇଁ ମଧ୍ୟ ତା'ର ମସ୍ତିଷ୍କରେ ଏହି କଟୁ ସତ୍ୟ ମନକୁ ହଠାତ୍ ବିଚାରକୁ ଆସିଲା ନାହିଁ ? ସରଳ ଭାବରେ ଅଧୀନସ୍ଥ ହେଇ ଯାଇଥିବା ନାରୀ କ'ଣ କେବେ ସ୍ଥାୟୀ ରୂପରେ ପୁରୁଷର ହୃଦୟାସନ ଉପରେ ବସିକରି ରହିପାରେ ? କେବେ ନୁହେଁ କୌଣସି କ୍ଷଣରେ ମଧ୍ୟ କୁନ୍ନୀ ଆସିକରି ତାଙ୍କର ଫମ୍ପା ନାମହୀନ ସିକ୍ତ ମୋହରକୁ ବ୍ୟର୍ଥ କରିପାରେ । କୁନ୍ନୀର କୁଳ ଅଛି, ଗୋତ୍ର ଅଛି, ବଂଶ ଅଛି, ପିତାର ପ୍ରତିଷ୍ଠା ଅଛି ! ଆଉ କଲୀର ନା କୁଳ ଅଛି, ନା ଗୋତ୍ର, ନା ବଂଶ ନା ପିତାର ପ୍ରତିଷ୍ଠା ଅଛି ।

"ଆରେ ନିଜରତ ଜିନିଷ ପତ୍ର ମଧ୍ୟ ବନ୍ଦ କରିଦେଲା ? ଆମ୍ମା ତ ମତେ ଏହାହିଁ ଦେଖିବାକୁ ପଠେଇ ଥିଲା ଯେ ଦେଖିଆସେ, ଆପଣ ଆସି ଯାଇଛନ୍ତି ନା ନାହିଁ । ଆରେ ମୁଁ ଏଠାରେ କଥାରେ ଲାଗିଗଲି । କହୁଥିଲି - 'କାଲି ତ ବିଚରା ଏତେ ଦୂର ଚାଲିଯିବ, ଦୁଇ ବେଳା ତାକୁ ତା'ର ପସନ୍ଦର ସବୁ ଜିନିଷ ଖୁଏଇ ଦିଏ' - ଆଉ ପସନ୍ଦ ମଧ୍ୟ କେମିତି ଆପଣଙ୍କର..." ସେ ହସିକରି କଲୀର ଉଦାସୀନତାର ବ୍ୟୂହ ଭାଙ୍ଗିବାର ଚେଷ୍ଟା କଲା, "ଶୁଣିଲି ଆପଣଙ୍କର କଲରା ବହୁତ ପସନ୍ଦ ଅଟେ ?"

"କ'ଣ କରିବି ମାୟା", କଲୀ ନିଜର ବଡ଼-ବଡ଼ ଆଖି ମାୟାର ସରଳ ଚେହେରାରେ ଜଡ଼େଇ ଦେଲା, "ମତେ ସବୁବେଳେ କଷା, ପିତା, ରାଗ ଜିନିଷ ହିଁ ପସନ୍ଦ ହୁଏ, କିନ୍ତୁ ଆଜି ତ କିଛି ମଧ୍ୟ ଖାଇବାକୁ ଇଚ୍ଛା ହେଉ ନାହିଁ, ବହୁତ ଥକି ଯାଇଛି ?"

"ବାରେ, ଥକି କେମିତି ଗଲ । ଆମେ ଆପଣଙ୍କ ପାଇଁ ଏତେସବୁ ଜିନିଷ ତିଆରି କରି ଭୋକରେ ବସିଛୁ ।" ମାୟା ତାକୁ ରନ୍ଧା ଘରକୁ ଟାଣି ନେଇ ଗଲା । ଜୟା-ଦାମୋଦର ଝିଅ ସହିତ ସିନେମା ଦେଖିବାକୁ ଚାଲି ଯାଇଥିଲେ । ଦୁଇଦିନ ପୂର୍ବରେ

ନିଜ କୋଠରିରେ ହିଁ ଭୟାନକ ଗୃହ ଯୁଦ୍ଧର ଏକ-ଏକ ଅଗ୍ନିକଣା ଉଡୁଥିବା ଦେଖିଥିଲା । ରାତିସାରା ଜୟାର କଇଁ କଇଁ କାନ୍ଦ ତାକୁ ଶୋଇବାକୁ ଦେଇ ନଥିଲା । ମନେ ହେଉଥିଲା କ୍ରୋଧରେ ନିଆଁରେ ପୋଡ଼ି କାନ୍ଦି-ବୋବେଇ ଜୟା କୌଣସି କ୍ଷଣରେ ପତିକୁ ଧକ୍କା ମାରିକରି ବାହାର କରିଦେବ । କିନ୍ତୁ କେମିତି ବିଚିତ୍ର ମନୋମାଳିନ୍ୟ ଥିଲା ଏହି ଦମ୍ପତିଙ୍କର । କେବେ ଜଣେ-ଅନ୍ୟର ରକ୍ତର ତୃଷାର୍ତ୍ତ ଆଉ କେବେ ପ୍ରଣୟର ।

ଅମ୍ମା କଲୀର ଥାଳିକୁ ଗିନାମାନଙ୍କରେ ସଜେଇ ଦେଇଥିଲା ସେ ହସିବାକୁ ଲାଗିଲା- "ମନେ ହେଉଛି କାଲି ପ୍ଲେନରେ ହିଁ ବଦହଜମ ହେଇ ମରିବି ଅମ୍ମା !"

"ଚୁପ୍‌କର, ଏତେଦୂର ଯାଉଛୁ ଆଉ ଏମିତି ଅଲକ୍ଷଣୀ କଥା ମୁହଁରୁ ବାହାର କରୁଛୁ । ମରୁ ତୋର ଶତ୍ରୁ । ମୋର ତ ମନ ଜଣାନାହିଁ କେମିତି ହେଉଛି । ସେଠାରେ ତ ସୀତାଜୀଙ୍କୁ ମଧ୍ୟ ରାକ୍ଷସୀମାନେ ଘେରି ପକେଇ ଥିଲେ । ତାଙ୍କୁ ଛଡ଼େଇବାକୁ ଯେମିତି ରାମଜୀ ଆସିଥିଲେ, ଭଗବାନ କରନ୍ତୁ ତତେ ଛଡ଼େଇବାକୁ ମଧ୍ୟ କେହି ଆସି ଯାଉ ।"

"ଯେଉଁ ରାମଜୀଙ୍କୁ ଛଡ଼େଇବାକୁ ଡାକିବି ତାଙ୍କର ନାମ ଶୁଣିକରି ପୁଣି କ'ଣ ତମେ ତାଙ୍କୁ ଆସିବାକୁ ଦେବ ଅମ୍ମା ? ତାହେଲେ ତ ତମେ ନିଜ ରୋଷେଇ ଘରରୁ ମତେ ଏବେ ବାହାରକୁ ଠେଲିଦେବ ।" କଲୀ କଲରାକୁ ମୁହଁରେ ଭର୍ତ୍ତି କରି ଶୋଷି ଶୋଷି ଅମ୍ମାକୁ ଚିଡ଼େଇବାକୁ ଲାଗିଲା ।

ଅମ୍ମାର ଚେହେରା ଜଣାନାହିଁ କେମିତି ହେଇଗଲା । "କାହିଁକିରେ, କ'ଣ କେଉଠି କେଉଁ ମୁସଲମାନ-ଖ୍ରୀଷ୍ଟିଆନ ସହିତ ବାହା ହେଉ ନାହୁଁ ତ ? ଏମିତି କରିବୁ ନାହିଁ, କଲୀ ! କେତେଥର ତତେ ତୋର, ମା-ବାପାଙ୍କ ଠିକଣା ମାଗି ସାରିଛି । କିନ୍ତୁ ତୁ ଦେଲେ, ତେବେ ନା !"

"କ'ଣ କରିବ ଠିକଣା ନେଇକରି ଅମ୍ମା ?" କଲୀର ମୁହଁରେ ପଡ଼ିଥିବା କଲରା ନିଜର ସ୍ୱଭାବଗତ ପିତା ଭାବ ହରେଇ କରି କେତେ ମିଠା ଲାଗୁଥିଲା ।

"ଆରେ କରିବି କ'ଣ ପାଗଲୀ । ଏହା ଲେଖିବି ଯେ ଏମିତି ସୁନାର ଖଣ୍ଡ ବାଳିକା ଦେଇଛନ୍ତି ଭଗବାନ, ବାହା ଦେଇକରି ରାଜରାଣୀ ବନେଇ ଦିଅ ।"

"କିନ୍ତୁ ରାଜା ମିଳିଲେ ତେବେ ନା ଅମ୍ମା", କଲୀର ବଡ଼ ବଡ଼ ଆଖିରେ କ୍ଷଣକୁ-କ୍ଷଣ ବଦଳୁଥିବା ରଙ୍ଗକୁ ମାୟା ଏକଦୃଷ୍ଟିରେ ଦେଖୁଥିଲା । "ଏଇଥି ପାଇଁ ତ ରାବଣର ଦେଶକୁ ଯାଉଛି ।" ସେ ଆଙ୍ଗୁଳି ଗୁଡ଼ିକ ଚାଟି ଚାଟି ଉଠିଗଲା ।

"ଆରେ ତତେ କିଏ କଥାରେ ହରେଇ ପାରିବ", ଅମ୍ମା ଉଠିକରି ଗିନା ଭର୍ତ୍ତି କ୍ଷୀରି ନେଇ ଆସିଲା ।

"ପୁଅକୁ ମୋର କ୍ଷୀରି ବହୁତ ପସନ୍ଦ ହୁଏ, ତାହାରି ପାଇଁ ତିଆରି କରିଥିଲି କିନ୍ତୁ ଖାଇଲା କେଉଁଠି । ଦୁଇ ଚାମଚ ଖାଇକରି ଉଠିଗଲା ।"

କଲୀ ହସ-ଥଟ୍ଟା ସବୁ ଭୁଲିଗଲା । ବିବେକହୀନ ଜିହ୍ୱା ଉପରେ ଗୋଟିଏ ନିର୍ଲଜ୍ଜ

ଆବେଦନ ଖସୁ-ଖସୁ ରହିଗଲା । 'ସେହି ଅଇଁଠା କ୍ଷୀରି ମତେ ଆଣି ଦିଅ ନା ଅମ୍ମା !' ଜିଭ କାମୁଡ଼ି ନ ଦେଲେ ହୁଏତ ସତରେ ନିଜର ସ୍ୱାଭାବିକ ଖରାପ ଭାଷା କହୁଥିବା ନିର୍ଲଜ୍ଜତାରେ ସେହି ଅଇଁଠା କ୍ଷୀରିର ଗିନାକୁ ମାଗି ବସିଥାନ୍ତା ।

ସେହିଦିନ ମାୟା ସ୍ୱୟଂ ହିଁ ଜିଦ୍‌କରି ତା ପାଖରେ ଶୋଇ ପଡ଼ିଲା ।

"ଆପଣତ କହୁଛନ୍ତି, ଏବେ ଆପଣ ଆପଣଙ୍କ ନୂତନ ଠିକଣା ମଧ୍ୟ ଜାଣନ୍ତି ନାହିଁ, ତା ହେଲେ ଆପଣ ଆମକୁ ପ୍ରଥମେ ଚିଠି ଲେଖିବେ । ଆମର ଠିକଣା ତ ଜାଣନ୍ତି ନା ?" ମାୟା ହସିକରି ତା ଆଡ଼କୁ କଡ଼ ଲେଉଟେଇ ଶୋଇଗଲା ।

ଯଦି, ସେହି ଠିକଣାକୁ କଲୀ ଭୁଲି ପାରିଥାନ୍ତା ! "କାହିଁକି ଲେଖିବି ନାହିଁ ମାୟା", କଲୀ ସେହି ସାମାନ୍ୟ-ପରିଚିତା ସ୍ନେହୀ ବାଳିକାର ମୁଠାକୁ ଦୁଇ ହାତରେ ଧରି ରଖିଲା ।

ସେହି ଚେହେରାକୁ ଦେଖିକରି ଯତ୍ନରେ ଭୁଲି ଯାଇଥିବା ଅନ୍ୟ ଚେହେରା ସାମ୍ନାକୁ ଆସିଗଲା ।

ତାକୁ ହୁଏତ ସେ ଏବେ କେବେ ଦେଖି ପାରିବ ନାହିଁ, କିନ୍ତୁ ଜଣାନାହିଁ, ସେ ତାକୁ ଦେଖି ନେବ । ପତ୍ନୀ ସହିତ ଦେଖିବାକୁ ଯାଇଥିବା କୌଣସି ଫେସନ ପେରେଡ଼ରେ, ବିଶ୍ୱମେଳାର ସଜା ହେଇଥିବା କକ୍ଷରେ ବା କୌଣସି ଫେସନ ପତ୍ରିକାର ମୁଖ ପୃଷ୍ଠାରେ !

ଥରେ କଲୀର ମନକୁ ଆସିଲା ଯେ ଗୋଟିଏ ଦିନ ପାଇଁ ଏଲ୍‌ହାବାଦ ଚାଲିଯାଏ, ବିବିୟନ ସହିତ ଦେଖାକରି ତାକୁ ନିଜ ଜୀବନର ନୂତନ ମୋଡ଼ ଉପରେ କ୍ଷଣକ ପାଇଁ ଛିଡ଼ା କରିବାରେ ଦୋଷ ବା କ'ଣ ଥିଲା । ସେ ପ୍ରବୀରକୁ ଦେଖି ମଧ୍ୟ ସାରିଥିଲା । ଆଉ ଦେଖିକରି ହୁଏତ କିଛି ଅପ୍ରସନ୍ନ ମଧ୍ୟ ହେଇଥିଲା, କିନ୍ତୁ ଷ୍ଟେସନକୁ ଯିବା ସମୟରେ ପୋଷ୍ଟମେନ ବିବିୟନର ଚିଠି ଦେଇଗଲା । ପଢ଼ିଲା ମାତ୍ରେ କଲୀ ବିରକ୍ତ ହେଇ ଛିଣ୍ଡେଇ ଦେଲା । ଏବେ କ'ଣ କରିବ ଏଲ୍‌ହାବାଦ ଯାଇକରି । ଯାହାକୁ ଦେଖି ସେହି ପକ୍ଷୀବସା ତିଆରି କରିବା ପାଇଁ କୁଟା ବାଛୁଥିଲା । ବିବିୟନର ନିର୍ବନ୍ଧ ହେଇ ଯାଇଛି । ଆଉ ନିକଟ ଭବିଷ୍ୟତରେ ହେବାକୁ ଥିବା ନିଜ ବିବାହ ପାଇଁ ସେ କଲୀକୁ ନେଇକରି ଦିଲ୍ଲୀ ଯିବାକୁ ଚାହୁଁଥିଲା । କଲୀର କ'ଣ ଏହି କାମ ରହି ଯାଇଥିଲା ? ମଡ଼େଲ ଅଟେ, କ'ଣ ସେ ନିଜର ବନ୍ଧୁ-ପ୍ରିୟଜନ ମାନଙ୍କର ମଡ଼େଲ ହିଁ ହେଉଥିବ ? ଏବେ ନାଃ ସେ କାହାକୁ ନିଜର ଠିକଣା ଦେବ ନା ଚିଠି ଲେଖିବ କୌଣସି କେନ୍ଦ୍ରଚ୍ୟୁତ, ଉଲ୍କାଖଣ୍ଡ ପରି ସେ ନବୀନ ପରିବେଶରେ ଗଭୀର ବୁଡ଼ ପକେଇ କରି ଏମିତି ଲୁଚିଯିବ ଯେ କେହି ଜାଲ ପକେଇ କରି ମଧ୍ୟ ତାକୁ ଖୋଜି ପାରିବ ନାହିଁ ।

ଏମିତି ହିଁ ପ୍ରଥମ ବୁଡ଼ ପକେଇ ଥିଲା ସ୍ୱୟଂ ତାହାର ଜନ୍ମଦାୟିନୀ ଜନନୀ, ଯେତେବେଳେ ତାହାର ଛୋଟ ଗଳା ମୋଡ଼ିକରି ତାକୁ ଏକ ଅଜଣା କୋଳରେ ପକେଇ ଦେଇଥିଲା । ଦ୍ୱିତୀୟ ବୁଡ଼ ପକେଇ ଦେଇଥିଲା ନିୟତି ଯେତେବେଳେ ହଳଦିଆ କୋଠା, ବଡ଼ ମା, ବାଣୀ ମାଉସୀ, ଆଉ କାକାତୁଆର ପିଞ୍ଜରା ସମସ୍ତେ ହାତ ହଲେଇ କରି

ଏକାଥରକେ କୌଣସି ଅନ୍ଧାରିଆ ପରଦାର ପଛରେ ଲୁଚି ଯାଇଥିଲେ, ତୃତୀୟ ବୁଡ଼ ସେ ସ୍ୱୟଂ ମାରିଥିଲା ଏହି ମହାନଗରରେ, ଯେଉଁଠି ନା ଅମ୍ମା ତାକୁ ଖୋଜି ପାଇଥିଲା, ନା ରୋଜୀ ଆଣ୍ଟି ! କିନ୍ତୁ ଏହି ବୁଡ଼କୁ କେହି ବ୍ୟବସାୟୀ ବୁଡ଼ାଳୀର ଚାତୁର୍ଯ୍ୟରେ ହିଁ ନିଆ ହେଇଥିବ, ଯେଉଁଠାରେ ଉପରକୁ ଉଠୁଥିବା ବୁଲବୁଲ୍ ଦେଖିକରି ଗଭୀର ଜଳର ଅତଳ-ଗର୍ଭରେ ବୁଡ଼ିଗଲା ତା'ର ସୁକୁମାର ଦେହ ପାଇଁ ସମସ୍ତେ ବିଳାପ କରିବାକୁ ଲାଗିଲେ । ନା ଏବେ ଏହାକୁ ଏଲହାବାଦ ଯିବାକୁ ହେବ, ନା ପଣ୍ଡିଚେରୀ । ଚଞ୍ଚଳ ମନରେ ଉଠୁଥିବା ତର୍କ-ବିତର୍କର ଝଡ଼ତୋଫାନକୁ ସେ ନିଜର ଅବିବେକ ବାତାୟନ ଦ୍ୱାରକୁ ଯତ୍ନରେ ବନ୍ଦକରି ବାହାରକୁ ଠେଲିଦେଲା । ଏବେ ସେ ଭାରତକୁ ଫେରିବ ନାହିଁ । ଗାଡ଼ି ଚାଲିବାକୁ ଲାଗିଲାରୁ କ୍ଷଣିକ ପାଇଁ ମନ ଜଣାନାହିଁ କେମିତି ଲାଗିଲା । କିଛି ସମୟ ପର୍ଯ୍ୟନ୍ତ ସେ ଚକମକ କରୁଥିବା ରୋଷଣୀର ସେହି ସହରକୁ ବିରାଟ କାର୍ନିଭେଲରୁ ସହରକୁ ଦେଖିବାକୁ ଲାଗିଲା । ପୁଣି ସେ ଝରକା ବନ୍ଦକରି ଦେଲା । ହଠାତ୍ ତାହାର ଦୃଷ୍ଟି ଉପର ଆଉ ତଳର ବାର୍ଥ ଉପରେ ମୁଣ୍ଡରୁ ଗୋଡ଼ଯାଏ ଏକ ପ୍ରକାର ନାରଙ୍ଗୀ ଚାଦର ଘୋଡ଼ି ହୋଇ ଥିବା ଦୁଇଜଣ ବ୍ୟକ୍ତିଙ୍କ ଉପରେ ପଡ଼ିଥିଲା । ଉପର ବାର୍ଥରେ ଶୋଇଥିବା ବ୍ୟକ୍ତିର ମୁଣ୍ଡ ଆଡ଼କୁ ଗୋଟିଏ କଳା କମଣ୍ଡଳୁ ଧରିଥିଲେ ଆଉ ଖୁଣ୍ଟିରେ ଲାଖିଥିବା ଗୋଟିଏ ଲମ୍ବା ଗୁଆ ପରି ଦାନାର ରୁଦ୍ରାକ୍ଷର ମାଳା ରେଳର ଧକ୍କା ସହିତ ଛିଟିକି ପଡୁଥିଲା ତାଳ ପକେଇ ପକେଇ । ଚାଦରର ରଙ୍ଗ ମଧ୍ୟ ନାରଙ୍ଗୀ ନୁହେଁ, ଗେରୁଆ ଥିଲା । ଏତେ ଲମ୍ବା ଭ୍ରମଣ ଆଉ ସାଥିରେ ସାଧୁମାନଙ୍କର ଏହି ଏରିଷ୍ଟୋକ୍ରେଟିକ ସଂଯୋଗ !

ଫାଷ୍ଟ କ୍ଲାସ୍‌ରେ ଯାତ୍ରା କରୁଛନ୍ତି ସେହି ଶବ ହେଇ ମୁଣ୍ଡ-ମୁହଁ ଢାଙ୍କି-ଢୁଙ୍କି କରି ଶୋଇଥିବା ସହଯାତ୍ରୀଙ୍କର ସହସ୍ୟମୟ ଉପସ୍ଥିତିରେ କଲୀ ସଂକୋଚ କରିବ, ଏମିତି କଥା ନଥିଲା । ଏମିତି ଲଜ୍ଜିତ ହେଲା ପରି ବାଳିକା ସେ ନଥିଲା, ବରଂ ଦେଖାଯାଏ ଯେ ତାହାରି ଉପସ୍ଥିତି ଆଜି ପର୍ଯ୍ୟନ୍ତ ଏମିତି କୋଡ଼ିଏ ନିଦ୍ରାମଗ୍ନ ଯାତ୍ରୀମାନଙ୍କୁ ଭୟଭୀତ କରି ସାରିଥିଲା । ଏତେ ବଡ଼ ଷ୍ଟେସନରେ ଗାଡ଼ି ରହିଲା, ତେବେ ମଧ୍ୟ ଦୁହେଁ କ'ଣ ଚରସର ଦମ ଲଗେଇ କରି ଶୋଇ ପଡ଼ିଥିଲେ ? ଉପରରେ ଶୋଇଥିବା ଯାତ୍ରୀର ଗୋରା ଆଙ୍ଗୁଠି ତାକୁ ଥରେ ଦେଖାଗଲା ଆଉ ସେ ବୁଝିଗଲା ଯେ ଇଏ କେହି ବିଦେଶୀ ନୂଆ-ନୂଆ ଦୀକ୍ଷିତ ସ୍ୱାମୀ ଅଟେ । ଚାଲ ଭଲ ହିଁ ହେଲା, ଚେଁ-ଚେଁ-ପେଁ-ପେଁ କରୁଥିବା ପିଲା ଥିବା କୌଣସି ପରିବାର ସାଙ୍ଗରେ ଯାଉଥିଲେ ବା କୌଣସି ନବ-ବିବାହିତା ବନକନ୍ୟା ସହଯାତ୍ରୀ ହେଇ ଆନ୍ତା ତ ସେ ପାଗଳ ହେଇ ଯାଇଥାନ୍ତା । ଯେମିତି ଉପୁଡ଼ିଯିବା ମୁଡ୍ ନେଇକରି ସେ କଲିକତା ଛାଡୁଥିଲା, ତାହାପାଇଁ ଏମିତି ସଙ୍ଗହିଁ ତାକୁ ଶୋଭା ଦେଇଥାଏ । ଉଭୟ ପାର୍ଶ୍ୱରେ ଶୋଇ ରହିଥିବା ସେହି ବହୁତ ଲମ୍ବା ଦୁଷ୍ଟ ତଥା ଭୟଙ୍କର ସାଧୁମାନଙ୍କର ଯୋଡ଼ିକୁ ଦେଖିକରି ତାକୁ କିଛି ମଧ୍ୟ ସଂଶୟ ବା ସଶଙ୍କିତ କଲାନାହିଁ । ସେ ତକିଆ ଠିକରେ ପକେଇ ଶୋଇବାକୁ ଯାଉଥିଲା ବେଳେ ଉପର ବାର୍ଥରେ ପଡ଼ିଥିବା ଚାଦର

ହଲିଲା ଆଉ ପଲକ ପକେଇବା ମାତ୍ରେ ସେହି ବ୍ୟକ୍ତି ତଳକୁ ଓହ୍ଲେଇ ଗଲା । ମନେ ହେଉଥିଲା ତଳକୁ ଓହ୍ଲେଇବାକୁ ତାକୁ ବିଶେଷ ଚେଷ୍ଟା କରିବାକୁ ପଡ଼ିଲା ନାହିଁ । ହୁଏତ ତାହାର ଭୟାବହ ରୂପରେ ଲମ୍ବା ଗୋଡ଼ ତା'ର ବସିଲା ମାତ୍ରେ ହିଁ ସ୍ୱୟଂ ଜମିକୁ ଛୁଇଁ ଯାଇଥିଲା । ଧୂଆଁଳିଆ ନୀଳ ବଲ୍‌ବର ଆଲୁଅରେ ତା'ର ଫିକ୍ୱୋରେ ସଜଡ଼ା ହେଇଥିବା ଜଟାକୁ ଗୁଡ଼େଇ କରି ହେଇଥିବା ଜୁଡ଼ା କଲୀ କଣେଇ ଚାହିଁ ଦେଖି ନେଇଥିଲା । ଗୋରା ଚେହେରା ଉପରେ ଯତ୍ନରେ କଟା ସଜଡ଼ା ହେଇଥିବା ଦାଢ଼ି ଆଉ ଚିକ୍କଣ ନିଶ ରାମଲୀଳାର ବନବାସୀ ରାମଚନ୍ଦ୍ରଜୀଙ୍କ ପରି ନକଲି ଦାଢ଼ି-ନିଶ ମଧ୍ୟ କୃତ୍ରିମ ମନେ ହେଉଥିଲା । ସେ ଥରେ ଉଡୁଥିବା ଦୃଷ୍ଟିରେ କଲୀ ଆଡ଼କୁ ଦେଖିଲା, ପୁଣି ତଳେ ଶୋଇ ରହିଥିବା ନିଜ ସାଥିର କାନ୍ଧକୁ ଧରି ହଲେଇବାକୁ ଲାଗିଲା ।

"ଖାଇବା ବାହାର କର ମହାଶୟ, ବହୁତ ଭୋକ ଲାଗୁଛି ।" ନିଦର ବାହାନା କରି, ଆଖି ପର୍ଯ୍ୟନ୍ତ ଚାଦରର ଯବନିକାକୁ ସୁବିଧାନୁସାରେ ଉଠାଉଥିବା – ପକଉଥିବା କଲୀ ଚୁପ୍‌ଚାପ୍ ପଡ଼ିରହି ସେହି ରାଜଯୋଗ୍ୟ ସନ୍ଥ-ସମାଗମର ଆନନ୍ଦ ନେଉଥିଲା । ଦ୍ୱିତୀୟ ଚାଦରର ଆବରଣ ଘୁଞ୍ଚିଲା ଆଉ କଲୀ ଦେଖିଲା ଯେ ନିଦରୁ ଉଠି ବସିଥିବା ସନ୍ଥ ନୁହେଁ ସନ୍ନ୍ୟାସିନୀ ଥିଲା । ଉପର ବାର୍ଥରୁ ତଳକୁ ଓହ୍ଲାଇ ତାକୁ ଉଠେଇ ଥିବା ଗୈରିକ ବସନଧାରୀ ସ୍ୱାମୀ ତା ପାଖରେ ବସିଗଲା ଆଉ ଧିର ସ୍ୱରରେ ଫିସ୍ ଫିସ୍ କରିବାକୁ ଲାଗିଲା । କେବେ-କେବେ ରାତିର ନିସ୍ତବ୍ଧତାରେ ଏମିତି ଫୁସୁରଫାସର ନାଗରା ବାଦ୍ୟର ଚୋଟରୁ ମଧ୍ୟ ଅଧିକ ସ୍ପଷ୍ଟ ହେଇକରି କାନରେ ବାଜିବାକୁ ଲାଗେ ।

"ଇଏ କିଏ ? କେଉଁଠାରୁ ଉଠିଲା ?" ପୁରୁଷର କଣ୍ଠରେ ପଚାରିଲା ।

"ଜଣା ନାହିଁ, ମୁଁ ତ ଶୋଇ ପଡ଼ିଥିଲି । ମନେ ହେଉଛି ସିଆଲଦହ ଠାରୁ ବସିଛି, ତମେ ହାତ-ମୁହଁ ଧୋଇ ନିଅ, ମୁଁ ଖାଇବା ପରସୁଛି ।"

ସେ ଉଠିଲା ଆଉ କଲୀ ପୁଣି ପତଳା ଚାଦରର ଲମ୍ବ ଓ ଚଉଡ଼ାର ଉଦାରତାରୁ ଦେଖିଲା ଉଠି ଥିବା ସ୍ୱାମିନୀ ମଧ୍ୟ ନିଜର ଗୈରିକଧାରୀ ସାଥି ପରି ମୋଟା-ସୋଟା, ଉଚ୍ଚ, ହୃଷ୍ଟପୁଷ୍ଟ ମହିଳା ଅଟେ । ରଙ୍ଗ ଶ୍ୟାମଳ ହେଇଥିଲେ ମଧ୍ୟ ତିଆରି ଅନୁପମ ଥିଲା । ଗେରୁଆ ରଙ୍ଗର ସୁନ୍ଦର ସାଲଓ୍ୱାର ଆଉ କୌଣସି ସାଇବାବାଙ୍କୁ ପରି ଢିଲା କୁରୁତାରେ ଲୁଚିଥିବା ସ୍ୱାମିଜୀର କଳାତ୍ମକ ରୁଚିକୁ କଲୀର ମଡ଼େଲର ଦୃଷ୍ଟି କ୍ଷଣକରେ ଅନୁମାନ କରିନେଲା । ସେହି ସନ୍ନ୍ୟାସିନୀ ଥିଲା, ତାକୁ ହୁଏତ ବିଦେଶର କୌଣସି ମଡ଼େଲିଂ ସ୍କୁଲର ଛାତ୍ରୀ ମଧ୍ୟ ଏମିତି ଲୋଭନୀୟ ସଜ୍ଜାରେ ସାଜି ପାରି ନ ଥାନ୍ତା । ପତଳା ଶରୀର ସ୍ୱାଭାବିକ ନଥିଲା । ଏଥିରେ କୌଣସି ସନ୍ଦେହ ନଥିଲା ଯେ ଶୀର୍ଣ୍ଣ ବାଲୋପରି ପରି ସେ ଚାବୁକର ସାହାଯ୍ୟରେ ତିଆରି ହେଇଥିଲା । ଚେହେରାର ବୟସ ଚାଳିଶରୁ ବେଶୀ, ବଡ଼ ବଡ଼ ଚପଲ କଜଳପାତୀ ଆଖିର କୋଡ଼ିଏର ଆଖପାଖ ଆଉ ଟାଇଟ କମୀଜରେ ଯତ୍ନରେ ବସିକରି କମା ଯାଇଥିବା ମୋଟିର ବୟସ ଦେଖିଲା ଲୋକ ଅନାୟସରେ

ନିଜର ବର୍ଷର କୈଶୋର୍ଯ୍ୟର ମରୀଚିକାରେ ବାନ୍ଧି ପାରିବ । ଷ୍ଟୀଲର ଢାଙ୍କୁଣୀ ଥିବା ବଡ଼ ଗିନା ଖୋଲିକରି ସେ ବଡ଼ ଧୈର୍ଯ୍ୟ ସହକାରେ ଥରକୁ ଥର ସାମ୍ନାର ବାର୍ଥ ଉପରେ ପତଳା ଚାଦରରେ ମୁହଁ ଢାଙ୍କିକରି ପଡ଼ିଥିବା କଲୀ ଆଡ଼କୁ ଭୟଭୀତ ହୋଇ ଦେଖୁଥିଲା ଢାଙ୍କୁଣୀ ଥିବା ବଡ଼ ଗିନାର ଡବାଗୁଡ଼ିକ ସାଥୀର ସାମ୍ନାରେ ସଜେଇବାରେ ଲାଗିଥିଲା । ତା'ର ହାତରୁ ଡବା ଏକପ୍ରକାର ଅଧୈର୍ଯ୍ୟ ହୋଇ ଛଡ଼େଇବା ପରେ ତା'ର ବୁଭୁକ୍ଷିତ ସାଥି ଏ ଆଡ଼କୁ - ସେ ଆଡ଼କୁ ନ ଦେଖି କୌଣସି ଭୋକରେ ମରି ଯାଉଥିବା କାଙ୍ଗାଳ ଭିକ୍ଷୁକ ପରି କଚର-କଚର ଖାଇବାରେ ଲାଗିଥିଲା । ମଝି-ମଝିରେ ତା'ର ଗମ୍ଭୀର ସଙ୍ଗିନୀ ତାକୁ ଢାଙ୍କୁଣୀ ଥିବା ବଡ଼ ଗିନାର ଜଳତରଙ୍ଗ ବଜେଇବା ପରେ ବା ଗିଲାସ ଗଡ଼ାଇବା ପରେ ଅମ୍ଳା ସ୍ୱରରେ କଥା ମଝିରେ କଥା କହିବାକୁ ଯାଉଥିଲା-"ପାଟି କର ନାହିଁ ପ୍ଲୀଜ, ସେ ଯେମିତି ଉଠି ନ ପଡ଼େ !"

କିନ୍ତୁ କଲୀର ଉଠିଯିବାର ଏମିତି କ'ଣ ଭୟ ! ଓହୋ, ଏବେ ବୁଝିପାରିଲି । କଲୀ କଡ଼ ମୋଡ଼ିକରି ହସକୁ ଅଟକେଇଲା । ସ୍ୱାମିଜୀ ଢାଙ୍କୁଣୀ ଥିବା ବଡ଼ ଗିନାରୁ ସିଝା ଅଣ୍ଡା ବାହାର କରି ମୁହଁ ମଧ୍ୟରେ ଭର୍ତ୍ତି କରି ଦେଇଥିଲା ଆଉ ପୁଣି ଅନ୍ୟ ବଡ଼ ଢାଙ୍କୁଣୀ ଥିବା ବଡ଼ ଗିନାରୁ କୌଣସି ପ୍ରାଗ୍ ଐତିହାସିକ ଯୁଗର-ସେଇ ଜୀବର ବିରାଟ ହାଡ଼ ବାହାର କରି ଚୋବେଇବାକୁ ଲାଗିଥିଲେ । ସତରେ ତ ସଙ୍ଗିନୀର ଭୟଭୀତ ହେବା ଉଚିତ ଥିଲା । ମୁଣ୍ଡ ଉପରେ ଜଟା, ଥୋଡ଼ି ଉପରେ ବିରାଟ ଦାଢ଼ି, ଗୈରିକ ବସନ, କଣ୍ଠରେ ରୁଦ୍ରାକ୍ଷର ମାଳା, ମୁଣ୍ଡ ପାଖରେ କମଣ୍ଡଳୁ ଆଉ ଅଣ୍ଡା-ହାଡ଼ଗୁଡ଼ିକର ଫଳାହାର ! ଦେଖିଲା ଲୋକ ମଧ୍ୟ ଶେଷରେ କ'ଣ କହିବ ? କିନ୍ତୁ ଖାଇଲା ଲୋକଙ୍କୁ କାହାରି ଚିନ୍ତା ନଥିଲା । କଡ଼ ଲେଉଟାଇଲା ପରେ ମଧ୍ୟ କଲୀ ବହୁତ ଡେରି ପର୍ଯ୍ୟନ୍ତ ସେମାନଙ୍କର ସୁଦୀର୍ଘ ଭୋଜନର କଚର-କଚର ଶୁଣୁଥିଲା । ପୁଣି ସେ ସ୍ୱାମୀଜୀର ଢକଢ଼କ କରି ଢୋକି ଯାଉଥିବା କୌଣସି ରହସ୍ୟମୟ ପାନୀୟର ଢକଢ଼କର ଧ୍ୱନି ସଙ୍ଗୀତ ମଧ୍ୟ ଶୁଣିଲା ।

"କ'ଣ ମହାଶୟ, ହଳଦିଆ ଛୋଟପତ୍ର ବାଲା ଜର୍ଦା ଆଣି ନାହଁ କି ?" ତାଙ୍କର ଚିଡ଼ି ଚିଡ଼ି ହେବା ସ୍ୱର ହିଁ ତାଙ୍କର କ୍ରୋଧୀ ଯଥେଚ୍ଛାଚାର ସ୍ୱଭାବର ସ୍ୱୟଂ ପରିଚୟ ଦେଇଗଲା ।

ଶାନ୍ତ ସହଚରୀ ଦ୍ୱାରା ନିଶ୍ଚୟ ଭୁଲ ହୋଇଯାଇଥିଲା । ସେ ବହୁତ ଡେରି ପର୍ଯ୍ୟନ୍ତ ନମ୍ର ସ୍ୱରରେ କ୍ଷମା ମାଗିବାରେ ଲାଗିଥିଲା, କିନ୍ତୁ ତାଙ୍କର ବକ-ବକ୍ ବନ୍ଦ ହେଲା ନାହିଁ - "କାହିଁକି ଖାଇବି ମୁଁ ତମର କଳା ତମାଖୁ, ଜାଣିଛ କି ମତେ ତମର ସେହି କଳା ବାରୁଦ ଏକଦମ ପସନ୍ଦ ନୁହେଁ । ନିଜ ଜିନିଷ ରଖିବାତ ଭୁଲି ନାହୁଁ, ମୋ ଜିନିଷ ଭୁଲି ଗଲୁ । ଏବେ କୌଣସି ଷ୍ଟେସନରେ ଓହ୍ଲାଇ କରି ମତେ କୌଣସି ପାନବାଲା ଠାରୁ କିଣିକରି ଆଣିଦେବୁ । ହଳଦିଆ ଛୋଟ ପତ୍ର ବିନା ମତେ ନିଦ ହେବ ନାହିଁ ।" ପୁଣି ହୁଏତ କୌଣସି ଉଦାର ପାନବାଲା ତାଙ୍କର ଖୋରାକ ଜୁଟେଇ ଦେଇଥିଲା କାହିଁକି ନା ସକାଳ

ହେବାରୁ କଲୀର ନିଦ ଭାଙ୍ଗିଗଲାରୁ ସ୍ୱାମିଜୀ ଘୁଙ୍ଗୁଡ଼ି ମାରୁଥିଲେ; ଘୁଙ୍ଗୁଡ଼ି ମଧ୍ୟ ଏମିତି ଯେ ଆରୋହରୁ ଅବରୋହ ବେଶ୍ ଜୋର୍‌ରେ ହେଉଥିଲା ।

ସୂର୍ଯ୍ୟ ଉଦୟ ହୋଇ ନ ଥିଲେ । କଲୀ ଝରକା ଖୋଲିକରି ବସିଗଲା । ପଳେଇ ଯାଉଥିବା ବୃକ୍ଷ ଆଉ ଖେତ-ଖଳା ମଧ୍ୟରେ ରେଳର ଖୋଲା ଝରକା ଦେଇ ତାକୁ ଏମିତିହିଁ ଅସ୍ପଷ୍ଟ ଲୁଚକାଳି ଖେଳୁଥିବା ମ୍ଳାନ ସୂର୍ଯ୍ୟର କିରଣକୁ ଖୋଜିବାକୁ ବହୁତ ଆନନ୍ଦ ହେଉଥିଲା । ଦୂର-ଦୂର ପର୍ଯ୍ୟନ୍ତ ବୁଣି ହୋଇଥିବା ତାଳ୍ ବୃକ୍ଷର ଲଟାବୁଦା ଆଉ ଚାଳଘରର କ୍ଷଣକୁ କ୍ଷଣ ବଦଳୁଥିବା ଶିଳ୍ପ ଆଖି ବାନ୍ଧି ରଖୁଥିଲା । କେମିତି ବିଚିତ୍ର ଥିଲା ଭାରତ ! ପ୍ରତ୍ୟେକ ଦିଗର ଶିଳ୍ପରେ ବହୁରୂପୀ ଶିଳ୍ପୀର ବିଭିନ୍ନ ଶୈଳୀ-ଉତ୍ତର ପ୍ରଦେଶର ଯାତ୍ରା ହେଉଥିଲେ ହୁଏତ ସେ ଶିଳ୍ପୀ ପେସ୍ଟଲ ରଙ୍ଗରେ ତିଆରି କରି ଚିତ୍ର ପ୍ରସ୍ତୁତ କରୁଥିଲା । ସେହି ପ୍ରାତଃକାଳୀନ ସୂର୍ଯ୍ୟର ରକ୍ତାଭ କିରଣର, ସୋରିଷର ହଳଦିଆ ପୁଷ୍ପଗୁଡ଼ିକ ସହିତ ସଙ୍ଗମରେ ରଙ୍ଗଭର୍ତ୍ତି କରିବା ପାଇଁ ରଙ୍ଗ ଲଗଉଥିବା ତୁଳିକାରେ ହିଁ କାମ ଚଳେନାହିଁ । କ୍ଷଣ କ୍ଷଣକରେ ରଙ୍ଗ ବଦଳଉ ଥିବା ସୋରିଷର ଖେତ, ପବନରେ ଝୁଲୁଥିବା ଗହମର ଶସ୍ୟର କେଣ୍ଡା, ପର୍ବତର ନିମ୍ନଦେଶର ଆଦ୍ରଅଞ୍ଚଳର ସଙ୍ଗମରେ ହାତ ହଲେଇ-ହଲେଇ କରି ବିଦାୟ ନେଉଥିଲା କୁମାଉଁର ଦୁର୍ଗମ ପର୍ବତ ଶ୍ରେଣୀଗୁଡ଼ିକ, କେନାଲର କ୍ଷୀଣ କଲେବର, ଯେମିତି ବହୁରଙ୍ଗୀ ବୈଭବ ସେମିତିହିଁ ମିଶି ଯଉଥିଲା ପ୍ରକୃତିଦତ୍ତ ଅନୁପମ ରଂଗର ପ୍ରକାଶରେ ! କିନ୍ତୁ ଗୋଟିଏ କଥା ଥିଲା । ଉତ୍ତରପ୍ରଦେଶର ଯାତ୍ରା ହେଉଥିଲେ କ'ଣ ସେ ଏତେ ଫାଟ ପଡ଼ିବ, ଏମିତି ଝରକା ଖୋଲିକରି ଦେଖି ପାରିଥାନ୍ତା ? ଧାଡ଼ି କି ଧାଡ଼ି ଡାଳ ନେଇକରି ବସିଥିବା ନିର୍ଲଜ୍ଜ ଗାଉଁଲି ଭିଡ଼ ପ୍ରକୃତିର ସେହି ସୁରମ୍ୟ ଚିତ୍ରରେ ଆଲକାତରା ଲିପିକରି ରଖି ଦେଇଥାନ୍ତା । ମନେ ହେଉଥିଲା ଶ୍ୱଶୁରମାନେ ରେଲ୍‌ୱେ ଟାଇମ୍ ଟେବୁଲ୍ ଦେଖିକରି ହିଁ ଡାଳ ନେଇକରି ବସି ଯାଇଛନ୍ତି । ଯେତେଥର ସେ ମନ୍ଦସ୍ମିତା ଉଷାର ସ୍ୱାଗତ କରିବାକୁ ଟ୍ରେନର ଝରକା ଖୋଲିକରି ମୁହଁ ବାହାରକୁ ବାହାର କରେ, ସେତେଥର ମାଇଲ ମାଇଲ ପର୍ଯ୍ୟନ୍ତ ବିସ୍ତାରିତ ହୋଇଥିବା ଡାଳଧାରୀ ନିର୍ଲଜ୍ଜ ପଙ୍କତ ହୃଷ୍ଟପୁଷ୍ଟ ଥାପ୍ପଡ଼ ମାରିକରି ତା'ର ମୁହଁ ଝରକାର ଭିତରକୁ କରି ଦେଉଥିଲା । କେବେ-କେବେ ଶିଶୁ ସୁଲଭ କ୍ରୋଧରେ ସେ ପାଗଳ ପରି ପ୍ରଳାପ କରୁଥିଲା । କିନ୍ତୁ ଏ ଆଡ଼କୁ ଗ୍ରାମବାସୀମାନଙ୍କର ହୁଏତ ଏମିତି କୁବ୍ୟବସ୍ଥା ନଥିଲା, ହଠାତ୍ କଲୀର ସେହି ପ୍ରାତଃ ସ୍ମରଣୀୟ ଡାଳଧାରୀ ଗ୍ରାମବାସୀଙ୍କର ନିର୍ଲଜ୍ଜ ମୁଦ୍ରାର ସ୍ମୃତି ଚିଡ଼େଇବାକୁ ଲାଗିଲା ସେ ହସିବାକୁ ଲାଗିଲା ।

"କାହିଁକି ହସୁଛୁ ଝିଅ ?" ମିଠା ସ୍ୱର୍ ଶୁଣିକରି ଚମକି ପଡ଼ି କଲୀ ବୁଲିଗଲା । ସେହି ହସହସ ମୁଖ ସନ୍ନ୍ୟାସିନୀ ତାହାର ସିଟ ଉପରେ ଆସିକରି ବସି ଯାଇଥିଲା ।

କଲୀ ଲଜ୍ଜିତ ହେଲା, ଯେଉଁ କଥାକୁ ମନେପକେଇ ତାକୁ ହସ ମାଡ଼ିଲା ସେ କ'ଣ କହିଲା ପରି କଥା ଥିଲା ।

"କେତେଦୂର ଯାଉଛ ?" ମୁଖରା ବୈରାଗୀ ଚଟକରି ଦ୍ୱିତୀୟ ପ୍ରଶ୍ନ ପଚାରି ଦେଲା ।

"ଏବେ ତ ଧନୁଷକୋଟି ଯାଉଛି, ତେବେ ଯିବି ସିଲୋନ ।"

"ଆରେ ବହୁତ ଦୂରକୁ ଯାଉଛ ତାପରେ ପୁଣି ଏକେଲା..."

"ମତେ ସେଇଠି ଚାକିରି ମିଳି ଯାଇଛି ।" କଲୀ ସେତିକି ଦୂର ଯିବାର କାରଣ ଦେଇଦେଲା ।

"ଆଚ୍ଛା ଚାକିରି କରୁଛ । ଆମେ ତ ଭାବିଥିଲୁ ଯେ କୌଣସି ଫିଲ୍ମ କମ୍ପାନୀରେ କାମ କରୁଥିବ ।"

"କାହିଁକି, କ'ଣ ସେମିତିହିଁ ମନେ ହେଉଛି ମୁଁ ?" କଲୀ ହସିକରି ପଚାରିଲା ।

"ହଁ ଏକଦମ ଚେହେରା ମୁହଁର ଆକୃତିତ ମୋର ମନେ ରହେ କିନ୍ତୁ ନାମ ମନେ ରହେ ନାହିଁ । କିଛିଦିନ ଆଗରୁ ଗୋଟିଏ ଫିଲ୍ମ ଦେଖିଥିଲି - 'ବାଳିକା ବଧୂ ।' ଜାଣେ ସେହି ବାଳିକାର ନାମ କ'ଣ ଥିଲା, କିନ୍ତୁ ଚେହେରା ଏକଦମ ତମରି ଥିଲା, ଝିଅ ।"

କଲୀ ଦେଖିଲା, ବୈରାଗିନୀର ବେଶ ହେଇଥିଲେ ମଧ୍ୟ ସେହି ବଡ଼-ବଡ଼ ଆଖିରେ ବିଳାସର ସ୍ପଷ୍ଟ ଛାୟା ଥିଲା, ବୈରାଗ୍ୟର ନୁହେଁ ଆଇବ୍ରୋ ପେନ୍‌ସିଲ୍‌ରେ ସଜଡ଼ା ଯାଇଥିବା ଚପଳ ମୁଖରା ଦୃଷ୍ଟିର ତୀକ୍ଷ୍ଣ ଭଙ୍ଗିମା ମୌଳିକ ନଥିଲା । ଗେରୁଆ କମୀଜ ଭିତରେ ପିନ୍ଧା ଯାଇଥିବା ଛୋଟ ପରିଧାନ ମଧ୍ୟ କଲୀର ଅନୁସନ୍ଧାନୀ ଦୃଷ୍ଟିରୁ ଲୁଚି ରହି ପାରିଲା ନାହିଁ । ସୁନ୍ଦର ଆଶାବାଡ଼ି ଉପରେ ଭରା ଦେଇଥିବା ଯୌବନ କଲୀକୁ ପ୍ରତାରିତ କରି ପାରିବ ନାହିଁ । ରୂପାର ମୁଦିରେ ଲଗା ହେଇଥିବା ବଡ଼ ପ୍ରବାଳ ସମ୍ଭବତଃ କୌଣସି ଦୁଷ୍ଟ ଗ୍ରହର ଶାନ୍ତି ପାଇଁ ହିଁ ରୂପାରେ ତିଆରି କରାଯାଇଥିଲା କାହିଁକି ସେହି ମଣିବନ୍ଧରେ ବନ୍ଧା ହେଇଥିବା ଗୋଲ ଘଡ଼ିର ସୁବର୍ଣ୍ଣ ବେଣୀ ପରି ଗୁନ୍ଥା ହେଇଥିବା ମୋଟା ଚେନ ଖୁବ୍ କମ୍‌ରେ ତିନିତୋଳାର ଥିଲା । କ'ଣ ସେହି ବୈରାଗିନୀ ପାଇଁ ମଧ୍ୟ ସମୟର ଉପାଦେୟତା ଥିଲା ?

## ବାଇଶି

"ଆମେ ମଧ୍ୟ ବହୁତ ଲମ୍ବା ଯାତ୍ରାରେ ବାହାରିଛୁ ।" ସେ କଲୀ କିଛି ପଚାରିବା ପୂର୍ବରୁ କହିବାକୁ ଲାଗିଲା, "ପ୍ରଥମେ ରାମେଶ୍ୱରମ୍, ପୁଣି ତିରୁବଲ୍ଲୀ, କାଞ୍ଚି, ମଦୁରାଇ ଆଉ ଫେରିବୁ ଦିଲ୍ଲୀ । ବାସ୍, ଏହି ଦିଗର ଯାତ୍ରାର କୁଲ୍ଲଡ଼ର ଟା ପାଇଁ ବ୍ୟାକୁଳ ହେଇ ରହି ଯାଉଛି । ବହୁତ ଖରାପ ଅଭ୍ୟାସ ଅଛି ଟା'ର । ସକାଳେ ଉଠିଲା ମାତ୍ରେ ଗଳା ସୁଖିଯାଏ । ତମେ ତ ରାତିରେ ମଧ୍ୟ କିଛି ଖାଇଲ ନାହିଁ, ଭୋକ ଲାଗିବଣି । ରୁହ, ଅଛ

ପ୍ରସାଦ ରଖିଛି ।" ଆଧୁନିକା କନ୍ୟା ନିଜର ଚାରିକୋଣିଆ ବଟୁଆ ଖୋଲିକରି ଏକ ସିଲ୍କ ଥଳିର ଖୋଲା ମୁହଁ କଲୀ ଆଡ଼କୁ କରିଦେଲା ।

"ମତେ ତ ଏତେ ସକାଳୁ କିଛି ଖାଇବାର ଅଭ୍ୟାସ ନାହିଁ, ପୁଣି ବ୍ରସ ମଧ କରିନାହିଁ", କଲୀ ସଂକୁଚିତ ସ୍ୱରରେ କହିଲା ।

"ତାହେଲେ କ'ଣ ହେଇଗଲା ଝିଅ ! ଇଏତ ବାଳ ଗୋପାଳର ଭୋଗ ଅଟେ । ଗଙ୍ଗାଜଳକୁ ଢୋକିବା ପୂର୍ବରୁ କ'ଣ କେହି ସାଧାରଣ ପାଣିରେ କୁଳି କରେ ନା କ'ଣ ? ପାଗଳି, ନେ ଖା । ମୁହଁରେ ଧରିଲା ମାତ୍ରେ ଦାନ୍ତ ଘସିବା-ମାଜିବା ସବୁ ମନକୁ ମନ ହେଇଯିବ ।" ସେ ବହୁତ ଆତ୍ମୀୟତାରେ 'ତମେ'କୁ ଛାଡ଼ି 'ତୁ'କୁ ଓହ୍ଲେଇ ଆସିଲା ।

"ନେ. ନା, ଠାକୁରଙ୍କ ଭୋଗ ପାଇଁ ନାହିଁ କରନ୍ତି ନାହିଁ ।" ଖୋଲା ଥଳିରେ ଚୋପାଛଡ଼ା, ବାଦାମ, କାଜୁ ଆଉ ପିସ୍ତା ଦେଖି ଦୁଇଦିନ ପୂର୍ବର ସ୍ମୃତି କଲୀର କଣ୍ଠରେ ଗହ୍ୱର ହେଇକରି ଅଟକିଗଲା ।

"କାବୁଲିବାଲା, ଦେଖେ ତମର ଝୋଲିରେ କ'ଣ ଅଛି ?" ଥଳିରେ ନିର୍ଜୀବ ଶୁଖିଲା ଫଳ ଉପରେ ରଖିଥିବା କଲୀର ହାତ ଥରି ଉଠିଲା ।

"କଣ ତମର ନାମ ଝିଅ ?"

କଲୀକୁ ସଂକୋଚରେ ଗୋଟିଏ କାଜୁ ବାହାର କରୁଥିବା ଦେଖି ସନ୍ନ୍ୟାସୀନୀ ଏକ ମୁଠା ଶୁଖିଲା ଫଳ ବାହାର କରି ତା'ର କୋଳରେ ରଖିଦେଲା ।

"କୃଷ୍ଣକଲୀ ।"

ଏଥର ଶୁଖିଲା ଫଳ ଉପରେ ପଡ଼ିଥିବା ଅନ୍ୟ ହାତ ଥରି ଉଠିଲା । ସେ କଲୀର ଚେହେରା ଉପରେ ସ୍ଥିର ଦୃଷ୍ଟିରେ ଚାହିଁ ଏମିତି ଦେଖିବାକୁ ଲାଗିଲା ଯେମିତିକି ନିର୍ମମତାରେ ଫଟା ପୁରୁଣା କପଡ଼ାକୁ ଚିରି ଦିଆଯାଇଛି କୌଣସି ଅମୂଲ୍ୟ ଚିଠିର ଖଣ୍ଡକୁ ଯୋଡ଼ି-ଯୋଡ଼ିକରି ପଢୁଛି । ଅସ୍ପଷ୍ଟ ଧୂଆଁଳିଆ କାଳି ହଠାତ୍ ସ୍ପଷ୍ଟ ହେଇକରି ସ୍ୱଚ୍ଛ ହେଇ ଉଠିଲା, ଅର୍ଥହୀନ, ଛୋଟ ଅସମର୍ଥ ଅକ୍ଷର ଗୁଡ଼ିକର ଲେଖିବାର ଢଙ୍ଗରେ ଧାଡ଼ି ସାକାର ହେଇକରି କାନରେ ପ୍ରତିଧ୍ୱନିତ ହେବାକୁ ଲାଗିଲା -

କୃଷ୍ଣକଲୀ ଆମୀ ତାରେଇ ବୋଲୀ -

କାଲୋ ତାରେ ବୋଲେ ଗାୟେରଲୋକ

'କୃଷ୍ଣକଲୀ' 'କୃଷ୍ଣକଲୀ' ସେ ଓଠରେହିଁ ବିଡ଼ ବିଡ଼ କରୁଥିବା କଲୀକୁ ସେହି ଖାଲି ଦୃଷ୍ଟିରେ ଦେଖୁଥିଲା, "ତମର ପୁରା ନାମ କ'ଣ ଝିଅ ?" ସେ ଡରି-ଡରି ଏମିତି ପଚାରୁ ଥିଲା ଯେମିତିକି ଅପ୍ରିୟ ଉତ୍ତର ତାକୁ ପ୍ରଥମରୁ ମିଳି ଯାଇଛି ।

"କୃଷ୍ଣକଲୀ ମଜୁମଦାର ।"

ଯତ୍ନରେ କରା ଯାଇଥିବା ତାରୁଣ୍ୟର ଟିଣ ଓ ଟିଣର ରଙ୍ଗ ଦେଖୁ ଦେଖୁ

ଓହ୍ଲେଇଗଲା । ଚେହେରା ସଂକୁଚିତ ହେଇ ବିଷାଦର ରେଖାରେ ଭରିଗଲା । ଓଠ ଫାଟିକରି ଅଟକେଇବା ପରେ ମଧ, ତଳକୁ ବୋହିଗଲା । ଓଠରେ ଚାପିଥିବା କଇଁ କଇଁ କାନ୍ଦ ଖସିକରି ବାହାରିଗଲା ।

ଦୁଇଟି ଲମ୍ୱା ହାତ ମେଲେଇ କରି ସେ କଲୀକୁ ଛାତିରେ ଲଗେଇ ନେଲା ।

ଆଶ୍ଚର୍ଯ୍ୟ ହେଇ ସ୍ତବ୍ଧ କଲୀ ଅଜଣା କଠୋର ବକ୍ଷସ୍ଥଳରେ ଲାଗିକରି ମଧ ରାଗିକରି କାଠ ହେଇ ରହିଲା, ସେହି ସ୍ନେହପୂର୍ଣ୍ଣ ଆକସ୍ମିକ ଆଲିଙ୍ଗନର ସାମାନ୍ୟ ଭଦ୍ରତାପୂର୍ଣ୍ଣ ପ୍ରତ୍ୟୁତ୍ତର ମଧ ଦେଇ ପାରିଲା ନାହିଁ । କେମିତି ଆଡ଼ବାୟା ଥିଲା ଏହି ସନ୍ନ୍ୟାସୀ ! ନା ଜାଣେ, ନା ଚିହ୍ନେ ଆଉ ଛାତିରେ ଲଗେଇକରି କାନ୍ଦିଲା ଯେମିତି ବର୍ଷ ବର୍ଷ ଆଗରୁ ହଜି ଯାଇଥିବା ନିଜ ଝିଅକୁ କୌଣସି କୋଳରେ ବା ଡେଉଁରିଆର ପ୍ରଣାଳୀ ଧରିକରି ଚିହ୍ନି ପକେଇଛି । ମହା ନାଟକର କଇଁ କଇଁ କାନ୍ଦରେ କଲୀ ହଠାତ୍ ଚିଡ଼ି ଉଠିଲା ଆଉ ସେଇ ଚିଡ଼ି ଚିଡ଼ି ହେବା ମଝିରେ ଏକ ଆଶଙ୍କାର ବଡ଼ କଣ୍ଟା ତାକୁ ବ୍ୟାକୁଳିତ କରି ରଖିଦେଲା । ନିଜ କାନ୍ଧ ଉପରେ ରଖିଥିବା ଲମ୍ୱା ଅଙ୍ଗୁଳିଗୁଡ଼ିକୁ ସେ ବହୁତ ନମ୍ରତା ସହକାରେ ତଳକୁ ଓହ୍ଲାଉ ଓହ୍ଲାଉ ଚିନ୍ତା କରି ସେ ଦେଖିନେଲା । ନା, ତାହାର ଧାରଣା ମୂଲ୍ୟହୀନ ବାହାରିଲା । ସେହି ଅଙ୍ଗୁଳିଗୁଡ଼ିକ ରୋଗମୁକ୍ତ ହେବାପରେ ମଧ କ'ଣ ସେମିତି ହେଇପାରେ । ପଲକ ପାଇଁ ସେ ସେହି ଯୋଡ଼ିକରି ନିଜରହିଁ ଅଲଗା ହେଇଯାଇଥିବା ମା-ବାପଙ୍କର ଜୋଡ଼ା ଭାବି ଯେ ଥିଲା, କିନ୍ତୁ ଅଙ୍ଗୁଳୀ ଗୁଡ଼ିକ ମିଳିଗଲେ ମଧ ତା'ର ଅଭାଗିନୀ ଜନନୀକୁ ଆଖି କିଏ ଦେଇଥାନ୍ତା ? ନିଜକୁ ସନ୍ନ୍ୟାସିନୀର ବାହୁଫାଶରୁ ମୁକ୍ତ କରି ନେଇ କଲୀ ପଛକୁ ଚାଲିଗଲା ।

ସନ୍ନ୍ୟାସିନୀ ଏହା ମଧରେ ନିଜକୁ ସଂଯତ କରି ନେଇଥିଲା । ନାକ ପୋଛିକରି ସେ ଥରେ ଭୟଭୀତ ଦୃଷ୍ଟିରେ ମୃତପ୍ରାୟ ଶୋଇ ରହିଥିବା ନିଜ ସାଥି ଆଡ଼କୁ ଚାହିଁଲା, ପୁଣି କଲୀର ଚିବୁକ ସ୍ପର୍ଶକରି ନିଜ ଆଙ୍ଗୁଳିଗୁଡ଼ିକୁ ଚୁମ୍ବନ କଲା ।

"ଯେତେବେଳେ ମିଶେଇଲା-ବ୍ୟକ୍ତି ମିଶେଇ ଦିଏତ ହଠାତ୍ ଏମିତି ମିଶେଇ ଦିଏ", ସେ କହିବାକୁ ଲାଗିଲା । "କେତେ ରାତି ସପନରେ ତତେ ଦେଖିଛି । ଗତ ବର୍ଷ ପଣ୍ଡିଚେରୀ ଛୋଟ ଅପା ପାଖକୁ ଯାଇଥିଲି । ସେ କହିଲେ ଯେ ତୁ ଦୁଃଖିତ ହେଇକରି କେଉଁଠାକୁ ଚାଲି ଯାଇଛୁ..." କଲୀ ତା'ର ଏହିପରି ବଙ୍କାଟଙ୍କା ପ୍ରଳାପ ଏବେ ମଧ ବୁଝି ପାରୁ ନଥିଲା । କିଏ ଥିଲା ସେ ତା'ର ଭୂତ ଭବିଷ୍ୟତର ହିସାବ-କିତାବ ରଖିବା ମହିଳା !

"କ୍ଷମା କରିବେ", ସେ ବହୁତ ନମ୍ର ଶିଷ୍ଟ ସ୍ୱରରେ କହିଲା, "ମୁଁ ଆପଣଙ୍କୁ ଚିହ୍ନି ପାରିଲି ନାହିଁ ।"

କଲୀର ଏହି ନମ୍ର ବାକ୍ୟ ମଧ ଯେମିତି ସନ୍ନ୍ୟାସିନୀକୁ କ୍ଲୋରୋଫର୍ମ ସୁଙ୍ଘେଇ ଦେଲା ।

ସେ ଦୁଇଟି ବଡ଼ ବଡ଼ ଆଖି ବନ୍ଦ କରି ବର୍ଥର ସିଟ୍ ଉପରେ ପିଠି ରଖିକରି ଚୁପ୍ ହେଇଗଲା, ପୁଣି ଗୋଟିଏ ଦୀର୍ଘନିଶ୍ୱାସ ଟାଣିକରି ସେ ଆଖି ଖୋଲିଲା । ଆଉ କଲୀ ଆଡ଼କୁ ଝୁଙ୍କି ପଡ଼ିଲା ।

"କଣ ଚିହ୍ନିବୁ ତୁ ? ଏହି ମୋତିର ଦାନ୍ତ କଣ ଏମିତି ହିଁ ବାହାରି ଯାଇଥିଲା ? ମହୁ-ସିନ୍ଦୁର ଲଗେଇ କରି ରାତି-ରାତିସାରା ତତେ କୋଳରେ ନେଇ ବସି ରହୁଥିଲି । ଛୋଟ ଆପାତ ଆୟାକୁ ଦାୟିତ୍ୱ ଦେଇ ନିଶ୍ଚିନ୍ତ ହେଇ ଯାଉଥିଲା, ପୁଣି ତାଙ୍କୁ ସମୟ ମଧ କେଉଁଠି ମିଳୁଥିଲା । ଆଜି ଏଠାରେ ଧ୍ରୁପଦ ଗାଉଛି, ତ କାଲି ସେଠାରେ ଧମାର । କିନ୍ତୁ ମୁଁ ତତେ ଆୟାର ଦାୟିତ୍ୱରେ ଦେଇ ନିଶ୍ଚିନ୍ତ ହେଇ ଶୋଇ ପାରୁଥିଲି ? ରେଶମୀ ବହୁମୂଲ୍ୟ ରେଜେଇ ଘୋଡ଼ିହେଲେ କ'ଣ ଶୀତ ଚାଲିଯିବ ? ତୁ ତ ନିଜର ଛୋଟ ଗୋଡ଼ରେ ସାଇକଲ ଚଲାଉ ଥିଲୁ, ରେଜେଇ ପ୍ରତିଦିନ ରାତିରେ ଲାତମାରି ଦୂରକୁ ଫୋପାଡ଼ି ଦେଉଥିଲୁ । ଏହା ମୁଁ ଜାଣିଥିଲି । ମତେ ଦେଖିଲେ ହିଁ ତୁ ଦୁଧର ବୋତଲ ଦୂରରେ କଚାଡ଼ି ଦେଉଥିଲୁ ଆଉ ଛାତିରେ ଏମିତି ମୁଣ୍ଡ ମାରିବାକୁ ଲାଗୁଥିଲୁ ଯେମିତିକି ଭୋକିଲା, ଡେରିରେ ଅଲଗା କରି ଦେଇଥିବା ମାଈ ବାଛୁରୀ ଅଟୁ । ଆଜି ତତେ କ'ଣ ଦୋଷ ଦେବି...."

ବହୁତ ଉଦାସ ହେଇକରି ହସିକରି ସେ କଲୀର ହାତ ନିଜ କୋଳକୁ ଟାଣି ନେଲା, "ଯେଉଁ ପାନ୍ଥଶାଳାରେ ଆମେ ଓ ତୁ ରହିଥିଲୁ, ସେଠାରେ ଜନମତ ହିଁ ଅକୃତଜ୍ଞତାର ପାଚନ ପିଏଇ ଦିଆ ଯାଉଥିଲା । ମୁଁ ତୋର ଦୂର ସମ୍ପର୍କର ମାଉସୀ କଲୀ । କ'ଣ କିଛି ମନେ ଅଛି ? ମୁହିଁ ତୋର ଏହି ଲକ୍ଷେ ଟଙ୍କାର ନାମ ଦେଇଥିଲି- 'କୃଷ୍ଣକଲୀ' ! ଆଜି ବଡ଼ ଅପା ମିଳିଲେ ତତେ ସାମ୍ନାରେ ଧରିକରି ପଚାରିଥାନ୍ତା - କ'ଣ ବଡ଼ଅପା - ଦେଖି ନିଅ, କ'ଣ କହିଥିଲି ମୁଁ - କିନ୍ତୁ ଗୋଟିଏ କଥା ପଚାରିବି କଲୀ ? ନିଜର ମା'କୁ ଏମିତି କାହିଁକି ଛାଡ଼ି ଦେଇ ଆସିଲୁ ?"

ନିଜର ମା ? କଲୀ ଚମକି ପଡ଼ି ଆଶ୍ଚର୍ଯ୍ୟ ହେଇଗଲା ତେବେ କ'ଣ ତା'ର ଅଭିଶପ୍ତ ଜୀବନର ରହସ୍ୟ ଦୂର ସମ୍ପର୍କର ମାଉସୀ ଜାଣି ନଥିଲା ?

"ହରେ ରାମ, ଶିବଶଙ୍କର, ଦୁର୍ଗା ଭାବନୀ, ଜୟ ଭେଙ୍କଟେଶ ।" ଉଠିଲା ମାତ୍ରେ ଅନେକ ଦେବୀ-ଦେବତାମାନଙ୍କର ଏକାସାଙ୍ଗରେ ନାମ ଜପ କରିହିଁ ସ୍ୱାମିଜୀ ବାର୍ଥ ଉପରେ ବସିଗଲେ ।

ଲଜ୍ଜିତ ହେଇ ବାଣୀ କଳା ରଙ୍ଗର ଚଷମା ଲଗେଇଲା । ହୁଏତ ସେ ନିଜର ଫୁଲିଥିବା ଲାଲ ଆଖି ଦୁଇଟିକୁ ସାଥୀର ଦୃଷ୍ଟିରୁ ଲୁଚେଇବାକୁ ଚାହୁଁଥିଲା ।

କଲୀ ପାଖରୁ ଉଠିକରି ସେ ସ୍ୱାମୀଜୀଙ୍କ ପାଖରେ ଛିଡ଼ା ହେଇ ଯାଇଥିଲା "ଏଠାରେ ତ କେଉଁଠି ଚା ଦେଖାଯାଉ ନାହିଁ । ମନେ ହେଉଛି, କୌଣସି ବଡ଼ ଷ୍ଟେସନରେ ହିଁ ଗାଡ଼ି

ଅଟକିଲେ ମିଳିବ ।"

"କୌଣସି ଚିନ୍ତା ନାହିଁ", ସ୍ୱାମୀଜୀ ବର୍ଥ ଉପରେ ହିଁ ଚକାମାରି ବସିଗଲେ ଆଉ ପାଦର ଆଙ୍ଗୁଠିଗୁଡ଼ିକୁ ହାତରେ ଧରିକରି ହଲଉ ହଲଉ ବାଙ୍କ ଚାହାଣୀରେ କଲୀକୁ ଦେଖିବାକୁ ଲାଗିଲେ ।

"କେଉଁଠିକୁ ଯାଉଛ ଝିଅ ?" ସେଠାରୁ ସେ ନିଜର ପ୍ରଶ୍ନ ବାଟୁଳି ମାରିବାର ରବରକୁ ଟାଣିଲା ।

କଲୀ କୌଣସି ଉତ୍ତର ଦେଲାନାହିଁ ଆଉ ଉଦାସୀନ ଗ୍ରୀବା ଝରକାରୁ ଏମିତି ବାହାରକୁ ବାହାର କରି ଦେଖିବାକୁ ଲାଗିଲା ଯେମିତିକି ତା'ର ପ୍ରଶ୍ନ ଶୁଣି ହିଁ ନାହିଁ । ରାତିର ଧୂଆଁଳିଆ ଅନ୍ଧାରରେ ଯେଉଁ ବ୍ୟକ୍ତି ସୁଦର୍ଶନ ସନ୍ନ୍ୟାସୀ ମନେ ହେଉଥିଲା, ସେ ନିଜର ଆଲୁଅରେ ଶ୍ମଶାନ ଘାଟର ଅବଧୂତ ମନେ ହେଉଥିଲା ।

"ସିଲୋନ ଯାଉଛି, ସେଇଠି ଚାକିରି କରୁଛି", ବାଣୀହିଁ କଲୀ ସହିତ କରା ଯାଇଥିବା ପ୍ରଶ୍ନର ଉତ୍ତର ଦେଲା ।

"ହଁ, ଚାକିରି !" ସ୍ୱାମୀଜୀ ଉଚ୍ଚ ସ୍ୱରରେ କହିବାକୁ ଲାଗିଲେ ଚାକିରି, ତା ମଧ୍ୟ ଏତେ ଦୂରରେ । କାହିଁକି ରଘୁନନ୍ଦନ, ଆନନ୍ଦକନ୍ଦଙ୍କର ଚାକିରି କରୁନାହଁ, ଝିଅ । ଚାଲ ଆମ ସହିତ, ତୀର୍ଥରେ ପାହୁଣ୍ଡ-ପାହୁଣ୍ଡରେ ରଣଛୋଡ଼ଙ୍କର ରାଜ୍‌ଯୋଗ୍ୟ ଚାକିରି କରେଇ ଦେବା ଏହାକୁ । ଠାକୁରଙ୍କର ଚରଣସେବା- 'ଚାକର ରହସୂଁ, ବାଗ ଲଗାସୂଁ, ନିତ ଉଠ ଦର୍ଶନ ପାସୁଁ, ବ୍ରିନ୍ଦାବନ କୀ କୁଞ୍ଜ ଗଲିନ ମେଁ, ତେରୀ ଲୀଲା ଗାସୂଁ - ମୈନେ ଚାକର ରଖୋ ଜୀ' - (ଚାକର ରହିବି, ବଗିଚା କରିବି, ନିତି ଉଠି ଦର୍ଶନ ପାଇବି, ବୃନ୍ଦାବନର କୁଞ୍ଜ ଗଳିରେ ତୋର ଲୀଳା ଗାଇବି - ମତେ ଚାକର ରଖ ଭଗବାନ)- ସ୍ୱାମୀଜୀ କାଞ୍ଚନିକ କରତାଳ ବଜେଇ ବଜେଇ ମିଠା ସ୍ୱରରେ ଗାଇ ହସିବାକୁ ଲାଗିଲେ ।

"କ'ଣ ଗୋବିନ୍ଦ ଦାସୀ, ବୁଝଉନ କାହିଁକି ଏହି ଝିଅକୁ ? ଇଏ ଆମ ସହିତ ହିଁ କାହିଁକି ଯିବ ନାହିଁ ?"

କିନ୍ତୁ-ଗୋବିନ୍ଦଦାସୀ ସେହି ଉଦାର ପ୍ରସ୍ତାବର ସମର୍ଥନ କଲା ନାହିଁ ।

ସ୍ୱାମୀଜୀ ସେହି ଗୀତ ଗୁଣୁଗୁଣୁ ହେଇ, ହାତରେ ସିଦ୍ଧ ଯୋଗୀମାନଙ୍କ ଥଳି ଝୁଲେଇ ଗାଧେଇବା ଘର ଆଡ଼କୁ ଚାଲିଗଲେ ତେବେ ବାଣୀ ବହୁତ ଅଧୈର୍ଯ୍ୟ ହେଇ କଲୀ ଆଡ଼କୁ ଘୁଞ୍ଚି ଆସିଲା ଯେମିତି ସ୍ୱାମୀଜୀଙ୍କ ଅନୁପସ୍ଥିରେ ହିଁ ତାକୁ ଶୀଘ୍ର ଶୀଘ୍ର ସବୁ କହିଦେବାକୁ ଚାହୁଁଛି ।

"ପରିସ୍ଥିତିରେ ଏମିତି ଅସହାୟ ମୁଁ ଯେ ତତେ ସାଙ୍ଗରେ ଯବାକୁ କହି ମଧ୍ୟ ପାରୁନାହିଁ । 'ନିଜେ ବୁଡ଼ିଯାଉଥିବା ବ୍ରାହ୍ମଣ, ନେଇ ବୁଡ଼ିବ ଯଜମାନ' ପରି କଥା ଅଟେ । ଦିଲ୍ଲୀରେ ଆମର ବିଉଟି କ୍ଲିନିକ୍ ଥିଲା । ସବୁକିଛି ଠିକ୍‌ଠାକ୍ ଚାଲିଥିଲା । ସ୍ୱାମୀଜୀ ସେଠାରେ

ଯୋଗର 'ଲେସନ୍' ମଧ ଦେଉଥିଲେ । ଜଣାନାହିଁ କେଉଁଠୁ ଏକ ବିଧବା ଯୁବତୀ ପାହାଡ଼ି ବାଳିକାକୁ ଦେଖିକରି ସ୍ୱାମୀଜୀ ତରଳିଗଲେ ଆଉ ସାଙ୍ଗରେ ନେଇ ଆସିଲେ । ସେହି ଆମକୁ ସମ୍ପୂର୍ଣ୍ଣ ନଷ୍ଟ କରିଦେଲା । ଏବେ ତତେ କ'ଣ ଲୁଚେଇବି ! ଆମର ଗୋଟିଏ ସାଇଡ୍ ବିଜ୍‌ନେସ୍ ମଧ ଥିଲା ।"

ଦୂର ସମ୍ପର୍କୀୟ ମାଉସୀ ପୁଣି କେଉଁଠି ହଜିଗଲା । "ଏହାତ ଗୋବିନ୍ଦ ଦାସୀର କପଟ ଆଖିର ନୂତନ ଚମକ ଥିଲା, ସ୍ୱାମୀଜୀଙ୍କର ଅଣ୍ଡରଗ୍ରାଉଣ୍ଡ ବିଜ୍‌ନେସ ଗୁମ୍ଫାମାନଙ୍କରେ ଚାଲୁଥିଲା, ସେଠାରେ ସେହି ନିମକ ହରାମ୍ ଟୋକିକୁ କୌଣସି ମଠାଧୀଶ ଫୁସୁଲେଇ କରି ନିଜ ଦଳରେ ମିଶେଇ ଦେଲା । ଏମିତିରେ ସ୍ୱାମୀଜୀଙ୍କର ଭକ୍ତମାନଙ୍କ ମଧରେ କିଛି ପ୍ରସିଦ୍ଧ ଉଦ୍ୟୋଗପତି ମଧ ଥିଲେ । ସେମାନଙ୍କ କୃପାରୁ ଆମେ ଏହି ଯାତ୍ରାରେ ବାହାରି ପଡ଼ିଲୁ । ପୋଲିସ୍ ଆମର ଗୋଟିଏ ବାଳ ମଧ ବଙ୍କା କରି ପାରିଲା ନାହିଁ - ଏବେ ତୁ ହିଁ..."

ଅପୂର୍ଣ୍ଣ ବାକ୍ୟର ମଝିରେ ହିଁ ଗାଧୁଆ ଘରର ଦ୍ୱାରରେ ଗାଧେଇ ପାଧେଇ କରି ସ୍ୱଚ୍ଛ ପରିଷ୍କାର ସ୍ୱାମୀଜୀ ହସି ହସି ଛିଡ଼ା ହେଇଗଲେ । ତାଙ୍କ ଦାଢ଼ି ନିଶ କ'ଣ ସ୍ନାନର ପାଣି ସହିତ ବୋହି ଯାଇଥିଲା ? କ୍ଲିନ ସେଣ୍ଟ ଚେହେରାର ପାରଦର୍ଶୀ ତ୍ୱଚା କୌଣସି କିଶୋରୀର ଲହୁଣୀ ବୋଲିଥିବା ତ୍ୱଚା ପରି ଚମକୁ ଥିଲା ।

"ଗୋବିନ୍ଦଦାସୀ, ଏବେ ବାହାର କର ମୋର ହଳଦିଆ ଥଳି ।" ତାଙ୍କର କହିବା ମାତ୍ରେ ହିଁ ବାଣୀସେନ ହଳଦିଆ ଥଳି ବାହାର କରି ଆଣିଲା । ସ୍ୱାମୀଜୀ ବର୍ଥ ଉପରେ ବସି ପଡ଼ିଲେ ଆଉ ଥଳିରୁ ବିଭିନ୍ନ ଆକାରର ଡବାଗୁଡ଼ିକ ବାହାର କରି କୌଣସି ଚଳଚ୍ଚିତ୍ରର ଚତୁର ମେକ୍‌ଅପ୍ ମେନ ପରି ଚମତ୍କାର ଦେଖେଇବାକୁ ଲାଗିଲେ । ପ୍ରଥମେ ସେ ମୁଠିଏ ପାଉଁଶ ବାହାର କରି ଦୁଇ ପୃଷ୍ଟ ବାହୁ, ଚିକ୍କଣ ଚେହେରା ଆଉ ଗୌର ବକ୍ଷସ୍ଥଳରେ ଏମିତି ଲେପି ନେଲେ ଯେମିତି ମେକ୍ ଫେକ୍ଟରର ସୁଗନ୍ଧିତ ପାଉଡ଼ର ଅଟେ । ପୁଣି ସେ ଗୋରଚନାର ତିଳକ ସଜେଇ ଆଉ ଭିଜିଲା ଜଟାଜାଲକୁ ଚଉଡ଼ା କାନ୍ଧ ଉପରେ ମେଲେଇ ଦେଲେ । କେଶ ଖୋଲି ଦେବା ମାତ୍ରେ ପୁରା ରେଳର ସମ୍ପୂର୍ଣ୍ଣ ଡବା ଦାମୀ ଇଉଡ଼ି କଲୋନର ସୁଗନ୍ଧରେ ମହ-ମହ ମହକି ଉଠିଲା । ମନେ ହେଉଥିଲା ଗୋଟିଏ ଗୋଟିଏ କେଶ, ଲୋମ ମୂଳରେ ବିଳାସୀ ସ୍ୱାମୀଜୀ ଗାଧୁଆଘରରେ ହିଁ ସେହି ସୁଗନ୍ଧର ସ୍ପ୍ରେ କରି ଆଣିଥିଲେ । କୌଣସି ଦୀନହୀନ ପରିଚାରିକା ପରି ବାଣୀସେନ ତାଙ୍କର ପ୍ରସାଧନ କ୍ରିୟାରେ ନିରନ୍ତର ଯୋଗଦାନ ଦେଉଥିଲା । କେତେବେଳେ ଗୋଟିଏ ଡବା ବଢ଼ଉ ଥିଲା, କେବେ ଦ୍ୱିତୀୟଟି ।

"ଗୋବିନ୍ଦଦାସୀ, ଏବେ ତମେ ଚାହଁ ତ ଗାଧେଇ-ପାଧେଇ କରି ତିଆରି ହେଇପାର ।" ସ୍ୱାମୀଜୀ ଏମିତି ସ୍ୱରରେ ଆଦେଶ ଦେଲେ ମଧ ସ୍ୱତନ୍ତ୍ରତା ନଥିଲା । ପୁଣି

ସେ କଣେଇ କରି କଲୀକୁ ଦେଖିଲେ ଯେମିତି କହୁଥିଲେ-ଦେଖିଲ ମୋର ପ୍ରଭାବ ?

ବାଣୀ ସ୍ନାନାଗାରକୁ ଯାଇ ହିଁ ଥିଲା ଏଇ ସମୟରେ ଟ୍ରେନ୍ କୌଣସି ଛୋଟ ଷ୍ଟେସନରେ ଆସିକରି ଅଟକିଲା । କଲୀକୁ ନିର୍ଣ୍ଣୟ ନେବାକୁ କେବେ ଡେରି ଲାଗୁ ନଥିଲା । ସେ ବିଛଣା ଗୁଡ଼େଇଲା, ଏକ ହାତରେ ସୁଟ୍‌କେଶ୍ ଧରିଲା ଆଉ ଏମିତି ଶୀଘ୍ର ସେ ଓହ୍ଲାଇ ଗଲା ଯେମିତିକି ତାକୁ ସେହି ଷ୍ଟେସନରେ ଓହ୍ଲାଇବାର ଥିଲା, ଯାହାର ସେ ନାମ ମଧ୍ୟ ଜାଣି ନ ଥିଲା ।

"କାହିଁକି-କାହିଁକି ? କ'ଣ ଏଠାରେ ଓହ୍ଲାଇ ଯିବ ?" ଗୋଟିଏ ନାକରେ ରନ୍ଧ୍ର ବନ୍ଦକରି, ପ୍ରାଣାୟାମ କରୁଥିବା ଧୂର୍ତ୍ତ ସ୍ୱାମୀଜୀ ନିଜର ବଗପରି ଧ୍ୟାନ ଭୁଲିକରି ଉଠିବସିଲେ ।

କଲୀ କୌଣସି ଉତ୍ତର ଦେଲା ନାହିଁ । ଗାଡ଼ି ଷ୍ଟେସନ ଛାଡୁଥିଲା । ସେ ଦେଖିଲା ଝରକା ପାଖରେ ଛିଡ଼ା ହେଇଥିବା ଦୂର ସମ୍ପର୍କର ମାଉସୀ ତାକୁ ଆଶ୍ଚର୍ଯ୍ୟ ହେଇ ଦେଖୁଥିଲା । କ୍ରମଶଃ ଦୂର ହେବାକୁ ଲାଗିଥିବା, ବଡ଼-ବଡ଼ ଆଖିରେ ଆଶ୍ଚର୍ଯ୍ୟ, ବେଦନା ଆଉ ନିରାଶର ସନ୍ଦେଶ କଲୀ ପଢ଼ିନେଲା । ପ୍ରଥମେ ସେ ମୂର୍ଖପରି ଦେଖିବାକୁ ଲାଗିଲା, ପୁଣି ଦୁର୍ବଳ ମଣିବନ୍ଧ ଉପରକୁ ଉଠିଗଲା । ହାତ ହଲେଇ-ହଲେଇ କରି ଅଜଣା ପ୍ଲାଟଫର୍ମ ଉପରେ ଛିଡ଼ା ହେଇ ସ୍ୱେଚ୍ଛାରେ ହିଁ ଏକ ସ୍ନେହଗ୍ରନ୍ଥି ଆହୁରି କାଟିକରି ପବନରେ ଉଡ଼େଇ ଦେଲା ।

ଯେମିତି ଆକସ୍ମିକ ମିଳନ ଥିଲା ସେମିତି ହିଁ ଆକସ୍ମିକ ବିଚ୍ଛେଦ । ହୁଏତ ଜୀବନ-ସାରା ତାହାକୁ ଚାଲିଥିବା ଗାଡ଼ିରୁ ଏମିତି ହିଁ ଅଜଣା ପ୍ଲାଟଫର୍ମ ଉପରେ ନିଜର ଅଧପେଟା ବିଛଣା ବାନ୍ଧିବା ହୋଲ୍ଡର ଓ ସୁଟ୍‌କେଶ ଝୁଲେଇ କରି ଓହ୍ଲେଇ ଯିବାକୁ ହେବ । ଯେଉଁ ଦୂର ସମ୍ପର୍କର ମାଉସୀର ସ୍ନେହୀ ଚେହେରାକୁ ସେ ଚିହ୍ନି ମଧ୍ୟ ପାରି ନ ଥିଲା ଆଉ ଯାହାର ଆଲିଙ୍ଗନକୁ ନିହାତି କୃତ୍ରିମ ଭାବି ସେ ମୁକ୍ତ ହେବାକୁ ଛଟପଟ ହେବାକୁ ଲାଗିଥିଲା, ସେହି ଛାତି ଉପରେ ମୁଣ୍ଡ ରଖିକରି କିଛି କହି ଦେବାକୁ ଏବେ ସେ ପୁଣି ଛଟପଟ ହେବାକୁ ଲାଗିଲା । କ'ଣ ଭାବୁଥିବ ସେ ! କେମିତି ଅକୃତଜ୍ଞ ବାଳିକା ଥିଲା କଲୀ ! କ'ଣ ତା'ର ସ୍ନାନାଗାରରୁ ଫେରିବା ପର୍ଯ୍ୟନ୍ତ ଅଟକି ପାରି ନ ଥାନ୍ତା ? କିଛି ତାକୁ ନ କହି ଏମିତି ଓହ୍ଲେଇ ଯିବା ପାଇଁ ତା'ର ଅନ୍ତରାତ୍ମା ତାକୁ ହଠାତ୍ ଖରାପ ଭାବରେ ଗାଳି ଦେବାକୁ ଲାଗିଲା । ଦୂର ସମ୍ପର୍କର ମାଉସୀ ଏକେଲା ହେଇଥିଲେ, ତେବେ ସେହି ମିଳନ କେତେ ସୁଖଦାୟକ ହେଇ ପାରିଥାନ୍ତା ! ସେହି ବାଘର ଚମଡ଼ାରେ ଲାଖିଥିବା ମାଉସୀର ବିଲୁଆ ସହଚର କଲୀକୁ ବୁଝେଇଥିଲା ଏମିତି କଥା ମଧ୍ୟ ନଥିଲା, ନିଜର ପଛ ଜୀବନର କଟୁତାକୁ ଧୋଇ-ପୋଛି କରି ବୁହେଇ ଦେବାର ନିଶ୍ଚୟ କରିହିଁ ସେ ଘରୁ ବାହାରି ଥିଲା, ପୁଣି କ'ଣ ଜାଣିଶୁଣି କରି ପ୍ରଥମ ଗୁଣ୍ଡାରେ ମହୁମାଛିକୁ ଗିଳି ପାରିଥାନ୍ତା ? ସୁଟ୍‌କେଶ୍ ପାଖକୁ ଟାଣିକରି ସେ ବେଞ୍ଚ ଉପରେ ବସିଗଲା । ଏବେ କୌଣସି ଅନ୍ୟ, କିଛି ସେକେଣ୍ଡ ପାଇଁ ଅଟକିବା ରେଳଗାଡ଼ିରେ ହିଁ ଦଉଡ଼ି କରି ବସିବାକୁ ହେବ । ହୁଏତ

କୁଲି ମଧ୍ୟ ତାକୁ ସ୍ୱୟଂ ହିଁ ହେବାକୁ ପଡ଼ିବ । କେମିତି ଅଜୀବ ଷ୍ଟେସନ ଥିଲା । ମନେ ହେଉଥିଲା, କୌଣସି ଭୂତପ୍ରେତଙ୍କ ବସତିର ଭୂତୁଡ଼ି ଷ୍ଟେସନ ଥିଲା । ନା ଗୋଟିଏ କୁଲି, ନା ଯାତ୍ରୀ । ତଥାପ୍ପ, କୌଣସି ନା କୌଣସି ଗାଡ଼ି କ୍ଷଣକ ପାଇଁ ଅଟକିବ, ଆଉ କୌଣସି ଗାଡ଼ି କିଛିକ୍ଷଣ ପାଇଁ ଅଟକିଲେ ମୁଁ ସେଠାରେ ବସିପାରେ । ଚାଲୁଥିବା ଆଉ କ୍ଷଣକ ପାଇଁ ଏମିତି ଅଜଣା ଅନାମି ଷ୍ଟେସନରେ ଅଟକୁ ଥିବା ରେଲଗାଡ଼ିଗୁଡ଼ିକରେ ଚଢ଼ିବା-ଓହ୍ଲେଇବାର ତାକୁ କେବେ ଭଲ ଅଭ୍ୟାସ ଥିଲା ।

ପାଣ୍ଡେ ମହାଶୟ କଥାରେ ଧନୀ ନଥିଲେ । ଭାବୀ ସମୁଦିଙ୍କୁ ଦିଆ ଯାଇଥିବା ନିଜର ଆଶ୍ୱାସନ ସେ ସମୟର କିଛିଦିନ ପୂର୍ବରୁ ପୁରା କରିଦେଲେ । ଦାମୋଦର ମଧ୍ୟ ତାଙ୍କରି କୃପାରେ ନିଜର ହଜିଯାଇଥିବା ଚାକିରିର କଟି ଯାଇଥିବା ଡୋରକୁ ପୁଣି ଅଟକେଇ ସମ୍ଭାଳି ନେଇଥିଲା । ପ୍ରବୀର ଦିଲ୍ଲୀରେ ଚାର୍ଜନେଇ ଘରକୁ ଆସି ଯାଇଥିଲା । ବିବାହରେ କୌଣସି ପ୍ରକାରର ଆଡ଼ମ୍ବର ହେବନାହିଁ ଏହା ପ୍ରବୀରର ପ୍ରଥମ ସର୍ତ୍ତ ଥିଲା । ସେହି ସର୍ତ୍ତ ତ ଅମ୍ମା ସମ୍ମାନ ଦେଇଥିଲା, କିନ୍ତୁ ଜିଦ୍‌ଖୋର ପୁତ୍ରର ଦ୍ୱିତୀୟ ସର୍ତ୍ତହିଁ ତାଙ୍କର ମୁଣ୍ଡ ବ୍ୟଥା ବଢ଼େଇ ଦେଇଥିଲା । ଗୋଟିଏ ପୁରୋହିତକୁ ଛାଡ଼ିକରି ପ୍ରବୀର ଅନ୍ୟ ଆତ୍ମିୟସ୍ୱଜନଙ୍କୁ ନିମନ୍ତ୍ରଣ ପତ୍ର ଏମିତି ଛଳକପଟର ଚାଲାକି କରି ଡାକରେ ପଠେଇ ଥିଲେ ଯେ ଉଡ଼ାଜାହାଜରେ ଉଡ଼ିକରି ଗଲେ ମଧ୍ୟ ହୁଏତ ନିମନ୍ତ୍ରିତ ଅତିଥି ପହଞ୍ଚି ପାରିବେ ନାହିଁ । ଛୋଟ ଭାଇର ବିବାହ ପାଇଁ ଆଠଦିନ ପାଇଁ ଆସିକରି ଦୁଇମାସ କଟେଇ ଗଲେ ପାହାଡ଼ର ଅତିଥିମାନଙ୍କର ସମାଗମର ସ୍ମୃତି ପ୍ରବୀର ଭୁଲି ନଥିଲା । ଜଣାନାହିଁ କେତେ ଖୁଡ଼ି, ବଡ଼ ମା ଆଉ ଅଧା ଡର୍ଜନ ପିଉସୀମାନେ ଆସିକରି ତା'ର ଜୀବନକୁ କଠିନ କରି ଦେଇଥିଲେ । ଯେଉଁଠି ଦେଖ, ସେହି ଅଧା ଡର୍ଜନ ପିଲା ଡିଆଁ ଡେଇଁ କରି ଖାଉଛନ୍ତି, ତା ଉପରେ ଲନରେ ଶୁଖୁଥିବା ପଞ୍ଚରଙ୍ଗୀ ସାଢ଼ୀଗୁଡ଼ିକ ଆଉ ବେରଙ୍ଗ ପେଟିକୋଟଗୁଡ଼ିକର ଲମ୍ୱାଧାଡ଼ି । ଏଥର ସେ ସେହି ଅସଭ୍ୟତାର ପୁନରାବୃତ୍ତି କରିବାକୁ ଦେବ ନାହିଁ । ତାହାରି ଜିଦ୍‌ରେ ବିବାହ, କୌଣସି ଆଡ଼ମ୍ବରର ନିତାନ୍ତ ଆବଶ୍ୟକ କର୍ମକାଣ୍ଡ ନିର୍ବାହ କରି, ଏମିତି ସାଦାସିଧା ଭାବରେ ସମ୍ପର୍ଣ୍ଣ ହେଇ ଯାଇଥିଲା ଯେ କେହି ଦ୍ୱାରରେ ଛିଡ଼ା ହେବାଂ ଉପରେ ମଧ୍ୟ ହୁଏତ ଜାଣିପାରୁ ନଥିଲା ଯେ ଏଇମାତ୍ର ସେହି ଘରରେ ବିବାହ ପରି ଶୁଭକାର୍ଯ୍ୟର ଶ୍ରୀଗଣେଶ ହେଇଛି । ନା ସେ ମୁକୁଟ ପିନ୍ଧିଲା, ନା ଫୁଲମାଳ ପକେଇଲା । ପିତା, ଦୁଇ ଭିଣୋଇ ଆଉ ପୁରୋହିତକୁ କାରରେ ବସେଇ ସ୍ୱୟଂ ଡ୍ରାଇଭ୍ କରୁ କରୁ ଏମିତି ପହଞ୍ଚି ଗଲା ଯେମିତିକି ପାଣ୍ଡେ ମହାଶୟଙ୍କ ସେଠାରେ କୌଣସି ଜଳଖିଆର ଆୟୋଜନ ପାଇଁ ନିମନ୍ତ୍ରିତ ଅତିଥିମାନଙ୍କୁ ନେଇକରି ଆସିଛି । ପାଣ୍ଡେ ମହାଶୟଙ୍କର ଜନକପୁରୀରେ ବରକୁ ଏମିତି ଉପସ୍ଥିତ ହେଇଗଲେ ଦେଖିକରି କୋଳାହଳ ହେଇ ଯାଇଥିଲା, କିନ୍ତୁ ପାଣ୍ଡେ ମହାଶୟ ମଧ୍ୟ ସେହିପରି ଧୂର୍ତ୍ତ ଥିଲେ । ପଛ ରାସ୍ତା ଦେଇ ସେ ବହୁତ ଚତୁରତାର ସହିତ

ସୀମିତ ବରଯାତ୍ରୀଙ୍କୁ ନିଜ ବଙ୍ଗଳାକୁ ଟାଣି ନେଇଗଲେ । ସେଠାରେ ସେ ନିଜର ପାଗଳ ଜ୍ୱାଇଁର ଚରଣରେ ମୁଣ୍ଡ ନଇଁଦେଲେ, "ପୁଅ, ଏମିତି ବୈରାଗୀ ବେଶରେ ତମକୁ କେମିତି ସେଠାକୁ ନେଇ ଯାଇକରି ଛିଡ଼ା କରେଇବି ? ଏଠାକାର ପୁରା ମନ୍ତ୍ରୀମଣ୍ଡଳ ଆସିଛନ୍ତି । କୁନ୍ନୀ ମୋର ସବୁଠାରୁ ଛୋଟ ଝିଅ, ସେ ମଧ କ'ଣ କହିବ ? ସବୁ ଭଉଣୀଙ୍କ ବାହାଘର ଯେଉଁ ଧୂମଧାମରେ ହେଇଛି ସେ ଦେଖି ସାରିଛି । ପୁଣି ତମେ ଏମିତି ମୁକୁଟ-ତିଳକ ନ ଲଗେଇ ଛିଡ଼ା ହେଇଗଲେ, ତାହେଲେ ମୁଁ ପ୍ରିୟ ବନ୍ଧୁମାନଙ୍କୁ କେମିତି ମୁହଁ ଦେଖେଇବି ? ପୁଣି ପାଣ୍ଡେ ମହାଶୟ ପନ୍ଦର ମିନିଟ୍ ଭିତରେ ଉଜୁଡ଼ି ଯାଇଥିବା ବରଯାତ୍ରୀଙ୍କୁ ସମ୍ଭାଳି ନେଲେ । ଧଳା ଚୁଡ଼ିଦାର, ସିଲ୍କର ଶେରଓ୍ୱାନୀ ଆଉ ତେରେଛା ଟୋପିରେ ନିଜର ବରକୁ ଦେଖିକରି କୁନୀ ମୁଗ୍ଧ ହେଇଗଲା । ନିଶ୍ଚୟ ସେ ନିଜର ଅନ୍ୟ ଭଉଣୀମାନଙ୍କ ଠାରୁ ସବୁଠୁ ଅଧିକ ଭାଗ୍ୟବାନ ଥିଲା । ନିଜ ଘରର ସରଳତାର ଛୁଆଁ ପ୍ରବୀର ପାଣ୍ଡେ ମହାଶୟଙ୍କ ଘର ପର୍ଯ୍ୟନ୍ତ ପହଞ୍ଚାଇ ପାରିଲା ନାହିଁ । କୁନ୍ନୀ ସବୁଠାରୁ ଛୋଟ ଗେହ୍ଲା ଝିଅ ଥିଲା, ତା'ର ବିବାହରେ ତାଙ୍କର ଉଦାରତାକୁ ସେ କେମିତି ଅଟକେଇ ପାରିଥାନ୍ତା । ଏକ ପ୍ରକାରର ନିଜକୁ ଅପବ୍ୟୟ କରି ପାଣ୍ଡେ ମହାଶୟ ଝିଅକୁ ବିଦାୟ କରିଥିଲେ । କିଛି ଜିନିଷ ସେ ପେକକରି ସିଧା ଦିଲ୍ଲୀ ପଠେଇ ଦେଇଥିଲେ ।

"ମୁଁ ଭାବିଲି", ସେ ବିଦାୟ ନେବା ସମୟରେ ସମୁଦୀଙ୍କ ସମ୍ମୁଖରେ ହାତ ଯୋଡ଼ିକରି କହିବାକୁ ଲାଗିଥିଲେ, "ଯେତେବେଳେ ଏମାନଙ୍କୁ ଦୁଇଦିନ ପରେ ଦିଲ୍ଲୀ ଯିବାକୁହିଁ ପଡ଼ିବ, ତେବେ କାହିଁକି ନା ଫର୍ନିଚର ସିଧା ସେଠାକୁ ପଠେଇ ନଦେବି ? ମୋର ଜଣେ ମିତ୍ରଙ୍କର ଟ୍ରକ୍ ମଧ ଯାଉଥିଲା, ଏବେ ସବୁ ଜିନିଷ ବହୁତ ଭଲରେ ଚାଲିଯିବ ।"

ପୁଣି ଜ୍ୱାଇଁକୁ ଏକାନ୍ତରେ ଡାକିକରି ସେ ପାଞ୍ଚହଜାରର ଗୋଟିଏ ଚେକ୍ କାଟିକରି ଧରେଇ ଦେଲେ ।

"ନିଅ ପୁଅ, ଏହା ତମ ପାଇଁ ଭେଟ ଅଟେ ।"

ପ୍ରବୀର ଚମକି ପଡ଼ି ଦୁଇ ପାଦ ପଛକୁ ଚାଲି ଯାଇଥିଲା । "କେତେ ଭେଟ ଦେଉଛନ୍ତି ଆପଣ-ଏବେ ମୁଁ କିଛି ନେବି ନାହିଁ ।

"ନା-ନା ଇଏ ତମକୁ ନେବାକୁ ହିଁ ପଡ଼ିବ । ଇଏ ତ ମୋର କୁନ୍ନୀର ପକେଟ୍ ଖର୍ଚ୍ଚ ଅଟେ, ହନୀମୁନ୍‌ର ପକେଟ୍ ଖର୍ଚ୍ଚ ।" କୁନ୍ନୀର ନାମ ନେଲା ମାତ୍ରେ ତାଙ୍କର ଆଖି ଛଳଛଳ ହେଇ ଆସିଥିଲା । କିନ୍ତୁ ସେହି ବ୍ୟକ୍ତିର ଚେହେରା ଏମିତି ଥିଲା ଯେ ଆଖିରେ ଯେମିତି ହେଉ ପ୍ରକୃତ ଲୁହ ଚମକୁ ନା କାହିଁକି, ପ୍ରବୀରକୁ ଏହା ମନେ ହେଉଥିଲା ଯେ ସେ ଗ୍ଲିସରୀନ୍‌ର ନକଲି ଲୁହ ହିଁ ଅଟେ ।

"ଦେଖନ୍ତୁ, ଇଏ ମୁଁ ନେବି ନାହିଁ", ପ୍ରବୀର ପକେଟ୍‌ରୁ ଚେକ୍ ବାହାର କରି

ତାଙ୍କୁ ଫେରେଇ ଦେଲା । ଇଏ ହୁଏତ ପୁଣି ସେହିପରି ତା'ର ପକେଟ୍‌ରେ ପୁରେଇ ଦେବାପରେ ପ୍ରବୀରର ଗମ୍ଭୀର ଚେହେରା ଦେଖିକରି ଭୟଭୀତ ହେଲେ । ଏହି ଦାମ୍ଭିକ ଜ୍ୱାଇଁର ବେକ ହୁଏତ ସେ କେବେ ତାଙ୍କର ଅନ୍ୟ ଜୋଇଁଙ୍କର ବେକ ପରି ନିଜର ବୈଭବର ନୋଟ୍‌ରେ ଦବେଇ ପାରିବେ ନାହିଁ । ଏତେ ଚତୁର ପାଣ୍ଡେ ମହାଶୟ ସେହି ସମୟରେ ବୁଝିଗଲେ । ଚେକ୍ ସେ ଲୁହ ପୋଛୁଥିବା କୁନ୍ନୀକୁ ଧରେଇ ଦେଲେ ।

"ତୋର ବରତ କାନ୍ଧ ଉପରେ ହାତ ରଖିବାକୁ ଦେଉ ନାହିଁ ଏହାକୁ ତୁ ରଖିଦେ । ମୋର ମତରେ ତମେମାନେ ଶ୍ରୀନଗର ହିଁ ବୁଲିଆସ । କାଶ୍ମୀରରେ ମୋର କେତେକ ପରିଚିତ ଅଫିସର ଅଛନ୍ତି, ସେମାନଙ୍କୁ ଲେଖିଦେବି । ନୈନୀତାଲତ ବହୁତ କମନ ଯାଗା ହେଇ ଯାଇଛି । ଯାହାକୁ ଦେଖ ସେଠାରେ ନୂତନ ଟ୍ରାନ୍‌ଜିସ୍‌ଟର ଝୁଲେଇ ହନୀମୁନ୍ କରି ବୁଲୁଛି । ପୁଣି ଆମର ଅଧା ବନ୍ଧୁବାନ୍ଧବ ସେଠାରେ ଅଛନ୍ତି । ତମେ ଦୁହିଁଙ୍କୁ ସମସ୍ତେ ଖାଇବା ପାଇଁ ନିମନ୍ତ୍ରଣ କରିବେ ଆଉ ପାହାଡ଼ି ପ୍ରଣାଳୀରେ ରନ୍ଧା ହେଇଥିବା ସୁଖାଦ୍ୟ ଖୁଏଇ-ଖୁଏଇ ତମର ସମସ୍ତ ହନୀମୁନ୍ ନଷ୍ଟ କରିଦେବେ ।" ପ୍ରବୀରକୁ ଏହିସବୁ ଇଂରେଜୀ ଧରଣଧାଁରଣ ପସନ୍ଦ ନଥିଲା । ଛୋଟ ଭାଇ ଥିଲା ବିଳାସୀ, ବାହାଘର ହେଲାତ ନୂଆ ବୋହୂକୁ ନେଇକରି ମସୂରୀ, ସିମ୍‌ଲା, ନୈନୀତାଲ ଜଣାନାହିଁ କେଉଁଠି କେଉଁଠି ବୁଲେଇ ଆଣିଥିଲା, କ'ଣ ପ୍ରବୀରର ଇଚ୍ଛା ନ ଥିଲେ କ'ଣ ହେବ-କୁନ୍ନୀର ସଲଜ୍ଜ ଆଗ୍ରହକୁ ସେ ମନା କରିପାରି ନ ଥିଲା ।

"କ'ଣ ଆପଣ ସତରେ କେଉଁଠାକୁ ଯିବେ ନାହିଁ ? ଆଚ୍ଛା ବୋର କଲେ ଆପଣ ।" ତା'ର ସୁନ୍ଦର ଚେହେରା ଝାଉଁଳି ପଡ଼ିଥିଲା ।

"ଟିକିଏ ଚିନ୍ତା କରନ୍ତୁ ତ, ଡାଡ଼ିଙ୍କୁ କେମିତି ଲାଗିବ ? ସେ ମି. କୌଲକୁ ଲେଖିକରି ହୁଏତ ରୁମ୍ ମଧ୍ୟ ବୁକ୍ କରେଇ ନେଇଛନ୍ତି । ଇଏ ମଧ୍ୟ ଭଲ ହେଲା । ବିବାହର ପ୍ରଥମେ ମଧ୍ୟ କଲିକତା ଆଉ ପରେ ମଧ୍ୟ ସେହି କଲିକତା, ଏହାଠାରୁ ବାହା ନହେଇ ହିଁ ଭଲ ଥିଲି । ସବୁ ଫ୍ରେଣ୍ଡ୍‌ସ ପଚାରିବେ କ'ଣ ହନୀମୁନ୍ ପାଇଁ କେଉଁଠିକୁ ଯାଉଛ, ତାହେଲେ କ'ଣ କହିବି – କହନ୍ତୁ ଟିକିଏ ?"

ଦିନ-ରାତି ପ୍ରବୀରକୁ କୁନ୍ନୀ ଏହା ବୁଝୋଉ ଥିଲା ଯେ ତା'ର ସମାଜରେ ବିବାହର ସାତଥର ହୋମ କୁଣ୍ଡର ଚାରି ପାଖରେ ବୁଲିବା ଠାରୁ ଅଧିକ ମହତ୍ତ୍ୱ ହନୀମୁନ୍‌ର ଅଟେ । ଯେତେଦିନ ପର୍ଯ୍ୟନ୍ତ ନୂତନ ଯୋଡ଼ି ହନୀମୁନ୍‌ର ହଜ କରି ନ ଫେରିଛନ୍ତି, ହାଜୀ କହିପାରିବେ ନାହିଁ । ତାହାର ଯୁକ୍ତିତର୍କରେ ପରାଜିତ ହେଇକରି ପ୍ରବୀରକୁ ନୂତନ ପତ୍ନୀ ସହିତ କଲିକତା ଛାଡ଼ିବାକୁ ପଡ଼ିଲା । ଦଶ-ପନ୍ଦର ଦିନ ବୁଲାବୁଲି କରି ଦୁହେଁ ଫେରିଲେ, ତେବେ ଜୟା, ମାୟା ଯାଇ ସାରିଥିଲେ । ଦାମୋଦରକୁ କଷ୍ଟରେ ଦ୍ୱିତୀୟ ଥର ମିଳିଥିବା ଚାକିରି ଆଉ ସ୍ୱୟଂ ନିଜର ଗଳଗଣ୍ଡର ମୁକ୍ତି ପାଇଁ ଜୟାକୁ ଶ୍ୱଶୁରକୁଳର ଗ୍ରାମଦେବତାଙ୍କର ପୂଜା ଦେବାର

ଥିଲା । ମାୟାର ବିଅରର ବାହାଘର ଥିଲା । ତା'ର ରହି ଯିବାର ପ୍ରଶ୍ନହିଁ ଉଠୁ ନଥିଲା । "ଆଚ୍ଛା ହେଲା, ତୁମେ ଦୁହେଁ ଶୀଘ୍ର ଫେରି ଆସିଲ", ଅମ୍ମା ପୁଅ ବୋହୂକୁ ସମୟ ପୂର୍ବରୁ ଫେରିବା ଦେଖିକରି ପ୍ରସନ୍ନ ହେଇଯାଇଥିଲା । "ଏତେ ବଡ଼ ଘରରେ ମୁଁ ପୁଣି ଏକେଲା ରହି ଯାଇଛି । ରହୁଥିଲିତ ସବୁବେଳେ ଏକେଲା", ଅମ୍ମା କୁନ୍ନୀକୁ କହୁଥିଲା, ଏଥର ଜୟା ଏତେଦିନ, ରହିଗଲା ଆଉ ପୁଣି କଲୀ ଆହୁର ଅଭ୍ୟାସ ବଦଳେଇ ଦେଇଗଲା ।" କୁନ୍ନୀ ଶାଶୁଙ୍କ ମୁଣ୍ଡରେ ତେଲ ଲଗେଇ ଦେଉଥିଲା । ତା'ର ଏହି ଗୁଣ ଯୋଗୁଁ ଅମ୍ମା ଦୁଇଦିନରେ ମୁଗ୍ଧ ହେଇ ଯାଇଥିଲା । ଏତେ ବଡ଼ ଘରର ଝିଅ ଥିଲା, କିନ୍ତୁ ଯେଉଁଠି ଅମ୍ମା କିଛି କାମ କରିବାକୁ ଲାଗେ, ଚଟକରି ତାଙ୍କ ହାତରୁ କାମ ଛଡ଼େଇ କରି କୁନୀ ସ୍ୱୟଂ କରିବାକୁ ଲାଗେ । ସେଦିନ ମଧ୍ୟ ଅମ୍ମା ପାନିଆ ନେଇକରି ଖୋସା କରିବାକୁ ବସିବାରୁ କୁନ୍ନୀ ତାଙ୍କ ହାତରୁ ତେଲର ଶିଶି ଛଡ଼େଇ ନେଲା । "ଦିନେ ଏମିତିହିଁ ଖୋସା କରିବାକୁ ବସିଛି ତ ଜଣାନାହିଁ କେଉଁଠାରୁ ଝଡ଼ ପରି ଆସିଗଲା କଲୀ", ଅମ୍ମା କହି ଯାଉଥିଲା, "ସବୁବେଳେ ଝଡ଼ପରି ଆସୁଥିଲା ବାଳିକା । ବାସ୍, ଆସିଲା ଆଉ ଆସିହିଁ ପାନିଆ ଛଡ଼େଇ ନେଲା । କେତେବେଳେ କହୁଥିଲା, ଅମ୍ମା ଆଜି ତମର ଏମିତି ଖୋସା କରିବି, କେବେ କହୁଥିଲା ଏମିତି । ମରିଯାଏ, ପିଲାଠାରୁ ମଧ୍ୟ ଛୋଟ ପିଲା ହେଇ ଯାଉଥିଲା କେତେବେଳେ । ଦେଢ଼ ଶହର ସାଢ଼ୀ ପିନ୍ଧିକରି ଦିନେ ରୋଷେଇ ଘରେ କିଛି ପକା ହେଇ ନଥିବା ଚଟାଣ ଉପରେ ଚଟ୍ କରି ବସିପଡ଼ିଲା । ଏଗାରଶହ ଦରମା ପାଉଥିଲା ଶୁଣିଛି । କିନ୍ତୁ ସ୍ୱଭାବର ଏମିତି ଗାଈ ଥିଲା ଯେ କାର୍ଯ୍ୟାଳୟରୁ ସିଧା ରୋଷେଇ ଘରକୁ 'ଅମ୍ମା, ଅମ୍ମା' କରି କରି ଚାଲି ଆସିବ ଆଉ ଚଟ୍‌କରି ଗିନାରୁ ରୋଟି ବାହାର କରି ଖାଇବାକୁ ଲାଗିବ । ରାତି ଅଧରାତି ଯେତେବେଳେ ମଧ୍ୟ ଫେରୁଥିଲା, ବାସ୍, 'ଅମ୍ମା ଅମ୍ମା' କରି ସମସ୍ତ ଘର ଜୀବନ୍ତ ସ୍ଥଳ କରିଦେବ । ଏବେ ଗଲାପରେ ଭୁଲ୍‌ରେ ଗୋଟିଏ ଚିଠି ମଧ୍ୟ ପକେଇ ନାହିଁ । ଜଣାନାହିଁ କେଉଁଠି ଅଛି ବାଳିକା ।"

ପ୍ରବୀର ଉଠିକରି ତା'ର କୋଠରିକୁ ଚାଲିଗଲା । ବିବାହ ସହିତ ପ୍ରବୀରର କୋଠରି ତା'ର ନିଜର ଚିରକୁମାର ବ୍ୟକ୍ତିତ୍ୱର ସାପରକାତି ଓହ୍ଲେଇ ଦେଇଥିଲା । ଭଙ୍ଗା ଦୋଳି ହେଇ ଯାଇଥିବା ଆରାମ ଚଉକି ମଧ୍ୟ ଗୋଦାମ୍‌କୁ ଚାଲି ଯାଇଥିଲା ଆଉ ଝରକାରେ ଲେସର ପରଦା ଟଣା ହେଇଥିଲା । ଛୋଟ କୋଠରି ଦୁଇଟି ପଲଙ୍କରେ ଭର୍ତ୍ତି ହେଇ ରହି ଯାଇଥିଲା । କୋଠାରିକୁ ଆସିକରି ପ୍ରବୀର ପଲଙ୍କ ଉପରେ ଗଡ଼ି ପଡ଼ିଲା । ସତରେ ବିଚାରି ବାଳିକା ଜଣା ନାହିଁ କେଉଁଠାରେ ରାସ୍ତା ଭୁଲି ଏଣେତେଣେ ବୁଲୁଥିବ । ସେ ଜାଣେ ଯେ ଏମିତି ତା ପଛରେ ନ ଲାଗିଥିଲେ ହୁଏତ ସେ ଏତେ ଶୀଘ୍ର ଯାଇ ମଧ୍ୟ ନଥାନ୍ତା ।

କୁନ୍ନୀ ଶାଶୁ ପାଖରୁ ଉଠିକରି ପତି ପାଖକୁ ଚାଲିଆସିଲା । କିଛିଦିନ ପରେ ସେ

ସେହି ଅପରିଚିତ ବ୍ୟକ୍ତିତ୍ୱ ବ୍ୟକ୍ତିର ପଛ-ପଛରେ କେଉଁ ଅଦୃଶ୍ୟ ଜାଦୁର ଡୋରିରେ ବନ୍ଧା ବୁଲିବାରେ ଲାଗିଥିଲା, ସେ ସ୍ୱୟଂହିଁ ବୁଝିପାରୁ ନଥିଲା । ଗୋଟିଏ କ୍ଷଣ ମଧ୍ୟ ସେ ତାକୁ ଛାଡ଼ିକରି ଏଠାକୁ-ସେଠାକୁ ଯାଇଥାନ୍ତା ତାହେଲେ ସେ ବ୍ୟାକୁଳ ହେଇ ଉଠିଥାନ୍ତା । କେତେଥର ଡାଡ଼ିଙ୍କର ଫୋନ୍ ଆସି ସାରିଥିଲା । ମୁନ୍ନୀ ଆପାତ ଫୋନ୍‌ରେ ତାକୁ ଖୁବ୍ କଡ଼ା-କଡ଼ା କଥା ଶୁଣେଇ ଦେଇଥିଲା- "ଆଚ୍ଛା ଶ୍ୱଶୁରାଳୟର ମାୟା ହେଇଛି ତୋର, ଆମେ ପର ହେଇଗଲୁ । କେମିତି ପଥର କଲିଜା ତୋର ଅଟେ । ଡାଡ଼ି କୁନ୍ନୀ କୁନ୍ନୀ କରି ପାଗଳ ହେଉଛନ୍ତି, ଆଉ ତୁ ଏମିତି ହନୀମୁନ୍ ପାଇଁ ଗଲୁ ଯେ ଉଙ୍କିବାକୁ ମଧ୍ୟ ଆସିଲୁ ନାହିଁ ।"

"ବୃହସ୍ପତିରେ ପାହାଡ଼ରେ ଝିଅମାନଙ୍କର ବିଦାୟ ହୁଏନାହିଁ, କାଲି ଯିବୁ ତ ସେଠାରୁ ଆସି ପାରିବୁନାହିଁ, ପଅରଦିନ ଶୁକ୍ରବାରକୁ ଚାଲିଯିବୁ", କହି ଅମ୍ମା ଅଟକେଇ ଦେଲା । ବାପଘରେ ତ ସେ ଏବେ କିଛିଦିନ ରହିବ କିନ୍ତୁ ରବିବାରକୁ ପ୍ରବୀର ଦିଲ୍ଲୀ ଚାଲିଯିବ । ପତିର କ୍ଷଣିକ ବିଚ୍ଛେଦ ମଧ୍ୟ ତାକୁ ବହୁତ ଖରାପ ଲାଗିବ । ଡାଡ଼ିର କୌଣସି ବନ୍ଧୁର ଫ୍ଲାଟରେହିଁ ବର୍ତ୍ତମାନ ପ୍ରବୀର ଗୋଟିଏ କୋଠରୀ ପାଇ ଯାଇଥିଲା । ନିଜ କ୍ୱାଟର୍ସ ମିଳିବା ପରେ ହିଁ ସେ କୁନ୍ନୀକୁ ନିଜ ସହିତ ନେଇଯାଇ ପାରିବ । ନିଜର ସ୍ୱେଚ୍ଛାଚାରୀ ଜୀବନର ବିପରୀତ, ହନୀମୁନ୍‌ର ଦଉଡ଼ା ଦଉଡ଼ି, ନିମନ୍ତ୍ରଣ, ଆତ୍ମୀୟସ୍ୱଜନଙ୍କର ଅଭିନନ୍ଦନର ଏକ ଏକ ପତ୍ର ତାକୁ ବିରକ୍ତ କରି ଦେଇଥିଲା । ଯେଉଁ କୁନ୍ନୀକୁ ବାପଘରେ ବହୁତ କମ କଥା କହିବାର ଦେଖିଥିଲା, ସେ ଏବେ କେବେ-କେବେ ନିଜର ବକର-ବକର କରି ତା'ର ମୁଣ୍ଡ ଖରାପ କରିଦିଏ ।

"କ'ଣ ମହାଶୟ, ଆପଣଙ୍କ ଟେନେଣ୍ଟ କଣ ସତରେ ଆପଣଙ୍କୁ ଇମ୍ପ୍ରେସ୍ କରି ନଥିଲା ?" ଆପଣତ କେବେ ହେଲେ ତା ପାଇଁ କିଛି କହନ୍ତି ନାହିଁ, ସେ ଦିଗରେ ଅମ୍ମା-ମାୟାକୁ ତ ମନେ ହେଉଥିଲା ସେ ଜାଦୁର କାଠି ବୁଲେଇ କରି ମୋହିତ କରି ଦେଇଥିଲା । ନିଜର ବାହାଘର ପର୍ଯ୍ୟନ୍ତ ଅଟକେଇଲ ନାହିଁ ତାକୁ କାହିଁକି ? ମୁଁ ମଧ୍ୟ ଦେଖିଥାନ୍ତି...."

ପ୍ରବୀରର ମୁଣ୍ଡ ଟଣ ଟଣ କରିବାକୁ ଲାଗିଲା । କ'ଣ ସେହି ଉତ୍ପାତ କରୁଥିବା ବାଳିକା ଏହା ନିକଟକୁ କିଛି ଲେଖା-ଲେଖି କରି ଦେଇ ନାହିଁ ତ । ସେ ସବୁକିଛି କରିପାରେ ।

"ଏମିତିରେ ମୁଁ ମଧ୍ୟ ତାକୁ ଦୁଇଥର ଦେଖିଛି ।" ସେ ପତି ପାଖରେ ଦୁଇ କହୁଣି ଟେକିକରି ଅଧଶୋୟା ମୁଦ୍ରାରେ ଘୁଞ୍ଚି ଆସିଲା ।

"ଥରେ ଫେଶନ ପେରେଡ଼ରେ ମୁନ୍ନୀ ଅପା ପାଇଁ ଗୋଟିଏ ବାଳିକା ଷ୍ଟୋଲ ନେବାର ଥିଲା । ସତରେ ବାଳିକାଠାରେ କିଛି ସମ୍ମୋହିନୀ ଶକ୍ତି ଥିଲା, ସାମାନ୍ୟ ବାଡିକର

ଦୁଇଗଜର ଏକଚତୁର୍ଥାଂଶ ସିଲ୍କ ଖଣ୍ଡେ କାନ୍ଧରେ ପକେଇ କରି ଏମିତି ହସିକରି ବାହାରି ଯାଇଥିଲା ଯେ ମୁନ୍ନୀ ଅପା ମୁଗ୍ଧ ହେଇକରି ଶହେ ଟଙ୍କାରେ ଆଠଅଣାର ଷ୍ଟୋଲ କିଣି ନେଇଥିଲା । ଦ୍ୱିତୀୟ ଥର ଦେଖା ହେଇଥିଲା ଗୋଟିଏ ସିନେମା-ହାଉସ୍‌ରେ । ସାଙ୍ଗରେ ତିନି-ଚାରୋଟି ହିପ୍ପୀ ଟୋକା ଆଉ ଏକ ବିଦେଶୀ ଟୋକି ଥିଲା । ଡାଡ଼ି ମଧ୍ୟ ଆମ ସହିତ ଥିଲେ, ମୁନ୍ନୀ ଅପା ଡାଡ଼ିଙ୍କୁ କହିଲା ଯେ ସେ ମୋର ଶ୍ୱଶୁର ଘରେ ରହେ, ତେବେ ଡାଡ଼ିଙ୍କର ବିଶ୍ୱାସ ହେଲାନାହିଁ - କହିବାକୁ ଲାଗିଲେ, "ମୁଁ ବିଶ୍ୱାସ କରେନାହିଁ । କୁନ୍ନୀର ଶ୍ୱଶୁରଘରର ଲୋକ ସଂସ୍କାରୀ ପଣ୍ଡିତ ଅଟନ୍ତି, ସେଠାରେ ବା ଏହି ଦୁଷ୍ଟ ସ୍ତ୍ରୀ କେମିତି ରହିପାରିବ ?"

କ'ଣ ଜାଣିଶୁଣି କରି କୁନ୍ନୀ ତାକୁ ଚିଡ଼ଉଥିଲା ? ପ୍ରବୀର ନିଜ ଛାତି ପାଖକୁ ଘୁଞ୍ଚି ଆସିଥିବା ଚେହେରାକୁ ଯତ୍ନକରି ଦେଖିଲା, ସେହି ଆଖି ଦୁଇଟିରେ ନା ବ୍ୟଙ୍ଗ ଥିଲା ନା ଈର୍ଷା । ତେବେ, କ'ଣ ସ୍ୱୟଂ ପ୍ରବୀରର ମନର ଚୋର ଥରକୁ ଥର କାନ ଛିଡ଼ାକରି ରହୁଥିଲା ? ପୁଣି ଆଜି ତ କୃଷ୍ଣକଲୀର ସ୍ମୃତି କ୍ଷତବିକ୍ଷତ କରିବାରେ ଲାଗିଥିଲା । ଆଜି, ଏଇଥିରୁ ନ ଚାହିଁଲା ପରେ ମଧ୍ୟ ସେହି ସୈଖାନ ଚେହେରା ସ୍ମୃତି-ପଟଳରେ ଭାସୁଥିଲା, କିନ୍ତୁ ଏହି ତିନି ମାସରେ ଆନନ୍ଦ, ଆମୋଦ-ପ୍ରମୋଦ, ଉତ୍ସବ ଆଉ ଧୁମଧଡ଼କା ମଝିରେ କିଏ ବା ତା'ର ସ୍ମୃତିକୁ କ୍ଷତ ବିକ୍ଷତ କରିଥିଲା ? ପୁଣି କାହିଁକି ପତ୍ନୀର ମଧୁର ବାହୁପାଶକୁ ଚିରି ସେହି ଅଦୃଶ୍ୟ ପ୍ରେତଛାୟା ତା'ର ଛାତିରେ ଲାଗିକରି କୁନ୍ନୀକୁ ପ୍ରତ୍ୟେକ ଦିନ ଦୂରକୁ ଠେଲି ଦେଉଥିଲା ?

ବାହୁରେ କୁନ୍ନୀକୁ ନେଇ ହିଁ ସେ କାହାରି ସ୍ମୃତିରେ ବୁଡ଼ିକରି ରହି ଯାଉଥିଲା ?

## ତେଇଶି

କାହିଁକି ଥରକୁ ଥର ଏହି ପଂକ୍ତି ଅବାଧ ଚିତ୍ତ ଦୋହରାଇବାରେ ମନେ ହେଉଥିଲା- 'ତନ୍ୱଙ୍ଗୀ ଗଜଗାମିନୀ ଚପଳଦୃକ୍ ସଂଗୀତ ଶିକ୍ଷାନ୍ୱିତା' । ଠିକ ହିଁ କହିଥିଲା ସେ । ଚାଦରର ଗଣ୍ଠିରେ ଅନ୍ୟଗଣ୍ଠି ଲାଗି ଯିବତ ଚମକିବ ନାହିଁ, ମୁଁ ମଶାଣୀରେ ସାଧନା କରିଛି, ମୁଁ ସବୁକିଛି କରିପାରେ । ପାଖରେ ଶୋଇଥିବା କୁନ୍ନୀର ନିଦରେ ଢଳୁଥିବା ମୁଣ୍ଡ ତା'ର କାନ୍ଧରେ ଲାଗି ଯାଉଥିଲା, ତେବେ ନାରୀ-ଦେହର ସୁଗନ୍ଧରେ ତା'ର ନାକର ରନ୍ଧ୍ର ଡେଇଁବାକୁ ଲାଗେ । ପ୍ରେତ ଲୋକରେ ଏଣେ ତେଣେ ବୁଲୁଥିବା ଅତୃପ୍ତ ଆତ୍ମାପରି ଆଉ ଏକ ଭୁଲି-ଭୁଲି ଯାଇଥିବା ସୁଗନ୍ଧ ତାହାର ଅନ୍ୟକାନ୍ଧରେ ମୁଣ୍ଡ ରଖି ଦେଉଥିଲା । ଅନ୍ଧକାରରେ ହିଁ ତା'ର ହାତ ଆଣ୍ଠୁ ପର୍ଯ୍ୟନ୍ତ ଭରା ଦେଇଥିବା ସେହି ଜୀବିତ ଚେହେରା

ଉପରେ ବିକ୍ଷିପ୍ତ ବାଳକୁ ସଜାଡ଼ିବାକୁ ଶୂନ୍ୟରେ ମେଲେଇବାକୁ ମେଲେଇ ହୋଇ ରହି ଯାଉଥିଲା । "ଧନ୍ୟ ଅଟେ ହିନ୍ଦୁ ଜାତି, ଯିଏ ମରି ଯାଇଥିବା ଲୋକକୁ ମଧ୍ୟ ପାଣିଦିଏ, ଏକ୍ ତୁ ଅଟୁ ଯିଏ ବଞ୍ଚିଛି..." ସେ ହଡ଼ବଡ଼ କରି ଉଠି ବସୁଥିଲା ।

"ଏମିତି କାହିଁକି ଚମକି ବସିଯାଉଛ ମହାଶୟ ଅଧ ରାତିରେ ।" କେବେ କୁନ୍ନୀ ବିରକ୍ତ ହୋଇ କହି ଦେଉଥିଲା । "ମତେ ମଧ୍ୟ ଡରେଇ ଦେଲ । ନିଦରେ ଚାଲିବାର ଯାହାର ଅଭ୍ୟାସ ଥିଲା, ସେ ତ ଆଖି ଆଗରେ ଉଚ୍ଚପଦାରୂଢ଼ ହୋଇ ବହୁତ ଦୂରକୁ ଚାଲି ଯାଇଥିଲା ।

ଆଉ ଥରେ କୁନ୍ନୀ ଏମିତିହିଁ ଧମକ ଦେଇଥିଲା । ହନୀମୁନ୍‌ର ନୂତନ ଯୋଡ଼ିକୁ ପାଣ୍ଡେ ମହାଶୟଙ୍କ ବନ୍ଧୁ ମି.କୌଲ ନିଜ କାର ଧରେଇ ଦେଇଥିଲେ । ପ୍ରବୀର ସ୍ୱୟଂ ଡ୍ରାଇଭ୍ କରି ଫେରୁଥିଲା ଦିନସାରା ଫୁଲ କେଶରର ଘାଟିମାନଙ୍କରେ ବୁଲିକରି । ସୁଗନ୍ଧରେ ଲାଖିଥିବା କୁନ୍ନୀ ପତି ପାଖରେ ବସି ମଧୁର ସ୍ୱରରେ ଗୁଣୁଗୁଣୁ ଗୀତ ଗାଉଥିଲା । ମୁଣ୍ଡ ଉପରେ ବନ୍ଧା ସିଲ୍କ ସ୍କାର୍ଫ କାଢ଼ିକରି ସେ ଝରକା ଖୋଲି ଦେଲା । ପାହାଡ଼ି ହାୱାର ଏକ ନିର୍ଲ୍ଲଜ ଧକା ଆସିକରି ତାର ଚେହେରା ଉପରେ ବାଳକୁ ପେନ୍ଥାକୁ ପେନ୍ଥା ମେଲେଇ ଯାଇଥିଲା । ଜଙ୍ଗଲି ଘାଟିର ବନଫୁଲର ସୁଗନ୍ଧରେ ମତ୍ତ ହୋଇଥିବା ମୟୂରୀ, ହଠାତ୍ ନବୀନ ସହଚରର ଅମାନବୀୟ ଗାମ୍ଭୀର୍ଯ୍ୟକୁ ଆହ୍ୱାନ କରି, ବିଜୁଳି ପରି ଛଟପଟ ହୋଇ ମୋଡ଼ି, କଣ୍ଡା ଉପରେ ଧରିଥିବା ଦୁଇଟି ଚଉଡ଼ା ପଞ୍ଜା ଉପରେ ଝୁଙ୍କି ପଡ଼ିଥିଲା । ହାୱାରେ ଉଡୁଥିବା ଚଞ୍ଚଳ ଝୁଲୁଥିବା ମୁଣ୍ଡର କେଶ ଦୁଇହାତ ଉପରେ ମେଲେଇ ହୋଇଗଲା, କ୍ଷୁଧାତୁର ତପ୍ତ ଓଠର ସ୍ପର୍ଶରେ ଯେମିତିକି ପ୍ରବୀରର ହାତରେ ଜଳୁଥିବା ନିଆଁ ଲାଗିଗଲା, ଏମିତିହିଁ ଏମିତି ମେଲେଇ ଥିବା କେଶଗୁଚ୍ଛ ଆଉ ହିମଶୀତଳ ଅଧରର ଲେପର ସ୍ମୃତି ତାର ଦୁଇ ହାତକୁ ଥରେଇ ଦେଲା । କ୍ଷଣକ ପାଇଁ ତା'ର ମନେ ହେଲା ସେ ଭାରସାମ୍ୟ ହରେଇ ବସିଛି । ଗାଡ଼ି ଏମିତି ଡାହାଣକୁ ବାମକୁ ଯିବାକୁ ଲାଗିଲା, ଯେମିତି କୌଣସି ନୂତନ ଶିଖିଲାବାଲା ଚାଳକର ହାତରେ ପଡ଼ିଯାଇଛି । ସେ ତ ହୁଏତ ରାକ୍ଷସ ପରି ଛିଡ଼ା ହୋଇଥିବା ବୃହତ ବୃକ୍ଷ ସହିତ ଧକା ହୋଇ ଚୁରମାର ହୋଇ ଯାଇଥାନ୍ତା । କୁନ୍ନୀ ତାକୁ କଦର୍ଯ୍ୟ ଭାବରେ ଧମକେଇ ଦେଇଥିଲା ।

"କ'ଣ ହୋଇ ଯାଇଛି ଆପଣଙ୍କୁ ? ଏବେ ଗାଡ଼ି ଧକା ହୋଇଥାନ୍ତା, ଠିକ୍ ଭାବରେ ଚଲାନ୍ତୁ ନା...."

ପ୍ରବୀର ବହୁତ ଡେରି ପର୍ଯ୍ୟନ୍ତ ଚୁପ୍ ହୋଇ ରହିଗଲା । ତାହାର ମଧୁର ମୁଦ୍ରାଗୁଡ଼ିକୁ କୁନ୍ନୀ କେମିତି ଦୋହରାଇ ନେଉଥିଲା ? କ'ଣ ସେ କୌଣସି ସତର୍କ ପେଶାଦାର ଗୁପ୍ତଚରର ଛଦ୍ମକପଟରେ ବିବାହ ପୂର୍ବରୁ ମଧ୍ୟ ତା ପଛରେ ଅଦୃଶ୍ୟ ଛାୟା ହୋଇ ବୁଲୁଥିଲା ? କେବେ-କେବେ ସେ ନିଜର ଚତୁର ପ୍ରଶ୍ନରେ କୌଣସି ଧୂର୍ତ୍ତ କ୍ରିମିନାଲର

ଅଗ୍ନିଶିଖା ପରି କାଠଗଡ଼ାରେ ଛିଡ଼ା କରେଇ ଦିଏ ଆଉ ତା'ର ମନେ ହେଉଥିଲା ନିଜର ଲୋଭନୀୟ ଯୌବନର ଉକ୍ରୋଚ ଦେଇକରି ସେ ତାକୁ ଦେଖିଲା ମାତ୍ରେ ଏପୂଭ କରି ଦେବ । ଥରେ ମାତ୍ର ସେ ମହା ମୂର୍ଖତା କରି ବସିଥିଲା ।

"କ'ଣ ମହାଶୟ..." ଅଧ ରାତିରେର ସେ ତା'ର ଗଳାର ନିଜର ଗୋଲ ଗୋଲ ବାହୁ ରଖିକରି ଲାଖି ଯାଇଥିଲା, "ଆପଣ ଏତେ ଦିନ ପର୍ଯ୍ୟନ୍ତ କ'ଣ ସତରେ କୁମାର ରହିଥିଲେ ? ମୁଁ ମାନିବାକୁ ପ୍ରସ୍ତୁତ ନୁହେଁ ଯେ ଆପଣଙ୍କ ପରି ସୁଦର୍ଶନ ପୁରୁଷକୁ ଦେଶ-ବିଦେଶର ଆଧୁନିକାମାନେ ଏମିତିହିଁ ଛାଡ଼ି ଦେଇଥିବେ ।"

ହୁଏତ ସେହି ରାତିକୁ ସେ ଦୁଃସାହସୀ ଦୁରନ୍ତ କିଶୋରୀର ଅଭିସାରର କଥା କହିପକେଇ ଥାନ୍ତା, କିନ୍ତୁ ସ୍ନେହିକ୍ଷଣ ସେହି ଅଦୃଶ୍ୟ ଛାୟା ଡେଇଁପଡ଼ି ତା'ର ମୁହଁ ବନ୍ଦ କରିଦେଲା- 'ମୂର୍ଖ କେଉଁଠିକାର, ଏମିତି କଥା ଶୁଣିଲା ପରେ କ'ଣ ସଂସାରର କୌଣସି ପତ୍ନୀ ପତିକୁ କ୍ଷମା କରିବ ?" ସେହି ଦିନଠାରୁ ପ୍ରବୀର ସମ୍ଭାଳି ଯାଇଥିଲା ।

ଦିଲ୍ଲୀ ଯିବା ପୂର୍ବରୁ ପାଣ୍ଡେ ମହାଶୟ ଜ୍ୱାଇଁକୁ ଏକାନ୍ତରେ ଡାକିକରି କେତେକ ଛୋଟମୋଟ ଅନୁଭୂତ ପାରିବାରିକ ରୋଗର ବ୍ୟବସ୍ଥା ପତ୍ର ଧରେଇ ଦେଇଥିଲେ । "କେବେ-କେବେ ଭାବେ ତମକୁ ଦିଲ୍ଲୀକୁ ଆଣି ମୁଁ ଠିକ୍ କରି ନାହିଁ ।" ସେ ଚିନ୍ତିତ ସ୍ୱରରେ କହିବାକୁ ଲାଗିଲେ, "ଦେଶର ଅବସ୍ଥାତ ଦେଖୁଛ । ଏବେ କାହାକୁ ରାଜସିଂହାସନରୁ ତଳକୁ ଘୋଷାରି ନେଇ ହାତରେ ଝାଡୁ ଧରେଇ ଦେଇଛି, ଠିକ୍ ନୁହେଁ । ପ୍ରଜାତନ୍ତ୍ର ଏବେ ଶାସକବର୍ଗ ପାଇଁ ସଜାତନ୍ତ୍ର ହେଇକରି ରହି ଯାଇଛି । ଭାବିଲି, ଚାଲିବା ପୂର୍ବରୁ ତମକୁ ସାବଧାନ କରିଦିଏ । ଯୁଗ ଏବେ ଏମିତି ଆସି ଯାଇଛି ଯେ ଆଇନ-କାନୁନ୍ ଉଠେଇ କରି ଥାକରେ ରଖି ଦେଇ ହିଁ ରାଜଦଣ୍ଡ ସମ୍ଭାଳିବାକୁ ହେବ । ତମେ ତ ନିଜେହିଁ ବୁଦ୍ଧିମାନ ଅଟ, କିନ୍ତୁ ଏତିକି ଶିକ୍ଷା ମୋର ମଧ୍ୟ ଗଣ୍ଠିରେ ବାନ୍ଧି ନିଅ । ବିଶୁଦ୍ଧ କର୍ମକାଣ୍ଡୀ ଅଫିସରରାଜଙ୍କ ଯୁଗ ଏବେ ଶେଷ ହେଇଯାଇଛି । ଇଂରେଜମାନଙ୍କର ଶାସନ କାଳରେ ସୁପାରିଶ୍‌ର ମଧ୍ୟ ଯୁଗ ଥିଲା ସେଥିରେ ମଧ୍ୟ ଏକ ଇଜ୍ଜତ ଥିଲା, ଆଉ ଏବେ ? ସେଦିନ ମୋର ଏକ ପୁରୁଣା ବନ୍ଧୁ ମିଳିଲା, ଉଚ୍ଚ ବିଭାଗର ଉଚ୍ଚ ଚଉକିରେ ବସିଥିବା ବଡ଼ ଉଚ୍ଚ ଅଫିସର । କହୁଥିଲା ଯେ ଏବେ ତ ଗୋଟିଏ ଚପରାଶିର ବଦଳି ପାଇଁ ମଧ୍ୟ ମନ୍ତ୍ରୀ ବିରକ୍ତ ହେବାକୁ ଲାଗିଲେଣି । ଯେତେ ପ୍ରକାରର ଅସଭ୍ୟତା କରାଯିବ, ସେତିକି ହିଁ ଉଚ୍ଚ ଫଳ ମିଳିବ ।"

ପ୍ରବୀରକୁ ସିନେମା ଯିବା ପାଇଁ କୁନ୍ନୀ ପରଦାରେ ଉଙ୍କିମାରି ମାରି କରି ତିନିଥର ଡାକି ଯାଇଥିଲା, କିନ୍ତୁ ପାଣ୍ଡେ ମହାଶୟ ରଙ୍ଗର ପ୍ରଭାବରେ ପଡ଼ି ଯାଇଥିଲେ ।

ସୁଶୀଳ କପଡ଼ା ପିନ୍ଧିକରି, ଆଖି ନୁଏଁଇ କହି ଚାଲିଲା ବାଲା ନମ୍ର ପଥିକକୁ ଏବେ କେହି ଦେଖନ୍ତି ନାହିଁ, କିନ୍ତୁ ସଡ଼କ ଉପରେ ଶୋଇକରି ସ୍ଲୋଗାନ ଦେଇ

ପ୍ରଧାନମନ୍ତ୍ରୀଙ୍କ ଗାଡ଼ି ଅଟକାଇଲାବାଲା ଲଙ୍ଗଳା ନିର୍ଲଜ ବ୍ୟକ୍ତି କ୍ଷଣିକରେ ପ୍ରଧାନମନ୍ତ୍ରୀଙ୍କ ଠାରୁ ଅଧିକ ପ୍ରସିଦ୍ଧ ହେଇଯାଆନ୍ତି, କାହିଁକି ? ଏଇଥିପାଇଁ ଯେ ଏବେ ଏହି ବିଚିତ୍ର ପ୍ରଜାତନ୍ତ୍ରରେ ନ୍ୟୁସେନ୍ସ ଭେଲ୍ୟୁ ବଢ଼ିଯାଇଛି । ମୁଁ ଭାବୁଛି, ତମେ ସମସ୍ତେ ବୁଝି ଯାଇଥିବ - "ଉଇସ୍ ୟୁ ଏ ଭେରି-ଭେରି ବ୍ରାଇଟ୍ ଫ୍ୟୁଚର", ସେ ହସିକରି ଜ୍ୱାଇଁଙ୍କର ଦୁଇହାତ ଧରି କରି ନଇଁ-ନଇଁ କରି ଏମିତି ହଲେଇ ଦେଇଥିଲେ, ଯେମିତି କୌଣସି ଚତୁର ବ୍ୟବସାୟୀ ନିଜର ନୂଆ-ନୂଆ ନିଯୁକ୍ତ ହେଇଥିବା ସେକ୍ରେଟେରୀର ସ୍ୱାଗତ କରୁଛି । ସେଦିନ ଶ୍ୱଶୁର ଠାରୁ ନୁହେଁ କୁନ୍ନୀ ଠାରୁ ମଧ୍ୟ ପ୍ରବୀରକୁ ବିଦାୟ ନେଇକରି ଏକାକୀ ଫେରିବାକୁ ପଡ଼ିଲା । ଏକଦିନ ପାଇଁ ବାପଘରକୁ ଯାଇ କୁନ୍ନୀ ମଧ୍ୟ ଦୁର୍ଭାଗ୍ୟବଶତଃ ପାଦ ମଚକେଇ ସେଠାରେ ଅଟକି ଯାଇଥିଲା । ପତିକୁ ଷ୍ଟେସନ ପର୍ଯ୍ୟନ୍ତ ପହଞ୍ଚାଇ କରି ଅଶ୍ରୁସିକ୍ତ ପ୍ରଥମ ବିଦାୟ ଦେବାର ତା'ର ସ୍ୱପ୍ନ ଅସମାପ୍ତ ରହିଗଲା ।

ପ୍ରବୀର ସମୟଠାରୁ କିଛି ପୂର୍ବରୁ ଷ୍ଟେସନରେ ପହଞ୍ଚି କରି ପତ୍ରିକା ନେବାକୁ ବୁକ ଷ୍ଟଲରେ ଛିଡ଼ା ହେଇ ଯାଇଥିଲା, ହଠାତ୍ କେହି ପିଠି ଉପରେ ହାଲୁକା ଭାବରେ ଠକ ଠକ୍ କଲା ସେ ଚମକି ପଡ଼ି ବୁଲି ପଡ଼ିଲା ।

"ବହୁତ ବେଳରୁ ତମକୁ ସେଡ଼ୋ କରି ରହିଥିଲି ।" କିଛି କିଛି ଚିହ୍ନା ଲୋକଙ୍କ ଚେହେରାକୁ ପ୍ରବୀର ଭଲକରି ଦେଖିଲା, କିଏ ଥିଲା ସେ ତାକୁ ସେଡ଼ୋ କଲାମହିଳାଟି ?

ଲିପ୍‌ଷ୍ଟିକ୍‌ରେ ରଙ୍ଗେଇ ଥିବା ଓଠର ମଝି ଦାନ୍ତକୁ ବନ୍ଧେଇ ଥିଲା ସୁନାର କଣ୍ଟାରେ ସ୍ମୃତି-ଦ୍ୱାରରେ କଳଙ୍କି ଲାଗିଥିବା ତାଲା ହଠାତ୍ ଖୋଲିଦେଲା । ଶ୍ୱଶୁର-ଗୃହରେ ପ୍ରଥମ ଥର ଦେଖା ହେଇଥିବା ପାଣ୍ଡେ ମହାଶୟଙ୍କ ଗାର୍ଲଫ୍ରେଣ୍ଡ ଲୌରୀନ, କଲୀର ଲୌରୀନ ଆଣ୍ଟି । ପ୍ରବୀର ଚମକି ପଡ଼ିଲା, ଏଠାକୁ କ'ଣ କରିବାକୁ ଆସିଛି ବୃଦ୍ଧା । ପାଣ୍ଡେ ମହାଶୟ ଆଉ ତାକୁ ସ୍ମଗଲ ପକେଟର ଦୂତ କରି ପଠେଇ ନାହାନ୍ତି ତ ? "କିଛି କ୍ଷଣ ତ ପାଣ୍ଡେ ତମ ସହିତ ଥିଲେ, ଭୟ କରୁଥିଲି କି ଗାଡ଼ି ଛାଡ଼ିବା ପର୍ଯ୍ୟନ୍ତ ହିଁ ତୁମକୁ 'ସୀ ଅଫ' କରିବାକୁ ରହି ନ ଯାଆନ୍ତି । କିନ୍ତୁ ତା'ର ମଧ୍ୟ ବ୍ୟବସ୍ଥା ମୁଁ କରି ସାରିଥିଲି । ତମ ସହିତ ଯିବା ପାଇଁ ଟିକଟ ମଧ୍ୟ କରି ସାରିଥିଲି । ଯଦି 'ଇଫ୍ ଆଇ ନୋ', ପାଣ୍ଡେ ଗାଡ଼ି ଛାଡ଼ିବା ପର୍ଯ୍ୟନ୍ତ ଛିଡ଼ା ହେଇ ରହିବେ, ଏମିତି 'ପେସେନ୍ସ' ତାଙ୍କଠାରେ ନାହିଁ । ନିଅ...." କହି ଏକ ମୋଟା ଲଫାପା, ସେ ପ୍ରବୀରର ଝୁଲଥିବା ହାତରେ ଏକ ପ୍ରକାର ଟାଣିକରି ଧରେଇ ଦେଲା । ଆଶ୍ଚର୍ଯ୍ୟ ହେଇ ପ୍ରବୀର ଘୁଙ୍ଗାପରି ହେଇଗଲା କିନ୍ତୁ ଆଖି ଆଖିରେ ସେ ପଚାରି ନେଲା 'କେମିତି ଲଫାପା ଇଏ ଦେଉଛି ? କିଏ ଦେଇଛି ?' କିନ୍ତୁ ସେହି ରହସ୍ୟମୟ ଚେହେରା କଣ ମାଡ଼ାମ୍ ଟୁସୋଡ଼ଜଙ୍କର ତିଆରି କରିଥିବା ମହମର ଚେହେରା ହେଇ ଯାଇଥିଲା ? ସେହି ନିର୍ଜୀବ ଚେହେରାର ଗୋଟିଏ ହେଲେ କଠିନ ରେଖା ପ୍ରବୀରର ତରାଜୁର ପଲ୍ଲାରେ ପଡ଼ିଲା ନାହିଁ । ତାକୁ ଚିଠି ଧରେଇ ହିଁ ସେ ଶୀଘ୍ର ଶୀଘ୍ର ତା'ର ଉଚ୍ଚ

ଗୋଇଠି ଖଟ ଖଟ କରି ଲୋକଗହଳିରେ ଏମିତି ଅଦୃଶ୍ୟ ହେଇଗଲା, ଯେମିତି କି କୌଣସି ବ୍ୟସ୍ତ ଡାକ ପିଅନ ଅଟେ । ଠିକଣା ପଢ଼ିକରି ପାଇଲାବାଲାକୁ ପତ୍ର ଧରେଇ ଦେବାହିଁ ହୁଏତ ତା'ର କାମ ଥିଲା, ପତ୍ର କାହାର ଅଟେ, କେଉଁଠୁ ଆସିଛି-ଏହି ମୁଣ୍ଡବ୍ୟଥା କ'ଣ ଡାକ ପିଅନ କିଣି ନେଇଥାନ୍ତା ?

ଗାଡ଼ି ଆସିବାରେ ଡେରି ଥିଲା । ବୁକ୍‌ଷ୍ଟଲର ଉଚ୍ଚ କାଠ ପଟାକୁ ଆଶ୍ରୟକରି ସେ ଲଫାପା ଖୋଲିଦେଲା । ନାମ ତ ତାହାରି ଥିଲା । ସୁନ୍ଦର ଗୋଲ ଲେଖା ସହିତ ପରିଚିତ ହାଲୁକା-ସୁଗନ୍ଧ ଗଳାରେ ବାହୁ ରଖି ବହିଗଲା ।

"କିଏ ?"

"ତମେ କାବୁଲ ଛାଡ଼ି ଦେଇଛ ନା, ଏଇଥିପାଇଁ ଲମ୍ବା ନାମକୁ ମୁଁ ଛୋଟ କରି ଦେଇଛି ।"

"ଲୌରୀନ ଆଣ୍ଟି ପାଇଁ, ମୁଁ କେବେ ବହୁତ ଓଜନିଆ ଗୋଲ୍ଡ-ବାର ସ୍ମଗଲ କରିଥିଲି, ମୋର ଏହି ହାଲୁକା ଚିଠିକୁ ସେ ନିଶ୍ଚୟ ହିଁ ସହଜରେ ସ୍ମଗଲ କରି ତମ ପର୍ଯ୍ୟନ୍ତ ପହଞ୍ଚେଇ ଦେବ । ବ୍ୟସ୍ତ ହେଉଛ କି ଯଦି ମଝିରେ ଚିଠି ଘଡ଼ି ପକେଇ ଥିବା, ତମର ପାଣ୍ଡେ ମହାଶୟର ବନ୍ଧୁ ଅଟେ ତ ସେ କିନ୍ତୁ ଏମିତି ନୁହେଁ । ମୋର ଲୌରୀନ ଆଣ୍ଟି ! ପ୍ରତ୍ୟେକ ରବିବାରକୁ ଗିର୍ଜାକୁ ଯାଏ । ସେଦିନ ଶରୀର ଆଉ ଆତ୍ମା ଦୁହିଁଙ୍କୁ ଶୁଦ୍ଧ ରଖେ ଆଣ୍ଟି । କିଛି କଥାରେ ସେ ପକ୍କା ଖ୍ରୀଷ୍ଟିଆନ୍ ଅଟେ ଆଉ ପ୍ରକୃତ ଖ୍ରୀଷ୍ଟିଆନ କେବେ ସ୍ଲାଇ ହୁଏ ନାହିଁ ।

"ଭାବୁଥିବ ଯେ ଯାଉଥିଲି ଲଙ୍କା ଆଉ ପହଞ୍ଚିଗଲି ଏଲାହାବାଦ ! ସୀତାକୁ କ'ଣ ସ୍ୱୟଂ ରାବଣ କେବେ ଫେରେଇ ଦେଇ ପାରିଥାନ୍ତା ? ମତେ ମଧ ସେ ଫେରେଇ ଆଣିଲା ଯିଏ ରାବଣର ଯମମୁଣ୍ଡକୁ ଫୁଟକି ମାରି ଚକଟି ରଖି ଦେଇଥିଲା । ଏବେ ମୁଁ ନାସ୍ତିକ ନୁହେଁ 'କିଏ' ? ଅମ୍ମା ସହିତ ମନ୍ଦିର ମଧ ଯାଉଛି । ମାସେ ହେଲା ଅମ୍ମା ମଧ ଏଠାରେ ଅଛି । ଯାଇଥିଲି ଏହା ଭାବିକରି ଯେ ସମସ୍ତ ପାରିବାରିକ ସମ୍ବନ୍ଧ ଭାଙ୍ଗିକରି କେବେ ଫେରିବି ନାହିଁ, କିନ୍ତୁ ମୁଣ୍ଡ ଲଣ୍ଡା କଲା ମାତ୍ରେ କୁଆପଥର ପଡ଼ିଗଲା । ଟ୍ରେନରେ ଦେଖାହେଲା ଦୂରସମ୍ପର୍କର ମାଉସୀ ଆଉ ତାଙ୍କର ଏମିତି ସିଦ୍ଧ ସ୍ୱାମୀ, 'ଯାହାକୁ ଦେଖିକରି ହୁଏତ ତମେ ମଧ ଚାଲୁଥିବା ଟ୍ରେନ୍‌ରୁ ଡେଇଁ ପଡ଼ିଥାନ୍ତ ବା ଜଣାନାହିଁ ହୁଏତ ସେ ହିଁ ତମକୁ ଦେଖିକରି ଡେଇଁ ପଡ଼ିଥାନ୍ତେ ! ଜଣା ନାହିଁ କାହିଁକି, ତାଙ୍କର କଥାରେ ମତେ ତମର ଗୁହ-କଳଙ୍କର ଦୁର୍ଗନ୍ଧ ଆସିଲା । ଚଟକରି ଗୋଟିଏ ଅଜଣା ଷ୍ଟେସନରେ ଓହ୍ଲେଇ ଗଲି । ଭାବିଥିଲି, ଅନ୍ୟ ଗାଡ଼ିରେ ଚାଲିଯିବି । କରିଥିଲି ମଧ ତାହା, କିନ୍ତୁ ଗୋଟିଏ ମାରାତ୍ମକ ଭୁଲ କରି ବସିଲି । ଯେଉଁ ଗାଡ଼ିରେ ଉଠିକରି ବସିଗଲି ତା'ର କଳଙ୍କିତ

ଇଞ୍ଜିନର ମୁହଁ କେଉଁ ଆଡ଼କୁ ଅଛି, ଏହା ଦେଖିଲି ନାହିଁ, ବହୁତ ଡେରି ପରେ ବୁଝି ପାରିଲି ଯେ, ଯେଉଁ ଷ୍ଟେସନର ସିଡ଼ିଗୁଡ଼ିକ ଦେଇ ପୁଣି ଥରେ ତଳକୁ ଓହ୍ଲାଉଛି, ଯେଉଁ ଷ୍ଟେସନରେ ସିଡ଼ିଗୁଡ଼ିକ ଚଢ଼ି କିଛି ଘଣ୍ଟା ପୂର୍ବରୁ ଯାଇଥିଲି, ସେହି ସିଡ଼ିଗୁଡ଼ିକରେ ପୁଣି ଥରେ ତଳକୁ ଓହ୍ଲାଉଛି । ତେବେ କ'ଣ ବିଧାତା ମତେ ଜାଣିଶୁଣି କରି କଲିକତାକୁ ଟାଣୁଥିଲା ? ହଡ଼ବଡ଼େଇ କରି ଚନ୍ଦ୍ରନଗରରେ ଓହ୍ଲେଇଗଲି । ଯେତେବେଳେ ଲୌରୀନ ଆଣ୍ଟିର ଚାକିରିରେ ଥିଲି, ସେତେବେଳେ ମୋର ଏଠାରେ ମହତ୍ତ୍ୱପୂର୍ଣ୍ଣ ହେଡ଼କ୍ୱାଟର ଥିଲା । ଲୌରୀନ ଆଣ୍ଟିର ଭାଇ ସିମ୍ପସନ ସେଠାରେ ରେଳ ବିଭାଗରେ ଡୀଲକ୍ସ ଡ୍ରାଇଭର ଥିଲା । ସେଠାରେ ପହଞ୍ଚିଲାରୁ ସ୍ନେହୀ ଦମ୍ପତୀ ମତେ ବହୁତ ଆଦର କରି ଅଟକେଇ ଦେଲେ । କେବେ ସେମାନଙ୍କର ଆତିଥ୍ୟର ମୁଁ ଗୋଟିଏ ଗୋଟିଏ ଓଜନିଆ ଗୋଲ୍ଡ-ବାର ଦେଇକରି ମୂଲ୍ୟ ପରିଶୋଧ କରିଥିଲି, ଏଥର ଫମ୍ପା, ଏହା ହୁଏତ ସେମାନେ ମଧ ବୁଝି ଯାଇଥିଲେ । ଏଇଥିପାଇଁ ଆତିଥ୍ୟର ଦଉଡ଼ି କିଛି-କିଛି ଢିଲା ହେବାକୁ ଲାଗିଲା । ତୃତୀୟ ଦିନରେ ମତେ ଜର ହେଇଗଲା, ପୁଣି ସର୍ବାଙ୍ଗରେ ଅସହ୍ୟ କଷ୍ଟ । ମିସେସ୍ ସିମ୍ପସନକୁ ଭୟ ହେଉଥିଲା, ମତେ ଯେମିତି ବସନ୍ତ'ରୋଗ ନ ହେଇ ଥାଉ । ତାଙ୍କ ପାଖ ପଡ଼ିଶା ମହାମାରୀ ମାତାଲ ହେଇ ନାଚ କରୁଥିଲା । କିନ୍ତୁ ମୋର ମହାମାରୀ ତା'ଠାରୁ ଅନେକ ଅଧିକ ଭୀଷଣ ବାହାରିଲା । ମତେ ଜଣାନାହିଁ କେଉଁ ଇନଟ୍ୟୁସନ ସତର୍କ କରିଦେଲା । ଏହି କଷ୍ଟ ଆଉ ଏମିତି ନିଶାରେ ଚୂର କରିଥିବା ଦୁଃସହ ଜ୍ୱର ସାଧାରଣ ହେଇ ନପାରେ । ମନେ ହେଉଥିଲା, ପୁଣି ଥରେ ତମରି ବାହୁରେ ଜ୍ୱର ଦସ୍ତ ସଂକୁଚିତ ହେଇଯାଇଛି । ଆଉ ପୁରା ଦେହ ଜଳିବାକୁ ଲାଗିଛି । ତମକୁ ଥରେ ପୁଣି ଦେଖିବାକୁ ଚାହୁଁଛି । ଜାଣିଛ କାହିଁକି ? ଏଥର ମୁଁ ଶ୍ୱଶୁର ଘରକୁ ଯାଉଛି । ଆଉ ତମର ଥଳିରେ ଶୁଖିଲା ଫଳ ଛଡ଼େଇ କରି ଖାଇବିନାହିଁ । କ'ଣ ଥରେ ଆସିପାରିବ ? ମୂର୍ଖ ଡାକ୍ତର ଭାବୁଛନ୍ତି, ମତେ କିଛି ଜଣାନାହିଁ, କିନ୍ତୁ ବମ୍ବେର ଟାଟା କେନସର ଡାକ୍ତରଖାନାରେ ଲୋକମାନେ ହନୀମୁନ ମନେଇବାକୁ ଯାଆନ୍ତି ନାହିଁ, ଏତିକି ମୁଁ ମଧ ଜାଣେ । କିଛି ମାସରେ, ମୁରୁବ୍ବୀ ପାଇଁ ଫୋଡ଼ା ହେଇଥିବା ଅଁଳା ପରି କୋଳ ଦେଇ ଯାଇଛି । କେବେ ମୋର ହାଡ଼ଗୁଡ଼ିକରୁ ମଜ୍ଜା ରାମ୍ପୁଡ଼ିକରି ଆଉ କେବେ ପାଣିହେଇ ଯାଉଥିବା ମୋର ନିର୍ଦ୍ଦୋଷ ରକ୍ତକୁ ସିରିଞ୍ଜରେ ଟାଣିକରି ଡାକ୍ତର ଯେତେବେଳେ ଦେଖିବାକୁ ଲାଗୁଥିଲେ, ତେବେ ମତେ ହସ ମାଡ଼େ । ଠିକ୍ ଯେମିତି କୌଣସି ଚତୁର ଗ୍ରାହକ ପ୍ରତାରକ ଗଉଡ଼ର ଦୁଧକୁ ପରୀକ୍ଷା କରୁଥାଏ ଯେ କେତେ ପାଣି ମିଶାଯାଇଛି । ମୋର ଗଉଡ଼ ଜନ୍ମର ପୂର୍ବରୁ ହିଁ ଦୁଧରେ ପାଣି ମିଶେଇ ଦେଇଥିଲା, ଏହା କେହି ଜାଣି ନ ଥିଲେ । କିନ୍ତୁ କେମିତି ମର୍ଯ୍ୟାଦା ସମ୍ପନ୍ନ ରୋଗ ଅଟେ । ମିନିଟକ ଭିତରେ ରୋଗୀକୁ ଶହୀଦ କରି ରଖିଦିଏ । ଯେଉଁଠାରୁ ବାହାରିଛି, ସେଠାରେ ଲୋକଙ୍କର ଆଖିରେ 'ମିଲ୍କ ଅଫ ହ୍ୟୁମାନ କାଇଣ୍ଡନେସ'

ଉଛୁଳିବାକୁ ଲାଗେ, ଯେମିତିକି କୋକେଇରେ ବନ୍ଧା ହେଇଥିବା କୌଣସି ତରୁଣର ଲାଶ ବାହାରୁଛି ।

"ମୁଁ ଜାଣିଛି ତମେ ଆସିବ, କାହିଁକି ନା ମଝିରେ-ମଝିରେ ମୋର ମନେ ହୁଏ, ମୁଁ ପୁଣିଥରେ ନିଜର ଆରଣ୍ୟକରେ ପହଞ୍ଚି ଯାଇଛି । ମୋର ମୁଣ୍ଡ ତୁମ ଆଣ୍ଠୁ ଉପରେ ରହିଛି ଆଉ ମୋର ମୁଣ୍ଡ ଉପରେ ଧରିଥିବା ତମର ହାତ ଥରିବାକୁ ଲାଗିଛି ।"

"ପ୍ରୟାଗ ଷ୍ଟେସନରେ ଓହ୍ଲେଇବ, ଜଙ୍କସନ ଠାରେ ନୁହେଁ ଆଉ ପୁଣି କୌଣସି ରିକ୍ସାବାଲାକୁ କହିବ ତମକୁ ଇସାକ୍ସ ଟୋଲେର ମୋଟି ମେମ୍‌ଙ୍କ ଘରକୁ ଯିବାକୁ ହେବ । ତମକୁ ପହଞ୍ଚେଇ ଦେବ ।"

ଲମ୍ବା ଚିଠିର ଅନ୍ତରେ କାହାର ନାମ ନଥିଲା ।

ପ୍ରବୀରର ଗାଡ଼ି ଆସିକରି କେତେବେଳୁ ଯାଇ ମଧ ସାରିଥିଲା । କିଛି ସମୟ ପର୍ଯ୍ୟନ୍ତ ସେ ଚିଠିକୁ ହାତରେ ନେଇ ଭୂତ ପରି ଛିଡ଼ା ହେଇ ରହିଲା, ପୁଣି ଦୃଢ଼ ପାଦରେ ଟକିଟଘର ଆଡ଼କୁ ଆଗେଇ ଗଲା ।

ସ୍କ୍ରେଚୀ ରୋଡ଼ର ସେହି ବଙ୍ଗଳା ପର୍ଯ୍ୟନ୍ତ ପହଞ୍ଚିବାକୁ ତାକୁ ଯେମିତି ପୁରା ବର୍ଷେ ଲାଗି ଯାଇଥିଲା । ଯେଉଁ ଷ୍ଟେସନରେ ଗାଡ଼ି ଅନେକ ସମୟ ଅଟକୁ ଥିଲା, ସେ ଅଧୈର୍ଯ୍ୟରେ ଚଢ଼ି ଉଠୁଥିଲା । ଧୀରେ ଧୀରେ ଜିନିଷ ଓହ୍ଲାଇ ଅଜଣା ଯାତ୍ରୀମାନଙ୍କ ଉପରେ ତାକୁ ଏମିତି ରାଗ ହେଉଥିଲା, ଯେ ଧକ୍କାମାରି ତାଙ୍କୁ ଓହ୍ଲେଇ ଗାଡ଼ିକୁ ଶୀଘ୍ର ଶୀଘ୍ର ଦଉଡ଼ାଇ ନେବାକୁ । ଏକ ହିଁ ଉପକରଣର, ଏକ ଧାଡ଼ିରେ ଗମଲାରେ ସଜା ହେଇଥିବା ବଙ୍ଗଳାରେ ଆଣ୍ଟିର ବଙ୍ଗଳା ଖୋଜିବାରେ ତାକୁ କୌଣସି ଅସୁବିଧା ହେଇନାହିଁ । ଫୁଲଭର୍ତ୍ତି ଏ ପ୍ରନର ହାତୀ ପିଠିରେ ବସିବା ଆସନ ଲଗେଇ ଛୋଟମୋଟ ମସ୍ତ ହସ୍ତିନୀ ପରି ଆଣ୍ଟି, ବାରଣ୍ଡାରେ ଗୋଟିଏ ଲମ୍ବା ବାଉଁଶ ଉପରେ ଝାଡୁ ବାନ୍ଧି ବୁଢ଼ିଆଣୀର ଜାଲ ପକଉଥିଲା । ସେହି ବିରାଟ ଶରୀରର କ୍ଷେତ୍ରଫଳର ଗଣନାରେ ପ୍ରବୀର ସଂକୁଚିତ ହେଲା । ମନେ ହେଉଥିଲା, ବେଢ଼ଙ୍ଗିଆ ଶରୀରର ଦିଗ୍‌ବଳୟ ଦୃଷ୍ଟି ଭିତରେ ଆସି ପାରିବ ନାହିଁ । ଅଜଣା ହେଇ ଥିବାରୁ ସେ ବାଉଁଶତଳେ କଚାଡ଼ି ନାକ ଉପରେ ବନ୍ଧା ହେଇଥିବା ରୁମାଲର ମୁଖା ଖୋଲି ତାଳରେ ହସି ପ୍ରବୀରର ସ୍ୱାଗତ କରିବାକୁ ଏମିତି ଆଗେଇ ଆସିଲା, ଯେମିତିକି ତାକୁ ବର୍ଷ ବର୍ଷ ଧରି ଜାଣିଛି ।

ପ୍ରବୀରର ମୁଣ୍ଡ ପୁଣି ଥରେ ଠଣ ଠଣ ହେବାକୁ ଲାଗିଲା । କ'ଣ ତାକୁ ବୁଦ୍ଧୁ କରି ଯାଇ ନାହିଁତ କଳୀ । ଆତିଥ୍ୟ ପ୍ରଦାନକାରୀର ଏହି ଫୁଟି ଉଠିଥିବା ହସହସ ଚେହେରାକୁ ଦେଖିକରି ତ ମନେ ହେଉନଥିଲା ଯେ ଭିତରେ କେହି ମୃତ୍ୟୁ ଶଯ୍ୟାରେ ପଡ଼ି ରହିଛି ।

"ଆସନ୍ତୁ-ଆସନ୍ତୁ, ଏବେ-ଏବେ ଫଳର ରସ ପିଏଇ କରି ଶୁଏଇ ଆସିଛି,

ଏମିତିରେ କେପ୍‌ସୁଲର ପ୍ରଭାବ ପଚିଶ ମିନିଟ ରହୁଛି, ସେଠାକୁ ଯିବା କି ?”

ପ୍ରବୀର ତାହାର ସ୍ୱାଭାବିକ ସ୍ୱାଗତ ଦେଖିକରି ଆଶ୍ଚର୍ଯ୍ୟ ହେଇ ରହିଗଲା । ଇଏ ମଧ୍ୟ ପଚାରିଲା ନାହିଁ କି କିଏ, କେଉଁଠୁ ଆସିଛ । ରିକ୍ସାରୁ ଏମିତି ଜିନିଷ ଓହ୍ଲାଇ ନେଲା, ଯେମିତିକି ସେ କେହି ବହୁ ପ୍ରତୀକ୍ଷିତ ଲୋଭନୀୟ ଅତିଥି ଅଟେ । ଅନ୍ୟକ୍ଷଣରେ ସେ ସଂକୋଚରେ ପୋତିହୋଇ ଗଲା । ହେଇପାରେ, କଲୀ ତାକୁ ସବୁକିଛି କହି ସାରିଛି । “ସେଠାକୁ ଯିବା ନା ?” ପୁଣି ତା’ର ଉତ୍ତରର ପ୍ରତୀକ୍ଷା ନକରି ସେ ସଫା-ସୁତୁରା ଛୋଟ କୋଠରୀରୁ ପଥ ଦେଖାଇ ତାକୁ ଭିତରକୁ ନେଇ ଚାଲିଲା । ସ୍ଥୂଳ ଶରୀରର ଅନୁପାତରେ ଚାଇନିଜ ସୁନ୍ଦରୀ ମାନଙ୍କୁ ବାନ୍ଧିକରି ବଳପୂର୍ବକ ଛୋଟ କରା ଯାଇଥିବା ତା’ର ଛୋଟ ଛୋଟ ପାଦ ଲାଲ ମଖମଲ ବେଡ଼ସ୍ଲିପରରେ ବିଲେଇ ପରି ପଞ୍ଝା ଧରିଥିଲା । ପ୍ରବୀରର କଲିଜା ଧଡ଼ ଧଡ଼ କରି ମୁହଁକୁ ଆସିଗଲା । ଚେହେରା କ୍ଷଣକ ପାଇଁ ବାଳିକାମାନଙ୍କ ପରି ଲଜ୍ଜାରେ ରଙ୍ଗ ହେଇ ଲାଲ ପଡ଼ିଗଲା, ଯେମିତିକି ସେହି ମୋଟି ମେମ୍ ତା’ର ଏକ-ଏକ ଧଡ଼-ଧଡ଼ ଶବ୍ଦ ଶୁଣି ନେଇଛି । ପଲଙ୍କରେ ଶୋଇଥିବା କଲୀର ମୁଣ୍ଡ ଆଡ଼କୁ ପଡ଼ିଥିବା ଚଉକିରେ ପ୍ରବୀରକୁ ବସିବା ପାଇଁ ହାତର ମୂକ ସନ୍ଦେଶ ଦେଇକରି ସେ ଫୁସ୍‌ଫୁସ୍ କରି କହିଲା- “ଏଠାରେ ବସନ୍ତୁ, ଏବେ ଉଠି ପଡ଼ିବ । ମୁଁ ଚା ନେଇ ଆସୁଛି ।” ପୁଣି କ୍ଷଣକ ପାଇଁ ସେ ବେକକୁ ବଙ୍କାକରି ଦୁହିଁଙ୍କୁ ଏମିତି ମୁଗ୍ଧ ଦୃଷ୍ଟିରେ ଦେଖିବାକୁ ଲାଗିଲା ଯେମିତିକି କିଶୋର ଅବସ୍ଥାରେ ପଢ଼ିଥିବା ନିଜର କୌଣସି ପ୍ରିୟ ରୋମାଣ୍ଟିକ ଉପନ୍ୟାସର ସବୁଠାରୁ ରୁଚିକରି ପରିଚ୍ଛେଦ ଦ୍ୱିତୀୟଥର ପଢୁଛି । ପ୍ରବୀର କିଛି ପଚାରିଥାନ୍ତା, ତା ପୂର୍ବରୁ ସେ ଚା ନେବାକୁ ଚାଲିଗଲା । ତାକୁ କଲୀ ସହିତ ଏକାନ୍ତରେ ସେ କ’ଣ ଜାଣିଶୁଣି କରି ଛାଡ଼ି ଯାଇଥିଲା ? ତକିଆରେ ପଡ଼ିଥିବା କମନୀୟ ସୁପ୍ତ ଚେହେରାକୁ ପ୍ରବୀର ମନୋଯୋଗ ସହକାରେ ଦେଖିଲା । କ’ଣ ସତରେ ଏମିତି ଘାତକ ରୋଗ-ସର୍ପ ସେହି ଚନ୍ଦନ-ବୃକ୍ଷରେ ଲାଖି ଯାଇଥିବ ?

ଗୋଲାପୀ ନାଇଟିର ଲେସରେ ଦେବଦୂତ ପରି ନିଷ୍ପାପ ଚେହେରାକୁ ପାଖୁଡ଼ା ପରି ଘେରି ନେଇଥିଲା । ଦୁଃସହ ଜରର ବ୍ୟଥା ତାକୁ ହୁଏତ ଘସିକରି ରଖି ଦେଇଛି । ମନେ ହେଉଥିଲା କେହି ଦଶ-ବାର ବର୍ଷର ଅବୋଧ ବାଳିକା ଥକିଯାଇ ଶୋଇ ରହିଛି । ଶିଶୁ ବକ୍ଷସ୍ଥଳରେ ରହିଥିବା ଦୁଇଟି ଦୁର୍ବଳ ମଣିବନ୍ଧ ଉଠି-ଉଠି କରି ପ୍ରକମ୍ପିତ ଶ୍ୱାସ-ନିଃଶ୍ୱାସ ସହିତ ପଡ଼ି ଯାଉଥିଲା ।

ପ୍ରବୀର କିଛି ମାସ ପୂର୍ବର ପବିତ୍ର ଅଗ୍ନିକୁ ସାକ୍ଷୀ ରଖିକରି ସାତଥର ବରକନ୍ୟାଙ୍କର ଅଗ୍ନି ପ୍ରଦକ୍ଷିଣ ଭୁଲିକରି ରହିଗଲା । ନଦୀର ଆଖିରେ ପାଣି ଭର୍ତ୍ତି ହେଇ ଆସି ତଳେ ପଡ଼ିଗଲା । ଜଣାନାହିଁ, ଏହି ଅମୂଲ୍ୟ ଏକାନ୍ତର ଅଚାନକ ଅବସାନ ହେଇଯାଇ ପାରେ । ସେ ଝୁଙ୍କିଲା ଆଉ କାନ ପାଖରେ ମୁହଁ ଲଗେଇ କରି ପାଗଳ ପରି ଡାକିବାକୁ ଲାଗିଲା -

"କଲୀ, କଲୀ !" କିନ୍ତୁ ସେ ଉଠିଲା ନାହିଁ ।

କୌଣସି ଶକ୍ତିଶାଳୀ କେପ୍‌ସୁଲ ଦେଇଥିବା ଅସ୍ୱାଭାବିକ ପ୍ରଗାଢ଼ ନିଦ୍ରାରେ ବୁଡ଼ି ରହିଥିବା କଲୀକୁ କ୍ୟୁପିଡ଼ ଅଧର ମନ୍ଦସ୍ମିତରେ ଟାଣିଗଲା । କ'ଣ କିଛି ମଧୁର ସ୍ୱପ୍ନ ଦେଖୁଥିଲା ସେ ?

କେବେ ତା'ର କ୍ଷୁଧାତୁର ଅଧର ଏମିତି ହିଁ ପ୍ରବୀରର କପାଳ କର୍ଣ୍ଣମୂଳରେ ସ୍ପର୍ଶ କରି ଶୋଷହିଁ ଫେରିଯାଇଥିଲା । ଆଜି ହୁଏତ ଏହାକୁ ସେ ତାକୁ ଭିକ୍ଷୁକ ବନେଇ କରି ନିଜର ପ୍ରତିଶୋଧ ନେଉଥିଲା । ଏଥର ପ୍ରବୀରର ଚେହେରା ଥଣ୍ଡା ରୋଗଜୀର୍ଣ୍ଣ ଚେହେରାରେ ଲାଖିଗଲା । କଲୀ ହଲିଲା, ଚମକି କରି ଛାତିରେ ନିଶ୍ଚେଷ୍ଟ ପଡ଼ିଥିବା ଦୁର୍ବଳ ମଣିବନ୍ଧ ପ୍ରାଣାଧିକ ଚେହେରାକୁ ଧଡ଼ଧଡ଼ କରୁଥିବା କାନ ଓ ଆଖିର ମଧ୍ୟବର୍ତ୍ତୀ ସ୍ଥାନ ପାଖକୁ ଟାଣିନେଲା । "ମୁଁ ଜାଣିଥିଲି, ତମେ ଆଜି ଆସିବ ।" ପୁଣି ତକିଆ ଘୁଞ୍ଚେଇ କରି ବସିବାକୁ ହିଁ ଯାଉଥିଲା ବେଳେ ବୁଦ୍ଧିମାନ ଆଣ୍ଟି କାଶି-ଖଙ୍କାରି ଦୂରରୁ ହିଁ ନିଜର ଫାୟାର-ବିଗ୍ରେଡ଼ ଉପସ୍ଥିତିର ଘଣ୍ଟ ଏଲାର୍ମ ଟଣଟଣ କରିଚାଲି ଆସିଥିଲା ।

ପ୍ରବୀର ସମ୍ଭାଳିକରି ଅଲଗା ହେଇଗଲା, କିନ୍ତୁ କଲୀ ହାତ ଛାଡ଼ିଲା ନାହିଁ, ସେ ନିଜର ଦୁର୍ବଳ ଧରିବାରେ ସେହି ପୁଷ୍ଟ ମଣିବନ୍ଧକୁ ଏମିତି କସିକରି ଦୀର୍ଘ ଅଭିଳାଷା ପୂରଣ କରୁଥିଲା ଯେମିତିକି ଛାଡ଼ିଗଲେ ହିଁ ସେ ହାତରୁ ଛିଟିକି ପଡ଼ିବ ।

ଆଣ୍ଟି ହାତର ଟ୍ରେ ଛୋଟ ଟେବୁଲ ଉପରେ ରଖି ପ୍ରବୀରର ସାମ୍ନାକୁ ଘୁଞ୍ଚେଇ ଦେଲା । ତାଙ୍କର ଲଜ୍ୟାରେ ଲାଲ ପଡ଼ିଯାଇଥିବା ଚେହେରାକୁ କଲୀ ଦେଖିନେଲା ।

"ତମେତ ଏମିତି 'ବ୍ଲସ' କରୁଛ ଆଣ୍ଟି, ଯେମିତିକି ଇଏ ମୋର ନୁହଁ, ତମର ପ୍ରେମୀ ଅଟେ ।" ତକିଆର ସାହାଯ୍ୟରେ ବସିକରି ସେ ହସୁଥିବା ଆଣ୍ଟିକୁ ଚିଡ଼େଇବାକୁ ଲାଗିଲା ।

ପ୍ରବୀର ସଂକୋଚରେ ପୋତିହେଇ ପଡ଼ିଲା । କ'ଣ ଏମିତି ବିଷଧର ରୋଗ-ଭୁଜଙ୍ଗର କବଳରେ ମଧ ସେ ହସ-ପରିହାସ ଛାଡ଼ିପାରି ନଥିଲା ।

"ଆଣ୍ଟିର ତିଆରି କରିଥିବା ମୋରେଙ୍ଗ ନେବ ନାହିଁକି ? ପକେଇଲା ମାତ୍ର ମୁହଁରେ ଏମିତି ମିଳେଇ ଯାଆନ୍ତି, ଯେମିତିକି କୌଣସି କିଶୋରୀର ଚୁମ୍ବନ !"

ହସିକରି ସେ ଏକ ମୋରେଙ୍ଗ ଡିଆଁଇ କରି ମୁହଁରେ ପୁରେଇ ଦେଲା । ଆଣ୍ଟି କାନ୍ଦି ପକେଇଲା ।

"ଦେଖୁଛ ସନୀ, ଦିନ-ରାତି ଏମିତି ହିଁ ପିଲାଳିଆମି କରି ମତେ କନ୍ଦଉ ଥାଏ ଏହି ବାଳିକା । ମିଠା ଏହା ପାଇଁ ପୁରାପୁରି ବାରଣ, ପୁଣି ଆଜି ସକାଳରୁ ଏହା ଏହାର ତୃତୀୟ ମୋରେଙ୍ଗ ଅଟେ । ମୁଁ ତ ତିଆରି କରି ନଥାନ୍ତି, କିନ୍ତୁ...." ଆଣ୍ଟି ରହିଗଲା, କିଛି କହି ପାରିଲା ନାହିଁ, ଗଳା ରୁନ୍ଧି ହେଇ ରହିଗଲା ।

"କୁହ-କୁହ, କହି ପକାଅ ନା", କଳୀର ବଡ଼ ଆଖି କ'ଣ ସେହି ଘାତକ

ରୋଗହିଁ କାନ ପର୍ଯ୍ୟନ୍ତ ଟାଣିକରି ଆହୁରି ବଡ଼ କରି ଦେଇଥିଲା ? କଳା ଭଅଁର-ପୁତଳିରେ ପିଲାଳିଆମି ଥଟ୍ଟା-ପରିହାସର ରଙ୍ଗ-ବେରଙ୍ଗର ତରଙ୍ଗ ଉଠି ଉଠିକରି ପଡ଼ିବାକୁ ଲାଗିଲା ।

"ମୁଁ ହିଁ ଜିଦ କରିଥିଲି ଆଜି", ସେ ଅଙ୍ଗୁଳି ଚାଟି ଚାଟି ଦ୍ୱିତୀୟ ମୋରେଙ୍ଗ ଉଠେଇବାକୁ ଝାମ୍ପିଲା, କିନ୍ତୁ ଆଣ୍ଟି ଚଟକରି ପ୍ଲେଟ ଉଠେଇ ନେଇଥିଲା, "ଆଣ୍ଟି, ମୋରେଙ୍ଗ ତିଆର କର । ନ ବନାଇଲେ ଆଉ ଏହା ମଧ୍ୟରେ ଯଦି କେଉଁଠାକୁ ଚାଲିଯାଏ ତ ମୋର କବରରେ ପୁଣି ଶାନ୍ତିରେ ଶୋଇ ପାରିବି ନାହିଁ । ବାସ୍ ଏହି ମାଙ୍କଡ଼ ଘୋଡ଼ାର କାମ କରିଗଲା । କିନ୍ତୁ ଓ୍ୱାହ, ବଢ଼ିଆ 'କେକ' କରିଛନ୍ତି । ସେହି ଲୋକରେ ମଧ୍ୟ କେବେ ରାଜକୀୟ ଭୋଜି ହେଲା ଆଉ ଲୋକଙ୍କର ଖାନସମାର 'କ୍ରେଡ଼େନଶିୟଲ୍ସ' ମଗା ହେଇଥିଲା, ତେବେ ତମକୁ ରେକମେଣ୍ଡ କରି ଶୀଘ୍ର ତମକୁ ଡକେଇ ନେବି ।"

କ୍ଷଣକ ପୂର୍ବର ଆଣ୍ଟିର ପିଲାଳିଆ ଚେହେରାରେ ଓହ୍ଲେଇ ଆସିଥିବା ବିଷାଦ ବଦଳରେ ଦୀପ୍ତି ଆସିଗଲା । ଏହି ହସୁଥିବା-ହସଉଥିବା ବାଳିକା କ'ଣ କେବେ ତାଙ୍କୁ କାନ୍ଦିବାକୁ ଦେଉଥିଲା ?

"ଶୁଣୁଛ ଏହାର କଥା ? ଆଉ ଏକ କପ ଦେବି ସନୀ ?" ଆଣ୍ଟି ମୋଟା ଅଣ୍ଟା ଉପରେ ଢିଲା ହେଇ ଯାଇଥିବା ଏପ୍ରନର ତମ୍ବୁ କସିକରି ପୁଣି ଚା କରିବାକୁ ଝୁଙ୍କି ପଡ଼ିଲା ।

"ଏ ଆଣ୍ଟି, ଅମ୍ମା ଫାଫାମଉରୁ ଫେରି ନାହିଁ କି ?

"ନା, ଆସୁଥିବ ।"

"ଆଛା, ତେବେ ଶୁଣ, ଯେତେବେଳ ପର୍ଯ୍ୟନ୍ତ ଅମ୍ମା ଆସୁନାହିଁ, ତମେ ମଧ୍ୟ କେଉଁଠାରୁ ବୁଲି ଆସନା ।" ସେ ମୁଣ୍ଡର ତକିଆ ଉପରେ ଘୁଞ୍ଚିଗଲା ।

ସେହି ଦୁଃସାହସୀ ବାଳିକାର ସ୍ପଷ୍ଟବାଦିତା ପୁଣିଥରେ ପ୍ରବୀରକୁ ରସାତଳକୁ ଟାଣି ନେଇଗଲା । କ'ଣ ଭାବୁଥିବ ଏହି ଅପରିଚିତା ମହିଳା । "ଆପଣ ବସନ୍ତୁ ନା, ମୁଁ ହାତ-ମୁହଁ ଧୋଇ ଆସେ ।"

ପ୍ରବୀର ସେହି ଅପଦସ୍ତ ହେଇ ଯାଇଥିବା ସରଳା ମହିଳାର ପ୍ରସ୍ଥାନ ପ୍ରସ୍ତାବକୁ ସ୍ଥଗିତ କରିବାକୁ ସ୍ୱୟଂ ଉଠିଗଲା । "ବସନ୍ତୁ, ସିଲୀ", କଲୀ ହାତ ଧରିକରି ଏଥର ପୁଣି ଚଉକି ଉପରେ ବସେଇ ଦେଲା ।

"ହାତ-ମୁହଁ ତେବେ ବି ଧୋଇ ହେବ ମୂର୍ଖ ।" ସେ ଫୁସ୍‌ଫୁସ୍ କରି କହିବାକୁ ଲାଗିଲା, "ଥରେ ଅମ୍ମା ଆସିଗଲା ତ ବୁଝିନିଅ ଜେଲର ଆସିଗଲା, ଏହି ଏକାନ୍ତ ପୁଣି ମିଳିବ ନାହିଁ । ଯାଅ ତ ଆଣ୍ଟି, 'ବୀ ଏ ବ୍ରିକ୍' ଚଉକି ପକେଇ କରି ବାରଣ୍ଡାରେ ନିଜର କ୍ରସଷ୍ଟିଚ ବନେଇବାରେ ଲାଗ । ଅମ୍ମା ଆସିଲା ମାତ୍ରେ କାଶର ଛୋଟ ସିଗ୍‌ନଲ ଦେଇଦେବ, ବାସ୍ ।"

ହସୁଥିବା ଆଣ୍ଟି ହାତରେ ଟ୍ରେ ନେଇ ପୁଣିଥରେ ଅବିବାହିତ ଷୋଡ଼ଶୀ ପରି

ଲଜ୍ଜାକରି ଲାଲ ପଡ଼ି ବାହାରକୁ ଚାଲିଗଲା ।

"ଦେଖ ?" ସେ ହସିକରି ବାହୁ ଧରିକରି ପାଳିତ-ବିରାଡ଼ି ପରି ପ୍ରବୀରର କାନ୍ଧରେ ଗାଲ ଘସି ଘସି ଲାଖିଗଲା ।

"ଚତୁର ବନ୍ଦୀ ଏମିତି ଦ୍ୱାରରେ ପହରା ଦେଉଥିବା ସିପାହୀକୁ ନିଜର ଷଡ଼ଯନ୍ତ୍ରରେ ମିଶେଇ ନିଏ ।" "କାନ୍ଧ ପର୍ଯ୍ୟନ୍ତ ଝୁଲୁଥିବା କେଶ ଗୁଚ୍ଛ ଏବେ ରୋଗରେ ଆହୁରି ଲମ୍ବା ହେଇକରି ତଳ ପର୍ଯ୍ୟନ୍ତ ଲାଖି ଆସିଛି ।

"ପ୍ରଥମେ ଗୋଟିଏ କଥା କହିଦିଏ ଆଣ୍ଟି ସବୁ ଜାଣେ । ମୁଁ ହିଁ ତାଙ୍କୁ ସବୁକିଛି କହି ଦେଇଛି, କିନ୍ତୁ ଅମ୍ମା ଏବେ କିଛି ଜାଣେନାହିଁ । ତମକୁ ଦେଖିଲେ ହିଁ ସବୁ ଜାଣିଯିବ ।

"ଅମ୍ମା ଆଉ ଆଣ୍ଟି ମଧ୍ୟରେ ଏହି ତଫାତ୍ ରହିଛି । ଆଣ୍ଟିକୁ ମୁଁ ନ କହିଥିଲେ ତାଙ୍କର ଶିଶୁପରି ନିଷ୍କପଟ ଆଖି ଦୁଇଟି ତୁମକୁ ମୋର ବାହୁରେ ଦେଖିକରି ମଧ ହୁଏତ ଏହା ଭାବୁଛି ଯେ ମୋର ଅଲଗା ହେଇଥିବା ଭାଇ-ପୁତୁରା ଅଛନ୍ତି, କିନ୍ତୁ ଅମ୍ମା ସବୁକିଛି ଜାଣିଯାଏ ।"

ସେ କିଛି ସମୟ ପର୍ଯ୍ୟନ୍ତ ଚୁପ ରହିଲା ଯେମିତିକି ଥକି ଯାଇଛି, ପୁଣି ରହି-ରହି କହିବାକୁ ଲାଗିଲା, "ମୁଁ ଜାଣିଶୁଣି କରି ଅମ୍ମାକୁ ନିଜ ରୋଗର ଖବର ଦେଲି ! ଭାବିଲି, ଯେତେବେଳେ ଯିବାକୁ ହିଁ ହେବ କାହିଁକି ନା ସମସ୍ତଙ୍କ ସହିତ ହାତ ମିଳେଇ କରିହିଁ ଯାଏ ।"

ହସିକରି କଳୀ ପ୍ରବୀରର ହାତକୁ ଗାଲରେ ଲଗେଇ ନେଲା । କ'ଣ ନିମଗ୍ନ କପାଳର ଗଭୀର ଦାଗ ଆହୁରି ଗଭୀର ହେଇ ଯାଇଥିଲା ?

ଆଶ୍ଚର୍ଯ୍ୟର କଥା କି ଏମିତି ଘାତକ ରୋଗ କାୟାକୁ ଘସିକରି, ଆକର୍ଷକ ଚେହେରାକୁ କିଛି ମାସରେ ଆହୁରି ଆକର୍ଷକ କରି ଦେଇଥିଲା ।

"ଅମ୍ମାକୁ ମୁଁ କାହିଁକି କହିଲି ନାହିଁ, ଜାଣିଛ ? ମୋର ମନେହେଲା ତାଙ୍କୁ କହିବି, ତେବେ ମନକୁ ମନ କହିବ - ଦେଖ ନା, ହାରିଗଲା ବାଳିକା ମତେ ଥଟ୍ଟା କରୁଥିଲା, ଆଜି ନିଜେ ହିଁ ଠୋକର ଖାଇଗଲା । ପତ୍ନୀ ପାଇଁ, ମାନବ ପ୍ରତିଷ୍ଠା ପାଇଁ, ତାଙ୍କର ପ୍ରେମୀ ତାଙ୍କୁ ଅଙ୍ଗୁଳି ଦେଖେଇ ଗଲା ଆଉ ମୋର ପ୍ରେମୀ...." ସେ ପୁଣି ଆଖି ବନ୍ଦକରି ବାହୁରେ ଲାଖିଗଲା ।

## ଚବିଶ

ବଦଳିରେ ଘେରିଥିବା ମ୍ଳାନ ସନ୍ଧ୍ୟା ବାରଣ୍ଡାରେ ଓହ୍ଲାଇ ଧୃଷ୍ଟତାରେ ଖୋଲିଥିବା ଝରକା ଦେଇ ଡେଇଁକରି କୋଠରୀରେ ଗୁରୁଣ୍ଡିବାକୁ ଲାଗିଥିଲା । ଜଣାନାହିଁ କେତେଦିନ

ପର୍ଯ୍ୟନ୍ତ ଦୁଇ ଭୟାବହ ପରିସ୍ଥିତିରେ ସଂକୁଚିତ ହୋଇ ଜଣ-ଅନ୍ୟଜଣଙ୍କ ସହିତ ଲାଖିଯାଇ ଚେତ ନାହିଁ ହରେଇ ବସିଥିଲେ । ଆଣ୍ଟି ସଙ୍କୁଚିତ ହୋଇ କାଶିଲା ଆଉ କଳୀ ବେଡ୍‌ସ୍ୱିଚ୍ ଦବେଇ ଦେଲା । ଅନ୍ଧାରିଆ ଆଲୁଅରେ ସେ ଆଖି ବନ୍ଦକରି ଚୁପ୍‌ଚାପ୍ ଶୋଇ ପଡ଼ିଲା ।

ହାତରେ ପୂଜା ଛୋଟ ଟୋକେଇ ଝୁଲେଇ ଆଣ୍ଟି ସହିତ ଅମ୍ମା କଳୀର ମୁଣ୍ଡଆଡ଼କୁ ଆସିକରି ଛିଡ଼ା ହୋଇଗଲା ଆଉ ପ୍ରବୀର ଚଉକିରୁ ଉଠିଗଲା ।

"କଳୀର ବନ୍ଧୁ ଅଟେ", ଆଣ୍ଟି ତାହାର ପରିଚୟ ଦେବାକୁ ଲାଗିଲା ।

"ଏହାଙ୍କର ପରିବାର ସହିତ କଳୀ କଲିକତାରେ ରହୁଥିଲା । ଏବେ-ଏବେ ବାହାଘର ହୋଇଛି ।" ଆଣ୍ଟି ସରଳ ଚତୁରତା ସହିତ ତା'ର ସଦ୍ୟ ବିବାହିତ ହେବାର ପ୍ରସଙ୍ଗ ମଧ୍ୟ ଯୋଡ଼ି ଦେଲା, ଯେଉଁଥିରୁ ସନ୍ଦେହୀ ପନ୍ନା ଯେମିତି ଆଉ କିଛି ଓଲଟା ସିଧା ନବୁଝି ବସେ ।

"ଉଠିଗଲ କାହିଁକି ? ବସନ୍ତୁ ନା ।" ପନ୍ନା ନିଜର ସେହି ମଧୁର ସ୍ୱରରେ କହିଲା, ଯାହା ଭୁଲି ଯାଇଥିବା ବ୍ୟବସାୟକୁ ଭୁଲି ଯିବା ପରେ ମଧ୍ୟ କଣ୍ଠରେ ଝରି ଯାଇଥିଲା । ସେହି କଣ୍ଠରେ ଅଭ୍ୟସ୍ତ ଥିବା ମଧୁର "ବସନ୍ତୁ" ଶୁଣିକରି ସାହାସ ଥିଲା କି କେହି ବସିବ ନାହିଁ ।

ପ୍ରବୀର ବସିଗଲା ।

ଶ୍ୱେତ ଚିକନ ସାଢ଼ି, କହୁଣି ପର୍ଯ୍ୟନ୍ତୁ ସୁଡ଼ୌଲ ବାହୁଗୁଡ଼ିକରେ ଦୃଢ଼ ଫିଟିଂ ଶ୍ୱେତ ବ୍ଲାଉଜ, ଗଳାରେ ତୁଳସୀ-କଣ୍ଠୀ ଆଉ ଲଲାଟ ଉପରେ ଚନ୍ଦନର ଟିକା । "କେବେ ଆସିଲେ ଆପଣ ?" ପନ୍ନା ପଚାରିଲା ।

"ଏବେ-ଏବେ ତ ଆସିଲେ", ଆଣ୍ଟି ପୁଣି କହିବାକୁ ଲାଗିଲା ।

ସେହି ସଂକୋଚ କରୁଥିବା ଗମ୍ଭୀର ଯୁବକ ଉପରେ ଆଣ୍ଟିର କରୁଣା ହେଉଥିଲା । ସେଇଥି ପାଇଁ ତାକୁ ପଚରା ଯାଉଥିବା ପ୍ରତ୍ୟେକ ପ୍ରଶ୍ନକୁ ଖଣ୍ଡାର ଆଘାତ ଢାଳ ହୋଇ ସ୍ୱୟଂ ଆଗେଇ ଆସି ସହିଯାଉଥିଲା ।

"ପତ୍ନୀକୁ କାହିଁକି ନେଇ ଆସିଲ ନାହିଁ ?" ପୁଣି ସେହି ମନମୁଗ୍ଧକର ମଧୁର ହସ ।

"କଳୀର ମଧ୍ୟ ମନ ଖୁସି ରହିଥାନ୍ତା", ପନ୍ନା ବହୁତ ଗେଲରେ ଶୋଇଥିବା କଳୀର ମୁଣ୍ଡରେ ହାତ ବୁଲେଇ କରି କହିଲା ।

"ନେଇ ଆସିବେ - ନେଇ ଆସିବେ", ଆଣ୍ଟି ପୁଣି ସେହି ଉତ୍ସାହରେ କହିବାକୁ ଲାଗିଲା, "ନେଇ ଆସିବେ ନାହିଁ କାହିଁକି - କଳୀ ଝିଅ, ତୁମର ଦ୍ୱିତୀୟ କେପ୍‌ସୁଲର ଟାଇମ ହୋଇଗଲା, ନେଇ ଆସିବି ?" କୌଣସି ଚତୁର ଫେନ୍ସିଂଗର ହତିଆର ଆଦି ଚଳେଇବା ଉପଯୁକ୍ତ ପ୍ରଣାଳୀ ଜାଣିଥିବା ପରି ସେ ଔଷଧର ପ୍ରସଙ୍ଗ ଉଠେଇ ହତିଆର

ଚଳେଇଥିବା ବଦଳେଇ ଦେଲା ।

"କେମିତି ଦେହ ଅଛି ଝିଅ ?" ପନ୍ନା କଲୀର ଗୋରା ସୁଡ଼ୌଳ ବନ୍ଦ ହେଇଥିବା ପଲକକୁ ପୁଣି ଆଉଁସିବାକୁ ଲାଗିଲା ।

କଲୀ ଏମିତି ଚମକି ପଡ଼ି ଆଖି ଖୋଲିଲା, ଯେମିତିକି ଏତେ ପର୍ଯ୍ୟନ୍ତ ସତରେ ତା'ର ଆଖି ଲାଗିଯାଇଥିଲା । ଆଣ୍ଟି ଘଡ଼ି ଦେଖିକରି ତାକୁ କେପ୍‌ସୁଲ ଖୁଏଇଲା ଆଉ ଚଉକି ଟାଣିକରି ବସିଗଲା ।

"ଅମ୍ମା", କଲୀର ବୁଡ଼ି ଯାଉଥିବା ସ୍ୱର କୌଣସି ଦୂରର ମସ୍‌ଜିଦ୍‌ର ଗୋଲାକାର ଚୂଡ଼ାର ପ୍ରତିଧ୍ୱନି ହେଉଛି ଆଜାନ-ପରି ପ୍ରତିଧ୍ୱନି ହେଇଗଲା ।

"କଣରେ ଝିଅ ?"

"ଅମ୍ମା, ମୋର ଏହି ବନ୍ଧୁ ଗୀତ ବହୁତ ଭଲ ପାଆନ୍ତି ।" ପ୍ରବୀର ସଂକୁଚିତ ହେଇ ପଲଙ୍କ ଉପରେ ପଡ଼ିଥିବା ପରିହାସ ପ୍ରିୟା ଆଡ଼କୁ ଦେଖିଲା, ଜଣାନାହିଁ ଏବେ କ'ଣ କହି ବସିବ ? କଥା କଥାରେ ହସ ଫୁଟଉ ଥିବା ଓଠ ଉପରେ ସ୍ମିତର ଇନ୍ଦ୍ରଧନୁ ଖେଳିବାକୁ ଲାଗିଥିଲା ।

"ନିଜେ କହିବାକୁ ଲାଜ କରୁଛନ୍ତି, କିନ୍ତୁ ତମର ଲଙ୍ଗ ପ୍ଲେୟିଂ ରେକର୍ଡ଼ ମଧ ଅଛି, ଯାଙ୍କ ପାଖରେ । ଏହାଙ୍କୁ ଆଜି ସେହି ଗୀତ ଶୁଣେଇ ଦିଅ ଅମ୍ମା ।"

"କେଉଁଟାରେ ?" ପ୍ରିୟ ପ୍ରସଙ୍ଗର ଉଲ୍ଲେଖରେ ପନ୍ନା ଏବେ ମଧ ଫୁଟି ଉଠିଥାଏ । ସଂଗୀତ-ଚର୍ଚ୍ଚାରେ ତା'ର ଏକମାତ୍ର ଦୁର୍ବଳତା ରହିଯାଇଥିଲା ।

ପନ୍ନାର ଗୋଲ ଗୋଲ ମଣିବନ୍ଧରେ ନିଜର ଦୁର୍ବଳ ମଣିବନ୍ଧକୁ ଗଜରା ପରି ଗୁଡ଼େଇ କଲୀ ସ୍ୱୟଂ ଗୁଣୁଗୁଣୁ ହେବାକୁ ଲାଗିଲା । ପ୍ରୌଢ଼ା ସ୍ୱରଳୟ-ଅଭିନେତ୍ରୀ ମନ୍ଦ୍ରର ଗୁଣୁଗୁଣୁ ସ୍ୱରକୁ ଚିହ୍ନିଲା ଆଉ କ୍ଷଣକ ପାଇଁ ଚେହେରା ଫିକା ପଡ଼ିଗଲା ।

"ବୋକା କେଉଁଠିକାର", ଚାପିଲା ସ୍ୱରରେ ସେ ଶିଶୁପରି ଜିଦ୍ କରୁଥିବା କଲୀକୁ ଗାଳିଦେବାକୁ ଲାଗିଲା, "ସେଇଟା କ'ଣ କୌଣସି ଗୀତ ଅଟେ ।"

"ବା, ଆପଣ କ'ଣ ଭାବୁଛନ୍ତି ଯେ ଏମିତି ରୋଗର ଫାସିର ଫନ୍ଦା ଗଳାରେ ପଡ଼ିଗଲାରୁ, ମୁଁ ଯିବା ପର୍ଯ୍ୟନ୍ତ ରାମଧୁନ ଛାଡ଼ି ଆଉ କିଛି ଶୁଣିପାରିବି ନାହିଁ ? ମୁଁ ଏହି ଗୀତ ଶୁଣିକରି ଛାଡ଼ିବି । ଆପଣ ନ ଶୁଣେଇଲେ ମୁଁ ପୁଣି ତୃତୀୟ କେପ୍‌ସୁଲ ଖାଇବି, ନା ବିଛଣାରେ ଶୋଇବି, ଖୁବ୍ ଡ୍ରାଇଭ୍ କରି ପୁରା ଏଲ୍‌ହାବାଦ ବୁଲି ଆସିବି ।"

ଏହା କଲୀର ସବୁଠାରୁ ବଡ଼ ଧମକ ଥିଲା । ଡାକ୍ତରମାନେ କହିଥିଲେ ଯେ ବାହରରୁ ଗୋଲ-ଗାଲ ସୁସ୍ଥ ଦେଖା ଯାଉଥିବା ସେହି ବାଳିକାର ପିଠିରେ କେବେହେଲେ ଶରୀରରେ ଆଘାତ ଦେଇ ବସିଛି ଲୁଚି ରୋଗ-ଶତ୍ରୁ ଘାତକ ଛୁରି ଭୁଷି ପାରିବ । ଥରେ ଯଦି କେଉଁଠି ସାମାନ୍ୟ ଚୋଟ ମଧ ଆସିଗଲେ ଅନବରତ ବହୁଥିବା ରକ୍ତ-ପ୍ରବାହକୁ

ସ୍ୱୟଂ ବ୍ରହ୍ମ ମଧ୍ୟ ଅଟକେଇ ପାରିବେ ନାହିଁ । ଜିଦ୍ଦି କଲୀର ଅସାଧ୍ୟ ରୋଗର ପୀଡ଼ା ଆହୁରି ଜିଦ୍ଦି ବନେଇ ଥିଲା । ପନ୍ନା ମୁଣ୍ଡ ନୋଇଁକରି ଗାଇବାକୁ ଲାଗିଲା –

ଯୌବନବାଁ କେ ସବ ରସ
ଲେ ଗଇଲେ ଭଁବର ।
ଗୁଁଜୀରେ ଗୁଁଜୀ

(ଯୌବନର ସବୁରସ ନେଇଗଲା ଭଅଁର ଗୁଣୁଗୁଣୁ ଶବ୍ଦ କରି)

ଅନେକ ବର୍ଷପରେ ରିୟାଜରେ ଏହି ସମୟରେ, ମିଶ୍ରି ଗୋଳା ହେଇଥିବା କଣ୍ଠସ୍ୱରରେ ଗୋଟିଏ ପଂକ୍ତିକୁ ଥରକୁ ଥର ଦୋହରାଇବାକୁ ଲାଗିଲା । ନିଜର ସ୍ୱାଭାବିକ ସ୍ୱରକୁ ହୁଏତ କିଛି ଚାପି କରି ହିଁ ପନ୍ନା ଗୀତ ଗାଉଥିଲା, କିନ୍ତୁ କ'ଣ ଆସନ୍ନ ପ୍ରାୟ ମୃତ୍ୟୁର ସାରଙ୍ଗୀ ହିଁ ତାକୁ ଉତ୍ତର ସମ୍ବନ୍ଧୀୟ ସଂଗତ ଦେଉଥିଲା ?

ପ୍ରବୀରର ମନେହେଲା, ବିଛଣାରେ ପଡ଼ିଥିବା କଲୀ ସେହି ମଧୁର ଗୁଣୁଗୁଣୁ ସହିତ ଝାଉଁଳି ଯାଉଛି । ତା'ର ମନେହେଲା, ସେ ସମସ୍ତଙ୍କ ସାମ୍ନାରେ ନିର୍ଲଜ୍ଜ ହେଇ ତାକୁ କୋଳକୁ ଉଠେଇ କରି ପଳେଇ ଯିବାକୁ ।

"ନେ ଏବେ ତ କେପ୍‌ସୁଲ ଖାଇବୁ ?" ପନ୍ନା ବଡ଼ ଗେହ୍ଲାରେ ଆଣ୍ଟିର ହାତରୁ କେପ୍‌ସୁଲ ନେଇକରି ତାକୁ ଖୁଏଇ ଦେଲା ଆଉ ଉଠିଗଲା ।

"ଯାଏ, ଆରତୀ କରି ଆସେ, ଆପଣ ମଧ୍ୟ ଥକି ଯାଇଥିବେ... ନିଜର ମଧୁର ମୋହକ ହସ ସହିତ ସେ ପ୍ରବୀର ଆଡ଼କୁ ବୁଲିକରି ସସ୍ମିତ ହେଇଗଲା, "ମୁଁ ଏହାଙ୍କ ପାଇଁ, କୋଠରୀ ଠିକ କରି ଦେଇଛି", ଆଣ୍ଟି ବହୁତ ଉତ୍ସାହ ସହ କହିବାକୁ ଲାଗିଲା – "ବୋବୀର କୋଠରୀ ଖାଲି ପଡ଼ିଥିଲା, ଖାଇ ସାରିଲା ପରେ ଆରାମରେ ଶୋଇ ରହିବ ।"

"ଅମ୍ମା ଚାଲି ଯାଇଛି ଆଣ୍ଟି । ଏବେ ତୁମେ ଯାଇକରି ଖାଇବା ଲଗେଇ ଦିଅ ।"

କଲୀ ଥରେ ପୁଣି ଉଠିକରି ବସିଗଲା । ଉତ୍ତେଜନାରେ ତା'ର ଦୁଇ ଆଖି ଚମକିବାକୁ ଲାଗିଥିଲା – "ଜାଣିଛ ଆଣ୍ଟି କଣ କହେ ? କହେ- ଅମ୍ମା ଏକଦମ ପୁରୁଣା ଫିଲ୍ମମାନଙ୍କର ଏକଟ୍ରେସ ମନେ ହୁଏ । ଆଉ ଯେଉଁଦିନ ପ୍ରଥମ ଥର ଅମ୍ମାକୁ ଦେଖିଲା ତ କହିଲା- ଅବିକଳ ଅମ୍ମାର ଛାଞ୍ଚଦ୍ୱାରା ନିର୍ମିତ ଛାପ ଅଟେ କଲୀ ।"

ପୁଣି ନିଜର ଗୋଟିଏ ଆଖି ଦୁଷ୍ଟାମିରେ ଆଖି ବୁଜିକରି ଆଣ୍ଟିର ହାତ ଧରିକରି ବଡ଼ ଆଦରରେ ହଲେଇ ଦେଲା- "ଇଉ ଇଡ଼ିୟଟ୍" କହି ପୁଣିଥରେ ସେ ତକିଆ ଉପରକୁ ଘୁଞ୍ଚିଗଲା । ମନେ ହେଉଥିଲା, ନା ତାକୁ ବସିକରି ଶାନ୍ତି ମିଳୁଥିଲା । ନା ଶୋଇକରି । "ସେତେବେଳେ କ'ଣ ମୁଁ ଜାଣିଥିଲି ସନୀ ?" ଆଣ୍ଟି କାନ୍ଦ କାନ୍ଦ ହେଇଗଲା ।

"ଆଚ୍ଛା-ଆଚ୍ଛା, ଏବେ ଶୁଣ ଆଣ୍ଟୀ, ଖାଇବା ଖୁବ୍ ଭଲକରି କରିବ, ବୁଝିଲ ?

କାଲି ପର୍ଯ୍ୟନ୍ତ ଇଏ ପାଣ୍ଡେ ମହାଶୟଙ୍କର ଜୋଇଁ ଥିଲେ ଆଜିଠୁ ତମରି ଜ୍ୱାଇଁ ।"

"ଓ ମାଇ ଗଡ୍ ।" ଆଣ୍ଟି ପୁରା ଏପ୍ରନ ମୁହଁରେ ଗୁଞ୍ଜିଦେଲା । ଚାରି-ପାଞ୍ଚ ଥୋଡ଼ିର ଶିଳାଖଣ୍ଡରେ ଖିଲିଖିଲି ହସର ଆନନ୍ଦ-ନିର୍ଝରିଣୀ ବିରାଟ ବକ୍ଷସ୍ଥଳର ଉତ୍ତୁଙ୍ଗ ପର୍ବତ ଦ୍ୱୟ ଭିଜେଇ ଦେଉଥିବା ଉଦର-ଉଦଧିକୁ ପ୍ରକମ୍ପିତ କରି ଉଠିଲା ।

ଦିନ ସାରା କରାଯାଇଥିବା କଲୀର ଗୋଟିଏ ଅଧେ ଏମିତି ନିର୍ଲଜ୍ଜ କୌତୁକ ଆଣ୍ଟିର ସମସ୍ତ ଉଦାସକୁ ଦୂରକୁ ତଡ଼ି ଦେଉଥିଲା ।

ଆଣ୍ଟି ଚାଲିଗଲାରୁ ଦୁହେଁ ପୁଣିଥରେ ଏକାନ୍ତରେ ଅନ୍ଧାରରେ ବୁଡ଼ିଗଲେ ।

"ତମେ ଭାବୁଥିବ ଯେ ମୁଁ କେତେ ଲଜ୍ଜାହୀନ ଅଟେ ।" କ୍ଷଣ-କ୍ଷଣ କରେ ବଦଳୁ ଥିବା ନିତ୍ୟ ନବୀନ ରୂପ ସହିତ କଣ୍ଠର ବହୁରୂପିଆ ରୂପ ବଦଳେଇଲେ ମଧ କ'ଣ ସ୍ୱୟଂ ବଦଳି ଯାଉଥିଲା ? କେବେ ଆନନ୍ଦ ହସର ଉଜ୍ଜ୍ୱଳ ଶପ୍ତନକ୍ଷତ୍ର ପ୍ରବୀରକୁ ଚମକେଇ ଦେଉଥିଲା ଆଉ କେତେବେଳେ ସୁକୁସୁକୁ କାନ୍ଦରେ ବୁଡ଼ି ଯାଇଥିବା ଆୱାଜରେ ତା'ର କଲିଜା ଘାରି ହେବାକୁ ଲାଗେ । ବହୁତ ଆଗରୁ ବିବିୟନର ଡାଡ଼ି ଆମର ଜିଦ୍‌ରେ ବିରକ୍ତ ହେଇ ଆମକୁ ଜେଲ୍ ଦେଖେଇବାକୁ ନେଇ ଯାଇଥିଲେ । ଛିଡ଼ା ହେଇକରି, ଚକିର ବଡ଼-ବଡ଼ ଫାଳ ଚଳଉ ଥିଲେ । ନିଶଧାରୀ ବନ୍ଦୀ, ଖଟର ଫିତା ବୁଣିବା, ଦରି ବୁଣୁଥିବା ଏମିତି ଟୋକା ବନ୍ଦୀ, ଯେଉଁମାନଙ୍କର ହୁଏତ ନିଶ ମଧ ବାହାରି ନଥିଲା, ପୁଣି ଚିରା-ଚିରା ଆଖି ଆଉ ସମତଳ ଚେହେରାବାଲୀ ସ୍ତ୍ରୀଲୋକମାନେ ଯେଉଁମାନଙ୍କ ଭିତରେ ଗୋଟିଏ କେଉଁଟୁଣୀ ଥିଲା, ଅନ୍ୟଟି ମାଲୁଣୀ । ଦୁହେଁ ନିଜ ନିଜ ପତିକୁ ନିଜ ହାତରେ ଫୁଙ୍କି ଦେଇଥିଲେ । ପତି ଘାତକ ସେହି ପୁରୁଷୋଚିତ ସ୍ତ୍ରୀଲୋକଙ୍କୁ ଦେଖିକରି ଭୟରେ ବିବିୟନ ବାହାରକୁ ଦୌଡ଼ି ପଳେଇଥିଲା ।

"ଡାଡ଼ି, ଆପଣ ଆମକୁ ଫାଶି ସଜା ପାଇଥିବା ବନ୍ଦୀକୁ ଦେଖେଇଲେ ନାହିଁ, ମୁଁ କହିବାରୁ ଡାଡ଼ି ଧମକେଇ ଦେଇଥିଲେ - ନା, ସେଠାକୁ ତମେମାନେ ଯାଇ ପାରିବ ନାହିଁ - ଅଶ୍ଳୀଳ ଗାଳି ଦିଅନ୍ତି ଅଭାଗାମାନେ -

"କିନ୍ତୁ ମୁଁ ଜାଣିଶୁଣି କରି ନିଜ ଜିଦ୍‌ରେ ସେହି ବାରଣ୍ଡାରେ ପହଞ୍ଚିଗଲି, ଯେଉଁଠାରେ ଚିଡ଼ିଆଘରର ଗରମରେ ବନ୍ଦ ଭୋକିଲା ସିଂହ ବୁଲୁଥିଲା । ମତେ ଦେଖିଲା ମାତ୍ରେହିଁ ତାଙ୍କର ଅଶ୍ଳୀଳ ଅଟ୍ଟହାସ୍ୟର ପିଚକାରୀ ଛାଡ଼ିବାରେ ଲାଗିଲା । ଜେଲରକୁ ଦେଖିକରି ମଧ ସେମାନେ ନିଜକୁ ଅଟକେଇ ପାରିଲେ ନାହିଁ । ମତେ ଟାଣିକରି ବିବିୟନର ଡାଡ଼ି ବାହାରକୁ ଚାଲି ଆସିଲେ । ମୃତ୍ୟୁଦଣ୍ଡ ମିଳିଛି, ଏଇଥି ପାଇଁ ଜଙ୍ଗଲୀ ବହୁତ ନିର୍ଲଜ୍ଜ ହେଇ ଯାଇଛନ୍ତି, ସେ କହିଥିଲେ ।

"ମତେ ମଧ ମୃତ୍ୟୁର ସେହି ଦଣ୍ଡ ନିର୍ଲଜ୍ଜ କରି ଦେଇଛି ।" କଲୀ ହସି କରି ପ୍ରବୀରର ହାତ ଚାପି ଦେଲା ।

"ତମେ ଜଲ୍‌ଦି ଚାଲି ଯିବ କି ?"

"ଯିବାକୁ ତ ମତେ ଆଜିହିଁ ଥିଲା, ଏବେ କେଉଁଠାରୁ ଟ୍ରଙ୍କ କରିବାକୁ ପଡ଼ିବ । କାଲି ସନ୍ଧ୍ୟାରେ ବାହାରି କରି ପଅରଦିନ ହିଁ ପହଞ୍ଚିବି ।"

କ୍ଷଣକ ପାଇଁ କଲୀର କ୍ଳାନ୍ତ ଚେହେରା ଲୋମବାଲା ଚମତ୍କାର ତକିଆର ଗଭୀରତାରେ କଇଁଛର ମୁଣ୍ଡପରି ଚୁପ୍‌କରି ଲୁଚିଗଲା । ଆଣ୍ଟିର ବିରାଟ ଶରୀରକୁ ନିଜର ଥଟ୍ଟା ପରିହାସର ଭୂକମ୍ପ ଧକ୍କାରେ ପତ୍ରପରି ହଲଉଥିବା, ଗମ୍ଭୀର ମା'କୁ ନିଜର ପିଲାଳିଆ ଜିଦ୍‌ରେ ପରାଜିତ କରି ପାରୁଥିବା କଲୀ ଯେମିତି ଶେଷ ହୋଇ ଯାଇଥିଲା ।

ହୁଏତ ସେ ଜାଣି ସାରିଥିଲା ଯେ ନିଜର ଦୁର୍ବଳ ବାହୁ ମେଲେଇ କରି ସେ ଅସହାୟ ଗଲାବାଲାକୁ ଅଟକେଇ ପାରିବ ନାହିଁ ।

"ମୁଁ ତମକୁ ଦେଖିବାକୁ ପୁଣି ଆସିବି କଲୀ !" ପ୍ରବୀର କାନ୍ଧ ତାହାର ତୀକ୍ଷ୍ଣ କାନ୍ଧ ଉପରେ ହାତ ରଖି ଦେଲା –

"ଏବେ ପ୍ରଥମ ଚାର୍ଜ ଅଟେ !" ସେ ନିଜର ଅସହାୟତାର କୈଫିୟତ ଦେବାକୁ ଲାଗିଲା ।

ସେ ଚୁପ୍‌ଚାପ୍ ପଡ଼ି ରହିଲା । ସେ ଥରେହେଲେ ମଧ୍ୟ ପଚାରିଲା ନାହିଁ କେବେ ଆସିବ – ଶୂନ୍ୟରେ ମେଲେଇଥିବା ଦୁଇ ଦୁର୍ବଳ ବାହୁର ଆହ୍ୱାନରେ କ'ଣ ଦୁଇଟି ସୁସ୍ଥ ପୁଷ୍ଟି ମେଲେଇ ଥିବା ବାହୁ ତାକୁ ହଠାତ୍ ଚୁମ୍ବକ ପରି ନିଜ ଆଡ଼କୁ ଟାଣି ନେଇଥିଲା ?

ଅମ୍ମା ଆରତୀ କରି ପ୍ରସାଦ ଦେବାକୁ ଆସି ଦେଖିଲା ପ୍ରବୀର ଭୂତପରି ଚଉକି ଉପରେ ବସିଥିଲା । "ଆରେ, ଆପଣ ସେତେବେଳେଠାରୁ ଏମିତି ବସିଛନ୍ତି ? ଖାଦ୍ୟ ପ୍ରସ୍ତୁତ ହେଲାଣି, ବେସ୍ ବାଢ଼ିବାକୁ ଯାଉଛି – ଆପଣ ମାଂସ ଖାଆନ୍ତି ନା ?

କଲୀ ପୁଣି ପକ୍ଷୀମାନଙ୍କ ପରି ମଧୁର ଶବ୍ଦ କରିବାକୁ ଲାଗିଲା, "ଅମ୍ମା ଇଯେ କାଲି ଯିବେ, ନହେଲେ ଆପଣଙ୍କୁ କହିଥାନ୍ତି ଏହାଙ୍କୁ ନିଜ ହାତରେ ତିଆରି ଗୋଶାଲା ମସଲା ମାଂସ ଖୁଏଇ ଦିଅ...."

"କିଛି କଥା ନାହିଁ ଝିଅ, ପୁଣି ଯେବେ ଆସିବେ, ତୁ ମତେ ଲେଖିଦେବୁ । ମୁଁ ସେଠାରୁ ଆସିକରି ଏହାଙ୍କୁ ନିଜ ହାତରେ ମାଂସ ତିଆରି କରି ଖୁଏଇ ଦେବି ।"

କେମିତି ସ୍ନିଗ୍ଧ ରାଣୀମାନଙ୍କ ପରି ହସିଥିଲା ଆଉ ଆଖିରୁ ବାହାରୁଥିଲା କେମିତି ଅପୂର୍ବ ଆଲୋକ । "ତମକୁ ଲେଖିବା ପାଇଁ ସେତେଦିନ ପର୍ଯ୍ୟନ୍ତ ରହିବ, ତେବେ ନା !" ଆନନ୍ଦ ଆଖିରେ, ବହୁତ ବେଳରୁ ଲୁଚିଥିବା ହସ ପୁଣିଥରେ ଫେରି ଆସିଲା ।

"ଚୁପକର, ଦିନ-ସାରା କଥା କହୁଥିବ, ନ ରହୁ ତୋର ଶତ୍ରୁ ।"

ପନ୍ନା ଖାଇବା ପାଇଁ ବାଢ଼ିବାକୁ ଚାଲିଯିବାରୁ ପୁଣି ହସର ଦୀପ ଲିଭିଗଲା ।

କାଲି ସେ ଚାଲିଯିବ ।

"ମୁଁ ତମକୁ ଦେଖିବାକୁ ଶୀଘ୍ର ହିଁ ଆସିବି କଲୀ ଆଉ ପ୍ରାୟ ଆସୁଥିବି ।" ପ୍ରବୀର କଲୀର ବୁଣି ହେଇଥିବା ବାଳକୁ ଆଉଁସିବାକୁ ଲାଗିଲା ।

"ଆସିବ ନାହିଁ, ମତେ ତମର ମିସ୍‌ଷ୍ଟ୍ରେସ ହେବାର ନାହିଁ", ନିଜର ଶ୍ୱାସରୋଧ ଅବସ୍ଥା ସେ କଣ୍ଠରେହିଁ ଶ୍ୱାସରୋଧ କରିନେଲା ।

ବିଦ୍ରୋହିଣୀର ଜଟିଳ ଆଦେଶ ପ୍ରବୀର ଶୁଣି ପାରିଲା ନାହିଁ ।

"କ'ଣ କହୁଛ କଲୀ", ସେ ବଡ଼ ଗେଲରେ ପଚାରିଲା ଆଉ ଝୁଙ୍କି ପଡ଼ିଲା ।

"କିଛି ନାହିଁ", କଲୀ କାନ୍ଥ ଆଡ଼କୁ ମୁହଁ ବୁଲେଇ ନେଲା ।

ରାତିର ଖାଇବା ସେଦିନ ଟେବୁଲ ଉପରେ ନରଖି କଲୀର କୋଠରିରେ ବଢ଼ାହେଲା । ଆଣ୍ଟି ତା'ର ସେହି ଡିନର ସେଟ୍‌ବାହାର କଲା, ଯେଉଁଟାକି ତାଙ୍କୁ ତାଙ୍କର ପ୍ରଥମ ପ୍ରେମିକ ତାଙ୍କର ସତର ବର୍ଷର ସମ୍ବନ୍ଧର ଦିନରେ ଉପହାରରେ ଦେଇଥିଲା । କଲୀ, ଜାଣିଶୁଣି କରି ସେହି ଐତିହାସିକ ଡିନର ସେଟର କାହାଣୀ ଦୋହରାଉ ଥିଲା । "ଆଣ୍ଟିର ସମସ୍ତ ପ୍ରେମିକ ତାଙ୍କୁ ଏମିତି ହିଁ ଉପହାର ଦେଇ ଥାଆନ୍ତେ ଯଦି ଆଜି ପର୍ଯ୍ୟନ୍ତ ଆଣ୍ଟି ପାଖରେ ବତିଶ ଡିନର ସେଟ ଥାଆନ୍ତା । କ'ଣ, ସତ ନା ଆଣ୍ଟି ?"

ତ୍ୟାଗ କରିଥିବା ମିଠା ଜେଲି ପାଇଁ ଜିଦ୍ କରୁଥିବା କଲୀକୁ ଆଣ୍ଟି ଅଟକେଇବାକୁ ଲାଗିଲା ତେଣୁ ସେ ପଲଙ୍କରୁ ଡେଇଁକରି, ପ୍ରବୀର ପାଖରେ ଚଉକି ଟାଣିକରି ବସିଗଲା । ଦେଖୁ ଦେଖୁ ସେ ପନ୍ନାର ନଜରକୁ ଲୁଚେଇ କରି ଖାଇବାକୁ ଲାଗିଲା ଯେମିତିକି ଦେବତାର ପ୍ରସାଦ ଅଟେ । ଅନ୍ନା ହାତ ଧୋଇକରି ଫେରିଲା, ତେବେ ସେ ଶାନ୍ତ, ଆଜ୍ଞାକାରିଣୀ ବାଳିକା ପରି ପଲଙ୍କରେ ଶୋଇଥିଲା ।

"ମୁଁ ଭାବୁଛି, ଆଜି କଲୀ ଦିନସାରା ଶୋଇନାହିଁ, ଏବେ ତା'ର ଷ୍ଟ୍ରେନ ନେବା ଠିକ୍ ହେବ ନାହିଁ", କଲୀ ଚମକି ପଡ଼ି ପ୍ରବୀର ଆଡ଼କୁ ଦେଖିଲା । ଆଉ ଦିନ କାଟିଲା ପରେ ମଧ୍ୟ ନ କଟୁ ଥିବା ସମୟ କ'ଣ ଆଜି ଡେଣା ଲଗେଇ ଉଡି ଯାଇଥିଲା ?

ପନ୍ନାର ପଲଙ୍କ କଲୀର ପଲଙ୍କକୁ ଲାଗିକରି ପକା ହେଇଥିଲା । ଇଚ୍ଛାଥିଲେ ମଧ୍ୟ ଚତୁର ବନ୍ଦିନୀ ଏବେ ସତର୍କ ଜେଲ୍ ୱାର୍ଡ଼ନକୁ କପଟ କରି ପାରିବ ନାହିଁ । କଲୀର କୋଠରୀର ଗୋଟିଏ କୋଠରୀ ଛାଡ଼ିକରି ହିଁ ବୋବୀର ସେହି କୋଠରୀ ଥିଲା, ଯେଉଁଠାରେ ଆଣ୍ଟି ପ୍ରବୀରକୁ ପହଞ୍ଚେଇ ଆସିଥିଲା ।

ପ୍ରବୀର ଶୋଇ ନଥିଲା – ଖୋଲା ଝରକା ପାଖରେ ଅନେକ ସମୟ ପର୍ଯ୍ୟନ୍ତ ଛିଡ଼ା ହିଁ ରହିଲା । ଯେଉଁ ଅବାଧ ପ୍ରେମ କଲୀକୁ ସେହି ରାତି ଦୁଃସାହସିକ ଡେଇଁବା ପାଇଁ ପଠେଇ ଥିଲା, ସେହି ଦୁଃସାହସ ତା'ର ଧମନୀଗୁଡ଼ିକରେ ବ୍ୟାପ୍ତ ହେଇକରି ତାକୁ ଉନ୍ମତ୍ତ କରିବାକୁ ଲାଗିଲା । କାହିଁକି ନାସେ ଚାପି-ଚାପି ପାଦକୁ ଅନ୍ଧାର କୋଠରୀରେ ଅଣ୍ଡାଳି ଅଣ୍ଡାଳି ଯାଇ କଲୀର ମୁଣ୍ଡ ପାଖରେ ଛିଡ଼ା ହେଇଯିବ ଆଉ ତାକୁ ଚୁପ୍‌ଚାପ୍ ବାହୁରେ

ଧରିକରି ନିଜ କୋଠରୀକୁ ନେଇ ଆସିବ ? କିନ୍ତୁ ତା ପାଖରେତ ଏକ ଏମିତି ସତର୍କ ସଂରକ୍ଷିକା ଶୋଇ ଥିଲା ଯାହାର ଯୌବନ କାଳରେ ରାତି-ରାତି ସାରା ଚେଇଁକରି କେତେ ନିଶାଚର ଅତିଥିମାନଙ୍କ ଆତିଥ୍ୟ ନିର୍ବାହ କରିଥିବ । ସେ କ'ଣ ଏହି ଅତିଥିର ଚାପା ଡାକକୁ ଧରି ପାରିବ ନାହିଁ ? ଆଣ୍ଟି କହିଥିଲା କି ଡାକ୍ତରମାନେ କଲୀକୁ ଅଧିକରୁ ଅଧିକ ବର୍ଷକ ପର୍ଯ୍ୟନ୍ତ ବଞ୍ଚିବାର ସମୟ ଦେଇଛନ୍ତି, କିନ୍ତୁ ସମ୍ଭବ ଏହା ମଧ୍ୟ ଥିଲା ମୃତ୍ୟୁ କେବେ ଅଜାଣତରେ ହିଁ ତାକୁ ଆସିକରି ଝାମ୍ପି ନେବ । ଥରେ ଦିଲ୍ଲୀ ଯିବାପରେ ସେ କ'ଣ ସହଜରେ ପୁଣି ଫେରି ପାରିବ ? ଏହି ଅନିଶ୍ଚିତ ସମୟର ଗୋଟିଏ ଅମୂଲ୍ୟ କ୍ଷଣ ସେ ହାତମୁଠାରେ ଝାମ୍ପିନେଇ ପଳେଇବାକୁ ଚାହୁଁଥିଲା । ଦିଲ୍ଲୀ ପହଞ୍ଚିବା ପରେ ଚତୁର ନୂତନ ପତ୍ନୀର ସତର୍କ ଦୃଷ୍ଟିର ସର୍ଚ୍ଚଲାଇଟର ଛଳକପଟରେ ତିଆରି ହେଇଥିବା ଅନ୍ଧକାରର ଘେରକୁ ଚିରି ପଳଉ ଥିବା ଦସ୍ୟୁକୁ କେବେ ହେଲେ ଧରି ପାରି ନଥାନ୍ତା ।

ଭାବି-ବିଚାର କରି ଆଉ ମନସ୍ତାପରେ ବନ୍ଧା ପ୍ରବୀର କେବେ ବଡ଼ ଦୁଃସାହସ କରି ବାରଣ୍ଡା ପର୍ଯ୍ୟନ୍ତ ଯାଉଥିଲା, କିନ୍ତୁ ପରକ୍ଷଣରେ ପନ୍ନାର କାଶି ତାକୁ ଭୟାଳୁ କରି ଦେଉଥିଲା ।

ସାରାରାତି ଏମିତି ଯୁଦ୍ଧ ପାଇଁ ବିଭିନ୍ନ ନିୟମର ଅଭ୍ୟାସରେ କଟିଗଲା । ଉଜ୍ଜ୍ୱଳ ଠିକ୍ ଭାବରେ ହେଇ ମଧ୍ୟ ନଥିଲା ସେ ବାରଣ୍ଡାରେ ବୁଲିବାକୁ ଲାଗିଲା । ହଠାତ୍ ଧଡ଼କରି କବାଟ ଖୋଲିକରି ଉଙ୍କିମାରୁଥିବା – ସୁକୁସୁକୁ ହେଇ କାନ୍ଦୁଥିବା ଆଣ୍ଟି ତା ସହିତ ଗୁଡ଼େଇ ହେଇଗଲା ।

"ସନୀ ବିଚିତ୍ର ହେଇଗଲା, ମୁଁ ସକାଳରେ କେପସୁଲ୍ ଖୁଏଇବାକୁ ଗଲାରୁ ଦେଖିଲି ଥଣ୍ଡା ପଡ଼ିଯାଇଛି । ମୁହଁରୁ ବିଚିତ୍ର ଶବ୍ଦ ବାହାରୁଛି । ଏମିତିତ କେବେ କରୁ ନ ଥିଲା । ତମେ ଯାଇକରି ଦେଖ ଟିକିଏ । ମୁଁ ଡାକ୍ତରକୁ ଡାକି ଆଣୁଛି । ମୋର ତ ମନେ ହେଉଛି, ସୀ ଇଜ୍ ସିଙ୍କିଂଗ ।"

କାଲି ରାତି ପର୍ଯ୍ୟନ୍ତ ଯିଏ ଆନନ୍ଦ – ଉତ୍ସାହ ବୁଣୁଥିଲା, ଅସ୍ଥିର ମାଛପରି ପହଁରୁ ଥିଲା ଏଆଡ଼େ-ସେଆଡ଼େ ନାଚୁଥିଲା, ସେ ବୁଢ଼ି କେମିତି ପାରିବ । ପ୍ରବୀର କୋଠରୀରେ ପହଞ୍ଚିଲା ବେଳକୁ ପନ୍ନା ମୁଣ୍ଡ ପାଖରେ ବସି ରୁମାଲରେ କଲୀର କପାଳର ଝାଳ ପୋଛୁଥିଲା ।

ଦୁଇ ହାତ ଛାତିରେ ରଖି ସେ ଯେଉଁ ପ୍ରଗାଢ଼ ନିଦ୍ରାରେ ବୁଢ଼ି ଶୋଇଥିଲା ତାକୁ ପ୍ରବୀର ଦେଖିଲା ମାତ୍ରେ ଚିହ୍ନି ପାରିଲା । କ'ଣ ଏମିତି ରୋଗରେ ମଧ୍ୟ ସେ ତୈଲୋକ୍ୟ ଦର୍ଶନର ଗୋଲି ଛାଡ଼ିପାରି ନଥିଲା । କେବେ-କେବେ ସମସ୍ତ ଶରୀର ମୋଡ଼ିହେଇ ଛୋଟ ଗଣ୍ଠିଲି ହେଇ ଯାଉଥିଲା ଆଉ କ୍ଷଣକରେ ସୁନ୍ଦର ଚେହେରା ଯନ୍ତ୍ରଣାରେ ବିକୃତ ହେଇକରି ନୀଳ ହେଇଯାଉଥିଲା । ପରକ୍ଷଣରେ ପୁଣି ବେକ ଲାଖି ଯାଉଥିଲା,

ଚେହେରାରେ ଶାନ୍ତ ନିଦ୍ରିତ ଶିଶୁପରି ହସ ଖେଳିବାକୁ ଲାଗେ ଆଉ ସ୍ୱାଭାବିକ ଶ୍ୱାସ-ପ୍ରଶ୍ୱାସ ଦେଖି ପନ୍ନା ବହୁତ ଆଶ୍ୱସ୍ତ ଦୃଷ୍ଟିରେ ପ୍ରବୀର ଆଡ଼କୁ ଦେଖିବାକୁ ଲାଗେ ।

ଡାକ୍ତର ମୋଜେଜ୍ ଆସିବାକୁ ବିଳମ୍ବ କଲେ ନାହିଁ ଝୁଙ୍କି ପଡ଼ି ସେ ପ୍ରଗାଢ଼ ନିଦ୍ରାରେ ବୁଡ଼ିଥିବା ଅସହାୟ ଦେହକୁ ଏକ-ଏକ ପଞ୍ଜରାହାଡ଼କୁ ପିଟାପିଟି କରି ଦେଖିଲା । ଅନୁଭବୀ ହାତରେ ନାଡ଼ିର କ୍ଷୀଣ ଗତିକୁ ଦେଖିଲେ । ସିଲ୍କ ପଲକର ବାଉଁଶ କାଠିର ପରଦାକୁ ବଳପୂର୍ବକ ଚିରିକରି କ୍ଷଣ-କ୍ଷଣକୁ ପଥର ହେଇ ଯାଉଥିବ ଆଖିକୁ ଦେଖିଲା ଆଉ ପୁଣି ଛିଡ଼ା ହେଇଗଲା ।

ଯେଉଁ ରୋଗ ଏତେ ମାସ ହେଲା କଷ୍ଟ ଦେଉଥିଲା, ଏଥରର ପ୍ରାଣଘାତୀ ଅଭିଯୁକ୍ତ ସେହି ରୋଗ ନଥିଲା, ଏଥିରେ ଡାକ୍ତରର ମଧ୍ୟ ସନ୍ଦେହ ନଥିଲା ।

"ଇଏ କିଛି ଖାଇ ନେଇଛି", ସେ ଚାପା ସ୍ୱରରେ କହିବାକୁ ଲାଗିଲା, "ବହୁତ ବେଶୀ ମାତ୍ରାରେ ଖାଇଛି, ହେଇପାରେ ସ୍ଲିପିଂ ପିଲ୍ସର ପୁରା ଶିଶିହିଁ ଢୋକି ନେଇଛି । ଡାକ୍ତରଖାନା ନେଇଗଲେ ଅଯଥା ହଇରାଣ ହେଇଯିବ, ତା ଉପରେ କେହି ତାକୁ ବଞ୍ଚେଇ ପାରିବେ ନାହିଁ ପଲ୍ସ ଇଜ ଅଲମୋଷ୍ଟ ଗନ । ହେଇପାରେ ଦଶ ପନ୍ଦର ମିନିଟ୍... ।"

ସେ ନିଜର ବାକ୍ୟ ପୁରା ମଧ୍ୟ କରି ପାରିଲା ନାହିଁ ନିଶ୍ୱାସ ନେବାକୁ ଯୁଦ୍ଧ କରୁଥିବା ଧକେଇ ହେଉଥିବା କଳୀ ହାରିକରି ଶେଷ ହେଇଗଲା ।

ମୃତ୍ୟୁ ଶୁଣିବାକୁ କେତେ ଭୟାବହ ଲାଗେ କିନ୍ତୁ ଦେଖିବାକୁ ସେତିକି ନିରୀହ, ସ୍ୱାଭାବିକ । ଏବେ ସେ ଥିଲା ଆଉ ଏବେ ସେ ନାହିଁ । ଦୁଇହାତ ଏବେ ମଧ୍ୟ ଛାତି-ଉପରେ ରଖିଥିଲା, ଅର୍ଦ୍ଧ-ଉନ୍ମୀଳିତ ବଡ଼ ଆଖିତ ଏମିତିହିଁ ଅଧାଖୋଲି କରି ଶୋଉଥିଲା ସେ । ଆଣ୍ଟି ନିଜକୁ ସମ୍ଭାଳି ପାରିଲା ନାହିଁ, ହିଷ୍ଟିରିକେଲ ସୁକୁସୁକୁ କାନ୍ଦରେ ବିରାଟ ଦେହ ଥରିବାକୁ ଲାଗିଲା । କିନ୍ତୁ ପନ୍ନା ଶାନ୍ତ ସ୍ଥିର ବସିଥିଲା । ଏମିତି ସ୍ତବ୍ଧ ହେଇକରି ସେ ତେବେ ମଧ୍ୟ ବସି ରହିଥିଲା, ଯେତେବେଳେ ବିଧାତା ଏହି ଅନାମ ସନ୍ତାନକୁ ତାଙ୍କର ଶୂନ୍ୟ କୋଳରେ ଦେଇ ଦେଇ ଆକସ୍ମିକ ଉଦାରତାରେ ତାକୁ ମା' ବନେଇ ଦେଇଥିଲା ଆଉ ଆଜି, ଆକସ୍ମିକ କ୍ରୁର ହୃଦୟହୀନତାରେ ତାକୁ ପୁଣି ଥରେ ସନ୍ତାନହୀନ କରିଦେଲା । ଡାକ୍ତର ଆଣ୍ଟିର ପୁରୁଣା ବନ୍ଧୁ ଥିଲା । ସୁକୁସୁକୁ ହେଇ କାନ୍ଦୁଥିବା ଆଣ୍ଟିର କାନପାଖକୁ ଆସିକରି ସେ ପୁଣି ଫୁସ୍‌ଫୁସ୍ କରି କହିବାକୁ ଲାଗିଲା, "ମୁଁ ଭାବୁଛି ଏବେ ଡେରିକର ନାହିଁ, ଯେତେ ଶୀଘ୍ର ହେଇପାରେ ମାଟି ପକେଇ ଦିଅ । ଆଜିକାଲିର ପୋଲିସର କୌଣସି ଠିକ୍ ଠିକଣା ନାହିଁ ।"

ଖ୍ରୀଷ୍ଟିଆନ ବସ୍ତିରୁ ପ୍ରଥମ ହିନ୍ଦୁ ମାଟି ଉଠୁଥିଲା, ଏଇଥିପାଇଁ ଆଣ୍ଟିର ହିନ୍ଦୁ ଇଷ୍ଟ-ମିତ୍ର ଯୋଗାଡ଼ କରିବାରେ କିଛି ବିଳମ୍ବ ହେଲା ସ୍ୱୟଂ ତାଙ୍କର ହିନ୍ଦୁ କମିଶନର ବନ୍ଧୁ

ଆସିକରି ତାଙ୍କର ସହାୟତା କଲା ।

ପ୍ରବୀର ଥରେ ହେଲେ ବାହାରକୁ ଆସିଲା ନାହିଁ । ଜଣାନାହିଁ ଆଣ୍ଟିର ବଙ୍ଗଳାର କେଉଁ ଅଜଣା ଅନ୍ଧକାର କୋଠରି ଥିଲା ସେଇଟା, ହୁଏତ ତାହା ପେଣ୍ଟ୍ରି ଥିଲା । ସେଠାରେ ଚୋରପରି ଚୁପ୍‌କରି ଲୁଚିଯାଇ ଘଣ୍ଟା ଘଣ୍ଟା ଧରି ବସି ରହିଲା ।

ଅନେକ ଡେରିରେ ଆଣ୍ଟି ଚା'ର କପ ନେଇ ଖୋଜି ଖୋଜି ପହଞ୍ଚି ଗଲା ।

"ଆରେ, ତମେ ଏଠାରେ ବସିଛ ? ଡାକ୍ତର କେବେଠୁ ନେଇ ଯାଇଛନ୍ତି । ଏମିତି ସୁନ୍ଦର ଦେହ ଆଉ ଜଳେଇ କରି ପାଉଁଶ କରି ଦେବେ । ହିନ୍ଦୁ ଶାସ୍ତ୍ର ଆମେ ବୁଝିପାରୁ ନାହିଁ । ନିଜର ସିମଟ୍ରିରେ ହେଇଥିଲେ ତ ମାର୍ବଲ ଟପ ତିଆରି କରେଇ ଥାନ୍ତି ।" ଆଣ୍ଟିର ଗଳା ରୁଦ୍ଧ ହେଇଗଲା । କବରର ପଥର ତଳେ ଦବି ଯିବାଠାରୁ ଆଚ୍ଛା ଥିଲା କି ଚିତାରେ ଜଳି କରି ତା'ର କୌଣସି ଶେଷ ନରହୁ ।

"ତମେ ବସ ସନୀ, ମୁଁ ଟିକିଏ ଗିର୍ଜା ଘରକୁ ଯାଉଛି ଟୁ ପ୍ରେଫର ହାର ସୋଲ ।" ପୁରୁଷମାନଙ୍କ ରୁମାଲରେ ନାକ ପୋଛି ପୋଛି ଆଣ୍ଟି ଚାଲିଗଲା ।

ପ୍ରବୀରର ହାତର କପ ଥରି ଉଠିଲା । ଟୁ ପ୍ରେ ଫର ହାର ସୋଲ । ଯିଏ ତାହାର ଚାଦରରେ ନିଜ ଓଢ଼ଣୀର ଗଣ୍ଠି ପକେଇ କରି ଶ୍ମଶାନରେ ମହୋତ୍ସବ ପାଳନ କରିଥିଲା, କ'ଣ ସେ ତାହାର ଆତ୍ମାର ଶାନ୍ତି ପାଇଁ ଗୋଟିଏ ବୁନ୍ଦା ପାଣି ମଧ୍ୟ ଦେବ ନାହିଁ ? ହଡ଼ବଡ଼େଇ କରି ସେ ଉଠିଲା ଆଉ ଚୁପଚାପ ବାହାରକୁ ଚାଲି ଗଲା ।

ସଂଗମରେ ପହଞ୍ଚିଲା, ସେତେବେଳେ ବୁଡ଼ି ଯାଉଥିବା ସୂର୍ଯ୍ୟ ଗଙ୍ଗାର ପଣତ ରଙ୍ଗ ଯମୁନାର ସୀମା ବନ୍ଦ କରି ଦେଲା । ଗୋଟିଏ ଭଙ୍ଗା ପରି ବଜରାରେ ସଂଗମର ମଧ୍ୟରେ ପହଞ୍ଚି କରି ସେ ଓହ୍ଲେଇ ଗଲା, ପୁଣି ବହୁତ ଦ୍ୱିଧାରେ ଉଭୟ ପାଦ ପାଣିରେ ବୁଡ଼େଇ କିଛି ସମୟ ପର୍ଯ୍ୟନ୍ତ ଛିଡ଼ା ହେଇହିଁ ରହିଗଲା ।

"କ'ଣ କାହାର ମାଟି ଦେଇ କରି ଆସିଛ ବାବୁ ?" ପ୍ରୌଢ଼ ନୌକା ଚାଳକର ସହାନୁଭୂତି ପୂର୍ଣ୍ଣ ପ୍ରଶ୍ନର କିଛିହେଲେ ଉତ୍ତର ଦେଲାନାହିଁ । କିନ୍ତୁ ସେ ତାହାର ଉଦାସ ଚେହେରାର ବ୍ୟଥାକୁ ଅନୁମାନ କରି ବୁଝିଗଲା ଯେ ଚୋଟ ସଜ ଅଟେ । "ଠିକ୍ ଜାଗାରେ ଛିଡ଼ା ହେଇଛ ବାବୁ, ମାଟିକୁ ପାଣି ଏଠାରେ ଦିଆଯାଏ ।"

ଦକ୍ଷିଣାଭିମୁଖ ହେଇ ସେ ଗୋଟାଏ ଅଞ୍ଜଳି ଭର୍ତ୍ତିକରି ମୁକ୍ତିଦାୟୀ ପାବନ ଅମୃତ ଉଠେଇ ନେଲା । କିନ୍ତୁ କ'ଣ କହିକରି ପକେଇବ ଏହି ପାଣି ? ନା ତ'ର କୁଳ ଥିଲା ନା ଗୋତ୍ର, ହିନ୍ଦୁ ଶାସ୍ତ୍ର ତ ସେପାରିକୁ ଯିବାବାଲା ଯାତ୍ରୀଠାରୁ ମଧ୍ୟ କୁଳ-ଗୋତ୍ରର ଭୀସା ମାଗେ । ତେବେ କ'ଣ ଏହି ପାଣି ସେହି କୁଳ-ଗୋତ୍ର ନଥିବା ପ୍ରେତ ଯୋନି ପର୍ଯ୍ୟନ୍ତ ପହଞ୍ଚିବ ନାହିଁ ? ପଲକ ପାଇଁ ତା'ର ମନେ ହେଲା- ଜନ୍ମ-ଜନ୍ମାନ୍ତରର ତୃଷାର୍ତ୍ତ ଦୁଇଟି

ଶୁଖିଲା ଓଠ ତା'ର ଜଳଭର୍ତ୍ତି ଅଞ୍ଜଳୀରେ ଲାଖି ଯାଇଛି । କପାଳ ଉପରେ ବୈଷ୍ଣବୀ ତିନୋଟି ଚନ୍ଦନର ରେଖା, ଗଳାରେ ତୁଳସୀର ମାଳା, ଅର୍ଦ୍ଧନଗ୍ନ ପିଠି ଉପରେ ବିଛେଇ ହେଇଥିବା କଳାବାଳ ! ସଙ୍ଗମ ତଟର ତୃଷାର୍ତ୍ତ ଆଦର୍ଶ ବୈଷ୍ଣବୀ କ'ଣ ତା ପାଖକୁ ପୁଣି ଆସିକରି ଛିଡ଼ା ହେଇ ଯାଇଥିଲା !

ପ୍ରବୀର ଆଖି ବନ୍ଦ କରି ନେଲା, ଓଠ ସ୍ୱୟଂ ହିଁ ଚୁପ୍‌ଚୁପ୍ କହିବାକୁ ଲାଗିଲା -

ଏକାଗ୍ରଃ ପ୍ରୟତୋ ଭୂତ୍ୱା, ଇମଂ ମନ୍ତ୍ରମୁଦୀରୟେତ
ଓଁ ନମୋ ଭଗବତେ ବାସୁଦେବାୟ ।
ଅବଶେନାପି ଯନ୍ନାମ୍ନି କୀର୍ତ୍ତିତେ ସର୍ବ ପ୍ରାତ କୈଃ ।
ପୁମାନ୍ ବିମୁଚ୍ୟତେ ସଦ୍ୟଃ ସିଂହତ୍ରସ୍ତୈ ର୍ମୃଗୈରିବ ।

ଅସହାୟ ହେଇ ମେଲିଥିବା ହାତ ପାପୁଲିରେ ବନ୍ଦ ହେଇଥିବା ପାଣି ଝରଝର ହେଇ ସଂଗମର ନୀଳ ଜଳରେ ଏକାକାର ହେଇଗଲା ।





କୁମୁଦିନୀ ବରାଇଙ୍କ ଜନ୍ମ ୧୯୩୬ ମସିହା ବଲାଙ୍ଗିର ସହରରେ । ସେ ଓଡ଼ିଶା ସରକାରଙ୍କର ଉଚ୍ଚଶିକ୍ଷା ବିଭାଗରେ ଅଧ୍ୟାପିକା ପଦରେ ଯୋଗ ଦେଇଥିଲେ । ସେହି ଦିନରୁ ସେ ସଫଳତାର ସହିତ ପ୍ରାଧ୍ୟାପିକା, ଉପାଧ୍ୟକ୍ଷା ଓ ଅଧ୍ୟକ୍ଷା ପଦରେ ଆସିନ ହୋଇଛନ୍ତି । ଜାତୀୟ ସମର ଶିକ୍ଷାର୍ଥୀ ବାହିନୀରେ ତାଙ୍କର ଅସାଧାରଣ କୃତିତ୍ୱ ରହିଛି । ସେ ଓଡ଼ିଶାର ପ୍ରଥମ ମହିଳା ଯେ କି 'ମେଜର' ପଦ ଅଳଂକୃତ କରିଛନ୍ତି ଏବଂ ରାଜ୍ୟର ଏକମାତ୍ର ମହିଳା Whole time ଅଫିସର ଯେ କି ଜାତୀୟ ସମର ଶିକ୍ଷାର୍ଥୀ ବାହିନୀରେ ଭାରତ ସରକାରଙ୍କର ପ୍ରତିରକ୍ଷା ମନ୍ତ୍ରଣାଳୟ ଅଧୀନରେ ନଅ ବର୍ଷ ରେଗୁଲାର ସୈନ୍ୟ ବାହିନୀ ଅଫିସରଙ୍କ ସ୍ଥାନରେ କୃତିତ୍ୱର ସହିତ କାର୍ଯ୍ୟ ନିର୍ବାହ କରିଛନ୍ତି। ସେହି ସମୟରେ ସେ ସମଗ୍ର ଓଡ଼ିଶାର ସମର ଶିକ୍ଷାର୍ଥୀ ବାହିନୀର ବାଳିକା ବିଭାଗର ଦାୟିତ୍ୱରେ ରହିଛନ୍ତି । ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍‌ଡି ଡିଗ୍ରୀ ପାଇଛନ୍ତି । ସେ ପ୍ରତିଷ୍ଠିତ ରମାଦେବୀ ମହିଳା ମହାବିଦ୍ୟାଳୟର ଅବସର ପ୍ରାପ୍ତ ଅଧ୍ୟକ୍ଷା ।

ତାଙ୍କର ଲିଖିତ କେତେକ କ୍ଷୁଦ୍ରଗଳ୍ପ ଅନେକ ବର୍ଷ ପୂର୍ବେ ତଦାନିନ୍ତନ ପତ୍ର ପ୍ରତିକାରେ ପ୍ରକାଶିତ ହେଇଥିଲା । ନିକଟରେ ସେ ଅନେକ ବଂଗଳା ଓ ହିନ୍ଦୀ କ୍ଷୁଦ୍ରଗଳ୍ପ ଓଡ଼ିଆରେ ଅନୂଦିତ କରିଛନ୍ତି ଓ ସେଗୁଡ଼ିକ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇଛି ।

ତାଙ୍କ ଦ୍ୱାରା ଲିଖିତ ପୁସ୍ତକ "Role of Women in the History of Orissa" ୧୯୯୪ରେ Punthi Pustak କଲିକତା ଦ୍ୱାରା ପ୍ରକାଶିତ ହେଇଛି । ତାଙ୍କର ଅନ୍ୟାନ୍ୟ ପୁସ୍ତକ-

ଗାଧୁଆ ଘରର ଗୀତ-୨୦୦୧, ଶୂନ୍ୟରେ ସେତୁ-୨୦୦୨, କେତୋଟି କାହାଣୀ-୨୦୦୫, ରୂପସୀ ଓ ଅନ୍ୟମାନେ-୨୦୦୫, ନଦୀ କଥା-୨୦୦୬, ରାମାୟଣର କାବ୍ୟ ମର୍ମ - ୨୦୦୭, ମା ଆନନ୍ଦମୟୀ - ୨୦୦୮


ISBN 81-8863019-5
9 788188 630196


କିତାବ ଭବନ
ଭୁବନେଶ୍ୱର